

ଡଃ ଫକୀର ମୋହନ ସାହୁ ବର୍ତ୍ତମାନ ଭୁବନେଶ୍ୱରସ୍ଥିତ ଜାଭିୟର୍ ମ୍ୟାନେଜ୍‌ମେଣ୍ଟ ସଂସ୍ଥାର ରିସର୍ଚ୍ଚ ପ୍ରଫେସର ରୂପେ ଅବସ୍ଥାପିତ । ପୂର୍ବରୁ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ବିଭାଗ (ଅଗ୍ରଶିକ୍ଷା କେନ୍ଦ୍ର)ର ପ୍ରଫେସର ଓ ପୂର୍ବତନ ବିଭାଗୀୟ ମୁଖ୍ୟ ରୂପେ କାର୍ଯ୍ୟ କରୁଥିଲେ । ସେ ରାଜ୍ୟଗୋଷ୍ଠୀ ବୃତ୍ତି ଲାଭକରି କାନାଡ଼ାର କୁଇନ୍ସ ବିଶ୍ୱବିଦ୍ୟାଳୟରୁ ତାଙ୍କର ପି.ଏଚ୍.ଡି. ଡିଗ୍ରୀ ହାସଲ କରିଥିଲେ ଏବଂ ପରେ ଏହି ବିଶ୍ୱବିଦ୍ୟାଳୟରେ କିଛି କାଳ ପାଇଁ ପରିଦର୍ଶକ ପ୍ରଫେସର ରୂପେ ଯୋଗ ଦେଇଥିଲେ । ମନସ୍ତାତ୍ତ୍ୱିକ ଗବେଷଣା ସଂପର୍କୀୟ ତାଙ୍କର ବହୁ ପୁସ୍ତକ ଓ ନିବନ୍ଧମାନ ଦେଶ ବିଦେଶରେ ପ୍ରକାଶ ପାଇଛି । କାନାଡ଼ାରେ ଅଧ୍ୟୟନ ବ୍ୟତୀତ ସେ ବିଭିନ୍ନ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗଦେବା ପାଇଁ ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ, ବେଲଜିୟମ, ହଲାଣ୍ଡ, ସ୍ପେନ, ଜାପାନ ଓ ତୁର୍କୀ ଇତ୍ୟାଦି ଦେଶ ଭ୍ରମଣ କରିଛନ୍ତି । ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ମନସ୍ତାତ୍ତ୍ୱିକ ଲେଖାମାନ ପ୍ରକାଶ ପାଇଛି । ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକା 'ସହକାର' ଓ 'ଜୀବନରଙ୍ଗ' ତାଙ୍କୁ ତାଙ୍କର ଲେଖା ପାଇଁ ସମ୍ମାନିତ କରିଛନ୍ତି । ମନସ୍ତାତ୍ତ୍ୱିକ ଲେଖା ବ୍ୟତୀତ ଆଧାତ୍ମିକ ଭାବସମ୍ପନ୍ନ ଲେଖା ଓ ପୁସ୍ତକ ମଧ୍ୟ ସେ ରଚନା କରିଛନ୍ତି । ପ୍ରାବନ୍ଧିକ ରୂପେ ଓଡ଼ିଆ ପାଠକ ମହଲରେ ଡକ୍ଟର ସାହୁ ବେଶ୍ ସୁପରିଚିତ ।

ମନସ୍ତାତ୍ତ୍ୱିକ ବିକାଶର

# ବାଲ୍ୟପର୍ବ

**ଡକ୍ଟର ଫକୀର ମୋହନ ସାହୁ**

ରିସର୍ଚ୍ଚ ପ୍ରଫେସର, ଜାଭିୟର୍ ମ୍ୟାନେଜ୍‌ମେଣ୍ଟ ସଂସ୍ଥା, ଭୁବନେଶ୍ୱର

ଏବଂ

ପୂର୍ବତନ ପ୍ରଫେସର ଓ ବିଭାଗୀୟ ମୁଖ୍ୟ, ମନୋବିଜ୍ଞାନ ବିଭାଗ

ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର




କଟକ-୨

ମନସ୍ତାତ୍ତ୍ୱିକ ବିକାଶର : ବାଲ୍ୟପର୍ବ ॥ ଲେଖକ : **ଡକ୍ଟର ଫକୀର ମୋହନ ସାହୁ** ॥ ପ୍ରକାଶକ : **ଅଗ୍ରଦୂତ,** ବାଙ୍କା ବଜାର, କଟକ-୭୫୩୦୦୨ ॥ ପ୍ରଥମ ସଂସ୍କରଣ : ୨୦୦୯ ॥ ପ୍ରଚ୍ଛଦ : ଶ୍ରୀ ରମେଶ ଗୁମାନ୍ ସିଂହ ॥ କଂପ୍ୟୁଟର ସହାୟତା : **ଏମ୍. ପ୍ରିଣ୍ଟର୍ସ;** କଟକ ॥ ମୁଦ୍ରଣ : ପଞ୍ଚସଖା ଅଫ୍‌ସେଟ୍, କଟକ

ମୂଲ୍ୟ : ଟ.୧୫୦/-

**MANASTATWIKA BIKASARA : BALYAPARBA :** ॥ Written by : **Dr. Fakir Mohan Sahoo** ॥ Published by : **AGRADUTA**, Banka Bazar, Cuttack-753002 ॥ First Edition : **2009** ॥ Printed by : Panchasakha Offset, Cuttack.

Price : **Rs.150 /-**

ଚେତନାଦୀପ୍ତ ଜୀବନର ମାର୍ଗଦର୍ଶକ ଏବଂ

ଆଧ୍ୟାତ୍ମିକ ସାହିତ୍ୟର ଜଣେ ଅଗ୍ରଦୂତ

**ଶ୍ରୀଯୁକ୍ତ ନବକିଶୋର ରାଜଙ୍କ କରକମଳରେ .........**

# ମୁଖଶାଳା

କାରୁକାର୍ଯ୍ୟଖଚିତ ପଥର-ମୂର୍ତ୍ତିଟି ନିର୍ମାଣ କରିବାକୁ ହେଲେ ପଥରର ପ୍ରକୃତି ଜାଣିବା ନିତାନ୍ତ ପ୍ରୟୋଜନ । ସ୍ୱର୍ଣ୍ଣନିର୍ମିତ ଅଳଙ୍କାର ପ୍ରସ୍ତୁତ କରିବା ପାଇଁ ସ୍ୱର୍ଣ୍ଣର ବସ୍ତୁଧର୍ମ ଜାଣିବା ଆବଶ୍ୟକ ହୁଏ । ସ୍ୱର୍ଣ୍ଣ ଓ ପଥର ପରି ବସ୍ତୁ ତୁଳନାରେ ମଣିଷ ଶିଶୁର ସ୍ୱରୂପ ଅଧିକ ଜଟିଳତାରେ ପରିପୂର୍ଣ୍ଣ । ବଂଶାନୁଗତ ଓ ଜନ୍ମର ପୂର୍ବବର୍ତ୍ତୀ ଜରାୟୁ ଅବସ୍ଥା ମଧ୍ୟ ଶିଶୁକୁ ପ୍ରଭାବିତ କରେ । ଏ ସମସ୍ତ ଜଟିଳତା ସତ୍ତ୍ୱେ ମଣିଷର ମନସ୍ତାତ୍ତ୍ୱିକ ବିକାଶ ସୁନିର୍ଦ୍ଦିଷ୍ଟ ନୀତିନିୟମ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ ।

ସେ ସମସ୍ତ ନୀତିନିୟମ ବାଲ୍ୟଜୀବନକୁ କିପରି ପ୍ରଭାବିତ କରେ, ତାହା ଜାଣିବାର କୌତୂହଳ କେବଳ ଏକ ବୌଦ୍ଧିକ ଜିଜ୍ଞାସା ନୁହେଁ । ଏହାର ପ୍ରୟୋଗାତ୍ମକ ଦିଗ ଗଭୀର ଓ ସୁବିସ୍ତୃତ । ମନସ୍ତାତ୍ତ୍ୱିକ ନୀତିନିୟମ ସହିତ ପରିଚିତି ଆମର ଜ୍ଞାନର ସମ୍ପ୍ରସାରଣ କରିବା ସଙ୍ଗେ ସଙ୍ଗେ ବାଲ୍ୟଜୀବନ ଆରମ୍ଭରୁ ମାର୍ଗଦର୍ଶନର ସମ୍ଭାବନା ନିର୍ମାଣ କରେ । ବାଞ୍ଛନୀୟ ଆଚରଣଟିକୁ ଦୃଢ଼ୀଭୂତ କରିବା ଏବଂ ଅବାଞ୍ଛନୀୟ ବ୍ୟବହାରଟିକୁ ଅପସାରିତ କରିବାର ଯୋଜନା ଫଳପ୍ରଦ ହୋଇଥାଏ । ପିତାମାତା, ଶିକ୍ଷକ/ଶିକ୍ଷୟିତ୍ରୀ, ଯତ୍ନକାରୀ ଏବଂ ବୟସ୍କବ୍ୟକ୍ତିମାନଙ୍କ ପାଇଁ ଏପରିସବୁ ତତ୍ତ୍ୱ ମାନବିକ ସମ୍ବଳବିକାଶର ଅମୂଲ୍ୟ ଭଣ୍ଡାର ।

ସଚେତନଶୀଳ ନାଗରିକମାନେ ତଥ୍ୟସବୁର ପୂର୍ଣ୍ଣ ଉପଯୋଗ ଘଟାଇ ଜୀବନ ବିକାଶକୁ ସଫଳ ରୂପ ଦେଇପାରିଲେ ଲେଖକଙ୍କର ଶ୍ରମ ସାର୍ଥକ ହେବ ।

**ଫକୀର ମୋହନ ସାହୁ**

ସାଇ ଛାୟା
ଭି.ଆଇ.ଏମ୍.୯୯, ଶୈଳଶ୍ରୀ ବିହାର
ଭୁବନେଶ୍ୱର

# ସୂଚୀପତ୍ର

## ପ୍ରଥମ ଭାଗ : ପ୍ରାକ୍‌-ବିଦ୍ୟାଳୟ ପର୍ଯ୍ୟାୟ

## (ଦୁଇ ବର୍ଷରୁ ପାଞ୍ଚବର୍ଷ ବୟସ)

## ଦ୍ୱିତୀୟ ଭାଗ : ଆଦ୍ୟ – ବିଦ୍ୟାଳୟ ପର୍ଯ୍ୟାୟ
## (ଛ'ବର୍ଷରୁ ଏଗାର ବର୍ଷ ବୟସ)

# ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶରୀର ଓ ମସ୍ତିଷ୍କଗତ ବିକାଶ

ପ୍ରାକ୍-ବିଦ୍ୟାଳୟ ଜୀବନ ପିଲାମାନଙ୍କର ହର୍ଷ ଉଲ୍ଲାସର ସମୟ । ସମ୍ଭବତଃ ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶ ଏ ସମୟର କଥା ବେଶି ମନେରଖି ନଥିବେ । ମାତ୍ର ପିତାମାତା ସେମାନଙ୍କ ପୁତ୍ରକନ୍ୟାଙ୍କ ପାଇଁ ଏ ସମୟକୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ମନେ କରନ୍ତି । ଏହାର ମୁଖ୍ୟ କାରଣ ହେଲା ଏହି ସମୟରୁ ପିଲାମାନେ ପରିବାରର କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରନ୍ତି । ପୂର୍ବରୁ ଶୈଶବ ଅବସ୍ଥାରେ ସେମାନଙ୍କର ପାରିବାରିକ କାର୍ଯ୍ୟକ୍ରମ ପ୍ରାୟ ନଥାଏ । ମାତ୍ର ବିଦ୍ୟାଳୟକୁ ଯିବା ବୟସରେ ପାଦଦେବା ପୂର୍ବରୁ ସେମାନେ ବାପା ମା'ଙ୍କ ସହିତ ଖେଳକୁଦ ଆରମ୍ଭ କରିଦିଅନ୍ତି । ବାପା ମା' ଓ ନିଜର ଅନ୍ୟ ଭାଇଭଉଣୀଙ୍କ ସହିତ କଥାବାର୍ତ୍ତା କରନ୍ତି । ଏପରି ଅଂଶଗ୍ରହଣ ସେମାନଙ୍କ ଭୂମିକାକୁ ଏକ ନୂତନ ପର୍ଯ୍ୟାୟକୁ ନିଏ । ଦୁଇ ବର୍ଷରୁ ପାଞ୍ଚବର୍ଷ ବୟସର ସୀମାରେଖା ମଧ୍ୟରେ ପ୍ରାକ୍-ବିଦ୍ୟାଳୟ ଜୀବନର ଏହି ବିକାଶଧାରାର ଏକ ସ୍ୱତନ୍ତ୍ର ରୂପରେଖ ରହିଛି ।

**ଶାରୀରିକ ବିକାଶ :**

ଦୁଇବର୍ଷରୁ ପାଞ୍ଚବର୍ଷ ବୟସର ପିଲାମାନଙ୍କର ଶାରୀରିକ ବିକାଶକୁ କେବଳ ଏକ ଶରୀରଭିତ୍ତିକ ଦୃଷ୍ଟିକୋଣରୁ ବିଚାର କରାଯିବା ଅନୁଚିତ । ଶରୀର ବିକାଶରେ ତ୍ରୁଟି ସାଧାରଣ ବିକାଶ ଓ ଉତ୍ତମ ବିକାଶରେ ଭିନ୍ନ ଭିନ୍ନ ପ୍ରଭାବ ସୃଷ୍ଟି କରିଥାଏ । ଧରାଯାଉ ସୁନୀତା ତା'ର ଛୋଟ ସାଇକେଲ୍‌ଟି ଖୁବ୍ ଭଲ ଚଳାଇ ପାରୁଥିବା ସ୍ଥଳେ ପୁଷ୍ପା ଭଲରୂପେ ଚଳାଇ ପାରେନାହିଁ । ଲକ୍ଷ୍ୟ କଲେ ହୁଏତ ଦେଖାଯିବ ଯେ, ସୁନୀତାର ଗୋଡ଼ ଦୁଇଟି ଶକ୍ତ ଥିବାରୁ ସେ ସହଜରେ ପେଡ଼ାଲ ମାରିପାରେ । ଅଥଚ ପୁଷ୍ପା ଅପେକ୍ଷାକୃତ ଦୁର୍ବଳ ହୋଇଥିବାରୁ ଏପରି କାର୍ଯ୍ୟ ପାରେନାହିଁ । ପୁଣି ସୁନୀତାର ପିତାମାତାଙ୍କର ଆଗ୍ରହ ଅଧିକ । ସେମାନେ ସମୟ ଦେଇ ସୁନୀତାକୁ ସାଇକେଲ୍ ଚଳାଇବା ଶିଖାନ୍ତି ଏବଂ ଅଭ୍ୟାସ କରିବା ପାଇଁ ଉତ୍ସାହ ଦିଅନ୍ତି । ସୁନୀତା ଭଲରୂପେ ସାଇକେଲ୍ ଚଳାଇ ପାରୁଥିବାରୁ ନିଜ ସମ୍ପର୍କରେ ଭଲ ଧାରଣା ପୋଷଣ କରେ । ଅନ୍ୟ ପକ୍ଷରେ ପୁଷ୍ପାର ଧାରଣା ନିଜର ସ୍ୱାସ୍ଥ୍ୟ ସମ୍ପର୍କରେ ଅନୁକୂଳ ହୋଇନଥାଏ ।

ଶାରୀରିକ ବିକାଶର କେତେକ ଦିଗ ଖୁବ୍ ସ୍ପଷ୍ଟ । ସାଧାରଣ ଭାବେ ପିଲାର ବୟସ ଏବଂ ତା'ର ଉଚ୍ଚତା ଓ ଓଜନ ମଧ୍ୟରେ ସମ୍ବନ୍ଧ ରହିଥାଏ । ପୁଣି ସାଧାରଣ ଭାବେ ଦେଖିଲେ ଜଣାଯାଏ ଯେ ପ୍ରାକ୍-ବିଦ୍ୟାଳୟକାଳୀନ ଉଚ୍ଚତା ଭବିଷ୍ୟତ ସମ୍ପର୍କରେ ମଧ୍ୟ ସୂଚନା ଦେଇଥାଏ ।

ଦୀର୍ଘକାୟ ପିଲା ଭବିଷ୍ୟତରେ ଦୀର୍ଘକାୟ ଯୁବକ ବା ଯୁବତୀ ଏବଂ ଖର୍ବାକୃତିର ପିଲା ଭବିଷ୍ୟତରେ ଖର୍ବାକୃତିର ଯୁବକ ବା ଯୁବତୀ ହେବାର ଅଧିକ ସମ୍ଭାବନା ଥାଏ ।

ଜନ୍ମ ହେବାର ପ୍ରଥମ ୩ମାସ ମଧ୍ୟରେ ଶିଶୁର ପ୍ରତି ମାସରେ ଅତି କମ୍‌ରେ ୫୦୦ ଗ୍ରାମ ଓଜନ ବୃଦ୍ଧି ପାଇବା ଆବଶ୍ୟକ । ଏହାଠାରୁ କମ୍ ହେଲେ ଶିଶୁଟି ପୁଷ୍ଟିସାର ଅଭାବଜନିତ ରୋଗ ଭୋଗୁଛି ବୋଲି ଜଣାଯିବ । ସାଧାରଣତଃ ପ୍ରଥମ ୩ମାସ ମଧ୍ୟରେ ଶିଶୁର ପ୍ରତି ମାସରେ ୧ କେଜି ଓଜନ ବୃଦ୍ଧି ହୋଇଥାଏ । ସୁସ୍ଥ ସବଳ ଶିଶୁଟିଏର ଓଜନ ୫ମାସ ବେଳକୁ ଜନ୍ମ ଓଜନଠାରୁ ଦୁଇଗୁଣ, ୧ ବର୍ଷ ବେଳକୁ ତିନିଗୁଣ ଏବଂ ୨ ବର୍ଷ ବେଳକୁ ଚାରିଗୁଣ ହୋଇଯାଇଥାଏ । ଆମ ଦେଶରେ ବୟସକାଳୀନ ଉଚ୍ଚତା ଓ ଓଜନକୁ ନିମ୍ନମତେ ପ୍ରକାଶ କରାଯାଇପାରେ ।

| ବୟସ | ଉଚ୍ଚତା | ଓଜନ |
|---|---|---|
| ୧ ବର୍ଷ | ଜନ୍ମ ଉଚ୍ଚତା + ୨୫ cm | ୭ Kg |
| ୨ ବର୍ଷ | ଜନ୍ମ ଉଚ୍ଚତା + ୩୭ cm | ୯.୫ Kg |
| ୩ ବର୍ଷ | ଜନ୍ମ ଉଚ୍ଚତା + ୪୬ cm | ୧୧.୫ Kg |
| ୪ ବର୍ଷ | ଜନ୍ମ ଉଚ୍ଚତା + ୫୩ cm | ୧୧.୫ Kg |
| ୫ ବର୍ଷ | ଜନ୍ମ ଉଚ୍ଚତା + ୫୯ cm | ୧୧.୫ Kg |

ପିଲାମାନଙ୍କର ଉଚ୍ଚତା ସମ୍ପର୍କରେ ଅନେକଙ୍କର ଭ୍ରମ ଧାରଣା ରହିଛି ଯେ ପିତା ମୁଖ୍ୟତଃ ପୁତ୍ରର ଉଚ୍ଚତା ନିୟନ୍ତ୍ରଣ କରୁଥିବା ସ୍ଥଳେ ମାତାଙ୍କ ଉଚ୍ଚତା ଅନୁଯାୟୀ କନ୍ୟାର ଉଚ୍ଚତା ନିର୍ଦ୍ଧାରିତ ହୁଏ । ମାତ୍ର ପ୍ରକୃତରେ ପିତା ଓ ମାତା ସମାନ ପରିମାଣରେ ସନ୍ତାନର ଉଚ୍ଚତା ନିର୍ଦ୍ଧାରଣ ପାଇଁ ଦାୟୀ ରହନ୍ତି । ପିତାମାତା ଉଭୟେ ଦୀର୍ଘକାୟ ହୋଇଥିଲେ ସେମାନଙ୍କ ସନ୍ତାନସନ୍ତତି ଦୀର୍ଘକାୟ ହେବାର ସମ୍ଭାବନା ଖୁବ୍ ବେଶି । ସେହିପରି ପିତାମାତା ଉଭୟ ଖର୍ବାକୃତି ହୋଇଥିଲେ ସେମାନଙ୍କ ପୁତ୍ରକନ୍ୟାଙ୍କ ଉଚ୍ଚତା କମ୍ ହେବାର ସମ୍ଭାବନା ଅଧିକ ।

ଅନୁନ୍ନତ ଦେଶସମୂହକୁ ବାଦଦେଲେ ବିକଶିତ ଓ ବିକାଶଶୀଳ ଦେଶମାନଙ୍କରେ ପ୍ରତିବର୍ଷ ଶରୀର ଉଚ୍ଚତା ସାମାନ୍ୟ ବୃଦ୍ଧି ପାଇବାର ଲକ୍ଷ୍ୟ ଦାରାଯାଏ । ସର୍ବେକ୍ଷଣରୁ ଦେଖାଯାଇଛି ଯେ ବିକଶିତ ଶିଳ୍ପୋନ୍ନତ ଦେଶମାନଙ୍କରେ ପାଞ୍ଚବର୍ଷ ବୟସର ପିଲାମାନଙ୍କର ଉଚ୍ଚତା ୧୯୦୦ମସିହାରୁ ଆରମ୍ଭ କରି ପ୍ରତି ଦଶବର୍ଷପରେ ପ୍ରାୟ ଏକରୁ ଦୁଇ ସେଣ୍ଟିମିଟର ପର୍ଯ୍ୟନ୍ତ ଅଧିକ ଡେଙ୍ଗା ହୋଇଛି । ୧୯୩୦ ମସିହାରୁ ଆରମ୍ଭ କରି ପାଞ୍ଚବର୍ଷରୁ ଜାପାନୀ ପିଲାମାନେ ପ୍ରତି ଦଶ ବର୍ଷରେ ପ୍ରାୟ ତିନି ସେଣ୍ଟିମିଟର ଅଧିକ ଡେଙ୍ଗା ହେଉଛନ୍ତି । ଅଧିକ ପୁଷ୍ଟିକର ଖାଦ୍ୟ ଓ ରୋଗ ସବୁର ନିୟନ୍ତ୍ରଣ ହିଁ ଏହାର ମୁଖ୍ୟ କାରଣ ହେଲେ ମଧ୍ୟ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ବିକାଶଶୀଳ ଓ ବିକଶିତ ଦେଶମାନଙ୍କରେ ଏପରି ସ୍ପଷ୍ଟ ରୂପରେଖ ସୂଚିତ ହେଉଛି । ସେହିପରି ବିଂଶ ଶତାବ୍ଦୀର ଆରମ୍ଭରେ ବାଳିକାମାନେ ଯେଉଁ ବୟସରେ ଗର୍ଭଧାରଣର

ସାମର୍ଥ୍ୟ ସୂଚାଉଥିଲେ ସେ ତୁଳନାରେ ବର୍ତ୍ତମାନ ବୟସ ସୀମାରୁ ପ୍ରାୟ ତିରିଶ ଚାଳିଶ ମାସ ହ୍ରାସ ପାଇଛି । ବିଗତ ଶତାବ୍ଦୀ ତୁଳନାରେ ଅଧିକ ଉନ୍ନତ ଶାରୀରିକ ବିକାଶର ଅନ୍ୟତମ କାରଣ ହେଉଛି ସମ୍ମିଳିତ ତେଜ (Hybrid vigour) । ପୂର୍ବେ ଗୋଟିଏ ସମ୍ପ୍ରଦାୟର ପରିସୀମା ମଧ୍ୟରେ ପୁରୁଷ ଓ ନାରୀ ପରସ୍ପରକୁ ବିବାହ କରୁଥିଲେ । ସମୟକ୍ରମେ ଏପରି ଗତାନୁଗତିକ ଧର୍ମର ପରିବର୍ତ୍ତନ ଘଟିଛି । ଗୋଟିଏ ସମ୍ପ୍ରଦାୟର ପୁରୁଷ ବା ନାରୀ ନିଜ ସମ୍ପ୍ରଦାୟର ବାହାରେ ବିବାହ କରିବାର ଉଦାହରଣ କ୍ରମଶଃ ବଢ଼ିବାରେ ଲାଗିଛି । ଭିନ୍ନ ଭିନ୍ନ ଜାତି, ଧର୍ମ ଓ ରାଷ୍ଟ୍ରର ଲୋକମାନଙ୍କ ମଧ୍ୟରେ ବୈବାହିକ ସମ୍ପର୍କ ଫଳରେ ସନ୍ତାନ ସନ୍ତତିମାନେ ଦୁଇ ସମ୍ପ୍ରଦାୟର ସମ୍ମିଳିତ ଉନ୍ନତ ବୈଶିଷ୍ଟ୍ୟ ସବୁ ଗ୍ରହଣ କରିବା ଫଳରେ ଶିଶୁମାନେ ଅଧିକ ସତେଜ ହେଉଛନ୍ତି ।

ଅଧିକନ୍ତୁ ଏହା ସର୍ବସ୍ୱୀକୃତ ଯେ ବାଲ୍ୟକାଳୀନ ରୋଗ ଶିଶୁର ଶାରୀରିକ ବିକାଶକୁ ବିପର୍ଯ୍ୟସ୍ତ କରିଥାଏ । ମାତ୍ର ଅଳ୍ପ ବୟସରେ ଘଟି ଯାଇଥିବା କେତେକ କ୍ଷତି ପୂରଣ ହୋଇଯାଇପାରେ । ରୋଗ ପ୍ରତିକାର ବ୍ୟବସ୍ଥା ଓ ପୁଷ୍ଟିକର ଖାଦ୍ୟ ସୁବନ୍ଦୋବସ୍ତ କରାଗଲେ ପିଲାଟି ଅଟକି ଯାଇଥିବା–ବିକାଶ–ସୋପାନରୁ ଅପେକ୍ଷାକୃତ ଦ୍ରୁତଗତିରେ ଅଗ୍ରସର ହୁଏ । ତା'ର ସମବୟସୀ ପିଲାମାନଙ୍କର ବିକାଶସ୍ତରର ସମାନ ପର୍ଯ୍ୟାୟରେ ପହଞ୍ଚିବା ପରେ ସେ ପୁନଶ୍ଚ ସ୍ୱାଭାବିକ ଗତିରେ ଆଗେଇ ଚାଲେ ।

ପ୍ରାକ୍–ବିଦ୍ୟାଳୟ ବୟସର ପିଲାମାନଙ୍କର ଶାରୀରିକ ବିକାଶ କ୍ଷେତ୍ରରେ ଭାବଗତ ଉପାଦାନ ସକ୍ରିୟ ଭୂମିକା ନେଇଥାଏ । ପାରିବାରିକ ଦାରିଦ୍ର୍ୟ, ଅଶାନ୍ତି ଓ ଉଦ୍‌ବେଗ ପିଲାପାଇଁ ମନସ୍ତାତ୍ତ୍ୱିକ ପ୍ରତିବନ୍ଧକ ସୃଷ୍ଟିକରେ । ପିଲାଟିର କ୍ରିୟା ପ୍ରତିକ୍ରିୟା ଖୁବ୍ ଶିଥିଳ ହୋଇଯାଏ । ପିଲାଟିର ମାନସିକ ବିକାଶ ଲାଗି ଆବଶ୍ୟକ ସ୍ନେହ ଅନୁରାଗର ଅଭାବ ଏକ ପ୍ରକାର ମନସ୍ତାତ୍ତ୍ୱିକ ବାମନତ୍ୱ (Psycho-logical Dwarfism) ସୃଷ୍ଟିକରେ ।

ନିର୍ଦ୍ଦିଷ୍ଟ ଭାବରେ କେଉଁ ଉପାଦାନଟି ଏପରି ବିକାଶହୀନତା ବା ବାମନତ୍ୱ ସୃଷ୍ଟିକରେ, ସେ ସମ୍ପର୍କରେ ଗବେଷଣା କରାଯାଇଛି। ଦେଖାଦେଇଛି ଯେ ପିତାମାତାଙ୍କର ପ୍ରତ୍ୟାଶା (Expectation) ଏବଂ ପିଲାଟିର କ୍ରିୟାଶୀଳତା ମଧ୍ୟରେ ଅଧିକ ଅମେଳ ସୃଷ୍ଟି ହେଲେ ଏପରି ସମସ୍ୟା ଉପୁଜେ । ପିତା ଓ ମାତାଙ୍କ ମଧ୍ୟରେ ମତାନୈକ୍ୟ, ପିତାମାତା ଓ ଜେଜେମା' ଜେଜେବାପାଙ୍କ ମଧ୍ୟରେ ମତବିରୋଧ ଏବଂ ଏପରି ଅନ୍ୟସବୁ ସମସ୍ୟା ଶିଶୁର ବିକାଶ କ୍ଷେତ୍ରରେ ଜଟିଳତା ସୃଷ୍ଟିକରେ । ପିତାମାତା ଆଶା କରୁଥିବା ସ୍ୱପ୍ନସବୁକୁ ପିଲାଟି ସାକାର ରୂପ ଦେଇପାରୁ ନଥିଲେ ପିତାମାତା କ୍ଷୁବ୍‌ଧ ହୋଇ ରୁକ୍ଷ ବ୍ୟବହାର କରନ୍ତି । ପିଲା ମଧ୍ୟ ନିସ୍ପୃହ ହେବା, ନିଜର ମନୋଭାବ ଲୁଚାଇବା ଏବଂ ବିରୋଧାତ୍ମକ ଆଚରଣ ଦର୍ଶାଇପାରେ । ମୁଖ୍ୟତଃ ପିଲାଟିର ବିକାଶ ପାଇଁ ଏବଂ ଭାବ ଯୋଗାଯୋଗ ପାଇଁ ପାରିବାରିକ ପରିବେଶର ଆବଶ୍ୟକତା ରହିଛି ।

**ମସ୍ତିଷ୍କ ଓ ବ୍ୟବହାର :**

ଚାରିପାଞ୍ଚ ବର୍ଷର ପିଲାର ଶାରୀରିକ ବିକାଶର ମୁଖ୍ୟ ସୂଚକ ହେଉଛି ମସ୍ତିଷ୍କର ବିକାଶ । ଏହି ସମୟରେ ମସ୍ତିଷ୍କର ବିକାଶ ଦ୍ରୁତଗତିରେ ହୋଇଥାଏ । ଦୁଇ ବର୍ଷର ଶିଶୁର ମସ୍ତିଷ୍କର ଆକାର

ତା'ର ଭାବୀ ଯୁବକ ମସ୍ତିଷ୍କର ପ୍ରାୟ ୭୫ ଶତାଂଶ । ପୁଣି ପାଞ୍ଚବର୍ଷ ବେଳକୁ ଏହି ମସ୍ତିଷ୍କର ଆକାର ଯୁବକ ମସ୍ତିଷ୍କ ଆକାରର ପ୍ରାୟ ୯୦ ଶତାଂଶ ହୋଇଥାଏ ।

ପ୍ରାକ୍-ବିଦ୍ୟାଳୟ ଜୀବନ କାଳ ମଧ୍ୟରେ ମସ୍ତିଷ୍କର ଯେଉଁ ବିକାଶ ଘଟେ ଏବଂ ଏପରି ବିକାଶ ପିଲାର ବ୍ୟବହାରରେ ଯେପରି ପ୍ରତିଫଳିତ ହୁଏ, ତାହା ବୁଝିବା ପାଇଁ ମସ୍ତିଷ୍କର ଦୁଇଟି ବୈଶିଷ୍ଟ୍ୟ ଜାଣିବାକୁ ହେବ । ପ୍ରଥମତଃ ସମଗ୍ର ମସ୍ତିଷ୍କଟି ସଙ୍ଗଠିତ ରୂପେ କାର୍ଯ୍ୟ କଲେ ମଧ୍ୟ ବିଭିନ୍ନ କାର୍ଯ୍ୟପାଇଁ ମୁଖ୍ୟ ମସ୍ତିଷ୍କର ଭିନ୍ନ ଭିନ୍ନ କେନ୍ଦ୍ର ରହିଥାଏ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ କୌଣସି ପିଲା ବା ବ୍ୟକ୍ତି କିଛି ଦେଖୁଥିଲାବେଳେ ମସ୍ତିଷ୍କର ଏକ ନିର୍ଦ୍ଦିଷ୍ଟ କେନ୍ଦ୍ର ସକ୍ରିୟ ଥିବା ସ୍ଥଳେ ଶୁଣିବା ସମୟରେ ଅନ୍ୟ କେନ୍ଦ୍ରଟି ସକ୍ରିୟ ଥାଏ । ସେହିପରି ଗୋଡ଼ ହାତର ଚାଳନା, ସ୍ୱାଦାନୁଭୂତି, ସ୍ପର୍ଶାନୁଭୂତି ଓ ସୁଗନ୍ଧ ଦୁର୍ଗନ୍ଧ ଅନୁଭବ କରିବା ସମୟରେ ମସ୍ତିଷ୍କର ଭିନ୍ନ ଭିନ୍ନ କେନ୍ଦ୍ର ସକ୍ରିୟତା ଦର୍ଶାଏ । ବିଶେଷଜ୍ଞମାନେ ମନୁଷ୍ୟ ମସ୍ତିଷ୍କରେ




ମସ୍ତିଷ୍କ : ବିଭିନ୍ନ କ୍ରିୟାକଳାପର ସ୍ନାୟୁକେନ୍ଦ୍ର

ଇଲେକ୍‌ଟ୍ରୋଡ୍ ଖଞ୍ଜିଦେଇ ମନୁଷ୍ୟକୁ ପୃଥକ୍ ପୃଥକ୍ ଅନୁଭୂତି ଦେବାର ବ୍ୟବସ୍ଥା କରି ଏହାର ସ୍ପଷ୍ଟ ଚିତ୍ର ପାଇଥାନ୍ତି । ବ୍ୟକ୍ତିଟି ଗୋଟିଏ ଦୃଶ୍ୟ ଦେଖୁଥିବାବେଳେ ମସ୍ତିଷ୍କର କେଉଁ ଅଂଶ ସକ୍ରିୟ ତାହା ନିର୍ଦ୍ଦିଷ୍ଟ ସ୍ଥାନର ଇଲେକ୍‌ଟ୍ରୋଡ୍‌ଟି ଆଲୋକିତ ହୋଇ ସୂଚନା ପ୍ରଦାନ କରିଥାଏ ।

ଏବେ ଆଉ ଗୋଟିଏ ପଦ୍ଧତିରେ ଅଧିକ ସ୍ପଷ୍ଟ ଭାବେ ମସ୍ତିଷ୍କର ଏହି ସ୍ଥାନୀୟକରଣ (Localization) ଜାଣି ହେଉଛି । ଶରୀରକୁ କ୍ଷତିଗ୍ରସ୍ତ କରୁନଥିବା ଅତି କ୍ଷୁଦ୍ର ରାସାୟନିକ ପଦାର୍ଥ ପ୍ରବାହିତ ରକ୍ତରେ ଛାଡ଼ି ଦିଆଯାଉଛି । ମସ୍ତିଷ୍କ କୌଣସି କାର୍ଯ୍ୟ କଲାବେଳେ ଶରୀରକୁ ରକ୍ତ ସେଠାକୁ ପ୍ରବାହିତ ହୁଏ । ପୁଣି ମସ୍ତିଷ୍କର ଯେଉଁ ଅଂଶ ଗୋଟିଏ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଯେତେ ବେଶି ସକ୍ରିୟ ସେ ସ୍ଥାନକୁ ସେତେ ବେଶି ରକ୍ତ ପ୍ରବାହିତ ହୁଏ । ରକ୍ତ ପ୍ରବାହରେ ଛାଡ଼ି ଦିଆଯାଇଥିବା ସୂକ୍ଷ୍ମାତିସୂକ୍ଷ୍ମ ବସ୍ତୁର ଗତିକୁ ଲକ୍ଷ୍ୟ କରି ବିଶେଷଜ୍ଞମାନେ କେଉଁ କାର୍ଯ୍ୟ ସହ ମସ୍ତିଷ୍କର କେଉଁ ଅଂଶ ଜଡ଼ିତ, ତାହା ସହଜରେ ଜାଣିପାରନ୍ତି । ଏହାକୁ ମସ୍ତିଷ୍କର ସ୍ଥାନୀୟକରଣ ନୀତି (Localization Principle) କୁହାଯାଏ । ଚାରିପାଞ୍ଚ ବର୍ଷ ବୟସର ପିଲାମାନଙ୍କ ମସ୍ତିଷ୍କରେ ଏହା ସ୍ପଷ୍ଟ ପ୍ରତିଫଳିତ ହୁଏ ।

ମସ୍ତିଷ୍କର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି ପାର୍ଶ୍ୱିକତା (Lateralization) । ମସ୍ତିଷ୍କର କାର୍ଯ୍ୟକଳାପରୁ ଲକ୍ଷ୍ୟ କରାଯାଇଛି ଯେ ମସ୍ତିଷ୍କର ବାମ ଓ ଦକ୍ଷିଣ ପାର୍ଶ୍ୱ ମଧ୍ୟରେ କିଛିଟା ପାର୍ଥକ୍ୟ ରହିଛି । ଗୋଟିଏ ପରେ ଗୋଟିଏ ସୂଚନାକୁ ଗ୍ରହଣ କରି ସେ ସବୁକୁ ଏକାଠି କରି ସିଦ୍ଧାନ୍ତ ଦେବାରେ ବାମ ଭାଗ ମସ୍ତିଷ୍କ ସକ୍ରିୟ ଭୂମିକା ନିଏ । ମାତ୍ର ମୋଟାମୋଟି ଭାବରେ ଗୋଟିଏ ଫର୍ମ ବା ଢାଞ୍ଚା (Pattern) ରପ୍ରତ୍ୟକ୍ଷ ଅନୁଭବ କ୍ଷେତ୍ରରେ ଦକ୍ଷିଣ ଭାଗରେ ମସ୍ତିଷ୍କ ମୁଖ୍ୟ ଭୂମିକା ନିଏ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇପାରେ ଯେ ଟେଲିଫୋନର ନମ୍ବରଟି ଦେଖି ସେଥିରେ ଥିବା ପ୍ରଥମ ସଂଖ୍ୟା, ଦ୍ୱିତୀୟ ସଂଖ୍ୟା ଇତ୍ୟାଦିକୁ ମନେ ରଖିବା ବେଳେ ବାମ ମସ୍ତିଷ୍କ ସକ୍ରିୟ ହୁଏ । ସେହିପରି କ୍ରମାଗତ ଭାବରେ ଉଚ୍ଚାରଣ କରାଯାଉଥିବା ନାମ ସବୁକୁ ଶୁଣିବା ସମୟରେ ବାମ ମସ୍ତିଷ୍କ ସକ୍ରିୟ ଥିବାବେଳେ ଗୋଟିଏ ଗୀତ ଶୁଣିବା ସମୟରେ ଦକ୍ଷିଣ ମସ୍ତିଷ୍କ ସକ୍ରିୟ ଥାଏ । ବିଶେଷଜ୍ଞମାନେ ମସ୍ତିଷ୍କରେ ଖଞ୍ଜିଥିବା ଇଲେକ୍‌ଟ୍ରୋଡ୍‌ର ଆଲୋକ ଦେଖି କିମ୍ବା ରାସାୟନିକ ପଦାର୍ଥ ମିଶ୍ରିତ ରକ୍ତ ପ୍ରବାହକୁ ଲକ୍ଷ୍ୟ କରି ଏପରି ସବୁ ସିଦ୍ଧାନ୍ତ ସଠିକ୍ ବୋଲି ଜାଣିପାରିଛନ୍ତି ।

ମସ୍ତିଷ୍କର ଏପରି ପାର୍ଶ୍ୱିକତା ବିଚାର କଲାବେଳେ ଆଉ ଗୋଟିଏ କଥା ଜାଣିବା ନିତାନ୍ତ ଆବଶ୍ୟକ । ତାହା ହେଉଛି ଯେ ଆମ ଶରୀରର ବାମଭାଗର ଅଂଶସବୁ (ଯଥା ବାମ କାନ ଓ ବାମ ଚକ୍ଷୁ) ଦକ୍ଷିଣ ଭାଗରେ ମସ୍ତିଷ୍କ ସହ ସ୍ନାୟୁ ଦ୍ୱାରା ସଂଯୁକ୍ତ ହେବା ସ୍ଥଳେ ଶରୀରର ଦକ୍ଷିଣ ଭାଗର ଅଂଶସବୁ ବାମ ମସ୍ତିଷ୍କ ସହିତ ସଂଯୁକ୍ତ ହୋଇଛି । ସୁତରାଂ ବାମ ମସ୍ତିଷ୍କର ସକ୍ରିୟତା ଦକ୍ଷିଣ ପାର୍ଶ୍ୱର ଅଙ୍ଗପ୍ରତ୍ୟଙ୍ଗର ସକ୍ରିୟତା ଦ୍ୱାରା ବୃଦ୍ଧି ପାଏ । ସେହିପରି ଦକ୍ଷିଣ ପାର୍ଶ୍ୱର ମସ୍ତିଷ୍କର ସକ୍ରିୟତା ଶରୀରର ବାମଭାଗର ଅଙ୍ଗପ୍ରତ୍ୟଙ୍ଗର କ୍ରିୟାକଳାପ ଫଳରେ ବୃଦ୍ଧିପାଇଥାଏ ।

ଗୋଟିଏ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ମସ୍ତିଷ୍କ କାର୍ଯ୍ୟକଳାପର ଏହି ବୈଶିଷ୍ଟ୍ୟକୁ ବୁଝିହୁଏ । ଧରାଯାଉ ଗୋଟିଏ Ear Phone ସାହାଯ୍ୟରେ ଦୁଇ କାନ ମଧ୍ୟକୁ କିଛି ଶ୍ରବଣଯୋଗ୍ୟ ଶବ୍ଦ ପ୍ରବେଶ କରାଯାଉଛି । ଏପରି ଶବ୍ଦ କ୍ରମାନ୍ୱୟରେ ଦିଆଯାଉଥିବା କିଛି ସଂଖ୍ୟା ହୋଇପାରେ କିମ୍ୱା କିଛି ଲୋକଙ୍କର ନାମ ମଧ୍ୟ ହୋଇପାରେ । ଏପରି ସ୍ଥଳେ ବୈଦ୍ୟୁତିକ ପଦ୍ଧତିରେ ସ୍ପଷ୍ଟ ଦେଖାଯିବ ଯେ ଶବ୍ଦସବୁ ଦୁଇଟିଯାକ କାନଦେଇ ପ୍ରବେଶ କରୁଥିଲେ ମଧ୍ୟ ଦକ୍ଷିଣ କାନ ଦେଇ ପ୍ରବେଶ କରୁଥିବା ଶବ୍ଦସବୁ ବାମ ମସ୍ତିଷ୍କରେ ଅଧିକ ପରିମାଣରେ ଗୃହୀତ ଓ ସଂଗଠିତ ହେଉଛି । ପୂର୍ବରୁ ସୂଚିତ କରାଯାଇଛି ସେ ଦକ୍ଷିଣ କାନଟି ବାମ ମସ୍ତିଷ୍କ ସହିତ ସଂଯୁକ୍ତ । ଅନ୍ୟ ପକ୍ଷରେ ଦୁଇ କାନରେ ପ୍ରବେଶ କରୁଥିବା ସଙ୍ଗୀତ ବାମ କାନଦେଇ ଦକ୍ଷିଣ ମସ୍ତିଷ୍କରେ ଅଧିକ ଗୃହୀତ, ସଙ୍ଗଠିତ ଓ ଅନୁଭବ କରାଯାଉଛି । ବାମ ମସ୍ତିଷ୍କ ବିଶ୍ଳେଷଣ ଓ ଦକ୍ଷିଣ ମସ୍ତିଷ୍କ ସଂଶ୍ଳେଷଣ କରୁଥିବାରୁ ଏପରି ଘଟୁଛି ।

ପିଲାର ବୟସ ପାଞ୍ଚବର୍ଷ ହେଲା ବେଳକୁ ଏପରି ପାର୍ଶ୍ୱିକରଣ ସ୍ପଷ୍ଟ ରୂପରେଖ ନିଏ । ବ୍ୟାବହାରିକ ଜୀବନରେ ଏହାର ପ୍ରତିଫଳନ ଦେଖାଯାଏ । ମନେକରଯାଉ ପିଲାଟିକୁ ନଦେଖାଇ ଗୋଟିଏ ଥଳୀରେ ଗୋଟିଏ ଘନ ପଦାର୍ଥ ପୂରାଇ ଦିଆଗଲା, ତାହା ପରେ ପିଲାଟି ନିଜର ଗୋଟିଏ ହାତ ଏହି ଥଳୀ ମଧ୍ୟରେ ପୂରାଇ ଏହି ବସ୍ତୁଟିକୁ ବାହାରକୁ ନଆଣି ବସ୍ତୁରେ ଥିବା କୋଣଗୁଡ଼ିକର ସଂଖ୍ୟା କହିବାକୁ ନିର୍ଦ୍ଦେଶ ଦିଆଗଲା । ଦେଖାଯିବ ଯେ ପିଲାଟି ନିଜର ଦକ୍ଷିଣ ହସ୍ତ ଥଳୀ ମଧ୍ୟରେ ପୂରାଇ ଏହାର ସମାଧାନ କରିବାକୁ ଅଧିକ କୃତକାର୍ଯ୍ୟ ହେବ । ଘନବସ୍ତୁର କୋଣସବୁ ଗଣିବା ପରି କାର୍ଯ୍ୟ ବିଶ୍ଳେଷଣମୁଖୀ ହୋଇଥିବାରୁ ଏହି କାର୍ଯ୍ୟ ବାମ ମସ୍ତିଷ୍କ ଦକ୍ଷିଣ ହସ୍ତ ସାହାଯ୍ୟରେ ଭଲରୂପେ କରିପାରିବେ । ମାତ୍ର ପିଲାଟିକୁ ଥଳୀରେ ହାତ ପୂରାଇ ବସ୍ତୁର ଆକାର କହିବାକୁ କୁହାଗଲେ ସେ ନିଜର ବାମ ହସ୍ତର ପ୍ରୟୋଗ ଓ ଦକ୍ଷିଣଭାଗ ମସ୍ତିଷ୍କର ସକ୍ରିୟତା ଫଳରେ ଅଧିକ କୃତକାର୍ଯ୍ୟ ହେବ ।

ଦର୍ଶନେନ୍ଦ୍ରିୟର ପ୍ରୟୋଗରେ ମଧ୍ୟ ଏହିପରି ଦୃଷ୍ଟାନ୍ତ ଦେଖାଯାଏ । ପିଲାଟିକୁ ଗୋଟିଏ ଚିତ୍ର ଦେଇ ତାହା ଅନୁସାରେ ରେଖାସବୁ ଟାଣି ଛବିଟିକୁ ନକଲ କରିବାକୁ କୁହାଗଲେ ଦକ୍ଷିଣ ଚକ୍ଷୁର ବ୍ୟବହାର (ପ୍ରକାରାନ୍ତରେ ବାମ ମସ୍ତିଷ୍କର ବ୍ୟବହାର) ଅଧିକ ସଫଳତାର ସହ କାର୍ଯ୍ୟ କରେ । ମାତ୍ର ଛବିଟିର ଫର୍ମ ବା ଢାଞ୍ଚାକୁ ଚିହ୍ନଟ କରିବାର କାର୍ଯ୍ୟ ବାମଚକ୍ଷୁର ପ୍ରୟୋଗ (ପ୍ରକାରାନ୍ତରେ ଦକ୍ଷିଣ ମସ୍ତିଷ୍କର ପ୍ରୟୋଗ) ଦ୍ୱାରା ଅଧିକ ସଫଳ ରୂପରେଖ ନିଏ । ସ୍ଥୂଳତଃ ଦୈନନ୍ଦିନ ଜୀବନରେ ଶରୀରର ଉଭୟ ପାର୍ଶ୍ୱର ଅଙ୍ଗପ୍ରତ୍ୟଙ୍ଗ ଓ ମସ୍ତିଷ୍କର ଦୁଇଟିଯାକ ପାର୍ଶ୍ୱ କାର୍ଯ୍ୟ କରୁଥିଲେ ମଧ୍ୟ କାର୍ଯ୍ୟକୁ ଚାହିଁ କୁଶଳତା ପୃଥକ୍ ପୃଥକ୍ ହୋଇଥାଏ ।

ମସ୍ତିଷ୍କର ପାର୍ଶ୍ୱିକତା (Lateralization) ନିୟମର ବଶବର୍ତ୍ତୀ ହୋଇ ମସ୍ତିଷ୍କ ଓ ଶରୀରର ଅଙ୍ଗପ୍ରତ୍ୟଙ୍ଗ କେତେକ ନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ ଦେଖାନ୍ତି । କିନ୍ତୁ ପିଲାଟି ନିଜ ପରିବାର, ବିଦ୍ୟାଳୟ ଓ ନିକଟସ୍ଥ ପରିବେଶରେ ପାଉଥିବା ଶିକ୍ଷା ଓ ପ୍ରୋତ୍ସାହନ ଫଳରେ ଦୈନନ୍ଦିନ ଜୀବନରେ କେତେକ ବ୍ୟବହାର ଦର୍ଶାଇଥାଏ । ପିଲାଟିକୁ ନଂଜେନ୍ସଟିଏ ଦେଲାବେଳେ

ସାଧାରଣତଃ ତାହାର ଦକ୍ଷିଣ ହସ୍ତ ଆଗକୁ ପ୍ରସାରିତ ହୁଏ । ସେହିପରି ଗୋଟିଏ କ୍ୟାମେରାର ଛୋଟ ଛିଦ୍ର ଦେଇ କିଛି ଦେଖିବାକୁ କହିଲେ ସେ ଦକ୍ଷିଣ ଚକ୍ଷୁଟି ବ୍ୟବହାର କରେ । ଦୈନନ୍ଦିନ ଜୀବନରେ ବାମହାତ ତୁଳନାରେ ଦକ୍ଷିଣ ହସ୍ତର ବ୍ୟବହାର ଅଧିକ ଦେଖାଯାଏ । ଏହାର ଏକ ମୁଖ୍ୟ କାରଣ ହେଉଛି ପିଲାଟିର ଶିକ୍ଷାଦୀକ୍ଷା, ବାପା ମା' ଓ ଅନ୍ୟମାନେ ପିଲାଟିକୁ ଦକ୍ଷିଣ ହସ୍ତରେ ଖାଇବା ଓ ଅନ୍ୟ କେତେକ କାର୍ଯ୍ୟ କରିବାର ଶିକ୍ଷା ଦିଅନ୍ତି । ଫଳତଃ ଏହି ହାତଟି ଅଧିକ ପ୍ରୟୋଗ କରିବାର ମନୋବୃତ୍ତି ଗଠିତ ହୁଏ । ପୁଣି କେତେକ ଦେଶରେ ଦୁଇ ହାତରେ ଭଲରୂପେ ଲେଖିବାର ଅଭ୍ୟାସ ଶିକ୍ଷା ଦିଆଯାଉଥିବାରୁ ସେ ଦେଶର ପିଲାମାନେ ବାମ ହାତର ପ୍ରୟୋଗ କରି ବେଶ୍ କିଛି କାର୍ଯ୍ୟ କରିପାରନ୍ତି । ମୋଟ୍ ଉପରେ ଗୋଟିଏ ପାର୍ଶ୍ୱର ଅଙ୍ଗପ୍ରତ୍ୟଙ୍ଗକୁ ଅଧିକ ବ୍ୟବହାର କରିବାର ସମ୍ଭାବନା ଅନେକାଂଶରେ ଶିକ୍ଷାକୃତ ।

ମସ୍ତିଷ୍କ ବିକାଶ ଫଳରେ ପ୍ରାକ୍-ବିଦ୍ୟାଳୟ ଜୀବନରେ ପିଲାଟିର ଦୃଷ୍ଟିଶକ୍ତି ଓ ଶ୍ରବଣଶକ୍ତିର ସାମର୍ଥ୍ୟ ବୃଦ୍ଧିପାଏ । ଶୌଚାଳୟର ବ୍ୟବହାର ଶିକ୍ଷା ଦିଆଯାଉଥିବାରୁ ପିଲା ଦିନ ସମୟରେ ନିଜର ମଳମୂତ୍ର ତ୍ୟାଗ ଉପରେ ଅଧିକରୁ ଅଧିକ ନିୟନ୍ତ୍ରଣ କ୍ଷମତା ଲାଭକରେ । ସେହିପରି ରାତିରେ ମଧ୍ୟ ଯଥାସ୍ଥାନରେ ଓ ଯଥା ସମୟରେ ପରିସ୍ରା କରିବାର ଅଭ୍ୟାସ ଶିଖେ । ପ୍ରାକ୍-ବିଦ୍ୟାଳୟକାଳୀନ ଶାରୀରିକ ବିକାଶର ଧାରା ବିଦ୍ୟାଳୟରେ ଏକ ନୂତନ ଭୂମିକା ଗ୍ରହଣ କରିବାର ପ୍ରସ୍ତୁତି ପର୍ବ । ଏ ସମୟରେ ଶାରୀରିକ ଓ ମସ୍ତିଷ୍କଗତ ବିକାଶ ଅନ୍ୟ କେତେକ କୌଶଳ-ଶିକ୍ଷାର ମୂଳ ଉପାଦାନ ଯୋଗାଇଥାଏ ।

# ଦୃଷ୍ଟି ଓ ଶ୍ରବଣ ଶକ୍ତିର ବିକାଶ

ପ୍ରାକ୍ ବିଦ୍ୟାଳୟ ସ୍ତରରେ ଶିଶୁ ତାର ଚକ୍ଷୁ (ଦର୍ଶନେନ୍ଦ୍ରିୟ)କୁ ବାହ୍ୟ ଜଗତର ସୂଚନାସବୁ ଗ୍ରହଣ କରିବାରେ ବେଶ୍ ଉପଯୋଗ କରେ । ତଥାପି ଅନ୍ୟ ଏକ ଦୃଷ୍ଟିକୋଣରୁ ବିଚାର କଲେ ଶିଶୁର ଦର୍ଶନେନ୍ଦ୍ରିୟ କ୍ଷମତା ସୀମାବଦ୍ଧ ମନେହୁଏ । ଶିଶୁ ପ୍ରାୟ ଦୂର ଜିନିଷସବୁ ଭଲ ରୂପେ ଦେଖିପାରେ, ମାତ୍ର ଅତି ନିକଟରେ ଥିବା ବସ୍ତୁସବୁକୁ ସ୍ପଷ୍ଟ ରୂପେ ଦେଖିବାରେ ଅସୁବିଧା ଥାଏ । ଏହି କାରଣରୁ ବହିର ଛାପା ଅକ୍ଷର ସବୁ ଭଲରୂପେ ପଢ଼ିବା ଏବଂ ଅଙ୍କନ (ଡ୍ରଇଁ) କରିବାରେ ଅସୁବିଧା ହୁଏ । ଅତି ପାଖକୁ ଚାହିଁଲା ଭଳି କାମସବୁ ଶିଶୁମାନେ ଭଲରୂପେ କରିପାରନ୍ତି ନାହିଁ । ପ୍ରାକ୍-ବିଦ୍ୟାଳୟ ଜୀବନର ପରବର୍ତ୍ତୀ ପର୍ଯ୍ୟାୟରେ ଶିଶୁ କ୍ରମଶଃ ନିକଟ ବସ୍ତୁସବୁକୁ ଭଲରୂପେ ଦେଖିବାର ସାମର୍ଥ୍ୟ ହାସଲ କରେ । ଏପରି ସାମର୍ଥ୍ୟର ଉପଯୋଗ କରି ସେ ଲେଖାପଢ଼ା କରିବାର କ୍ଷମତା ଲାଭ କରେ । ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁ ଦେଖୁଥିବା ବସ୍ତୁସବୁରେ କିଛିଟା ପାର୍ଥକ୍ୟ ଲକ୍ଷ୍ୟ କରେ । ଚାରି ବର୍ଷର ଶିଶୁ ଦୁଇଟି ବସ୍ତୁ ମଧ୍ୟରୁ କେଉଁଟି ଅଧିକ ଉଜ୍ଜ୍ୱଳ ତାହା ଜାଣିପାରେ । ଦୁଇଟି ପେନସିଲ ଏକାପରି କି ଅଲଗା ଅଲଗା ତାହା ଜାଣିପାରେ । ଦୁଇଟି ଖେଳନାର ଆକୃତି ଭିନ୍ନ କି ଏକାପରି ତାହା କହିପାରେ ।

କିନ୍ତୁ ବସ୍ତୁଗୁଡ଼ିକ ବିଭିନ୍ନ ଧରଣର ହୋଇଥିଲେ କୌଣସି ଏକ ନିର୍ଦ୍ଦିଷ୍ଟ ଉପାଦାନକୁ ଭିତ୍ତି କରି ବସ୍ତୁଗୁଡ଼ିକୁ ଭିନ୍ନ ଭିନ୍ନ ଭାଗରେ ବିଭକ୍ତ କରିବାରେ ଅସୁବିଧା ହୁଏ । ଉଦାହରଣ ସ୍ୱରୂପ ଲାଲ୍ ରଙ୍ଗର ଖେଳନା, ଲାଲ୍ ଖେଳନା ଟ୍ରକ୍, ନାଳ ରଙ୍ଗର ବହି, ନୀଳ ରଙ୍ଗର କପ୍ଡେଇ,ଗୋଟିଏ ଖେଳନା ଭାଲୁ ଏବଂ ଆଉ ଗୋଟିଏ ଖେଳନା ଫଳ ଦେଇ ଶିଶୁକୁ ଏକାପରି ଜିନିଷ ସବୁ ଏକାଠି କରିବାକୁ କୁହାଯାଇପାରେ । ଏ କ୍ଷେତ୍ରରେ ତିନି ଚାରିବର୍ଷର ଶିଶୁ ବସ୍ତୁ ସବୁର ବାହାର ଆକୃତି ଦେଖି ଏକାପରି ଆକୃତି ଥିବା ବସ୍ତୁକୁ ଗୋଟିଏ ଦଳରେ ରଖିବ । ରଙ୍ଗକୁ ଭିତ୍ତି କରି ବସ୍ତୁସବୁ ଏକାଠି ହୋଇପାରେ, ଏପରି ଧାରଣା ସହଜରେ ଆସିବ ନାହିଁ ।

ଦୃଷ୍ଟିଶକ୍ତିକୁ ଆଧାର କରି ବିଭିନ୍ନ ବସ୍ତୁକୁ ପୃଥକ୍ ପୃଥକ୍ ବିଭାଗ କରିବା ବ୍ୟତୀତ ଶିଶୁର ଅନ୍ୟ ଏକ ସାମର୍ଥ୍ୟ ପ୍ରକାଶ ପାଏ । ଦୃଷ୍ଟିଶକ୍ତି ସହିତ ସଂଯୋଗ ରକ୍ଷା କରି ସେ ଆଉ କେତେକ କୌଶଳ ପ୍ରଦର୍ଶନ କରେ । ବଲ୍‌ଟିକୁ ଅନ୍ୟ ପାଖକୁ ପକାଇବା ଏବଂ ଅନ୍ୟଜଣେ ପକାଉଥିବା ବଲ୍‌କୁ ଧରିବା ଏ ଧରଣର ସାମର୍ଥ୍ୟ । ବଲ୍‌ଟି ପକାଇବା ସମୟରେ ସେ ଦୃଷ୍ଟି ନିକ୍ଷେପ କରି ଦୂରତ୍ୱର କଳନା କରେ । ସେହିପରି ଅନ୍ୟଜଣେ ତା ପାଖକୁ ପକାଉଥିବା ବଲ୍‌ଟିକୁ ଲକ୍ଷ୍ୟ କରି ସେ ନିଜର ସ୍ଥାନଟି କରିନିଏ ।

ଏପରି ସଂଯୋଜନାରେ ଶିଶୁ ବେଶ୍ ସାମର୍ଥ୍ୟ ଦର୍ଶାଇଲେ ମଧ୍ୟ ଅଧିକ ଜଟିଳତାପୂର୍ଣ୍ଣ କାର୍ଯ୍ୟ କୁଶଳତା କଷ୍ଟସାଧ୍ୟ ହୁଏ । ଗୋଟିଏ ଗତିଶୀଳ ବଲ୍ ସହିତ ସମନ୍ୱୟ ରକ୍ଷା କରି ଗୋଟିଏ ବାଡ଼ିରେ ଏହାକୁ ଗଡ଼ାଇ ଗଡ଼ାଇ ନିଜେ ଦୌଡ଼ିବାର କୌଶଳ ଅପେକ୍ଷାକୃତ କଷ୍ଟକର ହୋଇଥାଏ । ପ୍ରାକ୍-ବିଦ୍ୟାଳୟ ଜୀବନର ଆରମ୍ଭ ସମୟକୁ ଶିଶୁ ଏପରି କାର୍ଯ୍ୟ ଧୀରେ ଧୀରେ ଆରମ୍ଭ କଲେ ମଧ୍ୟ ଏଥିରେ ପୂରାପୂରି ସଫଳତା ନଥାଏ । ପ୍ରାକ୍-ବିଦ୍ୟାଳୟର ସମୟ ବେଳକୁ (ଛ' ବର୍ଷ ବୟସ) ଶିଶୁ ଏପରି କୌଶଳ ଆୟତ୍ତ କରିଥାଏ ।

ଦୃଷ୍ଟି ସାମୀପ୍ୟର ଉପଯୋଗ ପ୍ରସଙ୍ଗରେ ଆଉ ଗୋଟିଏ ଦିଗ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ବାହାରର ବାଧାକୁ ଏଡ଼ାଇ ଯାଇ ଦର୍ଶନେନ୍ଦ୍ରିୟର ସ୍ଥିର ଉପଯୋଗ କରିବାର ଦକ୍ଷତା ଶିଶୁ ଧୀରେ ଧୀରେ ଶିକ୍ଷା କରେ । ଶିଶୁ ଦେଖି ଚାହିଁ ନିଜ ପୋଷାକ ପତ୍ର ପିନ୍ଧିଥାଏ । କିମ୍ବା ଜୋତାରେ ଫିତା ବାନ୍ଧୁଥାଏ । ମାତ୍ର ଏପରି ସମୟରେ ରେଡ଼ିଓର ଗୀତ କିମ୍ବା ଦୂରଦର୍ଶନର ଦୃଶ୍ୟ ଶିଶୁର ଦୃଷ୍ଟି ଆକର୍ଷଣ କଲେ ସେ ପୋଷାକ ପିନ୍ଧା ବନ୍ଦ କରି (କିମ୍ବା ଜୋତା ଫିତା ବାନ୍ଧିବା ବନ୍ଦ କରି) ରେଡ଼ିଓ ବା ଟି. ଭି. ଆଡ଼େ ଚାହେଁ । ଦୁଇଟି କାର୍ଯ୍ୟର ସଂଯୋଗ ରକ୍ଷା କରିବାର ଦକ୍ଷତା ପ୍ରାକ୍-ବିଦ୍ୟାଳୟ ସ୍ତରରେ ଆସି ନଥାଏ । ସେହିପରି ଶିଶୁ ପେନ୍‌ସିଲ ଧରି ଚିତ୍ର ଅଙ୍କନ କରୁଥିବା ସମୟରେ ଶିଶୁ କ'ଣ କରୁଛି ବୋଲି ପଚରା ଯାଇପାରେ । ଏପରିସ୍ଥଳେ ଶିଶୁ ଆଙ୍କିବା କାର୍ଯ୍ୟଟି ବନ୍ଦ କରି ପ୍ରଶ୍ନର ଉତ୍ତର ଦିଏ । ଏକା ସମୟରେ ଅଙ୍କନ କରିବା ଏବଂ ପ୍ରଶ୍ନକର୍ତ୍ତାଙ୍କ ପ୍ରଶ୍ନର ଉତ୍ତର ଦେବା ଭଳି ସଂଯୋଜନା ସାମର୍ଥ୍ୟ ପ୍ରାୟ ଆଠବର୍ଷ ବୟସବେଳକୁ ଶିଶୁ ହାସଲ କରେ । ଅନ୍ୟ ଭାଷାରେ କହିଲେ ଏପରି ସଂଯୋଜନ ସାମର୍ଥ୍ୟର ଉନ୍ମେଷ ପ୍ରାକ୍-ବିଦ୍ୟାଳୟ ସ୍ତରରେ ଘଟିଥିଲେ ମଧ୍ୟ ଏହାର ପୂର୍ଣ୍ଣ ବିକାଶ ପ୍ରାକ୍-ବିଦ୍ୟାଳୟ ପର୍ଯ୍ୟାୟର ସମାପ୍ତି ପରେ ସମ୍ଭବ ହୋଇଥାଏ ।

ଦର୍ଶନେନ୍ଦ୍ରିୟର ବିକାଶ ତୁଳନାରେ ଶିଶୁର ଶ୍ରବଣେନ୍ଦ୍ରିୟ ଅଧିକ ଉନ୍ନତ । ପ୍ରାୟ ତିନିବର୍ଷ ବେଳକୁ ଶିଶୁ ଶବ୍ଦସବୁର ତରତମ୍ୟ ବୁଝିପାରେ । କୋମଳ ଓ କର୍କଶ ସ୍ୱର ମଧ୍ୟରେ ପ୍ରଭେଦ ଜାଣିପାରେ । ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁ କଥିତ ଶବ୍ଦ ମଧ୍ୟରେ ପାର୍ଥକ୍ୟ ବୁଝି ପାରିଥିଲେ ମଧ୍ୟ ନିଜେ ସେପରି ଭିନ୍ନ ଭିନ୍ନ ଶବ୍ଦ ସୃଷ୍ଟି କରିପାରେ ନାହିଁ ।

ଏ ଦୃଷ୍ଟିରୁ କହିବା ସମୟରେ ଶିଶୁ କିଛି ଶବ୍ଦ ଭୁଲକରି ଉଚ୍ଚାରଣ କରେ । ମନୋଭାବ ବ୍ୟକ୍ତ କରିବା ସମୟରେ ହୁଏତ ଗୋଟିଏ ଶବ୍ଦ ମଝିରେ ଆଉ ଗୋଟିଏ ଶବ୍ଦ କହିଦିଏ, 'ମୁଁ ମିଠା ଖାଇବି' ନକହି 'ମୁଁ ପିଠା ଖାଇବି' କହିପାରେ । ଏ କ୍ଷେତ୍ରରେ ପିତାମାତା ଶିକ୍ଷକ ଶିକ୍ଷୟିତ୍ରୀ ଏବଂ ଅନ୍ୟସବୁ ବୟସ୍କମାନେ ସନ୍ଦେହ କରି 'ତୋର ପିଠା ଦରକାର କି ?' ପଚାରି ପାରନ୍ତି ।

ଶିଶୁଟି ହୁଏତ ପୁଣି କହିବ ''ନା, ମୋର ପିଠା ଦରକାର ।'' ଶିଶୁର ଏପରି ଉତ୍ତରରୁ ଜାଣି ହେବ ଯେ ଶିଶୁ 'ମିଠା' ଶବ୍ଦଟି କହିପାରୁ ନଥିବାରୁ ଏପରି ଜଟିଳତା ସୃଷ୍ଟି ହେଉଛି । ପୁଣି ଥରେ 'ତୋର ମିଠା ଦରକାର କି ?' ପଚାରିଲେ ଶିଶୁ ''ହଁ'' କହି ସମ୍ମତି ଜଣାଇପାରେ । ବୟସ୍କମାନେ 'ତୋର ମିଠା ଦରକାର' ଏପରି କହି 'ମିଠା' ଶବ୍ଦଟିର ପୁନରାବୃତ୍ତି କଲେ ଶିଶୁ ଧୀରେ ଧୀରେ ଶିକ୍ଷା କରିପାରିବ । ମୋଟ ଉପରେ ଅନ୍ୟମାନଙ୍କଠାରୁ ଶବ୍ଦ ସବୁ ବାରମ୍ବାର ନିର୍ଭୁଲ ଭାବରେ ଶୁଣିବା ପରେ ଶିଶୁ ଠିକ୍ ରୂପେ କହିବାର ଦକ୍ଷତା ହାସଲ କରେ । ଏହାର ବହୁ ପୂର୍ବରୁ ଉଚ୍ଚାରଣ ମଧ୍ୟରେ ଥିବା ପାର୍ଥକ୍ୟ ସବୁ ଶିଶୁ ଠିକ୍ ରୂପେ ପୃଥକ୍ କରି ଶୁଣିପାରିବାର ଦକ୍ଷତା ହାସଲ କରିଥାଏ ।

# ଶାରୀରିକ ବିକାଶକୁ ପ୍ରଭାବିତ କରୁଥିବା କେତୋଟି ଉପାଦାନ

ଅନେକଙ୍କର ଧାରଣା ଯେ କେବଳ ସୁଷମ ଖାଦ୍ୟର ପ୍ରାଚୁର୍ଯ୍ୟ ଶିଶୁର ଶାରୀରିକ ବିକାଶକୁ ତ୍ୱରାନ୍ୱିତ କରେ । ମାତ୍ର ଏହା ସତ୍ୟ ନୁହେଁ । ଏକାଧିକ ମନସ୍ତାତ୍ତ୍ୱିକ ଉପାଦାନ ଶିଶୁର ଶାରୀରିକ ବିକାଶରେ ପ୍ରଭାବ ପକାଏ । ଉଦାହରଣସ୍ୱରୂପ କୁହାଯାଇପାରେ ଯେ, କେତେକ ସଂସ୍କୃତିରେ ପିଲାମାନେ ନିଜର ଦର୍ଶନେନ୍ଦ୍ରିୟ (ଚକ୍ଷୁ)ର ବହୁଳ ବ୍ୟବହାରରୁ ବଂଚିତ ହେବା ସ୍ଥଳେ ଅନ୍ୟ କେତେକ ସଂସ୍କୃତିରେ ପିଲାମାନେ ଦର୍ଶନେନ୍ଦ୍ରିୟର ବହୁଳ ବ୍ୟବହାରର ସୁଯୋଗ ପାଆନ୍ତି । ପ୍ରଥମ ପ୍ରକାର ସଂସ୍କୃତିରେ ମା'ମାନେ କାମକୁ ଗଲାବେଳେ ଛୋଟ ପିଲାମାନଙ୍କୁ ସେମାନଙ୍କ ପିଠିରେ ଥିବା ଏକ ଥଳୀ ସମ୍ପୂର୍ଣ୍ଣ ଭାବରେ ଶିଶୁକୁ ଆବୃତ୍ତ ରଖିଥବାରୁ ଶିଶୁ ବାହାର ଜଗତର ବିଶେଷ କିଛି ଦୃଶ୍ୟ ଦେଖିପାରେ ନାହିଁ । ଅନ୍ୟପକ୍ଷରେ ଭିନ୍ନ ସଂସ୍କୃତିରେ ମା'ମାନେ ଶିଶୁକୁ କାନ୍ଧ କିମ୍ବା ପିଠିରେ ଥିବା ଥଳୀ ସାହାଯ୍ୟରେ ବୋହିବା ବେଳେ ଶିଶୁର ମୁହଁ ବାହାରକୁ ରହିଥାଏ । ଫଳରେ ସେ ଦୃଶ୍ୟସବୁ ଦେଖେ ଏବଂ ଶବ୍ଦ ଭଲରୂପେ ଶୁଣିପାରେ । ଅନୁଧ୍ୟାନରୁ ଦେଖାଯାଇଛି ଯେ, ଦ୍ୱିତୀୟ ପ୍ରକାର ପରିବେଶ ମଧ୍ୟରେ ଲାଳିତପାଳିତ ଶିଶୁର ଶାରୀରିକ ବିକାଶ ମଧ୍ୟ ଦ୍ରୁତତର ହୁଏ । ଶାରୀରିକ ବିକାଶ ପାଇଁ କେବଳ ଉତ୍ତମ ଖାଦ୍ୟ ଯଥେଷ୍ଟ ନୁହେଁ । ଅନୁଭବ ପରିସର ମଧ୍ୟ ବ୍ୟାପକ ହେବା ଉଚିତ । ଛୋଟ ଆକାରର ପରିବାରରେ ବଢୁଥିବା ପିଲାମାନେ ବଡ଼ ଆକାରର ପରିବାରର ପିଲାମାନଙ୍କ ତୁଳନାରେ ଅଧିକ ସୁଯୋଗ ପାଆନ୍ତି । ଅନ୍ୟ ପକ୍ଷରେ ବହୁତ ଗୁଡ଼ିଏ ପିଲାପିଲି ଥିବା ପରିବାରରେ ଶିଶୁମାନେ ଉନ୍ନତ ପରିବେଶ ଓ ଉଚ୍ଚତର ସୁବିଧା ସୁଯୋଗ ପାଇନଥାନ୍ତି । ଅନେକ ସମୟରେ ଗୋଟିଏ ପିଲାକୁ ଥଣ୍ଡା କାଶ ଛାଡ଼ିବା ପରେ ପରେ ଅନ୍ୟ ଶିଶୁଟି ଏଥିରେ ଆକ୍ରାନ୍ତ ହୁଏ । ଶିଶୁପାଳନ ବେଳେ ମଧ୍ୟ ଏପରି ସମସ୍ୟା ସୃଷ୍ଟି ହୁଏ । ଶିଶୁର ଯତ୍ନକାରୀ କେତୋଟି ଦିଗ ପ୍ରତି ସତର୍କତାମୂଳକ ପଦକ୍ଷେପ ନେଇ ଶିଶୁମାନଙ୍କର ଅସୁସ୍ଥତାର ସମ୍ଭାବନାକୁ ଅଧାଅଧି କମାଇ ପାରିବେ । ଶୌଚାଳୟ ବ୍ୟବହାର ପରେ ପରେ ଶିଶୁମାନଙ୍କୁ ନିଜକୁ ଧୂଆଇବାର ଶିକ୍ଷା ଦେବା ଏବଂ ଖାଇବା ପୂର୍ବରୁ ହାତ ଧୋଇବା ଶିଶୁମାନଙ୍କୁ ତାଲିମ ଦେବା ଏ ଧରଣର ସତର୍କତା । ସାଧାରଣ ପରିଷ୍କାର ପରିଚ୍ଛନ୍ନତା ରକ୍ଷା କରିବାର ତାଲିମ ଦେଲେ ଶିଶୁମାନେ କେତେ ସମସ୍ୟା ଏଡ଼ାଇ ଯାଆନ୍ତି । ପିତାମାତା ଓ ଯତ୍ନକାରୀମାନଙ୍କର ଏପରି ସମୟୋଚିତ ତାଲିମ ଶାରୀରିକ ସୁସ୍ଥତା ରକ୍ଷାରେ ସହାୟକ ହୁଏ ।

ଗୁଣାତ୍ମକ ପରିବେଶର ଅଭାବ ବ୍ୟତୀତ ପିତାମାତାଙ୍କର ମାନସିକ ଚାପ ମଧ୍ୟ ଶିଶୁର ଶାରୀରିକ ବିକାଶକୁ କ୍ଷତିଗ୍ରସ୍ତ କରେ । ପରିବାରରେ କୌଣସି ବ୍ୟକ୍ତି ଦୀର୍ଘଦିନ ଧରି ପୀଡ଼ିତ ରହିବା, କୌଣସି ଆତ୍ମୀୟସ୍ୱଜନଙ୍କ ମୃତ୍ୟୁ, ଚାକିରିରେ ବଦଳି, ଗୋଟିଏ ଭଡ଼ାଘର ଛାଡ଼ି ଅନ୍ୟ ଭଡ଼ାଘରକୁ ଯିବା ଏବଂ ଆର୍ଥିକ କ୍ଷତି ସବୁ ଗୋଟିଏ ଗୋଟିଏ ଚାପକ । ସର୍ବେକ୍ଷେଣରୁ ଦେଖାଯାଇଛି ଯେ, ବାରଟି କିମ୍ବା ତଦୂର୍ଦ୍ଧ ଚାପର ଶରବ୍ୟ ହୋଇଥିବା ପରିବାରର ପିଲାମାନେ ଚାରୋଟି କିମ୍ବା ତା'ଠାରୁ କମ୍ ସଂଖ୍ୟକ ଚାପର ଶିକାର ହେଉଥିବା ପରିବାରର ପିଲାମାନଙ୍କ ତୁଳନାରେ ଅଧିକ ରୋଗରେ ପଡ଼ନ୍ତି । ଥଣ୍ଡା, କାଶ ଓ ସର୍ଦ୍ଦି ପରି ସାଧାରଣ ରୋଗ ସବୁ ଚାପଗ୍ରସ୍ତ ପରିବାରରେ ବେଶି ଲାଗିରହେ ।

ମାନସିକ ଚାପର ଶରବ୍ୟ ହୋଇ ପତାମାତା ଓ ଅଭିଭାବକ ପିଲାମାନଙ୍କ ପ୍ରତି କେତୋଟି ଦାୟିତ୍ୱ ଭୁଲିଯାଆନ୍ତି । ଠିକ୍ ସମୟରେ ସେମାନଙ୍କୁ ଖାଇବାକୁ ଦେବା, ପିଲାମାନେ ଶୌଚାଳୟ ବ୍ୟବହାର କଲାପରେ ସେମାନଙ୍କୁ ପରିଷ୍କାର ପରିଚ୍ଛନ୍ନ ରଖିବାରେ ସାହାଯ୍ୟ କରିବା ଏବଂ ପିଲାମାନଙ୍କୁ ସ୍ୱାସ୍ଥ୍ୟସୂଚକ ପରାମର୍ଶ ଦେବାରେ ଅବହେଳା କରନ୍ତି । ଏପରି ଅବହେଳା ଇଚ୍ଛାକୃତ ନହେଲେ ମଧ୍ୟ ଏସବୁ ଶାରୀରିକ ବିକାଶରେ ବାଧା ସୃଷ୍ଟି କରେ । ପରିବାରର ଦାରିଦ୍ର୍ୟ ଶିଶୁର ଶାରୀରିକ ବିକାଶ କ୍ଷେତ୍ରରେ ବାଧା ସୃଷ୍ଟିକରେ । ଦାରିଦ୍ର୍ୟ ଫଳରେ ଶିଶୁ ଠିକ୍ ସମୟରେ ଏବଂ ଠିକ୍ ଭାବରେ ଖାଦ୍ୟ ପାଇନଥାଏ । ଏହା ତାହାର ଶାରୀରିକ ଅଭିବୃଦ୍ଧିକୁ ବ୍ୟାହତ କରେ । ଦୀର୍ଘଦିନ ଧରି ଭଲ ଖାଦ୍ୟ ନ ପାଇବା ଫଳରେ ଶରୀରର କେତେକ ଆଭ୍ୟନ୍ତରୀଣ ଅଂଶ ତାହାର ସ୍ୱଭାବସୁଲଭ କାର୍ଯ୍ୟକୁଶଳତା ହରାଇଥାଏ । ପରବର୍ତ୍ତୀ ସମୟରେ ଭଲ ଖାଦ୍ୟ ଦେଲେ ମଧ୍ୟ ସହଜରେ ତାହାକୁ ଗ୍ରହଣ କରି ତାହାକୁ ଉପଯୋଗ କରିବାର ସାମର୍ଥ୍ୟ ପାକସ୍ଥଳୀର ନଥାଏ । ପୁଷ୍ଟିହୀନତା ଫଳରେ କେତେକ ସମସ୍ୟା ସୃଷ୍ଟିହୁଏ । ଦାରିଦ୍ର୍ୟର ବଳୟ ମଧ୍ୟରେ ଥିବା ପିଲାମାନେ ଠିକ୍ ସମୟରେ ରୋଗ ପ୍ରତିରୋଧକ ଇଞ୍ଜେକ୍ସନ ମଧ୍ୟ ପାଇନଥାନ୍ତି ।

ଦାରିଦ୍ର୍ୟ ସହିତ ବାସଗୃହର ଅଭାବ ସମସ୍ୟାକୁ ଜଟିଳତର କରେ । ଘର ନଥାଇ ପଦାରେ ବୁଲୁଥିବା ଏବଂ ଏଠି ସେଠି ଖାଉଥିବା ପିଲାମାନଙ୍କର ବିକାଶ ଖୁବ୍ ବାଧାପ୍ରାପ୍ତ ହୁଏ । ଶାରୀରିକ କ୍ଷତି ସହିତ ଏମାନଙ୍କର ବିକାଶକାଳୀନ ଅସ୍ୱାଭାବିକତା ଏବଂ ବ୍ୟବହାରଗତ ସମସ୍ୟା ସଷ୍ଟି ହେବାର ସମ୍ଭାବନା ରହିଛି । ଏ ଦୃଷ୍ଟିରୁ ଶାରୀରିକ ବିକାଶ ପାଇଁ କେବଳ ଖାଦ୍ୟ ଓ ସ୍ୱଚ୍ଛଳତା ପ୍ରତି ଦୃଷ୍ଟି ସୀମିତ ନରଖିବା ଏବଂ ଅନ୍ୟ କେତୋଟି ଦିଗ ପ୍ରତି ସଚେତନ ରହିବା ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଯୁକ୍ତିଯୁକ୍ତ ହେବ ।

# ଶରୀର–କୌଶଳର ବିକାଶ

ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ଶିଶୁ ମୌଳିକ ଶରୀର–କୌଶଳ ଶିକ୍ଷାକରେ । ଦୁଇବର୍ଷ ବୟସବେଳକୁ ସେ ଚେଷ୍ଟାକରି ଚାଲିବାର କ୍ରିୟାକଳାପ ଦର୍ଶାଏ । ମାତ୍ର ପ୍ରାକ୍–ବିଦ୍ୟାଳୟ ସ୍ତରରେ ସେ ଧୀରେ ଧୀରେ ସ୍ୱାଭାବିକ ଭାବରେ ଚାଲିବାକୁ ଲାଗେ । ଆଗକୁ ଚାଲିବା ଓ ପଛକୁ ଚାଲିବା, ଧୀର ଗତିରେ ଚାଲିବା ଓ ଦ୍ରୁତ ଗତିରେ ଚାଲିବା, ଡେଇଁ ଡେଇଁ ଶବ୍ଦ କରି ଚାଲିବା ଓ ନିଃଶବ୍ଦରେ ଚାଲିବା ପରି ବିଭିନ୍ନ ଧରଣର ଚାଲିବା ଶୈଳୀ ପ୍ରଦର୍ଶନ କରେ । ପାଞ୍ଚବର୍ଷର ଶିଶୁ ଦୌଡ଼ିବା, ଚଢ଼ିବା, ପୁଣି ଗୋଟିଏ ଗୋଡ଼ରେ ଠିଆହେବା, ବଲ୍ ଧରିବା ଏବଂ ଚିତ୍ର ଅଙ୍କନ କରିବା ପରି ଅନ୍ୟସବୁ କୌଶଳ ମଧ୍ୟ ହାସଲ କରେ ।

ଅବଶ୍ୟ କେତେକ ଶିଶୁଙ୍କ କ୍ଷେତ୍ରରେ ବିକାଶର ସ୍ୱାଭାବିକ ଧାରାଟି ବିପର୍ଯ୍ୟସ୍ତ ହୋଇଯାଏ । ଶାରୀରିକ ଅକ୍ଷମତା ନେଇ ଜନ୍ମହୋଇଥିବା ଏବଂ କ୍ରମାଗତ ଅସୁସ୍ଥତା ମଧ୍ୟରେ ଗତିକରୁଥିବା ଶିଶୁ ହୁଏତ ଆଲୋଚିତ ଶରୀର କୌଶଳ ଦର୍ଶାଇ ନଥାଏ । ମାତ୍ର ସାଧାରଣ ଭାବରେ ଦେଖିବାକୁ ଗଲେ ପ୍ରାକ୍–ବିଦ୍ୟାଳୟ ସ୍ତରର ଶିଶୁର ଶରୀର କୌଶଳ ପ୍ରତିବର୍ତ୍ତ (Reflex) ମଧ୍ୟରେ ସୀମିତ ନରହି ଭିନ୍ନ ଭିନ୍ନ ରୂପରେ ପ୍ରକାଶ ପାଇଥାଏ । ଦୁଇବର୍ଷରୁ ପାଞ୍ଚବର୍ଷ ମଧ୍ୟରେ ଶିଶୁ ତାହାର ପରିପାର୍ଶ୍ୱରେ ବୟସ୍କମାନଙ୍କର ଗତିବିଧି ଲକ୍ଷ୍ୟ କରେ ଏବଂ ଅନୁକରଣ କରି ଚାଲିବା, ଦୌଡ଼ିବା ଏବଂ ଡେଇଁବା ପରି କାର୍ଯ୍ୟକଳାପ ଦର୍ଶାଏ । ପ୍ରଥମେ ପ୍ରଥମେ ଶିଶୁ ଅନୁକରଣର ବଶବର୍ତ୍ତୀ ହୋଇ ଏସବୁ ଶରୀର କୌଶଳ ଦର୍ଶାଏ । ମାତ୍ର ପରବର୍ତ୍ତୀ ପର୍ଯ୍ୟାୟରେ ସେ ଏସବୁ କ୍ରିୟାକଳାପକୁ ଲକ୍ଷ୍ୟ ସାଧନର ମାଧ୍ୟମ ରୂପେ ବ୍ୟବହାର କରେ ।

ପ୍ରଥମେ ପ୍ରଥମେ ଚାଲିବା ପାଇଁ ଶିଶୁର ଅସୁବିଧା ହୁଏ । ସେ ଭାରସାମ୍ୟ ରକ୍ଷା କରିପାରେ ନାହିଁ । ପରବର୍ତ୍ତୀ ପର୍ଯ୍ୟାୟରେ ସେ ଗୋଟିଏ ପାଦ ଆଗକୁ ନେଇ ଟଳଟଳ ଅବସ୍ଥାରେ ଆଗକୁ ନେଇଥିବା ପାଦଟିକୁ ଲକ୍ଷ୍ୟ କରେ । କ୍ରମଶଃ ଅନ୍ୟ ପାଦଟିକୁ ଉଠାଏ । ଶିଶୁ ଶରୀରର ଉପର ଅଂଶଟି ଅପେକ୍ଷାକୃତ ଅଧିକ ଭାରୀ ହୋଇଥିବାରୁ ଭାରସାମ୍ୟ ରକ୍ଷା କରିବା ପାଇଁ ସେ ଗୋଡ଼ ଦୁଇଟିକୁ ଦୂରେଇ ରଖେ (ଘୋଡ଼ାରେ ଚଢ଼ିବା ପରି) । ଏହା ଫଳରେ ସେ ପଡ଼ିଯାଇ ନଥାଏ । ତଥାପି ଚାଲିବା ପାଇଁ ପ୍ରସ୍ତୁତି ଆରମ୍ଭ କରିବା ସମୟରେ ଶିଶୁ ବିଫଳ ହୋଇ ଥରକୁ ଥର ପଡ଼ିଯାଏ । ସେ ଧୀରେ ଧୀରେ ଚାଲିବାକୁ ଶିଖେ ।

ଗୋଟିଏ ବର୍ଷର ଅଭ୍ୟାସ ପରେ ଶିଶୁ ନିଜର ଗୋଡ଼ ଆଡ଼କୁ ନଚାହିଁ ଚାଲିବାର ଦକ୍ଷତା ହାସଲ କରେ । ଦ୍ୱିତୀୟ କିମ୍ବା ତୃତୀୟ ଜନ୍ମବାର୍ଷିକୀ ବେଳକୁ ଶିଶୁ ଦୁଇଗୋଡ଼

ମଧ୍ୟରେ ଅଳ୍ପ ବ୍ୟବଧାନ ରକ୍ଷାକରି ଚାଲିପାରେ । ବୟସ୍କମାନଙ୍କ ତୁଳନାରେ ଦୁଇଗୋଡ଼ ମଧ୍ୟରେ ଅଳ୍ପବ୍ୟବଧାନ ରକ୍ଷା କରିବାର ଭଙ୍ଗୀଟି ବହୁଦୂର ଚାଲିବା ପାଇଁ ଉପଯୋଗୀ ନହେଲେ ମଧ୍ୟ ଅଳ୍ପଦୂର ଯିବାପାଇଁ ବିଶେଷ ସହାୟକ ହୁଏ ।

ପ୍ରାକ୍‌ବିଦ୍ୟାଳୟ ଜୀବନରେ ଆରମ୍ଭ ସମୟରେ ଶିଶୁ ଦୌଡ଼ିବାର ଦେଖାଯାଏ । ପ୍ରଥମେ ପ୍ରଥମେ ସେ ଦ୍ରୁତଗତିରେ ଚାଲିବାର ଭାବଭଙ୍ଗୀ ଦର୍ଶାଏ । ଥରେ ଦ୍ରୁତଗତିରେ ଚାଲିବା କିମ୍ବା ଦୌଡ଼ିବା ଆରମ୍ଭ କଲେ ଅଟକି ରହିଯିବାର କାର୍ଯ୍ୟଟି ଶିଶୁପାଇଁ କଷ୍ଟକର ହୁଏ । ପାଞ୍ଚବର୍ଷ ବେଳକୁ ସେ ନିୟନ୍ତ୍ରଣ କୌଶଳ ଶିକ୍ଷା କରେ । ଦ୍ରୁତଗତିରେ ଚାଲିବା କିମ୍ବା ଦୌଡ଼ିବା ସମୟରେ ହାତଦୁଇଟି ହଲାଇବାର ଅଭ୍ୟାସ ଏପରି ଭାରସାମ୍ୟ ରକ୍ଷାର ସହାୟକ ହୁଏ ।

ଡେଇଁବା ପାଇଁ ଉଦ୍ୟମ ଆରମ୍ଭ କରିବା ସମୟରେ ଭୂମିରୁ ଗୋଡ଼ ଦୁଇଟିକୁ ଉଠାଇ ନେବା କଷ୍ଟକର ହୁଏ । ଶିଶୁ ତା'ର ବାହୁ ଦୁଇଟିକୁ ପଛରେ ରଖି ଭୂମିରୁ ନିଜକୁ ଉପରକୁ ଠେଲିବାର ଚେଷ୍ଟାକରେ । ତିନିବର୍ଷ ବୟସ ବେଳକୁ ତା'ର ଡେଇଁବାର ସାମର୍ଥ୍ୟ ଠିକ୍ ବିକଶିତ ହୁଏ । ସମତଳ ଭୂମିର ଗୋଟିଏ ଅଂଶରୁ ଅନ୍ୟ ଅଂଶକୁ ଡେଇଁବା ତୁଳନାରେ ପାହାଚର ଉପରୁ ତଳକୁ ଡେଇଁବା ସହଜ ହୋଇଥାଏ । ପୁଣି ସମତଳର ଏକ ଅଂଶରୁ ଅନ୍ୟ ଅଂଶକୁ ଡେଇଁବା ତୁଳନାରେ ଗୋଟିଏ ପାହାଚରୁ ଉପର ପାହାଚକୁ ଡେଇଁବା ଅଧିକ କଷ୍ଟକର ହୁଏ । ଚାଲିବା ଶିଖିବା ଶିଶୁର ପୂର୍ବରୁ ଶିଶୁ ଗୋଟିଏ ପାହାଚ ଚଢ଼ିବା ଶିଖିଯାଏ । ପ୍ରଥମେ ଶିଶୁଟି ଗୁରୁଣ୍ଡିବା କାର୍ଯ୍ୟଟିକୁ ଚଢ଼ିବା କୌଶଳରେ ରୂପାନ୍ତର କରେ । ଚାଲିବା କୌଶଳଟି ଶିକ୍ଷାକଲା ପରେ ସେ ଏହି କୌଶଳର ନୂଆ ନୂଆ ପ୍ରୟୋଗ କରେ । ବାଡ଼ି ଧରି ଚାଲିବା, ଟେବୁଲର ସହାୟତା ନେଇ ଚାଲିବା ଏବଂ ପିତାମାତାଙ୍କର ହାତଧରି ଅଭ୍ୟାସରୁ ଚଢ଼ିବା କୌଶଳଟି ଜନ୍ମ ନିଏ । ପ୍ରଥମେ ପ୍ରଥମେ ଚଢ଼ିବା କିମ୍ବା ଓହ୍ଲାଇବା ସମୟରେ ଗଭୀରତା ଆକଳନ କରି ନପାରିବାର ଅନୁଭବ ସମସ୍ୟା ସୃଷ୍ଟିକରେ । ମାତ୍ର ଚାରିବର୍ଷ ବେଳକୁ ଶିଶୁ ସ୍ୱାଭାବିକ ରୀତିରେ ଅନ୍ୟର ସାହାଯ୍ୟ ନନେଇ ପାହାଚ ଚଢ଼ିବା ଓହ୍ଲାଇବା କାର୍ଯ୍ୟ କରିପାରେ ।

ଧରିବା ଓ ପକାଇବାର ଶରୀର କୌଶଳଟି ଆକସ୍ମିକ ଢଙ୍ଗରେ ଆରମ୍ଭ ହୋଇପାରେ । ଶିଶୁ ହାତରେ ଧରିଥିବା ଜିନିଷଟି ଆକସ୍ମିକ ଭାବରେ ହାତରୁ ଖସିଯାଇପାରେ । ଜିନିଷଟି ଦୂରକୁ ଗଡ଼ିଯାଉଥିବା ସମୟରେ ଶିଶୁ ଏହାକୁ ପୁନଶ୍ଚ ନିଜର ହାତକୁ ଆଣିବାର ଚେଷ୍ଟାରୁ ଅନ୍ୟ ଏକ କୌଶଳ-ଶିକ୍ଷାର ଆରମ୍ଭ ହୁଏ । ପରବର୍ତ୍ତୀ ପର୍ଯ୍ୟାୟରେ ବଲ୍ ପକାଇବା ଏବଂ ଧରିବାର କୌଶଳ ଶିକ୍ଷାକରେ । କହିବା ନିଷ୍ପ୍ରୟୋଜନ ଯେ ପ୍ରଥମେ ପ୍ରଥମେ ଶିଶୁ ନିଜକୁ ଆଗକୁ ନୁଆଇଁ ନେଇ ବଲଟି ପକାଇଥାଏ । ବଲ୍‌ର ଆକାର ଓ ଓଜନରେ ପାର୍ଥକ୍ୟ ସତ୍ତ୍ୱେ ସବୁଧରଣର ବଲ୍‌କୁ ସେ ଗୋଟିଏ ଢଙ୍ଗରେ ପକାଏ । ପରେ ବଲ୍‌ର ଆକାର ଓ ଓଜନକୁ ବିଚାର କରି ସେ ପକାଇବାର ରୀତି ମଧ୍ୟ ଭିନ୍ନ ଭିନ୍ନ କରିଥାଏ । ସେହିପରି ଅନ୍ୟ ଜଣେ ବଲ୍‌ଟିକୁ ପକାଉଥିଲେ ସେ ଧରିବା ପାଇଁ ପ୍ରାଥମିକ ପର୍ଯ୍ୟାୟରେ ଗୋଟିଏ ଶୈଳୀର ଅନୁସରଣ କରେ । ବିଶେଷ ସକ୍ରିୟତା ନ ଥାଇ ହାତ ଦୁଇଟି ବଢ଼ାଇ ଦିଏ । ମାତ୍ର ପରବର୍ତ୍ତୀ ପର୍ଯ୍ୟାୟରେ

ଶିଶୁର ଧରିବା ଶୈଳୀରେ ସଚଳତା (Flexibility) ଦେଖାଯାଏ । ବଲ୍‌ଟି କେଉଁ ଦିଗରୁ ଆସୁଛି ଏବଂ କେଉଁ ଗତିରେ ଆସୁଛି, ତାହାର ଆକଳନ କରି ସେ ଶେଷ ମୁହୂର୍ତ୍ତରେ ଅନୁରୂପ ହସ୍ତ ପ୍ରସାରଣ କରେ ।

ଚାଲିବା, ଦୌଡ଼ିବା, ଡେଙ୍ଗୁବା ଏବଂ ବଲ୍ ପକାଇବା ଓ ଧରିବା ପରି ଶରୀର କୌଶଳକୁ ତାଲିମ ମାଧ୍ୟମରେ ସୁବିକଶିତ କରିବା ସମ୍ଭବ କି ? ଏହାର ଉତ୍ତର ପ୍ରସଙ୍ଗରେ ମନେ ରଖିବାକୁ ହେବ ଯେ, ଶାରୀରିକ କୌଶଳ ସବୁ ଦୁଇ ପ୍ରକାରର । ଚାଲିବା, ଦୌଡ଼ିବା, ଡେଇଁବା, ପକାଇବା ଓ ଧରିବା ପରି କୌଶଳସବୁ ହେଉଛି ସ୍ଥୂଳ (Gross) ଧରଣର ମୌଳିକ କୌଶଳ । ସମାଜରେ ବସବାସ କରିବା ପରିପ୍ରେକ୍ଷୀରେ ଶିଶୁ ଆପେ ଆପେ ଏସବୁ ଶିକ୍ଷା କରିଥାଏ । ସେ ସମାଜର ବିଭିନ୍ନ କାର୍ଯ୍ୟକ୍ରମରେ ଭାଗ ନେବା ବେଳେ ଏବଂ ଅନ୍ୟମାନଙ୍କୁ ଅନୁକରଣ କରି ଏସବୁ ଶିଖେ । ତଥାପି ପିତାମାତା, ଶିକ୍ଷକ ଶିକ୍ଷୟିତ୍ରୀ ଏବଂ ଅନ୍ୟମାନେ ତାଲିମ ଦେଇ ଏଗୁଡ଼ିକର ଅଧିକ ବିକାଶ ଘଟାଇ ପାରିବେ । ଏସବୁ ସ୍ଥୂଳ ଓ ମୌଳିକ ଶରୀର କୌଶଳ ବ୍ୟତୀତ ସନ୍ତରଣ ଓ ଚିତ୍ରାଙ୍କନ ପରି କେତେକ ସୂକ୍ଷ୍ମ ଧରଣର ସ୍ୱତନ୍ତ୍ର କୌଶଳ ରହିଛି । ଏଗୁଡ଼ିକର ବିକାଶ ପାଇଁ ତାଲିମ ଅଧିକ ମାତ୍ରାରେ ଆବଶ୍ୟକ ।

ସୂକ୍ଷ୍ମ ଓ ସ୍ୱତନ୍ତ୍ର ଧରଣର ଶରୀର କୌଶଳର ଆଲୋଚନା ପୂର୍ବରୁ ମୌଳିକ (ସ୍ଥୂଳ) ଶରୀର କୌଶଳର ତାଲିମ ପ୍ରସଙ୍ଗରେ କେତୋଟି ପରାମର୍ଶ ଦିଆଯାଇପାରେ । ପ୍ରଥମତଃ ନର୍ସରୀ ଏବଂ ପ୍ରାକ୍-ବିଦ୍ୟାଳୟରେ କାର୍ଯ୍ୟ କରୁଥିବା ଶିକ୍ଷକ ଶିକ୍ଷୟିତ୍ରୀମାନେ ଶିଶୁର ବୟସ ଏବଂ ବୟସ-ଉପଯୋଗୀ କୌଶଳର ଏକ ଯୋଜନା ପ୍ରସ୍ତୁତ କରିବେ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ଶରୀରର ଭାରସାମ୍ୟ ରକ୍ଷାକରିବା ବିଭିନ୍ନ ଶରୀର କୌଶଳର ଏକ ବିଶେଷ ଅଂଶ ହୋଇଥିବାରୁ ଏହାର ତାଲିମ ସହଜରେ ଶିକ୍ଷା ଦିଆଯାଇପାରେ । ପ୍ରଥମେ ଭୂମି ଉପରେ ରହିଥିବା ଗୋଟିଏ ପଟାଉପରେ ଚାଲିବା, ପରେ ଏହି ପଟାର ଓସାର କମାଇ ତାହା ଉପରେ ଚାଲିବାର ଅଭ୍ୟାସ ଶିକ୍ଷା ଦେବା ଏବଂ ପରବର୍ତ୍ତୀ ସୋପାନରେ ପଟାଟିକୁ ଭୂମିସହ ସଂଲଗ୍ନ ନକରି ଉଠାଇରଖି ତା' ଉପରେ ଚାଲିବାର କୌଶଳ ଶିକ୍ଷା ଦେବାକୁ ତାଲିମର ଅନ୍ତର୍ଭୁକ୍ତ କରାଯାଇପାରେ ।

ଦ୍ୱିତୀୟତଃ ପ୍ରତିଦିନ କିଛି କିଛି ଶରୀର କୌଶଳ ପ୍ରଶିକ୍ଷଣର ଯୋଜନା କରାଯାଇପାରେ । ଗୀତର ତାଳେ ତାଳେ ଚାଲିବା କିମ୍ବା ଦୌଡ଼ିବାର ପ୍ରଶିକ୍ଷଣ ବେଶ୍ ଉପଯୋଗୀ । ସେହିପରି କାଉ ପରି, ବେଙ୍ଗ ପରି, ଘୋଡ଼ା ପରି, ହାତୀ ପରି କିମ୍ବା କାର୍ ପରି ଚାଲିବା ଅଥବା ଦୌଡ଼ିବାର ତାଲିମ ମଧ୍ୟ ଶିଶୁ ମନରେ କୌତୂହଳ ସୃଷ୍ଟି କରିବ ।

ଶରୀର କୌଶଳର ଏକ ଉପର ସ୍ତର ହେଉଛି ଚକ୍ଷୁ, କର୍ଣ୍ଣ, ନାସା ଇତ୍ୟାଦି ଇନ୍ଦ୍ରିୟ ସହିତ ହାତଗୋଡ଼ କରି କାରକ (Motor) ଅଙ୍ଗର ସମନ୍ୱୟ ରକ୍ଷାକରିବା । ସୁତରାଂ ଶିକ୍ଷକଙ୍କୁ ଅନୁକରଣ ପରି ସାମୂହିକ ବ୍ୟାୟାମ କାର୍ଯ୍ୟକ୍ରମରେ ଭାଗନେବା ଏକ ବିଶେଷ ଧରଣର ତାଲିମ ଯୋଜନା । ଆଗକୁ ନଇଁବା, ପଛକୁ ନଇଁବା, ଦୁଇହାତରେ ଗୋଡ଼ପାଦକୁ ଛୁଇଁବା

ପରି ଶାରୀରିକ ବ୍ୟାୟାମ ଅଭ୍ୟାସ ଖୁବ୍ ଉପଯୋଗୀ । ଯୋଗାସନ ଶିକ୍ଷାଦେବା ବିଶେଷ ଭାବରେ ଶାରୀରିକ କୌଶଳ ବିକାଶର ଲକ୍ଷ୍ୟକୁ ଏକ ସଫଳ ରୂପ ଦେଇପାରିବ ।

**ବିକାଶର ଗତିସ୍ତମ୍ଭ :**

**ତିନିବର୍ଷରୁ ଚାରିବର୍ଷ ବୟସ**

- ବଲ ପକାଇପାରେ ।
- ତିନିଚକିଆ ସାଇକେଲ ଚଲାଇପାରେ ।
- ଅନ୍ୟ ଜଣେ ପକାଉଥିବା ବଡ଼ ବଲଟି ଧରିପାରେ ।
- ଦୁଇ ପାଦକୁ ଯୋଡ଼ି ତିନିକୁଦ ଡେଇଁପାରେ ।
- ଭୂମିରେ ବାଧାପାଇ ଉପରକୁ ଉଠିଥିବା ବଲଟି ଧରିପାରେ ।

**ଚାରିବର୍ଷରୁ ପାଞ୍ଚବର୍ଷ ବୟସ**

- ତଳେ ବଲଟିକୁ କଚାଡ଼ି ଦେଇ ଉପରକୁ ଉଠିଥିବା ବଲଟି ଧରିପାରେ ।
- ଦୌଡ଼ିଯାଇ ନିଜର ଇଚ୍ଛାମତେ ନିଜକୁ ଅଟକାଇ ପାରେ ।
- ଛ' କିଲୋଗ୍ରାମ ଓଜନର ବସ୍ତୁକୁ ଟେକିପାରେ ।
- ଅନ୍ୟ ଜଣେ ପକାଇଥିବା ବଲକୁ ଧରିପାରେ ।
- ନିୟନ୍ତ୍ରଣ ରକ୍ଷାକରି ବଲଟିକୁ କଚାଡ଼ି କଚାଡ଼ି କିଛି ଦୂର ନେଇପାରେ ।
- ଗୋଟିଏ ପାଦରେ ଡେଇଁ ଡେଇଁ ଚାରିକୁଦ ଯାଇପାରେ ।

**ପାଞ୍ଚବର୍ଷରୁ ଛଅବର୍ଷ ବୟସ**

- ଅନ୍ୟକୁ ଲକ୍ଷ୍ୟ କରି ବଲ ପକାଇପାରେ ।
- ଆଠ କିଲୋଗ୍ରାମ ଓଜନର ବସ୍ତୁ ଉଠାଇପାରେ ।
- ଗଡ଼ିଯାଉଥିବା ବଲକୁ ଗୋଡ଼ରେ ଅଧିକ ଜୋରରେ ଗଡ଼ାଇପାରେ ।
- ଅନ୍ୟକୁ ଲକ୍ଷ୍ୟରଖି ବଲଟି ଗଡ଼ାଇପାରେ ।
- ପଡ଼ି ନ ଯିବାର ବ୍ୟବସ୍ଥା ଥିବା ଦୁଇଚକିଆ ସାଇକେଲ ଚଲାଇପାରେ ।

**ପ୍ରୟୋଗ ପାଇଁ ମାର୍ଗ ଦର୍ଶନ**

୧ । ଶିଶୁର ମୌଳିକ (ସ୍ଥୂଳ) ଶାରୀରିକ କୌଶଳ ସବୁର ବିକାଶ ପାଇଁ ବୟସ-ଉପଯୋଗୀ କୌଶଳ ସବୁର ତାଲିକା କରାନ୍ତୁ ଏବଂ ତଦନୁସାରେ ଯୋଜନା କରନ୍ତୁ ।

୨ । ବହୁ ଧରଣର ଶାରୀରିକ କୌଶଳ ମୂଳରେ ଇନ୍ଦ୍ରିୟସବୁ (ଚକ୍ଷୁ, କର୍ଣ୍ଣ ଇତ୍ୟାଦି) ଏବଂ କାରକ ସବୁ (ଗୋଡ଼, ହାତ ଇତ୍ୟାଦି)ର ସମନ୍ୱୟ (Coordination) ବିଶେଷ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଶରୀରର ଭାରସାମ୍ୟ ରକ୍ଷାର (Balance) କୌଶଳ ଶିକ୍ଷା ଦିଅନ୍ତୁ ।

୩ । ନିୟମିତ ଭାବରେ ବ୍ୟାୟାମ ଏବଂ "ଯୋଗାସନ" ତାଲିମ ଶିକ୍ଷା ଦେଲେ ନିଶ୍ଚୟ ସୁଫଳ ମିଳିବ ।

# ଶିଶୁର ଚିତ୍ରାଙ୍କନ

ଶିଶୁର ଚିତ୍ରାଙ୍କନ ତା'ର ଶାରୀରିକ କୌଶଳର ଏକ ସୂକ୍ଷ୍ମ ପରିପ୍ରକାଶ । ଏଥିରେ ଇନ୍ଦ୍ରିୟ (Sense Organs) ଏବଂ କାରକ ଅଂଗ (Motor Organs) ର ସମନ୍ୱୟ ସଂଘଟିତ ହୁଏ । ପ୍ରାକ୍‌ବିଦ୍ୟାଳୟ ସ୍ତରରେ ଶିଶୁ କେବଳ ଚାଲିବା, ଦୌଡ଼ିବା, ଡେଇଁବା, ଚଢ଼ିବା, ଓହ୍ଲାଇବା, ଧରିବା ଏବଂ ପକାଇବା ପରି ସ୍ଥୂଳ ଧରଣର ଶରୀର କୌଶଳ ହାସଲ କରିନଥାଏ । ସମନ୍ୱୟପୂର୍ଣ୍ଣ ସୂକ୍ଷ୍ମ ଶରୀର କୌଶଳର ମଧ୍ୟ ଅଧିକାରୀ ହୁଏ । ଚକ୍ଷୁ ଓ କର୍ଣ୍ଣ ପରି ଇନ୍ଦ୍ରିୟସବୁ ସହିତ ହାତ ଗୋଡ଼ ପରି କାରକ ଅଙ୍ଗର ସମନ୍ୱୟ ମାଧ୍ୟମରେ ଅନେକଗୁଡ଼ିଏ ଶାରୀରିକ କୌଶଳ ପ୍ରକଟିତ ହୁଏ । ସନ୍ତରଣ, କେତେକ ବାହ୍ୟକ୍ରୀଡ଼ା ଏବଂ ଚିତ୍ରାଙ୍କନ ଏ ଧରଣର ସୂକ୍ଷ୍ମ ଅଭିବ୍ୟକ୍ତି ।

ଚିତ୍ରାଙ୍କନ (Drawing) ଏକ ବିଶେଷ ଧରଣର ଶରୀର କୌଶଳ । ଗୋଟିଏ ବୟସରେ ପିଲାବି ଚକ୍, ପେନ୍‌ସିଲ କିମ୍ବା କଲମର ବ୍ୟବହାର ଶିଖେ । କଲମ ଓ ପେନ୍‌ସିଲଟି ଠିକ୍‌ରୂପେ ଧରି ତାହାର ପ୍ରୟୋଗ କଲାପରେ ତାହା ମାଧ୍ୟମରେ ତା'ର ଅନ୍ୱେଷଣ ଇଚ୍ଛା ପ୍ରକାଶ୍ୟ ରୂପନିଏ । ପ୍ରଥମେ ପ୍ରଥମେ ହୁଏତ ସେ କଲମ ଓ ପେନ୍‌ସିଲ ସାହାଯ୍ୟରେ ଏଣୁତେଣୁ ଗାରେଇବା ମାଧ୍ୟମରେ ଇନ୍ଦ୍ରିୟ ଓ କାରକର ବ୍ୟବହାରଜନିତ ସୁଖ ଅନୁଭବ କରେ । ଅଙ୍ଗଚାଳନାର ମାଦକତା ସେ ଅନୁଭବ କରେ । କିନ୍ତୁ ଧୀରେ ଧୀରେ ତା'ର ଏପରି କାର୍ଯ୍ୟ ଲକ୍ଷ୍ୟାଭିମୁଖୀ ହୋଇଉଠେ । ସେ କିଛି ଗାରେଇ ଦେଇ "ଏଇଟି ମା" କିମ୍ବା "ଆମଘର" ବୋଲି କହିଥାଏ । କହିବା ଅନାବଶ୍ୟକ ଯେ ଚିତ୍ର ବା ଗାରସବୁ ଅର୍ଥପୂର୍ଣ୍ଣ ନହେଲେ ମଧ୍ୟ ଶିଶୁର ଏକ ଲକ୍ଷ୍ୟବିନ୍ଦୁ ରହିଛି, ତାହା ସୂଚିତ ହୁଏ । ଅନେକ ବ୍ୟକ୍ତି ଶିଶୁର ପ୍ରାରମ୍ଭିକ ଚିତ୍ରାଙ୍କନକୁ ଅର୍ଥହୀନ ମନେକରୁଥିଲେ ମଧ୍ୟ ଶିଶୁହାତର ଗାର ଓ ଚିହ୍ନସବୁ ଯେ ତା'ର ନିଜ ସମ୍ପର୍କରେ ଧାରଣା, ଭାବଗତ ଓ ସାମାଜିକ ମନୋବୃତ୍ତିର ସୂଚକ ଏବଂ ମାନସିକ ବିକାଶର ପ୍ରତୀକ, ଏଥିରେ ସନ୍ଦେହ ନାହିଁ ।

ଶିଶୁର ଚିତ୍ରାଙ୍କନକୁ ବିଶ୍ଳେଷଣ କଲେ ପରସ୍ପରସମ୍ପୃକ୍ତ ସୋପାନ ଦୁଇଟିର ପରିଚୟ ମିଳେ । ପ୍ରାୟ ଅଢ଼େଇ ବର୍ଷରୁ ଚାରିବର୍ଷ ବୟସର ସୀମାରେଖା ମଧ୍ୟରେ ଶିଶୁ "ପ୍ରାକ୍‌ଅର୍ଥଯୁକ୍ତ" (Prerepresentational) ଚିତ୍ରାଙ୍କନର ପରିଚୟ ଦିଏ । ଗାରେଇବା ଏବଂ ସରଳ ଢାଞ୍ଚାର ଡିଜାଇନ ସବୁ ଏ ସମୟରେ ରୂପନିଏ । ଚାରିବର୍ଷ ବେଳକୁ ଅର୍ଥପୂର୍ଣ୍ଣ (Representa-tional) ଛବି ଶିଶୁ ଅଙ୍କନ କରେ । ଅବଶ୍ୟ ଅର୍ଥପୂର୍ଣ୍ଣ ସୋପାନଟି ପରବର୍ତ୍ତୀ ସୋପାନ

ହୋଇଥିଲେ ମଧ୍ୟ ଦୁଇଟି ସୋପାନ ମଧ୍ୟରେ ସମ୍ପର୍କ ରହିଥାଏ । ଚାରିବର୍ଷ ପରେ ମଧ୍ୟ ଶିଶୁ କିଛି ଅର୍ଥହୀନ ଗାର ଟାଣିଦେଇ "ଏହା ମୋର ମା" କିମ୍ବା "ଏଇଟି ଆମ ଘର" ବୋଲି କହିଥାଏ ।

ଶୈଶବର (Infancy) ପରେ ପରେ ଶିଶୁ ଗାରେଇବାକୁ ଆରମ୍ଭ କରେ । ଧୀରେଧୀରେ ଅଧିକରୁ ଅଧିକ ଓ ଆପାତତଃ ଅର୍ଥହୀନ ଗାରସବୁ ଟାଣିବା ମାଧ୍ୟମରେ ତା'ର ଦୁଇଟି ମନୋବୃତ୍ତି ପ୍ରକାଶ ପାଏ । ପ୍ରଥମତଃ ଶୈଶବକାଳୀନ ଏକ ଆନନ୍ଦ ଅନୁଭୂତି ପାଇଥାଏ । ଲକ୍ଷ୍ୟ କରାଯାଇଛି ଯେ, ଶରୀରର ଅଙ୍ଗପ୍ରତ୍ୟଙ୍ଗସବୁକୁ ବ୍ୟବହାର କରି ସବୁ ଶିଶୁ ଆନନ୍ଦ ପାଆନ୍ତି । ସୁତରାଂ ହାତରେ କଲମ ଓ ପେନ୍‌ସିଲ ବ୍ୟବହାର କରିବାର ଆନନ୍ଦ ସେ ଅନୁଭବ କରେ । ପୁଣି ବଡ଼ ପିଲାଙ୍କ ପରି ନିଜ କାର୍ଯ୍ୟର ଫଳାଫଳ ଉପରେ ମଧ୍ୟ ତା'ର ଲକ୍ଷ୍ୟ ଥାଏ । ସୁତରାଂ ଗାରେଇବାର ପରିଣତିକୁ ସେ ଲକ୍ଷ୍ୟକରେ ଏବଂ 'ଏଇଟି ମୋର ମା' କିମ୍ବା 'ଏଇଟି କୁକର' ଏପରି କହି ନିଜର ଲକ୍ଷ୍ୟ ପ୍ରକାଶ କରେ ।

ପ୍ରଥମ ସୋପାନରେ ଶିଶୁ ଯେଉଁସବୁ ଅନାବନା ଢାଞ୍ଚା ତିଆରି କରେ ସେଥିରେ ମଧ୍ୟ କେତେକ ସ୍ୱତନ୍ତ୍ରତା ଥାଏ । ଚାରି ପାଞ୍ଚବର୍ଷ ବୟସ ବେଳକୁ ଶିଶୁ ଅର୍ଥପୂର୍ଣ୍ଣ ଢାଞ୍ଚା ଅଙ୍କନ କରେ । ଏଗୁଡ଼ିକ ଦେଖିଲେ ଶିଶୁ କ'ଣ ପ୍ରକାଶ କରିବାକୁ ଚାହୁଁଛି, ତାହା ମୋଟାମୋଟି ଜାଣିହୁଏ । ତଥାପି ଅଙ୍ଗଚାଳନା ଉପରେ ଶିଶୁର ପୂର୍ଣ୍ଣ ନିୟନ୍ତ୍ରଣ ଆସି ନଥିବାରୁ ସେ ପୂରାପୂରି ଅର୍ଥପୂର୍ଣ୍ଣ ଛବି ପ୍ରସ୍ତୁତ କରିପାରେ ନାହିଁ । ଦୁଇଟି ବୁନ୍ଦା ଦେଇ ସେ ହୁଏତ ଚକ୍ଷୁ ଦୁଇଟିର ସୂଚନା ଦିଏ ଏବଂ ଦୁଇଟି ସରଳରେଖା ସାହାଯ୍ୟରେ ଗୋଡ଼ ଦୁଇଟିର ସୂଚନା ଦିଏ । ସ୍କୁଲକୁ ଯିବା ଆରମ୍ଭ କରିବା ବେଳକୁ ଶିଶୁ ଅର୍ଥପୂର୍ଣ୍ଣ ଛବି ପ୍ରସ୍ତୁତ କରିପାରେ ।

ଯୁକ୍ତରାଷ୍ଟ୍ର ଆମେରିକାରେ ରୋଡ଼ା କେଲଗ୍ ନାମକ ଜଣେ ସର୍ଜନଶୀଳ ପ୍ରାକ୍-ବିଦ୍ୟାଳୟ ଶିକ୍ଷକ ଅସଂଖ୍ୟ ଶିଶୁମାନଙ୍କର ହଜାର ହଜାର ଚିତ୍ରାଙ୍କନକୁ ଅନୁଶୀଳନ କରି ଚାରୋଟି ସ୍ତରର ସୂଚନା ଦେଇଛନ୍ତି । ଏଗୁଡ଼ିକର ସଂକ୍ଷିପ୍ତ ଆଲୋଚନା ଶିଶୁ ଚିତ୍ରାଙ୍କନ ସମ୍ପର୍କରେ କୌତୂହଳପୂର୍ଣ୍ଣ ତଥ୍ୟ ଯୋଗାଇଥାଏ । କେଲଗ୍‌ଙ୍କ ମତରେ ଦୁଇବର୍ଷରୁ ତିନିବର୍ଷ ବୟସ ମଧ୍ୟରେ ଶିଶୁର ଚିତ୍ରାଙ୍କନକୁ ସ୍ଥାନକରଣ ସୋପାନ (Placement Stage) କୁହାଯାଇପାରେ । ଏ ସମୟରେ ଶିଶୁ କଲମ କିମ୍ବା ପେନ୍‌ସିଲଟି ଧରି ଅନ୍ତତଃ କେଉଁ ସ୍ଥାନରେ ଗାରସବୁ ପକାଇବ, ତାହା ସ୍ଥିର କରିଥାଏ । ଗାରସବୁ ଆପାତତଃ ଅର୍ଥହୀନ । ତଥାପି ସରଳରେଖା, ବକ୍ରରେଖା, ଚନ୍ଦ୍ରାକୃତି, ଊର୍ମି ଆକାରର ରେଖା ପରି କୋଡ଼ିଏଟି ଢାଞ୍ଚା କେଲଗ୍ ଶିଶୁ ଚିତ୍ରାଙ୍କନରେ ଲକ୍ଷ୍ୟ କରିଛନ୍ତି ।

ଦ୍ୱିତୀୟ ସୋପାନଟିକୁ ଆକୃତି ସୋପାନ (Shape stage) କୁହାଯାଇଛି । ପ୍ରାୟ ତିନିବର୍ଷ ବୟସବେଳକୁ ଶିଶୁ କେତେକ ମୌଳିକ ଆକୃତିସମ୍ପନ୍ନ ଚିତ୍ର ଅଙ୍କନ କରେ । ବୃତ୍ତାକାର ଚିତ୍ର, ଛକଚିହ୍ନ, ତ୍ରିଭୁଜ, ଚତୁର୍ଭୁଜ ଏବଂ ବର୍ଗକ୍ଷେତ୍ର ପରି ଆକାରସବୁ ଅଙ୍କନ କରିଥାଏ ।




ତୃତୀୟ ସୋପାନଟିକୁ କେଲଗ୍‌ ଡାଞ୍ଚା ସୋପାନ (Design stage) ନାମରେ ଅଭିହିତ କରିଛନ୍ତି । ତିନିବର୍ଷ ପରେ ପ୍ରାୟ ଚାରିବର୍ଷର ବୟସ ବେଳକୁ ଶିଶୁ ପୂର୍ବରୁ ଶିକ୍ଷା କରିଥିବା ସରଳ ଆକୃତିସବୁକୁ ସଂଯୋଜିତ କରି ଡିଜାଇନ୍ ବା ଡାଞ୍ଚା ତିଆରି କରେ ।

ଚତୁର୍ଥ ବା ଶେଷ ସୋପାନଟି ଛବି ଅଙ୍କନର (Pictorial stage)ସୋପାନ । ପାଞ୍ଚବର୍ଷ ବୟସ ବେଳକୁ ଶିଶୁ ଅନ୍ୟମାନେ ଚିହ୍ନିପାରିବା ଭଳି ଛବି ଅଙ୍କନ କରେ । ଅବଶ୍ୟ ଏପରି ଛବିସବୁରେ ବେଶି ପରିମାଣରେ ସ୍ୱକେନ୍ଦ୍ରିକତା ରହିଥାଏ । ପ୍ରଥମେ ପ୍ରଥମେ ବିଲେଇଟିର ଛବି ଅଙ୍କନ କରିବା ସମୟରେ ସେ ମଣିଷପରି ବିଲେଇଟିର ଦୁଇଟି ଗୋଡ଼ରେ ଠିଆକରି ଅନ୍ୟ ଦୁଇଟି ଗୋଡ଼କୁ ମଣିଷର ହାତପରି ଅଙ୍କନ କରିଥାଏ । କହିବା ଅନାବଶ୍ୟକ ଯେ ଛ'ବର୍ଷ ପରେ ସେ ଅଧିକ ଅର୍ଥପୂର୍ଣ୍ଣ ଚିତ୍ର ପ୍ରସ୍ତୁତ କରେ ।

## ଶରୀର କୌଶଳର ଗତିସ୍ତମ୍ଭ

| ଆନୁମାନିକ ବୟସ ସୀମା | ସ୍ଥୂଳ ଶରୀର-କୌଶଳ | ସୂକ୍ଷ୍ମ ଶରୀର-କୌଶଳ |
| --- | --- | --- |
| ଅଢ଼େଇବର୍ଷରୁ ସାତବର୍ଷ | ଠିକ୍‌ଭାବରେ ଚାଲିବା, ଗୋଟିଏ ସରଳରେଖାରେ ଦୌଡ଼ିବା, ଦୁଇପାଦକୁ ଲଗାଇ ଡେଇଁପାରିବା | ଗାର ଟାଣିବା, ଗୋଟିଏ ବୃତ୍ତକୁ ନକଲ କରିବା, ଜିନିଷକୁ ଉପର ଉପର ରଖିବା |
| ସାଢ଼େ ତିନିବର୍ଷରୁ ସାଢ଼େ ଚାରିବର୍ଷ | ଚାଲିବା, ଦୌଡ଼ିବା ବଲ୍‌କୁ ପକାଇବା ଏବଂ ଧରିବା | ସରଳ ଆକୃତିର ଚିତ୍ର ଅଙ୍କନ କରିବା, ସରଳ ଅର୍ଥପୂର୍ଣ୍ଣ ଚିତ୍ର ଆରମ୍ଭ କରିବା |
| ସାଢ଼େ ଚାରିବର୍ଷରୁ ସାଢ଼େ ପାଞ୍ଚବର୍ଷ | ଗୋଟିଏ ଗୋଡ଼ରେ ଠିଆହୋଇ ପାରିବା, ପଡ଼ି ନ ଯାଇ ଦୂରକୁ ଦୌଡ଼ିବା | ଅକ୍ଷର ଓ ସଂଖ୍ୟା ନକଲ କରିପାରିବା, ଅର୍ଥପୂର୍ଣ୍ଣ ଛବି ଅଙ୍କନ କରିପାରିବା |

# ଶିଶୁର ନିଦ୍ରା ସମସ୍ୟା

ନିଦ୍ରା ଏକ ଶାରୀରିକ ଆବଶ୍ୟକତା । ଏହା ବୟସ୍କମାନଙ୍କ ପାଇଁ ଯେପରି ଦରକାର, ଶିଶୁମାନଙ୍କ ପାଇଁ ମଧ୍ୟ ସେପରି ପ୍ରୟୋଜନ । ଶୈଶବ କାଳରେ ନିଦ୍ରାର ପରିମାଣ ବେଶି ଥାଏ । ବୟସ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ନିଦ୍ରାର ପରିମାଣ କମିବାକୁ ଲାଗେ । ମାତ୍ର ଆବଶ୍ୟକତାଠାରୁ କମ୍ ପରିମାଣର ନିଦ୍ରା ଶିଶୁକୁ ଚିଡ଼ିଚିଡ଼ା କରିଦିଏ । ସାଧାରଣତଃ ରାତିରେ ବୟସ୍କମାନେ ଶୋଇବାକୁ ଯିବାର ବହୁପୂର୍ବରୁ ଶିଶୁ ବିଛଣାକୁ ଯାଏ । ବେଳେ ବେଳେ ଶିଶୁମାନେ ଅନ୍ୟ ଶିଶୁମାନଙ୍କ ସହିତ ଖେଳରେ ମଜ୍ଜି ରହି କିମ୍ବା ପରିବାର ଅନ୍ୟମାନଙ୍କ ସହିତ ଏପଟସେପଟ ହୋଇ କିଛିଟା ଉତ୍ତେଜିତ ରହିଥାନ୍ତି । ଫଳରେ ବିଛଣାକୁ ଯିବାର ଆଗ୍ରହ ଦର୍ଶାନ୍ତିନାହିଁ । ଏପରିସ୍ଥଳେ ସେମାନଙ୍କୁ ଶାନ୍ତ ଓ ନିରବ କରିବାପାଇଁ କିଛି ପ୍ରସ୍ତୁତି କାର୍ଯ୍ୟକ୍ରମ କରିବାକୁ ହୁଏ ।

ଜନନୀ ଶିଶୁର ଶଯ୍ୟାଗ୍ରହଣ ପୂର୍ବରୁ ତାକୁ ଗପ ଶୁଣାଇ ପାରନ୍ତି । କୋଳରେ ବସାଇ ମୃଦୁ ସଙ୍ଗୀତ ଶୁଣାଇ ପାରନ୍ତି । ନିଜେ ଶାନ୍ତ କଣ୍ଠରେ ଗୀତ ଗାଇ ଶିଶୁକୁ ଉତ୍ତେଜିତ ଅବସ୍ଥାରୁ ଅପେକ୍ଷାକୃତ ଶାନ୍ତ ଅବସ୍ଥାକୁ ନେଇଥାଆନ୍ତି । ନିରବତା ଓ ଶାନ୍ତ ପରିବେଶ ସୃଷ୍ଟି କରିବାର ଏପରି ଯୋଜନା ଶିଶୁପାଇଁ ସହାୟକ ହୁଏ ।

ଶିଶୁର ନିଦ୍ରାକାଳୀନ କେତୋଟି ଘଟଣା ସମ୍ପର୍କରେ ପିତାମାତା ଏବଂ ଅନ୍ୟସବୁ ଯତ୍ନକାରୀମାନଙ୍କର ସ୍ପଷ୍ଟ ଧାରଣା ନଥାଏ । ଫଳରେ ବହୁସ୍ଥଳରେ ଅଯଥା ଆଶଙ୍କା ସୃଷ୍ଟି ହୁଏ । କମ୍ବଳ, ତକିଆ, ତୁଳା କିମ୍ବା କନା ନିର୍ମିତ କୋମଳ କଣ୍ଢେଇକୁ ଜାବୋଡ଼ି ଧରି ଶୋଇବାର ଉପକ୍ରମ କରିବା ଏ ଧରଣର ଏକ ଅବସ୍ଥା । ଅନେକ ପିତାମାତା ଶିଶୁର ଏପରି ଅଭ୍ୟାସକୁ ଅସ୍ୱାଭାବୀ ବୋଲି ବିଚାର କରି ବ୍ୟତିବ୍ୟସ୍ତ ହୁଅନ୍ତି । କିନ୍ତୁ ପ୍ରକୃତରେ ଏହା ଏକ ସମସ୍ୟା ନୁହେଁ । ପ୍ରାକ୍‌ବିଦ୍ୟାଳୟ ସ୍ତରରେ ଶିଶୁ ଏକ ନିର୍ଭରଶୀଳତା ସୋପାନରୁ ଆତ୍ମନିର୍ଭରଶୀଳତା ସୋପାନକୁ ଯିବାପାଇଁ ଚେଷ୍ଟା କରୁଥାଏ । ଏହା ସ୍ପଷ୍ଟ ଯେ ଶିଶୁ ଶୈଶବ କାଳରେ (ଜନ୍ମରୁ ଦୁଇବର୍ଷ ମଧ୍ୟରେ) ପିତାମାତା ବିଶେଷକରି ମା' ଉପରେ ନିର୍ଭର କରିଥାଏ । ମାତ୍ର ଧୀରେ ଧୀରେ ଶିଶୁ ସ୍ୱାଧୀନ ଓ ଆତ୍ମନିର୍ଭରଶୀଳ ହେବାପାଇଁ ଇଚ୍ଛା ପୋଷଣ କରେ । ଗୋଟିଏ ବସ୍ତୁକୁ ଜାବୋଡ଼ି ଧରି ଶୋଇବା ଏହି ଅବସ୍ଥା-ପ୍ରକ୍ରିୟାର ଅଂଶବିଶେଷ । ପୂର୍ବ ସୋପାନଟି ଅତିକ୍ରମଣ କରି ପର ସୋପାନକୁ ଯିବାର ଏହା ଏକ ସହାୟକ ଅବସ୍ଥା । ଚାରିବର୍ଷ ବୟସରେ ଏପରି ବସ୍ତୁସବୁକୁ ବ୍ୟବହାର କରୁଥିବା ଏବଂ ଏପରି ବସ୍ତୁସବୁକୁ ବ୍ୟବହାର

କରୁ ନ ଥିବା ଶିଶୁମାନଙ୍କୁ ଅନୁଧ୍ୟାନ କରାଯାଇଛି । ଏ ଦୁଇଟି ଶ୍ରେଣୀର ଶିଶୁମାନଙ୍କର ଏକ ତୁଳନାତ୍ମକ ପର୍ଯ୍ୟବେକ୍ଷଣରୁ ଦେଖାଯାଇଛି ଯେ ଏଗାର ବର୍ଷରୁ ଷୋହଳ ବର୍ଷ ବୟସ ବେଳକୁ ଏମାନଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ସେମାନେ ଏକା ଧରଣର ସାମାଜିକ ଓ ଭାବଗତ ସମନ୍ୱୟ ଦର୍ଶାଉଛନ୍ତି । ସୁତରାଂ ଶିଶୁର ଏପରି ଅଭ୍ୟାସ ନେଇ ବ୍ୟଥିତ ହେବାର କୌଣସି କାରଣ ନାହିଁ ।

ଦୁଃସ୍ୱପ୍ନ ଦେଖି ଅଧାରାତିରେ ଚିରଚିରେଇ ଉଠିବା ଅନ୍ୟ ଏକ ଧରଣର ଅବସ୍ଥା । ସାଧାରଣତଃ ଶୋଇବା ଆରମ୍ଭ ସମୟରୁ ଏପରି ଘଟି ନଥାଏ । ଶୋଇବାର ଶେଷ ଭାଗରେ ଏହା ଘଟିଥାଏ । କାଁ ଭାଁ ଏପରି ଘଟୁଥିଲେ ଏହାକୁ ସ୍ୱାଭାବିକ ମନେ କରିବା ଉଚିତ ହେବ । ଅବଶ୍ୟ ଶିଶୁ କ୍ରମାଗତ ଭାବରେ ଏହାର ଶରବ୍ୟ ହେଉଥିଲେ ବୁଝିବାକୁ ହେବ ଯେ ଶିଶୁ ତା'ର ଜାଗରଣ କାଳରେ ଅଧିକ ମାତ୍ରାରେ ଚାପର ଶିକାର ହେଉଛି । ଖାଦ୍ୟର ଅଭାବ, ଆରାମର ଅଭାବ ଏବଂ ଆବଶ୍ୟକ ପରିମାଣର ଯତ୍ନ ଓ ସୁରକ୍ଷାର ଅଭାବ ଏପରି ଜଟିଳତା ସୃଷ୍ଟି କରୁଛି ବୋଲି ଆଶଙ୍କା କରାଯାଇପାରେ । ରାତ୍ରି ଭୟ ଅନ୍ୟ ଏକ ଧରଣର ଆଶଙ୍କା । ଶିଶୁର ନିଦ ହଠାତ୍ ଭାଙ୍ଗିଯାଏ । ଏହା ସହିତ ହୃଦ୍‌ସ୍ପନ୍ଦନ ଦ୍ରୁତ ହୋଇଥାଏ । ଝାଳ ବୋହିବା ଏବଂ ଶରୀରରେ କମ୍ପନ ମଧ୍ୟ ଦୃଷ୍ଟିଗୋଚର ହୁଏ । ସାଧାରଣତଃ ଏପରି ଘଟିବାର ଅଳ୍ପ ସମୟ ପରେ ଶିଶୁ ପୁନଶ୍ଚ ଶୋଇଯାଏ । ରାତିରେ କ'ଣ ଘଟିଥିଲା, ସେ ସମ୍ପର୍କରେ ପରଦିନ ସ୍ମରଣ ନଥାଏ । ପିତାମାତା ଏବଂ ଯତ୍ନକାରୀ ଉଦ୍‌ବେଗ ପ୍ରକାଶ କରନ୍ତି । ମାତ୍ର ଏହା ମଧ୍ୟ ଏକ ସମସ୍ୟା ନୁହେଁ । ଏହା ଧୀରେ ଧୀରେ ଚାଲିଯାଏ । ସ୍ୱପ୍ନଚାରଣ ଆଉ ଗୋଟିଏ ଅବସ୍ଥା । ଶିଶୁଟି ନିଦ୍ରିତ ଅବସ୍ଥାରେ ଥିଲେ ମଧ୍ୟ ସେ ଉଠିପଡ଼ି କିଛି ବାଟ ଚାଲିଯାଏ । ଅସ୍ପଷ୍ଟ ସ୍ୱରରେ କିଛି କଥା ମଧ୍ୟ କହିଥାଏ । ପ୍ରତିଶତ ୧୫ ଭାଗ ଶିଶୁ ଅନ୍ତତଃ ଥରେ ଏପରି ଲକ୍ଷଣ ଦର୍ଶାଇଥାନ୍ତି । ଏକରୁ ପାଞ୍ଚ ପ୍ରତିଶତ ଶିଶୁ ବହୁ ସମୟରେ ଏପରି ସ୍ୱପ୍ନଚାରଣ ଦର୍ଶାନ୍ତି । ବୟସବୃଦ୍ଧି ସହ ବହୁ ଶିଶୁ ଏପରି ଅବସ୍ଥାରୁ ପାର ହୋଇଯାଆନ୍ତି । ଏହା ଅତିମାତ୍ରାରେ ଘଟୁ ନ ଥିଲେ ଏଥିପାଇଁ ବିଶେଷଜ୍ଞମାନଙ୍କ ପରାମର୍ଶ ଆବଶ୍ୟକ ହୋଇ ନଥାଏ । ତେବେ ଏହାକୁ ଏକ ମାନସିକ ସମସ୍ୟା ବୋଲି ବିଚାର କରାଯିବା ଉଚିତ ହେବ ନାହିଁ ।

# ପୁଷ୍ଟିକର ଖାଦ୍ୟ ଓ ସାଧାରଣ ସ୍ୱାସ୍ଥ୍ୟ

ଶିଶୁର ସ୍ୱାସ୍ଥ୍ୟ ଓ ଶାରୀରିକ ଅଭିବୃଦ୍ଧି ମୁଖ୍ୟତଃ ପୁଷ୍ଟିକର ଖାଦ୍ୟ ଉପରେ ନିର୍ଭର କରେ । ବୟସର ବୃଦ୍ଧି ସହିତ ଅଭିବୃଦ୍ଧିର ହାର କମିଯାଏ । ଏ ଦୃଷ୍ଟିରୁ ଖାଇବାର ଇଚ୍ଛା ମଧ୍ୟ କିଛି ପରିମାଣରେ ହ୍ରାସପାଏ । ଅନେକ ସମୟରେ ପିତାମାତା ଚିନ୍ତିତ ହୋଇପଡ଼ନ୍ତି ଯେ ଶିଶୁ ଯଥେଷ୍ଟ ପରିମାଣ ଖାଦ୍ୟ ଖାଉନାହିଁ । କିନ୍ତୁ ପ୍ରକୃତରେ ଚିନ୍ତିତ ହେବାର ବିଶେଷ କାରଣ ନାହିଁ । ଶୈଶବ କାଳର (ଜନ୍ମରୁ ଦୁଇବର୍ଷ ମଧ୍ୟରେ) ଶରୀରର ଓଜନକୁ ଚାହିଁ ପ୍ରତି କିଲୋଗ୍ରାମ ପ୍ରତି ଶିଶୁ ଯେଉଁ ପରିମାଣରେ ଆହାର ଗ୍ରହଣ କରୁଥିଲା, ସେହି ଅନୁପାତରେ ତିନିବର୍ଷରୁ ଛ'ବର୍ଷ ବୟସରେ ପ୍ରତି କିଲୋଗ୍ରାମ ଓଜନ ପ୍ରତି ଶିଶୁ ଅପେକ୍ଷାକୃତ କମ୍ ପରିମାଣର ଖାଦ୍ୟ ଆବଶ୍ୟକ କରେ । ପିଲାଟିର ସବଳ ମାଂସପେଶୀ, ସତେଜ ଆଖି, ଚକ୍ ଚକ୍ କେଶରାଜି, ମାନସିକ ସ୍ଫୁର୍ତ୍ତି ଓ ଖେଳାଖେଳିରେ ଆଗ୍ରହ ରହିଥିଲେ ଏବଂ ରୋଗରୁ ଆରୋଗ୍ୟ ଲାଭ କରିବାର ସଂକେତ ସୂଚାଉଥିଲେ ଉଦ୍‌ବେଗର କୌଣସି କାରଣ ନଥାଏ । ଖାଦ୍ୟର ପରିମାଣ ନେଇ ଚିନ୍ତିତ ହେବାର କାରଣ ରହେନାହିଁ ।

ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁ ପାଇଁ ଆବଶ୍ୟକ ପୁଷ୍ଟିକର ଖାଦ୍ୟର ବିଶେଷ ଜଟିଳତା ନାହିଁ । ଉଦାହରଣ ସ୍ୱରୂପ, ପ୍ରତିଦିନ ଦୁଇଗ୍ଲାସ କ୍ଷୀର ଏବଂ ଥରଟିଏ ମାଂସ କିମ୍ବା ମାଛ (ଅଥବା ଛେନା କି ଅଣ୍ଡା) ଶିଶୁପାଇଁ ଆବଶ୍ୟକ ପୁଷ୍ଟିସାର ଖାଦ୍ୟ ଯୋଗାଇଥାଏ । ସେହିପରି ଗାଜର, ଅଣ୍ଡାର କେଶର କିମ୍ବା କ୍ଷୀର ଖାଦ୍ୟସାର 'କ'ର ପ୍ରୟୋଜନୀୟତା ପୂରଣ କରେ । ସବୁଜ ପନିପରିବା, ଫଳମୂଳ ଓ ବିଲାତିବାଇଗଣ ଶିଶୁକୁ ଖାଦ୍ୟସାର 'ଗ' ଯୋଗାଇଥାଏ । ଆଧୁନିକ କାଳରେ ବିଶେଷଜ୍ଞମାନେ ତନ୍ତୁଜାତୀୟ ଖାଦ୍ୟ (ବନ୍ଧାକୋବି, ଗାଜର, ସଜନାଛୁଇଁ, ମଞ୍ଜା, କଦଳୀ ଭଣ୍ଡା) ଉପରେ ଗୁରୁତ୍ୱଆରୋପ କରିଛନ୍ତି ।

ଶିଶୁ ଏସବୁ ଖାଦ୍ୟ ନପାଇଲେ ଉଦ୍‌ବେଗର କାରଣ ଥାଏ । ବିଶେଷ କରି ଦୂରଦର୍ଶନରେ ବହୁ ପ୍ରଚାରିତ ଶର୍କରାଜାତୀୟ, ଚିନିଜାତୀୟ ଖାଦ୍ୟସବୁ ଅଧିକ ପରିମାଣରେ ବ୍ୟବହାର କଲେ କ୍ଷୁଧା ସ୍ୱଭାବତଃ କମ୍ ହୁଏ । ଜଳଖିଆ ଖାଇବା ସମୟରେ କିମ୍ବା ଖାଦ୍ୟଗ୍ରହଣ ସମୟରେ ମାତ୍ରାଧିକ ଚକୋଲେଟ, ଆଇସ୍‌କ୍ରିମ ଏବଂ ଅନ୍ୟ ସବୁ ଚିନିବହୁଳ ଖାଦ୍ୟ ଶିଶୁର ସ୍ୱାଭାବିକ କ୍ଷୁଧା ନଷ୍ଟକରେ । ସୁତରାଂ ସେ ଦିଗଟି ପ୍ରତି ସତର୍କ ଦୃଷ୍ଟିରଖି ଆବଶ୍ୟକ ପରିମାଣର ପୁଷ୍ଟିକର ଖାଦ୍ୟ ଯୋଗାଇବା ଏକ ଫଳପ୍ରଦ ବ୍ୟବସ୍ଥା ।

ଶିଶୁର ସ୍ୱାସ୍ଥ୍ୟ ସାଧାରଣତଃ ଭଲ ରହିଥାଏ । ତେବେ ଥଣ୍ଡାଧରିବା, କାଶ, ଛିଙ୍କ ଏବଂ ପେଟଖରାପ ପରି ଛୋଟକାଟିଆ ଅସୁବିଧା ଆସିପାରେ । ଏସବୁ ଅସୁସ୍ଥତା ଦୁଇଦିନରୁ

ଦୁଇସପ୍ତାହ ପର୍ଯ୍ୟନ୍ତ ରହିଥାଏ । ଅନେକ ସମୟରେ ଡାକ୍ତରଙ୍କ ବିନା ସହାୟତାରେ ଏହା ଆପେ ଆପେ ଚାଲିଯାଏ । ନିରବିଚ୍ଛିନ୍ନ ସ୍ୱାସ୍ଥ୍ୟ ସମସ୍ତଙ୍କ ପାଇଁ ବିଶେଷ କରି ଶିଶୁମାନଙ୍କ ପାଇଁ କାମ୍ୟ । ତଥାପି ସାମୟିକ ଭାବରେ ଅସୁସ୍ଥ ହେବାର କିଛି ସୁଫଳ ରହିଛି କି ? କେତେକ ମନସ୍ତତ୍ତ୍ୱବିଦ୍‌ଙ୍କ ମତରେ ସାମୟିକ ଅସୁସ୍ଥତାର ଏକ ଭାବଗତ (Emotional) ଏବଂ ଜ୍ଞାନଗତ (Cognitive) ତାତ୍ପର୍ଯ୍ୟ ରହିଛି । ପ୍ରଥମତଃ ରୋଗ ସମୟରେ ଶିଶୁ କିଛିଟା ଅସ୍ୱସ୍ତି ଓ ଅସୁସ୍ଥତା ଅନୁଭବ କରେ । ଆରୋଗ୍ୟ ଲାଭ କିରବା ପରେ ସେ ମାନସିକ ସ୍ଫୁର୍ତ୍ତି ଓ ପ୍ରାଣଚଞ୍ଚଳତା ଅନୁଭବ କରେ । ସୁସ୍ଥତାର ଏପରି ଅନୁଭବ ତା'ର ଜ୍ଞାନକୁ ସଂପ୍ରସାରିତ କରେ । ସୁସ୍ଥତା କ'ଣ ଏବଂ ସ୍ୱାଭାବିକ ଅବସ୍ଥା କ'ଣ, ଏପରି ଅନୁଭୂତି ତାକୁ ପରବର୍ତ୍ତୀ ପର୍ଯ୍ୟାୟରେ ଦକ୍ଷ ଓ ସମର୍ଥ ରହିବାର କୌଶଳ ଶିଖାଏ ।

ସେହିପରି ଶିଶୁ ଅସୁସ୍ଥ ଥିବା ସମୟରେ ଅନ୍ୟମାନଙ୍କ ବ୍ୟବହାର ଲକ୍ଷ୍ୟ କରେ । ତାକୁ ଥଣ୍ଡା ଧରିଥିଲେ ଅନ୍ୟମାନେ ବେଶି କୋଳରେ ନେଉ ନାହାନ୍ତି ଏବଂ ସତର୍କତା ଅବଲମ୍ବନ କରୁଛନ୍ତି, ଏହା ସେ ଲକ୍ଷ୍ୟକରେ । ଅନ୍ୟ ଭାଇଭଉଣୀମାନଙ୍କର ଏପରି ଅବସ୍ଥା ଉପୁଜିଲେ ତା'କୁ ମଧ୍ୟ ଅନୁରୂପ ବ୍ୟବହାର ଦର୍ଶାଇବାକୁ ହେବ, ଏହା ସେ ଶିକ୍ଷାକରେ । ଅନ୍ୟମାନଙ୍କର ଅସୁସ୍ଥତା ସମୟରେ ସେମାନଙ୍କୁ କିପରି, ସାନ୍ତ୍ୱନା ଦେବାକୁ ହେବ, ତାହା ମଧ୍ୟ ଶିଖେ ।

ପ୍ରାକ୍-ବିଦ୍ୟାଳୟ ସ୍ତରରେ ରହିଥିଲେ ଶିଶୁମାନଙ୍କର ଫୁସ୍‌ଫୁସ୍ (Lungs)ର ପୂର୍ଣ୍ଣ ବିକାଶ ଘଟି ନଥିବାରୁ ଏ ସମୟରେ ନିଃଶ୍ୱାସ ପ୍ରଶ୍ୱାସଜନିତ ସମସ୍ୟା ଅପେକ୍ଷାକୃତ ଅଧିକ ପରିମାଣରେ ଦେଖାଯାଏ । ତିନିବର୍ଷରୁ ପାଞ୍ଚବର୍ଷର ଶିଶୁମାନଙ୍କ କ୍ଷେତ୍ରରେ ଥଣ୍ଡା ଧରିବା ଏବଂ ଅନ୍ୟସବୁ ନିଃଶ୍ୱାସଜନିତ ଅସୁବିଧା ବର୍ଷକରେ ପ୍ରାୟ ସାତ ଆଠଥର ଆସିଥାଏ । ଅନ୍ୟ ପକ୍ଷରେ ସ୍କୁଲ ବୟସର ପିଲାମାନଙ୍କ କ୍ଷେତ୍ରରେ ଏପରି ଅସୁବିଧା ବର୍ଷକରେ ଛ'ଥରରୁ କମ୍ ହୋଇଥାଏ । ନିଃଶ୍ୱାସ-ପ୍ରଶ୍ୱାସର ଏବଂ ରୋଗ ପ୍ରତିରୋଧ ସଂସ୍ଥାର କ୍ରମବିକାଶ ଫଳରେ ଏସବୁ ଅସୁବିଧାର ମାତ୍ରା ହ୍ରାସ ପାଇବାକୁ ଲାଗେ ।

ଅତୀତରେ ମିଳିମିଳା, ରୁବେଲା ବା ଜର୍ମାନୀ ମିଳିମିଳା, ଗାଲୁଆ, ହୁପିଂ କଫ, ଡିପ୍‌ଥେରିଆ ପରି ଆନେକଗୁଡ଼ିଏ ସଂକ୍ରାମକ ରୋଗ ମାରାତ୍ମକ ଥିଲା । ମାତ୍ର ସମଗ୍ର ବିଶ୍ୱରେ ଟୀକାଦାନ ଓ ଇଞ୍ଜେକ୍ସନ୍‌ର ବହୁଳ ପ୍ରୟୋଗ ଫଳରେ ଏସବୁ କ୍ରମଶଃ ନିର୍ବାସିତ ହୋଇଯାଇଛି । ଏବେ ପୋଲିଓ ନିବାରଣ ଅଭିଯାନ ଦ୍ରୁତଗତିରେ କାର୍ଯ୍ୟକାରୀ ହେଉଛି । ନିୟନ୍ତ୍ରଣ ଅବସ୍ଥା ସବୁ ସନ୍ତୋଷଜନକ ହେଲେ ମଧ୍ୟ ପ୍ରତିଷେଧକ ବ୍ୟବସ୍ଥା ସ୍ୱରୂପ ଠିକ୍ ସମୟରେ ପିଲାମାନଙ୍କୁ ଟୀକା ଏବଂ ଇଞ୍ଜେକ୍ସନ ଦେବାର ପରାମର୍ଶ ସକ୍ରିୟ ରହିଛି । ସଚେତନଶୀଳ ପିତାମାତା ଏ ଦିଗରେ ବିହିତ ପଦକ୍ଷେପ ନେବେ, ଏହା ଏକ ସାଧାରଣ ପ୍ରତ୍ୟାଶା ।

ଅନେକ ସମୟରେ କେତେକ ଅସାବଧାନତା ପାଇଁ ଶିଶୁମାନେ ଆକସ୍ମିକ ଦୁର୍ଘଟଣାର ଶରବ୍ୟ ହୁଅନ୍ତି । ଶିଶୁମାନେ ସାଧାରଣତଃ ସାହସୀ ଏବଂ ଅନ୍ୱେଷଣପ୍ରିୟ । ନିଜ ଶକ୍ତିର

ପରିସୀମାକୁ ନବୁଝି ସେମାନେ ଅନେକ ସମୟରେ ବିପଜ୍ଜନକ କାର୍ଯ୍ୟ କରି ବସନ୍ତି । ସୁତରାଂ ସ୍ଥଳ ବିଶେଷରେ ଶିଶୁମାନଙ୍କୁ ସେମାନଙ୍କ ପରିସୀମତ୍ୱ (Limitations) ବିଷୟରେ ଶିକ୍ଷାଦେବାକୁ ହେବ । ଅନ୍ୟ ସମୟରେ ପରିବେଶକୁ ଯଥାସମ୍ଭବ ନିରାପଦ ରଖିବାକୁ ହେବ । ବିଷାକ୍ତ ପଦାର୍ଥ ଔଷଧ ଏବଂ ଦହନଶୀଳ ପଦାର୍ଥସବୁ ଦୂରେଇ ରଖିବା ଏ ଧରଣର ବ୍ୟବସ୍ଥା । ସ୍ଥୂଳତଃ ପୁଷ୍ଟିକର ଖାଦ୍ୟ ବ୍ୟବସ୍ଥା ସହିତ ରୋଗ ନିୟନ୍ତ୍ରଣ ଏବଂ ନିରାପଦ ପରିବେଶର ସୁଚିନ୍ତିତ ଯୋଜନା ସ୍ୱାସ୍ଥ୍ୟ-ବିକାଶର ଏକ ବିଶେଷ ଦିଗ ।

## ଟୀକାଦାନ ସମୟ ସୂଚୀ

| ବୟସ | ଡି.ପି.ଟି | ପୋଲିଓ | ମିଳିମିଳା | ଗାଲୁଆ |
|---|---|---|---|---|
| ଦୁଇମାସ | 3 | 3 | | |
| ଚାରିମାସ | 3 | 3 | | |
| ଛ' ମାସ | 3 | | | |
| ଏକବର୍ଷରୁ ପନ୍ଦରମାସ | | | 3 | 3 |
| ପନ୍ଦରମାସରୁ ଦେଢ଼ବର୍ଷ | 3 | 3 | | |
| ଚାରିବର୍ଷରୁ ଛ'ବର୍ଷ | 3 | 3 | | |

# ଦାରିଦ୍ର୍ୟ ଓ ଶିଶୁର ସ୍ୱାସ୍ଥ୍ୟ

ଦାରିଦ୍ର୍ୟ-ପ୍ରପୀଡ଼ିତ ପରିବାର ମଧ୍ୟରୁ ପ୍ରାକ୍‌ବିଦ୍ୟାଳୟକୁ ଆସୁଥିବା ଶିଶୁମାନଙ୍କର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ ଯେ ବହୁଭାବରେ ବିପର୍ଯ୍ୟସ୍ତ, ଏ କଥା ହୁଏତ ଅନେକ ସ୍ୱୀକାର କରିବେ । ମାତ୍ର କେଉଁ ରାସ୍ତା ଦେଇ ଅଭାବ ଅନଟନ ଶିଶୁର ବିକାଶକୁ କ୍ଷତିଗ୍ରସ୍ତ କରେ, ସେ ସମ୍ପର୍କରେ ଅନେକ ପରିଚିତ ନୁହନ୍ତି । ଅନେକ ଲୋକ ହୁଏତ ବିଶ୍ୱାସ କରନ୍ତି ଯେ, ଗରିବ ଲୋକମାନେ ଠିକ୍ ପ୍ରକାରର ଖାଦ୍ୟ ପଦାର୍ଥ ଏବଂ ପୁଷ୍ଟିକର ଜିନିଷକ୍ରୟ କରନ୍ତି ନାହିଁ । ପ୍ରଗତିଶୀଳ ଦେଶ ସମେତ ବିକାଶଶୀଳ ଦେଶମାନଙ୍କରେ କରାଯାଇଥିବା ସର୍ବେକ୍ଷଣରୁ ଦେଖାଯାଇଛି ଯେ, ସେମାନେ ଦରକାରୀ ଜିନିଷସବୁ କିଣନ୍ତି, କିନ୍ତୁ ଏସବୁର ପରିମାଣ ଖୁବ୍ କମ୍ । ବେଶି କିଛି ସଂଖ୍ୟକ ଦରିଦ୍ର ଲୋକ ଦୀର୍ଘଦିନ ଧରି ଏକରକମ ଅଭୁକ୍ତ ଅବସ୍ଥାରେ ରହିଯାଆନ୍ତି । ଏମାନଙ୍କ ମଧ୍ୟରେ ଦରିଦ୍ର ଶିଶୁମାନେ ମଧ୍ୟ ଅନ୍ତର୍ଭୁକ୍ତ । ଦୀର୍ଘଦିନର ଅନାହାର ଏମାନଙ୍କ ପାଇଁ କ୍ଷତିକାରକ ହୁଏ । ଆବଶ୍ୟକ ଶକ୍ତିର ଅଭାବ ପଡ଼େ । ଖାଦ୍ୟସାର, ଲୌହଜାତୀୟ ପଦାର୍ଥ ଏବଂ ପୁଷ୍ଟିସାରର ଅଭାବ ସମସ୍ୟା ସୃଷ୍ଟିକରେ ।

ଆଗକୁ ଅଗ୍ରସର ହେବା ପାଇଁ ଯେଉଁ ସାମର୍ଥ୍ୟ ଆବଶ୍ୟକ, ତାହାର ପୂର୍ଣ୍ଣ ବିକାଶ ଘଟି ନଥାଏ । ଶାରୀରିକ ଦୁର୍ବଳତା ସହିତ ସାମାଜିକ ଓ ଭାବଗତ ବିକାଶହୀନତା ମଧ୍ୟ ଦୃଷ୍ଟିଗୋଚର ହୁଏ । ମାନସିକ ଓ ଜ୍ଞାନଗତ ବିକାଶ ବହୁ ପରିମାଣରେ ଏ ସମୟରେ ଶରୀରର ଅଙ୍ଗପ୍ରତ୍ୟଙ୍ଗର କୁଶଳତା, ଅନ୍ୱେଷଣ କ୍ରିୟାକଳାପର ମାତ୍ରା, ମସ୍ତିଷ୍କର ବିକାଶ ଏବଂ ସ୍ୱାଭାବିକ ସ୍ଫୂର୍ତ୍ତି ଉପରେ ନିର୍ଭର କରୁଥିବାରୁ ବିକାଶର ମନ୍ଥରତା ପ୍ରକାଶ ପାଇବା ସାଧାରଣ କଥା । ଶିଶୁର ପରିପାର୍ଶ୍ୱରେ ଶିକ୍ଷକ ଶିକ୍ଷୟିତ୍ରୀ ଏବଂ ଅନ୍ୟସବୁ ବୟସ୍କ ବ୍ୟକ୍ତିମାନେ ଶିଶୁର ପାରିବାରିକ ଅସ୍ୱଚ୍ଛଳତାର କଥା ଚିନ୍ତାକରି ଶିଶୁକୁ କ୍ଷୀଣ ଓ ଦୁର୍ବଳ କହି ସମସ୍ୟାଟି ଏଡ଼ାଇ ଯାଆନ୍ତି । ମାତ୍ର କ୍ରମାଗତ ଅନାହାର ଫଳରେ ଏକ ବଡ଼ ଧରଣର ଲୁକ୍‌କାୟିତ କ୍ଷତି ଘଟିଯାଉଛି, ତାହା ଅନୁଭବ କରିବାର ବିଶେଷ ସମ୍ଭାବନା ନଥାଏ ।

ଅନ୍ୟ ଗୋଟିଏ ମାର୍ଗ ଦେଇ ଦାରିଦ୍ର୍ୟ ଶିଶୁସ୍ୱାସ୍ଥ୍ୟର ପ୍ରତିବନ୍ଧକ ରୂପେ ଠିଆ ହୋଇଥାଏ । ଦରିଦ୍ର ପରିବାରର ସନ୍ତାନସମ୍ଭବା ମହିଳାମାନେ ଅପେକ୍ଷାକୃତ ସ୍ୱଚ୍ଛଳ ପରିବାରର ନାରୀମାନଙ୍କ ତୁଳନାରେ କମ୍ ସ୍ୱାସ୍ଥ୍ୟସେବାର ସୁବିଧା ପାଆନ୍ତି । ସନ୍ତାନ ସନ୍ତତିଙ୍କ ଜନ୍ମ ପୂର୍ବରୁ ଆବଶ୍ୟକ ଟୀକା ଇଞ୍ଜେକ୍‌ସନ ନେବାର ମାତ୍ରା ଦରିଦ୍ର ମହିଳାମାନଙ୍କ କ୍ଷେତ୍ରରେ କମ୍ ହୋଇଥାଏ । ସେହିପରି ସନ୍ତାନ ଜରାୟୁରେ ଥିବା ସମୟରେ ଦରିଦ୍ର ମହିଳାମାନେ ଆବଶ୍ୟକ ପରିମାଣର ପୁଷ୍ଟିସାର ଖାଦ୍ୟ ଏବଂ ଅନ୍ୟସବୁ ଉପଯୋଗୀ ପଦାର୍ଥ ଗ୍ରହଣ କରିବାର ବିଶେଷ ସୁବିଧା ପାଇନଥାନ୍ତି । ପୁଣି ନିରାପଦ ମାତୃତ୍ୱ ପାଇଁ ପ୍ରୟୋଜନ ବିଶେଷଜ୍ଞ ପରାମର୍ଶ ଏବଂ ବିଧିବଦ୍ଧ

ପରୀକ୍ଷା ନିରୀକ୍ଷାର ସୁବିଧା ଏମାନଙ୍କ ପାଇଁ ପ୍ରାୟ ନଥାଏ । ଠିକ୍ ସମୟରେ ଏସବୁର ଅବହେଳା ଓ ଅନୁପସ୍ଥିତି ଅନେକ ପ୍ରକାର ଜଟିଳତା ସୃଷ୍ଟିକରେ ।

ଲକ୍ଷ୍ୟ କରାଯାଇଛି ଯେ, ଶିଶୁଜନ୍ମର ପରେ ପରେ ସୁବିଧା ସୁଯୋଗର ପ୍ରାପ୍ତି କ୍ଷେତ୍ରରେ ଅଭାବୀ ମହିଳା ଏବଂ ସ୍ୱଚ୍ଛଳ ପରିବାରର ମହିଳାଙ୍କ ମଧ୍ୟରେ ଅଧିକ ବ୍ୟବଧାନ ବଢ଼େ । ସ୍ୱଚ୍ଛଳ ପରିବାରରେ ପ୍ରସବ ପରବର୍ତ୍ତୀ ପର୍ଯ୍ୟାୟରେ ଜନନୀ ଅଧିକରୁ ଅଧିକ ସୁବିଧା ହାସଲ କରିବା ସ୍ଥଳେ ଦରିଦ୍ର ପରିବାରର ଜନନୀ ବେଶି ବେଶି ଅସୁବିଧାର ସମ୍ମୁଖୀନ ହୁଏ ।

ଦାରିଦ୍ର୍ୟର ସୀମାରେଖା ତଳେ ରହୁଥିବା ସନ୍ତାନସମ୍ଭବା ନାରୀ ଏବଂ ଅଳ୍ପ ବୟସର ଶିଶୁମାନଙ୍କର ସ୍ୱାସ୍ଥ୍ୟଗତ ସମସ୍ୟା ସମାଧାନ ଦିଗରେ ସାମୂହିକ ଯୋଜନା ନିତାନ୍ତ ପ୍ରୟୋଜନ । କେତେକ ସଚେତନଶୀଳ ଏବଂ ସମ୍ବେଦନଶୀଳ ସମାଜରେ ଏଥିପାଇଁ ଗୋଷ୍ଠୀଗତ ଖାଦ୍ୟଭଣ୍ଡାର ଓ ପାକଶାଳାର ପରିକଳ୍ପନା କରାଯାଇଛି । ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏବଂ ସହୃଦୟ ଧନୀକ ଲୋକଙ୍କ ସହାୟତାରେ ଜନବସତି ମଧ୍ୟରେ ଖାଦ୍ୟଭଣ୍ଡାର ପ୍ରତିଷ୍ଠା କରାଯାଇଛି । ବଳକା ଖାଦ୍ୟଶସ୍ୟ ଓ ଅନ୍ୟସବୁ ଖାଦ୍ୟଦ୍ରବ୍ୟକୁ ଗୋଟିଏ ସ୍ଥାନରେ ଜମାରଖିବା ଏବଂ ଖୁବ୍ ବେଶି ଆବଶ୍ୟକ କରୁଥିବା ଦରିଦ୍ର ଶିଶୁ ଓ ମହିଳାମାନଙ୍କୁ ଠିକ୍ ସମୟରେ ଯୋଗାଇବା ଏହାର ମୂଳ ଲକ୍ଷ୍ୟ । ସେହିପରି ଗୋଷ୍ଠୀ ପାକଶାଳାରେ ଖାଦ୍ୟଦ୍ରବ୍ୟ ପ୍ରସ୍ତୁତ କରି ଅଭାବୀ ଶିଶୁ ଓ ମହିଳାମାନଙ୍କୁ ଯୋଗାଇ ଦିଆଯାଇପାରେ । ଅବଶ୍ୟ ଏ ଦିଗରେ ସ୍ୱୟଂସହାୟକ ଦଳମାନ ଗଠନ କରାଯାଇ ପାରିଲେ ସମସ୍ୟା ସମାଧାନ ଅଧିକ ସହଜ ହେବ । ଏକ ନିର୍ଦ୍ଦିଷ୍ଟ ସ୍ୱୟଂସହାୟକ ଗୋଷ୍ଠୀର ମହିଳା ସେହି ଦଳର ଅନ୍ୟ ଜଣେ ମହିଳାଙ୍କର ବିଶେଷ ଅଭାବର ମାତ୍ରା ଏବଂ ସମସ୍ୟା ଜାଣିପାରିବେ । ସେ ଜାଣିପାରିଲେ ନିଜ ଦଳଟିର ସାହାଯ୍ୟ ନେଇ ସେହି ଦଳର ସଦସ୍ୟାଙ୍କର ଅସୁବିଧା ଦୂର କରିପାରିବେ । ମୋଟାମୋଟି ଉପରେ ଦାରିଦ୍ର୍ୟର କୁପ୍ରଭାବ ଦୂର କରିବାର ସାମର୍ଥ୍ୟ ସବୁବେଳେ ବ୍ୟକ୍ତିଗତ ସ୍ତରରେ ସମ୍ଭବ ନ ହେଲେ ମଧ୍ୟ ଗୋଷ୍ଠୀମାଧ୍ୟମରେ ପ୍ରତିକାର ଗ୍ରହଣ କରିବା ଅସମ୍ଭବ ନୁହେଁ ।

## ବିଶେଷ ସୂଚନା

*୧ । ଶିଶୁର ଶାରୀରିକ ଓ ମାନସିକ ବିକାଶ ପାଇଁ ଯେଉଁ ପରିମାଣର ଖାଦ୍ୟ ଆବଶ୍ୟକ ତାହାର ଅଭାବ ଫଳରେ ସୃଷ୍ଟି ହେଉଥିବା ଦୀର୍ଘକାଳୀନ ଆଂଶିକ ଅନାହାର ଅଗ୍ରସର ହେବାର ସାମର୍ଥ୍ୟକୁ କମାଇଦିଏ ।*

*୧ । ଦରିଦ୍ର ପରିବାରର ସନ୍ତାନସମ୍ଭବା ମହିଳା ସ୍ୱଚ୍ଛଳ ପରିବାରର ମହିଳାଙ୍କ ତୁଳନାରେ କମ୍ ସ୍ୱାସ୍ଥ୍ୟସେବା (ଠିକ୍ ସମୟରେ ଟୀକା ଇଞ୍ଜେକ୍ସନ, ପୁଷ୍ଟିସାର ଖାଦ୍ୟର ଅଭାବ ଏବଂ ନିରାପଦ ମାତୃତ୍ୱ ପାଇଁ ମଝିରେ ମଝିରେ ଡାକ୍ତରୀ ପରୀକ୍ଷା ନିରୀକ୍ଷାର ଅଭାବ) ପାଉଥିବାରୁ ପରବର୍ତ୍ତୀ ପର୍ଯ୍ୟାୟରେ ଶିଶୁ ଏହି କ୍ଷତିର ଶିକାର ହୁଏ ।*

*୩ । ଉପର ସୂଚିତ ଅଭାବ ଦୁଇଟିକୁ ଦୂରକରିବା ପାଇଁ ସାମାଜିକ ସ୍ତରରେ ଗୋଷ୍ଠୀଗତ ଖାଦ୍ୟଭଣ୍ଡାର ଏବଂ ପାକଶାଳାର ପରିକଳ୍ପନା କରାଯାଇଥାଏ ।*

# ସ୍ମରଣ ସାମର୍ଥ୍ୟ

ଅଳ୍ପ ବୟସର ଶିଶୁମାନଙ୍କର ଯେ ସ୍ମରଣ ସାମର୍ଥ୍ୟ (Memory Ability) ରହିଛି ଏବଂ ସେମାନେ ବେଶ୍ କିଛି କଥା ମନେରଖି ପାରନ୍ତି, ଏହା ଅନେକ ଲୋକ ଅନୁଭବ କରି ନଥାନ୍ତି । ଏପରିକି ୧୯୬୦ ମସିହା ପର୍ଯ୍ୟନ୍ତ ବିଶେଷଜ୍ଞମାନେ ମଧ୍ୟ ଏ ଦିଗରେ କୌଣସି ଏକ ସ୍ପଷ୍ଟ ମତାମତ ଦେଇ ନଥିଲେ । ୧୯୮୦ ମସିହା ପରେ ପରେ ଏ ଦିଗରେ ବିଧିବଦ୍ଧ ଗବେଷଣା ଆରମ୍ଭ କରାଗଲା । ଗବେଷଣାଗାରର ନିୟନ୍ତ୍ରିତ ପରିବେଶ ମଧ୍ୟରେ ପରୀକ୍ଷା ନିରୀକ୍ଷା କରାଗଲା । ଏକବିଂଶ ଶତକରେ ଅଧିକ ଅନୁଧ୍ୟାନ କରାଯାଇ ବହୁ ତଥ୍ୟ ଉପଲବ୍ଧ କରାଯାଇଛି ।

ପ୍ରାକ୍-ବିଦ୍ୟାଳୟ ସ୍ତରର ଶିଶୁମାନଙ୍କର ସ୍ମୃତି (Memory) ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ସେମାନଙ୍କର ଅଭିନିବେଶ (Attention) ବିଷୟରେ ସଂକ୍ଷିପ୍ତ ସୂଚନା ଆବଶ୍ୟକ । ନବଜନ୍ମିତ ଶିଶୁର ଅଭିନିବେଶ ମୁଖ୍ୟତଃ ବିକ୍ଷିପ୍ତ ଥାଏ । ସେ କୌଣସି ବସ୍ତୁପ୍ରତି ଅଧିକ ସମୟ ଧ୍ୟାନଶୀଳ ହୋଇପାରେ ନାହିଁ । ମାତ୍ର ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ତା'ର ଅଭିନିବେଶ କ୍ରମଶଃ ବସ୍ତୁକେନ୍ଦ୍ରିତ ହୁଏ । ଏପରିକି ଏକାଦିକ୍ରମେ ଅଧଘଣ୍ଟା ଧରି ଦୂରଦର୍ଶନର କାର୍ଯ୍ୟକ୍ରମ ଆଡ଼େ ଚାହିଁ ରହିବା ଆମର ଦୃଷ୍ଟିଗୋଚର ହୁଏ । ଅବଶ୍ୟ ପ୍ରାଥମିକ ପର୍ଯ୍ୟାୟରେ ଶିଶୁ ବସ୍ତୁଟିର ଆକର୍ଷଣୀୟ ଦିଗ ପ୍ରତି ହିଁ ଅଭିନିବେଶ ଦର୍ଶାଏ । ଜୋକରର ବେଶଭୂଷା, କଥାବାର୍ତ୍ତା ଏବଂ ଏହିପରି କିଛି ଆଖିଦୃଶିଆ ଦିଗ ପ୍ରତି ତାର ଅଭିନିବେଶ ଆସିଥାଏ । ପ୍ରାକ୍-ବିଦ୍ୟାଳୟ ସ୍ତର ପାର ହୋଇ ଛ' ସାତ ବର୍ଷବେଳକୁ ଶିଶୁ ବସ୍ତୁତଃ ଘଟଣାଟିର ମୁଖ୍ୟ ଦିଗ ପ୍ରତି ଅଭିନିବିଷ୍ଟ ହୁଏ ।

ଅଭିନିବେଶ (Attention) ଲାଭ କରିଥିବା ବସ୍ତୁ ବା ଘଟଣା କେତେ ମାତ୍ରାରେ ଶିଶୁ ସ୍ମୃତିରେ ସ୍ଥାନପାଏ, ତାହା ଏକ କୌତୂହଳପୂର୍ଣ୍ଣ ପ୍ରଶ୍ନ । କେଉଁ ମୁହୂର୍ତ୍ତରୁ ଶିଶୁର ସ୍ମରଣ ସାମର୍ଥ୍ୟ ଆରମ୍ଭ ହୁଏ, ତାହା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ । ଜରାୟୁରେ ଥିବା ସମୟରେ କେତେକ ଅନୁଭୂତି ଶିଶୁର ସ୍ମୃତି ଭଣ୍ଡାରରେ ଗଚ୍ଛିତ ଥାଏ ବୋଲି ଆଧୁନିକ ଯୁଗରେ ପ୍ରମାଣିତ ହୋଇଛି । ସେସବୁର ଆଲୋଚନା ଏଠାରେ କରାଯାଉ ନାହିଁ । ମାତ୍ର ସଚେତନ ଭାବରେ ଶିଶୁ ଯେଉଁ ସ୍ମରଣ ସାମର୍ଥ୍ୟ ଦର୍ଶାଏ, ତାହା ସାତମାସ ବୟସ ସମୟରୁ ଆରମ୍ଭ ହୋଇଥାଏ । ପୁଣି ବୟସ୍କମାନେ ନିଜର ଦୂର ଅତୀତର କଥା ସ୍ମରଣ କରିବା ପରିପ୍ରେକ୍ଷୀରେ ସେମାନେ

ବାଲ୍ୟକାଳରୁ ତିନିବର୍ଷ ବୟସ ସମୟର କଥା ମନେପକାଇ ପାରନ୍ତି। ବିଭିନ୍ନ ସମାଜ ଓ ସଂସ୍କୃତି ଭେଦରେ ଏହି ଦୂରତମ ସ୍ମୃତି ସାମର୍ଥ୍ୟର ପାର୍ଥକ୍ୟ ଥିଲେ ମଧ୍ଯ ହାରାହାରି ଭାବେ ଏହାକୁ ତିନିବର୍ଷ ବୟସର ସ୍ମୃତି ବୋଲି ସ୍ୱୀକାର କରାଯାଇଛି ।

ସ୍ମରଣ କାର୍ଯ୍ୟରେ ଆମେ ମୁଖ୍ୟତଃ ଦୁଇ ପ୍ରକାର ଅବସ୍ଥାର ଉପଯୋଗ କରୁ । ପ୍ରଥମ ଅବସ୍ଥାଟି ସ୍ୱଳ୍ପମିଆଦୀ ସ୍ମୃତି (Short Term Memory or STM) ଗୋଟିଏ ଚାହାଣୀରେ କିଛି ଦେଖିଦେଇ ବା ଶୁଣିଦେଇ ତାକୁ ପ୍ରୟୋଗ କରିବା ଏ ଧରଣର କ୍ଷଣସ୍ମୃତି । ବୟସ୍କମାନଙ୍କ କ୍ଷେତ୍ରରେ ଟେଲିଫୋନ୍ ଡିରେକ୍ଟରୀଟି ଦେଖି ଫୋନ ନମ୍ବରଟି ମନେ ରଖିବା ଏ ଧରଣର କ୍ଷଣସ୍ମୃତି (STM) । କହିବା ଅନାବଶ୍ୟକ ଯେ ଫୋନ୍ ନମ୍ବରଟି ମନେରଖି ଫୋନ୍ କରିସାରିଲେ ଏହା ଆଉ ଦରକାର ହୋଇନପାରେ । ଠିକ୍ ସେହିପରି ଗୋଟିଏ ଶିଶୁ ଅଳ୍ପ ସମୟ ପାଇଁ କେତୋଟି ବସ୍ତୁ ଦେଖିବା ପରେ ଅତିବେଶି କେତେ ସଂଖ୍ୟକ ବସ୍ତୁ ମନେରଖି ପାରୁଛି, ତାହା ପ୍ରଶ୍ନ ଉଠିପାରେ । ବୟସ୍କମାନଙ୍କ କ୍ଷେତ୍ରରେ ଏହି ସ୍ୱଳ୍ପମିଆଦୀ ସ୍ମରଣ ସୀମା (Memory Span)କୁ "ସାତ" ବୋଲି ଗ୍ରହଣ କରାଯାଇଛି । ଅନ୍ୟ ଭାଷାରେ କହିଲେ ବୟସ୍କମାନେ ହାରାହାରି ୭ଟି ବସ୍ତୁ ତାଙ୍କ କ୍ଷଣସ୍ମୃତି ସାମର୍ଥ୍ୟରେ ଦର୍ଶାଇ ଥାଆନ୍ତି । ଅବଶ୍ୟ ଏହାର କିଛିଟା ବ୍ୟତିକ୍ରମ ରହିଛି । ମାତ୍ର ନିମ୍ନ ସୀମାଟି ୫ ହେବା ସ୍ଥଳେ ଉପର ସୀମା ୯ ପର୍ଯ୍ୟନ୍ତ ଯାଇଥାଏ । ସେଥିପାଇଁ କାର୍, ଟ୍ରକ୍ ପ୍ରଭୃତିର ରେଜିଷ୍ଟ୍ରେସନ ନମ୍ବର ସାଧାରଣତଃ ସାତଅଙ୍କ ବିଶିଷ୍ଟ ହୋଇଥାଏ । ଦ୍ରୁତଗତିରେ ପଳାୟନ କରୁଥିବା ଗୋଟିଏ ଗାଡ଼ିର ନମ୍ବର ଗୋଟିଏ ଚାହାଣୀରେ ଦେଖିଦେଇ ମନେରଖିବା ସମ୍ଭବ ହେବ, ଏହି ଯୁକ୍ତି ଉପରେ ଏହି ବ୍ୟବସ୍ଥା ପ୍ରତିଷ୍ଠିତ ।

ଶିଶୁମାନଙ୍କ କ୍ଷେତ୍ରରେ ଅଳ୍ପସମୟ ପାଇଁ କେତୋଟି ବସ୍ତୁ (ଯଥା: କଣ୍ଢେଇ) ଯୋଗାଇବା ପରେ ସେ କେତୋଟିକୁ ସ୍ମରଣ କରିପାରୁଛି, ତାହା ସ୍ଥିର କରାଯାଇପାରେ । ଏପରି ପରୀକ୍ଷା ନିରୀକ୍ଷାରୁ ଦେଖାଯାଇଛି ଯେ ଦୁଇ ତିନିବର୍ଷର ଶିଶୁମାନଙ୍କ ପାଇଁ ଏପରି ଅଳ୍ପମିଆଦୀ ସ୍ମରଣ ସାମର୍ଥ୍ୟ ଦୁଇଟି ବସ୍ତୁ ମଧ୍ୟରେ ସୀମିତ । ମାତ୍ର ସେମାନଙ୍କର ବୟସ ସାତବର୍ଷ ହେବାବେଳକୁ ଏପରି ସ୍ମରଣ ସୀମା "ପାଞ୍ଚ"କୁ ବୃଦ୍ଧିପାଏ ।

ଆମର ଦୈନନ୍ଦିନ ଜୀବନରେ ବୟସ୍କମାନଙ୍କ ପରି ଶିଶୁମାନେ ମଧ୍ୟ ଦୀର୍ଘମିଆଦୀ ସ୍ମରଣ ( Long Term Memory or LTM )ର ଉପଯୋଗ କରନ୍ତି । ତିନିଚାରି ବର୍ଷର ଶିଶୁ "ଗୀତା"ର କଥା ବିଚାର କରାଯାଉ । ଧରାଯାଉ ଗତ ସପ୍ତାହରେ ଗୀତା ତା'ର ମାମୁଁଙ୍କ ସହିତ ସର୍କସ୍ ଦେଖିବାକୁ ଯାଇଥିଲା । କହିବା ନିଷ୍ପ୍ରୟୋଜନ ଯେ ଏ ସପ୍ତାହରେ ମଧ୍ୟ ଗୀତା ଅନେକ କଥା ବର୍ଣ୍ଣନା କରିବ । ସେ କିପରି ଯାଇଥିଲା, କ'ଣସବୁ ଦେଖିଲା ଏବଂ ସେଠାରେ କ'ଣ ଖାଇଲା, ତାହାର ଛବିଳ ବର୍ଣ୍ଣନା ଦେବ । ଏପରି ନିତ୍ୟବ୍ୟବହୃତ ସ୍ମୃତି (Working Memory) ଶିଶୁର ଏକ ସହଜ ସୁଲଭ ଆଚରଣ ।

ଅବଶ୍ୟ ସ୍ମରଣ ସାମର୍ଥ୍ୟରେ ପରିମାଣ ବିଚାର କଲାବେଳେ ଦୁଇଟି ପଦ୍ଧତିର ପ୍ରୟୋଗ କରାଯାଏ । ପ୍ରଥମଟି ଚିହ୍ନଟ (Recognition) ପଦ୍ଧତି । ଦେଖିଥିବା ଏବଂ ନଦେଖିଥିବା ବସ୍ତୁ (ଯଥା : ଛବି କିମ୍ବା କୁଣ୍ଢେଇ)କୁ ଏକତ୍ର ଦିଆଯାଇ ଦେଖିଥିବା ବସ୍ତୁକୁ ଚିହ୍ନଟ କରିବା ପାଇଁ କୁହାଯାଏ । ଅନ୍ୟ ପକ୍ଷରେ ଦେଖିଥିବା ବସ୍ତୁ ସବୁର ପ୍ରତ୍ୟସ୍ମରଣ ବା ପୁନଃସ୍ମରଣ (Recall) ପାଇଁ ସୂଚନା ଦିଆଯାଇପାରେ । ଏହା ସହଜରେ ଅନୁମେୟ ଯେ, ପୁନଃସ୍ମରଣ ଅପେକ୍ଷା ଚିହ୍ନଟ କାର୍ଯ୍ୟ ଅଧିକ ସହଜ ।

ପ୍ରାକ୍‌-ବିଦ୍ୟାଳୟସ୍ତରରେ ଶିଶୁମାନେ ଉଲ୍ଲେଖଯୋଗ୍ୟ ଚିହ୍ନଟ ଓ ପୁନଃସ୍ମରଣର ଦକ୍ଷତା ଦର୍ଶାନ୍ତି । ତେବେ କେଉଁ କେଉଁ ଉପାଦାନ ସେମାନଙ୍କ ସ୍ମରଣ-ସାମର୍ଥ୍ୟକୁ ବୃଦ୍ଧିକରେ, ସେସବୁର ଆଲୋଚନା ବେଶ୍ ଉପାଦେୟ ।

ପ୍ରଥମତଃ ଘଟଣାଟିର ନୂତନତ୍ୱ ଏବଂ ଅନନ୍ୟତା (Uniqueness) ସ୍ମରଣ ସାମର୍ଥ୍ୟକୁ ବୃଦ୍ଧି କରିଥାଏ । ସର୍କସ ଯିବା ଏକ ବିଚିତ୍ର ଧରଣର ଘଟଣା । ଜୀବଜନ୍ତୁ ଓ ପୋଷାକ ପରିଚ୍ଛଦ ଦେଖିବାର ଅନୁଭବ ଶିଶୁ ପାଇଁ ଅଭିନବ । ସେହିପରି ନୂତନ ସ୍ଥାନକୁ ଭ୍ରମଣରେ ଯିବା, ବିଚିତ୍ର ଘଟଣାର ସମ୍ମୁଖୀନ ହେବା ଏବଂ ଦେଖିନଥିବା ଦୃଶ୍ୟ ଦେଖିବାର ଅନୁଭୂତି ଅଧିକ ମାତ୍ରାରେ ସ୍ମୃତିଭଣ୍ଡାରରେ ସଞ୍ଚିତ ରହେ ଏବଂ ଏହାର ପୁନଃସ୍ମରଣ (Recall) ସମ୍ଭବ ହୁଏ । ଅବଶ୍ୟ ଶିଶୁ ଅଧିକ ଭୟ ପାଇଯାଇଥିଲେ ଫଳାଫଳ ଭିନ୍ନ ହୁଏ ।

ଦ୍ୱିତୀୟତଃ ଦୈନନ୍ଦିନ ଜୀବନରେ ପୁନରାବୃତ୍ତି ଘଟୁଥିବା ଘଟଣା ସ୍ମୃତିରେ ଅଧିକ ସ୍ଥାନପାଏ । ପ୍ରତିଦିନ ନର୍ସରୀ ସ୍କୁଲକୁ ଯିବା, ମନ୍ଦିରକୁ ଯିବା କିମ୍ବା ବାପାଙ୍କ ସଙ୍ଗେ ପ୍ରମୋଦ ଉଦ୍ୟାନକୁ ଯିବାର ଘଟଣା ଅମଳିନ ରହିଥାଏ ।

ତୃତୀୟତଃ କୌଣସି ଏକ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶଗ୍ରହଣ କରିବାର ସୁଯୋଗ ସ୍ମରଣ ସାମର୍ଥ୍ୟକୁ ବୃଦ୍ଧିକରେ । ଶିଶୁଟି ଯାହା ଦେଖିଛି ତାହା ତୁଳନାରେ ସେ ଯାହା କରିଛି ସେପରି କାର୍ଯ୍ୟଗୁଡ଼ିକୁ ସେ ଅଧିକ ମନେରଖେ । ତିନିଚାରିବର୍ଷର ପିଲାମାନଙ୍କୁ ଗୋଟିଏ ମେଳାକୁ ନିଆଗଲା । ସେଥିରୁ କିଛି ପିଲା କେବଳ ମେଳା ଦେଖିବାର ସୁଯୋଗ ପାଇଲେ । ଅନ୍ୟ ପିଲାମାନେ ଦେଖିବା ସଙ୍ଗେ ସଙ୍ଗେ କିଛି କରିବାର ସୁଯୋଗ ପାଇଲେ । ଗୋଟିଏ ସପ୍ତାହ ପରେ ସେମାନଙ୍କର ସ୍ମରଣ ସାମର୍ଥ୍ୟ ମାପ କରାଗଲା । ଦେଖାଗଲା ଯେ ସକ୍ରିୟ ଭାବେ ଅଂଶଗ୍ରହଣ କରିଥିବା ପିଲାମାନେ ଅଧିକ ପରିମାଣରେ ଘଟଣା ସବୁ ମନେରଖି ପାରିଛନ୍ତି । ପୁଣି ସେମାନେ ଯେଉଁସବୁ କାର୍ଯ୍ୟ କରିଛନ୍ତି, ସେଗୁଡ଼ିକର କଥା ଅଧିକ ମନେରଖିଛନ୍ତି ।

ଚତୁର୍ଥରେ ସାମାଜିକ ପରିପ୍ରେକ୍ଷୀ ମଧ୍ୟ ସହାୟକ ଅବସ୍ଥା ସୃଷ୍ଟିକରେ । ସରଳ ଭାଷାରେ କହିଲେ ବୁଝିବାକୁ ହେବ ଯେ କେଉଁପ୍ରକାର ଭଙ୍ଗୀରେ ଶିଶୁକୁ କୁହାଯାଇଛି, ତାହା ମଧ୍ୟ ସ୍ମୃତି

ସାମର୍ଥ୍ୟକୁ ପ୍ରଭାବିତ କରେ । ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁମାନଙ୍କୁ ଗୋଟିଏ ପ୍ରଦର୍ଶନୀକୁ ନିଆଗଲା । ଶିଶୁମାନଙ୍କ ସହିତ ସେମାନଙ୍କର ମା'ମାନେ ଥିଲେ । ପୂର୍ବ ଯୋଜନା ଅନୁଯାୟୀ କେତେକ ମା' ସେମାନଙ୍କର ପିଲାମାନଙ୍କ ସହିତ ସ୍ୱାଭାବିକ ରୀତିରେ କଥାବାର୍ତ୍ତା କରୁଥିଲେ । ନିର୍ଦ୍ଦେଶ ଅନୁଯାୟୀ ଅନ୍ୟ ମା'ମାନେ କେବଳ ଶିଶୁମାନଙ୍କ ପ୍ରଶ୍ନର ଉତ୍ତର ଦେଉଥିଲେ ଏବଂ ଅଧିକା କଥାବାର୍ତ୍ତା କରୁ ନଥିଲେ । ପ୍ରଦର୍ଶନୀରୁ ଫେରିବାର ଏକ ସପ୍ତାହ ପରେ ଶିଶୁ ଓ ସେମାନଙ୍କର ମା' ମାନଙ୍କ ସହିତ ଏକ ସାକ୍ଷାତକାର ଆୟୋଜନ କରାଗଲା । ଶିଶୁମାନେ କ'ଣସବୁ ମନେରଖିଛନ୍ତି, ସେସବୁ ଆକଳନ କରାଗଲା । ଦେଖାଗଲା ଯେ ସ୍ୱାଭାବିକ ରୀତିରେ କଥୋପକଥନରେ ସମୟ କାଟିଥିବା ଶିଶୁମାନେ ଅପେକ୍ଷାକୃତ ଅଧିକ କଥା ମନେ ରଖିଛନ୍ତି ।

କଥାବାର୍ତ୍ତାର ଶୈଳୀ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ଅନୁଶୀଳନରୁ ଦେଖାଯାଇଛି ଯେ, ପିତାମାତା ଶିଶୁ ସହିତ ବାକ୍ୟାଳାପ କରିବା ସମୟରେ ମୁଖ୍ୟତଃ ଦୁଇଟି ଶୈଳୀର ବ୍ୟବହାର କରନ୍ତି । ପ୍ରଥମଟି ବର୍ଣ୍ଣନାତ୍ମକ (Narrative) ଶୈଳୀ । ଆମେ ଗଳ୍ପ କହିବା ସମୟରେ ଯେଉଁ ଶୈଳୀର ଉପଯୋଗ କରୁ, ତାହା ବର୍ଣ୍ଣନାତ୍ମକ ଶୈଳୀ । ଅନ୍ୟଟି ପ୍ରୟୋଗାତ୍ମକ (Practical) ଶୈଳୀ । କୌଣସି ପ୍ରଶ୍ନର ଉତ୍ତର ଦେବା ସମୟରେ କିମ୍ବା କିଛି ତଥ୍ୟ ଯୋଗାଇବା ସମୟରେ ଯେଉଁ ଶୈଳୀଟି ବ୍ୟବହୃତ ହୁଏ, ତାହା ପ୍ରୟୋଗାତ୍ମକ ଶୈଳୀ । ଦେଖାଯାଇଛି ଯେ ପିତାମାତା ଏବଂ ବୟସ୍କମାନେ ବର୍ଣ୍ଣନାତ୍ମକ ଶୈଳୀ (Narrative Style) ବ୍ୟବହାର କରି ଶିଶୁକୁ କିଛି କହିଥିଲେ ତାହା ଶିଶୁର ସ୍ମରଣ ସାମର୍ଥ୍ୟକୁ ବୃଦ୍ଧି କରିଥାଏ । ଗପ କହିଲା ଭଳି ଶିଶୁକୁ ବୁଝାଇ ଶୁଝାଇ କହିବାର ଢଙ୍ଗ ଶିଶୁଟିର ସ୍ମରଣ କ୍ରିୟାର ଅଧିକ ସହାୟକ ହୁଏ ।

ପରିଶେଷରେ କୁହାଯାଇପାରେ ଯେ ଉପର ଆଲୋଚିତ ଚାରୋଟି ଉପାଦାନ ବ୍ୟତୀତ ଶିଶୁର ଅଭିପ୍ରେରଣା (Motivation) ଏବଂ ସ୍ମରଣ ସାମଗ୍ରୀସବୁର ସଜ୍ଜୀକରଣ (Organizing or grouping) ଦକ୍ଷତା ଉପରେ ଶିଶୁର ପରବର୍ତ୍ତୀ ପର୍ଯ୍ୟାୟରେ ପୁନଃସ୍ମରଣର ସଫଳତା ନିର୍ଭର କରେ କୁଣ୍ଢେଇ ସବୁ ସହିତ ଖେଳିବା ପରେ ଏବଂ କିଛିଦିନ ଓ କିଛି ସପ୍ତାହର ବ୍ୟବଧାନ ପରେ ଶିଶୁର ସ୍ମରଣ ସାମର୍ଥ୍ୟ ମାପ କରାଯାଇ ଏପରି ସିଦ୍ଧାନ୍ତ ଉପଲବ୍ଧ ହୋଇଛି । ଶିଶୁ ଏସବୁ ସହିତ ଖେଳିବା ଅବସ୍ଥାରେ ଶିଶୁର ଅଲକ୍ଷ୍ୟରେ ଗୁପ୍ତ କ୍ୟାମେରା ରଖାଯାଇ ପ୍ରମାଣ ମିଳିଛି ଯେ, ଅଧିକ ମାତ୍ରାରେ ସ୍ମରଣ ସଫଳତା ଦର୍ଶାଉଥିବା ପିଲାମାନେ ବେଶି ଆନ୍ତରିକତାର ସହିତ କୁଣ୍ଢେଇ ସହିତ ଖେଳୁଥିଲେ ଏବଂ ବିଭିନ୍ନ ପ୍ରକାର ଦ୍ରବ୍ୟସବୁକୁ ଭିନ୍ନ ଭିନ୍ନ ରୀତିରେ ଦଳ ଦଳ କରି ସଜାଉଥିଲେ । ଏଥିରୁ ସେମାନଙ୍କର ଅଭିପ୍ରେରଣା ଓ ସଜ୍ଜୀକରଣ ମନୋବୃତ୍ତିର ପରିଚୟ ମିଳେ । ମୋଟ ଉପରେ କୁହାଯିବ ଯେ, ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁମାନଙ୍କର ସ୍ମରଣ ସାମର୍ଥ୍ୟ ଏକ ବିକାଶମୁଖୀ ପର୍ଯ୍ୟାୟରେ ରହିଥାଏ ଏବଂ କେତେକ ଅନୁକୂଳ ଅବସ୍ଥାର ସହାୟତାରେ ଏହାକୁ ଅଧିକ ବିକଶିତ କରାଯାଇପାରେ ।

## ସହାୟକ ପରାମର୍ଶ

୧ । ଘଟଣାର ଅଭିନବତ୍ୱ ଓ ବିଚିତ୍ରତା ଶିଶୁର ସ୍ମରଣ ସାମର୍ଥ୍ୟକୁ ବୃଦ୍ଧି କରେ । ସୁତରାଂ ସ୍ମରଣଯୋଗ୍ୟ ବିଷୟ ବସ୍ତୁଟିର ନୂତନତ୍ୱ ପ୍ରତି ଶିଶୁର ଦୃଷ୍ଟି ଆକର୍ଷଣ କରନ୍ତୁ ।

୨ । ଘଟଣାର ପୁନରାବୃତ୍ତି ସ୍ମରଣ ସାମର୍ଥ୍ୟର ସହାୟକ। ପୁନରାବୃତ୍ତି ନୀତିଟିର ଉପଯୋଗ କରାଯାଇପାରେ ।

୩ । ଯେଉଁ କେତୋଟି ଘଟଣାରେ ଶିଶୁ ପ୍ରତ୍ୟେକ୍ଷ ଅଂଶଗ୍ରହଣ କରେ, ସେସବୁ ଅଧିକ ମନେରହେ । ସୁତରାଂ ଉଚିତ ଓ ବୟସ-ଉପଯୋଗୀ କାର୍ଯ୍ୟକ୍ରମରେ ଶିଶୁର ଅଂଶଗ୍ରହଣକୁ ଉତ୍ସାହ ପ୍ରଦାନ କରନ୍ତୁ । (ଉଦାହରଣ ସ୍ୱରୂପ, ଗଛରେ କିପରି ପାଣିଦେବାକୁ ହୁଏ, ତାହା କେବଳ ଭାଷାରେ ବର୍ଣ୍ଣନାନକରି ପାଣିଦେବାର ଅଭ୍ୟାସଟି ଶିଶୁ ଆପଣଙ୍କ ତତ୍ତ୍ୱାବଧାନରେ ଅଭ୍ୟାସକରିବା ଉଚିତ ହେବ । ଏହା ସ୍ମରଣ ଓ କାର୍ଯ୍ୟକୁଶଳତାକୁ ବୃଦ୍ଧି କରିବ ।)

୪ । ଗୋଟିଏ ବିଷୟ ଶିଶୁ ସଫଳତାର ସହିତ ମନେ ରଖିବା ଉଚିତ ହେବ, ଏପରି ଚାହୁଁଥିଲେ ଆପଣ ଶିଶୁକୁ କହିବା ସମୟରେ ବୁଝାଇବା ବା ବର୍ଣ୍ଣନାତ୍ମକ (Narrative) ଶୈଳୀର ଉପଯୋଗ କରନ୍ତୁ । ଗପ କହିବା ଭଳି ଶୈଳୀର ପ୍ରୟୋଗ କରନ୍ତୁ ।

୫ । ବସ୍ତୁସବୁକୁ ଶିଶୁ ଯେପରି ବିଭାଗୀକରଣ ବା ସଜ୍ଜୀକରଣ (Organization) କରିପାରେ ସେ ଦିଗରେ ଦୃଷ୍ଟି ଦିଅନ୍ତୁ । (ଉଦାହରଣ ସ୍ୱରୂପ, ଶିଶୁଟି ଅନେକଗୁଡ଼ିଏ ବସ୍ତୁ ସହିତ ଖେଳୁଥିବା ସମୟରେ ସେସବୁ ମଧ୍ୟରୁ କେତେକ ଜୀବଜନ୍ତୁ, କେତେକ ପକ୍ଷୀ ଏବଂ କେତେକ ଫଳ- ଏପରି ଧାରଣା ଦିଅନ୍ତୁ) ।

୬ । ସର୍ବୋପରି ଶିଶୁର ଆଗ୍ରହ ଓ ଅଭିପ୍ରେରଣା (Motivation) ଦୃଢ଼ ରଖିବାର ପଦକ୍ଷେପ ନିଅନ୍ତୁ

# ଜାଁ ପିଆଜେଙ୍କ ଦୃଷ୍ଟିରେ ବିକାଶର ସୋପାନ

ଜନ୍ମରୁ ଆରମ୍ଭ କରି କୈଶୋର ପର୍ଯ୍ୟନ୍ତ ବୌଦ୍ଧିକ ଓ ଜ୍ଞାନଗତ (Cognitive) ବିକାଶ କିପରି ସଂଘଟିତ ହୁଏ, ସେ ସମ୍ପର୍କରେ ସୁଇଜରଲାଣ୍ଡର ବିଶ୍ୱବିଖ୍ୟାତ ମନୋବିଜ୍ଞାନୀ ଜାଁ ପିଆଜେ (Jean Piaget) ଙ୍କ ତତ୍ତ୍ୱକୁ ବିଶେଷ ସ୍ୱୀକୃତି ଦିଆଯାଇଛି । ପିଆଜେ ବିକାଶର ଯେଉଁ ଚାରୋଟି ମୁଖ୍ୟ ସୋପାନର ଅବତାରଣା କରିଛନ୍ତି, ତନ୍ମଧ୍ୟରୁ ଦ୍ୱିତୀୟ ସୋପାନଟି ଏଠାରେ ଆଲୋଚ୍ୟ । ସୂଚନା ଦିଆଯାଇପାରେ ଯେ ଜନ୍ମରୁ ଦୁଇବର୍ଷ ମଧ୍ୟରେ ପ୍ରଥମ ସୋପାନଟି ସଂଘଟିତ ହୁଏ । ଏହି ସମୟରେ ଶିଶୁ ମୁଖ୍ୟତଃ ତା'ର ଇନ୍ଦ୍ରିୟ (ଚକ୍ଷୁ, କର୍ଣ୍ଣ ଓ ନାସା ପରି Sense Organs) ଏବଂ କାରକ (ହାତ ଗୋଡ଼ ପରି Motor Organs) ମଧ୍ୟରେ ସମନ୍ୱୟ ହାସଲ କରୁଥିବାରୁ ଏହାକୁ ଇନ୍ଦ୍ରିୟକାରକ ସୋପାନ (Sensori Motor stage) କୁହାଯାଏ । ଦ୍ୱିତୀୟ ସୋପାନଟି ଦୁଇବର୍ଷରୁ ସାତବର୍ଷ ବୟସ ମଧ୍ୟରେ ସଂଘଟିତ ହୁଏ । ଏହାକୁ ପିଆଜେ ପ୍ରାକ୍‌କ୍ରିୟାତ୍ମକ ସୋପାନ (Pre-Operational stage) ଆଖ୍ୟା ଦେଇଛନ୍ତି । ଦ୍ୱିତୀୟ ସେପାନଟିକୁ କାହିଁକି ଏପରି ନାମକରଣ କରାଯାଇଛି, ତାହା ପରବର୍ତ୍ତୀ ଆଲୋଚନାରୁ ସ୍ପଷ୍ଟ ହେବ । ତେବେ ପିଆଜେଙ୍କ ପରିଭାଷାରେ ତୃତୀୟ ଓ ଚତୁର୍ଥ ସୋପାନ ଦୁଇଟିକୁ ଯଥାକ୍ରମେ ବସ୍ତୁଗତ କ୍ରିୟାତ୍ମକ ସୋପାନ (Concrete Operation) ଏବଂ ଭାବଗତ କ୍ରିୟାତ୍ମକ ସୋପାନ (Formal operation) କୁହାଯାଇଛି ।

ମାନସିକ କ୍ରିୟାକଳାପ ଅର୍ଥରେ କ୍ରିୟାତ୍ମକ ଶବ୍ଦ ବ୍ୟବହାର କରାଯାଇଛି । ଏଠାରେ ସୂଚନା ଦିଆଯାଇପାରେ ଯେ ସାତବର୍ଷରୁ ଏଗାର ବାର ବର୍ଷ ମଧ୍ୟରେ ପିଲାଟି ବାହ୍ୟ ଜଗତର ବସ୍ତୁସବୁକୁ ନେଇ ନିଜେ ପରୀକ୍ଷା ନିରୀକ୍ଷା କରେ । ତଦନୁସାରେ ନିଜର ମାନସିକ ଚିନ୍ତା ପ୍ରକଟ କରେ । ବାହାର ଘରେ କିପରି ଚେୟାରସବୁ ପକାଯିବା ଉଚିତ, ଶିଶୁକୁ ଏ ପ୍ରଶ୍ନଟି ପଚରାଯାଇପାରେ । ସାତବର୍ଷରୁ ଏଗାର ବାର ବର୍ଷ ମଧ୍ୟରେ ବସ୍ତୁଗତ କ୍ରିୟାତ୍ମକ (Concrete operation) ସୋପାନରେ ଗତି କରୁଥିବା ପିଲାଟି ଗୋଟିଏ ପ୍ରଣାଳୀରେ ଚେୟାରସବୁ ସଜାଇବ । ପୁଣି ଦ୍ୱିତୀୟ ପ୍ରଣାଳୀରେ ଚେୟାରସବୁ ସଜାଇବ । ଏହିପରି ଭାବରେ ଏକାଧିକ ପ୍ରଣାଳୀରେ ସଜାଇବା ପରେ ସେସବୁ ଦେଖି ନିଷ୍ପତ୍ତି ନେବ । କେଉଁ ପ୍ରଣାଳୀଟି ଅଧିକ ଆକର୍ଷଣୀୟ, ତାହା ସ୍ଥିର କରିବ । ଲକ୍ଷ୍ୟ କରିବାର କଥା ଯେ, ଚକ୍ଷୁ ସମକ୍ଷରେ ରହିଥିବା ବସ୍ତୁସବୁର କାରବାର ମାଧ୍ୟମରେ ସେ ସମସ୍ୟା ସମାଧାନ କରିବ ।

ଅନ୍ୟ ପକ୍ଷରେ ଏଗାର ବାରବର୍ଷ ପରେ କୈଶୋର ଅବସ୍ଥାକୁ ଗତି କରିଥିବା ପିଲାଟି ପିଆଜେଙ୍କ ଭାବଗତ କ୍ରିୟାତ୍ମକ (Formal Operation) ସୋପାନରେ ରହିଥିବ । ଚେୟାରସବୁକୁ ନଦେଖି ଓ ସ୍ପର୍ଶ ନକରି ସେ ମାନସିକ ସ୍ତରରେ ବିଭିନ୍ନ ସଜ୍ଜିତ ଦୃଶ୍ୟର କଳ୍ପନା କରିବ । ମନଶ୍ଚକ୍ଷୁରେ ସେ ବିଭିନ୍ନ ଦୃଶ୍ୟର ତୁଳନାତ୍ମକ ବିଚାର କରି ଉପଯୁକ୍ତ ଚେୟାର ସଜ୍ଜାଟି ନିର୍ବାଚନ କରିବ । ଲକ୍ଷ୍ୟ କରିବାର କଥା ଯେ ପିଲାଟି ଭାବନା ସ୍ତରରେ ସମସ୍ୟା ସମାଧାନ କରିବ । କୈଶୋର ଅବସ୍ଥାରୁ ଏପରି ଚିନ୍ତନର ପରିପକ୍ୱତା ଆସେ ଏବଂ ଏହା ଯୌବନ ସମୟରେ ଅବ୍ୟାହତ ରହେ ।

ଉପର ଆଲୋଚନା ଅନୁଯାୟୀ ଶିଶୁର ସାତବର୍ଷ ପରେ ସେ ବସ୍ତୁଜଗତରୁ ସୂଚନା ନେଇ ମାନସିକ ସ୍ତରରେ କାରବାର କରିଥାଏ । ଏ ଦୃଷ୍ଟିରୁ ପୂର୍ବବର୍ତ୍ତୀ ସୋପାନ (ଦୁଇ ବର୍ଷରୁ ସାତ ବର୍ଷ ବୟସ) ଏହି ତୃତୀୟ ସୋପାନ (Concrete Operation) ପାଇଁ ଏକ ପ୍ରସ୍ତୁତିପର୍ବ । ତୃତୀୟ ସୋପାନର ସାମର୍ଥ୍ୟସବୁ ପୂର୍ଣ୍ଣ ବିକଶିତ ହୋଇ ନ ଥିବାରୁ ଦ୍ୱିତୀୟ ସୋପାନକୁ ପିଆଜେ ପ୍ରାକ୍-କ୍ରିୟାତ୍ମକ (Pre-operation) ସୋପାନ ନାମରେ ଅଭିହିତ କରିଛନ୍ତି । ଅନ୍ୟଭାଷାରେ କହିଲେ ଇନ୍ଦ୍ରିୟ-କାରକ ସୋପାନ (Sensorimotor)ରୁ କ୍ରିୟାତ୍ମକ ସୋପାନ (Concrete operation)କୁ ଯିବାପାଇଁ ତୃତୀୟ ସୋପାନଟି ଏକ ସଂଯୋଗ ରକ୍ଷାକାରୀ ମଧ୍ୟବର୍ତ୍ତୀ (Transitional) ସୋପାନ । ଏ ପର୍ଯ୍ୟାୟରେ କେତେଗୁଡ଼ିଏ ବିଶେଷତ୍ୱ ରହିଛି । ପ୍ରତୀକ (Symbols) ସବୁର ପ୍ରୟୋଗ ଆରମ୍ଭ ହୁଏ । ଅହଂକେନ୍ଦ୍ରୀ ମନୋଭାବର ବିସ୍ତାର ହୁଏ ଏବଂ ପରେ ବିଲୟ ହୁଏ । ଦୀର୍ଘତା, ସଂଖ୍ୟା ଏବଂ ଅନ୍ୟ କେତୋଟି ସମ୍ପର୍କର ଅବଧାରଣାର ଉନ୍ମେଷ ଓ ବିକାଶ ଘଟେ । ଏ ସୋପାନଟି ସମ୍ପର୍କରେ ସବିଶେଷ ଧାରଣା ପାଇଁ ଏହାର ଦୁଇଟି ଉପସୋପାନ (Substages)କୁ ବୁଝିବା ଆବଶ୍ୟକ ହେବ । ଏହି ଉପସୋପାନ ଦୁଇଟି ହେଉଛି ପ୍ରତୀକ-ଉପଯୋଗ ଓ ସହଜ ବୁଦ୍ଧି ସୋପାନ ।

## ପ୍ରତୀକ-ଉପଯୋଗ ଉପସୋପାନ

ଶିଶୁର ଦୁଇବର୍ଷରୁ ଚାରିବର୍ଷ ମଧ୍ୟରେ ଶିଶୁ ପ୍ରତୀକସବୁର (Symbols) ବ୍ୟବହାର ଶିଖେ । କାଗଜରେ ପେନ୍‌ସିଲ କିମ୍ବା କଲମରେ ଅଙ୍କାବଙ୍କା ଗାରଟାଣି ଦେଇ "ଏ ମୋ ମା" କିମ୍ବା "ଏଇଟି ଆମ ଘର" ବୋଲି କହିପାରେ । ଅର୍ଥହୀନ ଗାର ମାଧ୍ୟମରେ ଅର୍ଥପୂର୍ଣ୍ଣ ବସ୍ତୁର ସୂଚନା ଦେବା ଏକାପ୍ରକାର ପ୍ରତୀକଧର୍ମୀ (Symbolic) କାରବାର । ସେହିପରି କଥା କହିବା ଏବଂ ଭାଷାରେ ବ୍ୟବହାର ମଧ୍ୟ ପ୍ରତୀକଧର୍ମୀ ବ୍ୟବହାର । ମା' ଶବ୍ଦଟି ମାଧ୍ୟମରେ ପ୍ରକୃତ ମା'କୁ ପ୍ରକାଶ କରିବାରେ ଶିଶୁର ପ୍ରତୀକ-ବ୍ୟବହାର ସାମର୍ଥ୍ୟ ପ୍ରକାଶ ପାଏ । ପୁଣି ଶିଶୁର ମିଛିମିଛିକା ଖେଳ ମଧ୍ୟ ଏ ସାମର୍ଥ୍ୟର ଅନ୍ୟତମ ଦୃଷ୍ଟାନ୍ତ ।

ଏ ସମସ୍ତ ସାମର୍ଥ୍ୟ ବିକଶିତ ହେଉଥିବା ସମୟରେ ଶିଶୁର ଦୁଇଟି ପରିସୀମିତ୍ୱ (Limitations) ପ୍ରକାଶ ପାଏ । ପ୍ରଥମଟି ହେଉଛି ଶିଶୁର ଅହଂକେନ୍ଦ୍ରୀ (Egocentric)

ଦୃଷ୍ଟିଭଙ୍ଗୀ । ଦୁଇ ବର୍ଷରୁ ଚାରିବର୍ଷ ବୟସ ସୀମାରେ ଶିଶୁ ଅନ୍ୟ ବ୍ୟକ୍ତିର ଦୃଷ୍ଟିଭଙ୍ଗୀ ଠିକ୍ ରୂପେ ବିଚାର କରିପାରେନାହିଁ । ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଠିଆ ହୋଇ ସାମନାରେ ଥିବା ଘରଟି ତାକୁ ଯେପରି ଦେଖାଯାଉଛି, ଅନ୍ୟମାନେ ବିଭିନ୍ନ ସ୍ଥାନରେ ଠିଆହେଲେ ସେମାନଙ୍କୁ ଭିନ୍ନ ଭିନ୍ନ ଦେଖାଯିବ ବୋଲି ସେ କଳ୍ପନା କରିପାରେ ନାହିଁ । ତାକୁ ଯେପରି ଦିଶୁଛି, ଅନ୍ୟମାନଙ୍କୁ ସେପରି ଦିଶୁଥିବ ବୋଲି ସେ ବିଚାର କରେ । ଏପରି ଶିଶୁର ବିଚାରଧାରାକୁ ନିମ୍ନ ସଂଳାପରୁ ଅନୁମାନ କରାଯାଇପାରେ ।

ବାପା – ଗୀତୁ ! ମା' ଘରେ ଅଛି ?

ଗୀତା – (ମୁଣ୍ଡ ହଲାଇ ହଁ କରିବା)

ବାପା – ମୁଁ ମା' ସହିତ ଟିକେ କଥାବାର୍ତ୍ତା କରନ୍ତି ।

ଗୀତା – (ମୁଣ୍ଡ ହଲାଇ ହଁ କରିବା)

ପ୍ରାକ୍–କ୍ରିୟାତ୍ମକ ସୋପାନର ତଳ ଉପର–ସୋପାନରେ ଥିବା ବାଳିକା (ଦୁଇବର୍ଷରୁ ଚାରିବର୍ଷ ବୟସ) ବାପାଙ୍କ ଦୃଷ୍ଟିକୋଣରୁ ମା'କୁ ପ୍ରତ୍ୟକ୍ଷଣ କରିବାର ସାମର୍ଥ୍ୟ ଦର୍ଶାଇବ ନାହିଁ । ଏପରି ସାମର୍ଥ୍ୟ ଥିଲେ ସେ କଥାକହି ଉତ୍ତର ଦିଅନ୍ତା କିମ୍ବା ମା'କୁ ଡାକିଆଣି ସାକ୍ଷାତର ପରିବେଶ ସୃଷ୍ଟି କରନ୍ତା । ଅବଶ୍ୟ ଏପରି ଅହଂକେନ୍ଦ୍ରୀ ଦୃଷ୍ଟିଭଙ୍ଗୀ ଦୃଢ଼ ହୋଇ ପୁଣି ଉପର ସୋପାନରେ ଦୁର୍ବଳ ହେବାକୁ ଆରମ୍ଭ କରେ । ଶିଶୁ ଅନ୍ୟମାନଙ୍କର ଦୃଷ୍ଟିଭଙ୍ଗୀ ପ୍ରତ୍ୟକ୍ଷଣ କରିପାରେ ।

ଦ୍ୱିତୀୟ ପରିସୀମିତ୍ୱ ହେଉଛି ନିର୍ଜୀବ ବସ୍ତୁସବୁରେ ସଜୀବର ଆରୋପଣ କରିବା (Animism)। ଗଛରୁ ପତ୍ରପଡ଼ିବା ଦେଖି ସେ ଭାବିପାରେ ଯେ ଗଛଟି ପତ୍ର ସବୁକୁ ତଳକୁ ଠେଲି ଦେଉଛି । ସେହିପରି ଗଡ଼ାଣିଆ ରାସ୍ତାରୁ ଓହ୍ଲାଇବା ସମୟରେ ସେ ହୁଏତ କହେ– "ରାସ୍ତା ମୋତେ ତଳକୁ ଠେଲି ଦେଉଛି ।" ଖେଳଣାସବୁକୁ ଜୀବନ୍ତ ମନେକରି ଅନୁରୂପ ବ୍ୟବହାର ଦର୍ଶାଇବା ଏ ଧରଣର ଅପରିପକ୍ୱତାର ସୂଚକ ।

## ସହଜ ବୁଦ୍ଧି ଉପସୋପାନ

ପ୍ରାକ୍–କ୍ରିୟାତ୍ମକ ସୋପାନର ଦ୍ୱିତୀୟ ଉପସୋପାନକୁ ପିଆଜେ (Intuitive thought sub-stage) ଆଖ୍ୟା ଦେଇଛନ୍ତି । ଏହି ସ୍ତରରେ ଶିଶୁଟିର ଯୁକ୍ତିକାରଣ ଦକ୍ଷତା (Reasoning Ability) ବିକଶିତ ହୋଇନଥାଏ । ମାନସିକ ହିସାବସବୁ ସେ ଭଲରୂପେ କରିପାରେ ନାହିଁ । ତଥାପି କିଛିଟା ନିଷ୍ପତ୍ତିରେ ସେ ପହଞ୍ଚିଯାଏ । ଏପରି ସମାଧାନ ସେ କିପରି ପାଇଲା, ତାହାର ଉତ୍ତର ସେ ଠିକ୍‌ରୂପେ ଯୁକ୍ତି କରି ପ୍ରକାଶ କରିପାରେ ନାହିଁ ।

ଏହି ସମୟରେ ଏକ ବିଶେଷ ପରିସୀମତ୍ୱ ହେଉଛି ଶିଶୁର କେନ୍ଦ୍ରିକତା (Centrism) ମନୋବୃତ୍ତି । ଗୋଟିଏ ବସ୍ତୁ ଓ ପରିବେଶର ଗୋଟିଏ ଦିଗପ୍ରତି ସେ ଅଭିନିବିଷ୍ଟ (Atten-tive) ହେଲେ ଅନ୍ୟସବୁ ଦିଗପ୍ରତି ତା'ର ଲକ୍ଷ୍ୟ ରହେ ନାହିଁ । ଗୋଟିଏ ମାତ୍ର ବୈଶିଷ୍ଟ୍ୟ ପ୍ରତି ତା'ର ଦୃଷ୍ଟି କେନ୍ଦ୍ରୀଭୂତ ରହେ । ଏକ ସମୟରେ ଗୋଟିଏ ବସ୍ତୁ ଯେ ଏକାଧିକ ପ୍ରକୃତିର

ଅଧିକାରୀ, ଏହାର ଭାବନା ତା' ମନରେ ସ୍ଥାନ ପାଏନାହିଁ । ଜଣେ ବ୍ୟକ୍ତି ଏକାସମୟରେ ମହିଳା ଓ ଶିକ୍ଷୟିତ୍ରୀ ହୋଇପାରନ୍ତି, ଏପରି ଭାବନା ସେ ସହଜରେ ଗ୍ରହଣ କରିପାରେ ନାହିଁ ।

ପରିବେଷ୍ଟର ଗୋଟିଏ ଦିଗ ବା ଗୋଟିଏ ବସ୍ତୁରେ ଶିଶୁର ଅଭିନିବେଶ (Attention) କେନ୍ଦ୍ରୀଭୂତ ହୋଇ ରହୁଥିବାରୁ ବିଭିନ୍ନ ଧାରଣାର ସଂରକ୍ଷଣରେ (Conservation) ଅସୁବିଧା ଉପୁଜେ । ପୂର୍ବରୁ ସୂଚନା ଦିଆଯାଇଛି ଯେ ଧାରଣାସବୁର ବିକାଶ ପାଇଁ ସଂରକ୍ଷଣ ସାମର୍ଥ୍ୟ ଆବଶ୍ୟକ । ଖଣ୍ଡେ ସୂତାକୁ ବିଭିନ୍ନ ପ୍ରକାରର (ଲମ୍ୱାକାର, ତ୍ରିଭୂଜାକାର, ତରଙ୍ଗାକାର ଇତ୍ୟାଦି) ରଖାଗଲେ ମଧ ଏହାର ଦୀର୍ଘତା ((Length) ଅପରିବର୍ତ୍ତିତ । ଏପରି ଚିନ୍ତାକରିବା ସଂରକ୍ଷଣ ସାମର୍ଥ୍ୟ (Conservition ability)ର ସୁଚକ । ମାତ୍ର ସଂରକ୍ଷଣ ସାମର୍ଥ୍ୟ ବିକଶିତ ହୋଇନଥିବାରୁ ଶିଶୁଟି ସୂତାର ଆକାର ଭେଦରେ ଦୀର୍ଘତାକୁ ମଧ ଭିନ୍ନ ଭିନ୍ନ କଳ୍ପନା କରେ । ମୋଟଉପରେ କେନ୍ଦ୍ରୀକରଣ ସଂରକ୍ଷଣ ସାମର୍ଥ୍ୟରୁ ମନ୍ଥର କରେ ।

ଏହାର ତାତ୍ପର୍ଯ୍ୟ ହେଉଛି ଯେ ଶିଶୁ ଦକ୍ଷତାର ଅଭିବୃଦ୍ଧି ପାଇଁ ତା'କୁ ଯଥେଷ୍ଟ ପରିମାଣରେ ଅଭିନିବେଶ (Attention) କୌଶଳ ଶିକ୍ଷା ଦେବାକୁ ହେବ । ଶିଶୁକୁ ସଂରକ୍ଷଣ ସାମର୍ଥ୍ୟ ଶିକ୍ଷା ଦେବା ସମୟରେ ଦେଖିବାକୁ ହେବ ଯେ ଶିଶୁ ପରିବେଶର ବିଭିନ୍ନ ଦିଗପ୍ରତି ସଚେତନ ହେଉଛି । ଚେୟାରସବୁ ବିଭିନ୍ନ ରଙ୍ଗର ହୋଇପାରେ, ଘରସବୁ ସାନ ବଡ଼ ହୋଇପାରେ ଏବଂ ଫଳସବୁ କଞ୍ଚା ପାଚିଲା ହୋଇପାରେ-ଏପରି ମୌଳିକ ଶିକ୍ଷା କେନ୍ଦ୍ରିକତ୍ୱ ତ୍ରୁଟିକୁ ସୁଧାରି ନିଏ । ଅଭିନିବେଶ କୌଶଳର ବିକାଶ ଶିଶୁର ବୌଦ୍ଧିକ ବିକାଶକୁ ତ୍ୱରାନ୍ୱିତ କରେ ବୋଲି ଅନେକ ମନୋବିଜ୍ଞାନୀ ପରାମର୍ଶ ଦେଇଛନ୍ତି ।

## ପ୍ରାକ୍-କ୍ରିୟାତ୍ମକ (୨ବର୍ଷରୁ ୭ ବର୍ଷ ବୟସ)ର ଉପସୋପାନ

| ଉପସୋପାନ | ବୈଶିଷ୍ଟ୍ୟ | ପରାମର୍ଶ |
|---|---|---|
| *ପ୍ରତୀକ ପ୍ରୟୋଗ ଉପସୋପାନ(୨ ବର୍ଷରୁ ୪ ବର୍ଷ ବୟସ)* | *ପ୍ରତୀକଧର୍ମୀ କାର୍ଯ୍ୟ : ଅଙ୍କାବଙ୍କା ଗାର ମାଧମରେ ବସ୍ତୁର ସୂଚନା, ମିଛିମିଛିକା ଖେଳ, ଭାଷାର ବ୍ୟବହାର ପରିସୀମତ୍ୱ: ଅହଂକେନ୍ଦ୍ରୀ ଭାବନା, ନିର୍ଜୀବବସ୍ତୁକୁ ସଜୀବ ମନେକରିବା* | *କଥାବାର୍ତ୍ତା ଓ ଭାଷା ସମେତ ପ୍ରତୀକଧର୍ମୀ ବ୍ୟବହାରକୁ ଉତ୍ସାହ ଦେବାକୁ ହେବ ।* |
| *ସହଜବୃଦ୍ଧିର ଉପସୋପାନ* | *ଯୁକ୍ତିଯୁକ୍ତ କାରଣ* | *ଶିଶୁଟିର କେନ୍ଦ୍ରିକତା* |

| | | |
|---|---|---|
| (୪ବର୍ଷରୁ ୭ ବର୍ଷ ବୟସ) | ନ ଦର୍ଶାଇ ସମସ୍ୟା ସମାଧନ କରିବା, କେନ୍ଦ୍ରିକତା (ବସ୍ତୁ ବା ପରିବେଶର ଗୋଟିଏ ମାତ୍ର ଦିଗପ୍ରତି ଅଭିନିବିଷ୍ଟ (Attentive) ହୋଇ ଅନ୍ୟ ସବୁଦିଗ ନ ଦେଖିବା) | (Centrism) ମନୋଭାବ ବିଭିନ୍ନ ଧାରଣା ଗଠନର ପ୍ରତିକୂଳ । ସୁତରାଂ ଶିଶୁ ଗୋଟିଏ ବସ୍ତୁ କିମ୍ବା ପରିବେଶର ବିଭିନ୍ନ ଦିଗପ୍ରତି ଯେପରି ଅଭିନିବିଷ୍ଟ ହେବ, ତାହାର ଯତ୍ନ ନିଅନ୍ତୁ । ଉଦାହରଣସ୍ୱରୂପ, ସଂଖ୍ୟାର ଧାରଣା (ଧରାଯାଉ ସଂଖ୍ୟା ୫) ଦେଲାବେଳେ ବିଭିନ୍ନ ପ୍ରକାରର ପାଞ୍ଚୋଟି ଜିନିଷ ଦେଖାନ୍ତୁ (୫ଟି ହାତୀ, ୫ଟି ବାଡ଼ି, ୫ଟି ଆତ ଇତ୍ୟାଦି) ସେହିପରି ଦୀର୍ଘତାର ଧାରଣା ଦେବା ପାଇଁ ଗୋଟିଏ ସୂତାକୁ ବିଭିନ୍ନ ଭାବରେ (ଲମ୍ୱେଇ, ବର୍ଗାକୃତି କରି, ତ୍ରିଭୁଜ ଆକାରରେ ଦେଖାଇବା । |

# ବୌଦ୍ଧିକ ବିକାଶ : ଦୁଇବର୍ଷରୁ ପାଞ୍ଚବର୍ଷ ପର୍ଯ୍ୟନ୍ତ

ଶିଶୁମାନଙ୍କର ଶିକ୍ଷା ଲାଳନପାଳନ ଦାୟିତ୍ୱରେ ଥିବା ବୟସ୍କମାନେ ବେଳେ ବେଳେ ଶିଶୁ ପାଖରେ ନିଜର ଅସହିଷ୍ଣୁ ଭାବ ପ୍ରକାଶ କରନ୍ତି । ଶିଶୁର ଅନ୍ତର୍ଜଗତର କେତୋଟି ଧାରାକୁ ନ ବୁଝିବା ଫଳରେ ଏପରି ଅସହିଷ୍ଣୁ ମନୋଭାବ ସୃଷ୍ଟି ହୁଏ । ମନେ କରାଯାଉ ଚାରିବର୍ଷ ବୟସର "ମିତା" ଆଇସ୍‌କ୍ରିମ ଖାଇବା ପାଇଁ ମା' ପାଖରେ ଜିଦ୍ କରୁଛି । ମା' କହୁଛି ଯେ ତା ପାଖରେ ପଇସା ନାହିଁ । ମିତାର ପ୍ରଶ୍ନ- "ଘରୁ ଆଲମାରିରୁ ପଇସା ଆଣିଲୁ ନାହିଁ କାହିଁକି ?" ଆଲମାରିରୁ ପଇସା ବାହାର କରିବାକୁ ହେଲେ ପ୍ରଥମେ ଯେ ପଇସା ରଖିବାକୁ ପଡ଼େ, ଏପରି ଧାରଣା କରିବା ମିତା ପକ୍ଷରେ ସମ୍ଭବ ନୁହେଁ ।

ପ୍ରକୃତରେ ବିକାଶର ଏକ ସ୍ୱତନ୍ତ୍ର ଧାରା ରହିଛି । ଶିକ୍ଷାଦୀକ୍ଷା ଓ ତାଲିମ ମାଧ୍ୟମରେ ଶିଶୁମାନଙ୍କର ବିକାଶକୁ ତ୍ୱରାନ୍ୱିତ କରାଯାଇ ପାରିବ । ମାତ୍ର ଏହା ସତ୍ୟ ଯେ, ବୟସ ସହିତ ସମତାଳ ରକ୍ଷା କରି ଶିଶୁର କେତେକ ନିର୍ଦ୍ଦିଷ୍ଟ ସାମର୍ଥ୍ୟ ବିକଶିତ ହୁଏ ଏବଂ କେଉଁ ବୌଦ୍ଧିକ ବିକାଶ ପରେ ଅନ୍ୟ କେଉଁଟି ଘଟିବ, ସେ ସମ୍ପର୍କରେ ଏକ ଧାରାବାହିକତା ମଧ୍ୟ ରହିଛି । ବିଶ୍ୱବିଖ୍ୟାତ ମନୋବିଜ୍ଞାନୀ ଜାଁ ପିଆଜେ ଏହି ତତ୍ତ୍ୱଟିକୁ ସ୍ପଷ୍ଟ କରିଥିଲେ ଏବଂ ତାଙ୍କର ମତବାଦ ସବୁ ଦେଶରେ ସ୍ୱୀକୃତି ଲାଭ କରିଛି । ଜାଁ ପିଆଜେ ସୁଇଜରଲାଣ୍ଡର ଅଧିବାସୀ ଥିଲେ ଏବଂ ନିଜର ପୁତ୍ର କନ୍ୟାମାନଙ୍କର ବ୍ୟବହାରକୁ ଗଭୀର ଭାବରେ ପର୍ଯ୍ୟବେକ୍ଷଣ କରି ଅନେକଗୁଡ଼ିଏ ସିଦ୍ଧାନ୍ତ ଦେଇଛନ୍ତି ।

ପିଆଜେଙ୍କ ମତରେ ଶିଶୁର ବୌଦ୍ଧିକ ବିକାଶର ଚାରୋଟି ନିର୍ଦ୍ଦିଷ୍ଟ ସ୍ତର ରହିଛି । ଏହି ସ୍ତରଗୁଡ଼ିକ କ୍ରମାନ୍ୱୟରେ ଆସିଥାଏ । ଜନ୍ମର ଦୁଇବର୍ଷ ମଧ୍ୟରେ ପ୍ରଥମ ସୋପାନଟି ସଂଘଟିତ ହୋଇଥାଏ । ଏହି ସୋପାନରେ ଶିଶୁ ମୁଖ୍ୟତଃ ନିଜର ଇନ୍ଦ୍ରିୟ ଏବଂ କାରକ ଉପରେ ନିୟନ୍ତ୍ରଣ ଶିକ୍ଷାକରେ । ଇନ୍ଦ୍ରିୟ ଓ କାରକର ସଂଯୋଗ ମାଧ୍ୟମରେ ଶିଶୁର କାର୍ଯ୍ୟକଳାପର ସାମର୍ଥ୍ୟ ପ୍ରତିଫଳିତ ହେଉଥିବାରୁ ଏହି ସ୍ତରକୁ ଇନ୍ଦ୍ରିୟ-କାରକ ବୁଦ୍ଧିମତ୍ତା କୁହାଯାଏ । ଏପରି ସାମର୍ଥ୍ୟ ହାସଲ କରିଥିବା ଶିଶୁ ନିଜେ ଇଚ୍ଛା କରୁଥିବା ଗୋଟିଏ ବସ୍ତୁକୁ ଦୁଇଟି ଅଙ୍ଗୁଳିରେ ଧରି ଉଠିଥାଏ । ମା' ଠିଆ ହୋଇଥିବା ସ୍ଥାନଟି ସହିତ ଦୃଷ୍ଟିଗତ ସମନ୍ୱୟ ରକ୍ଷା କରି ସେ ସ୍ଥାନକୁ ଗୋଡ଼ରେ ଚାଲିଯାଏ । ଇନ୍ଦ୍ରିୟ (ଚକ୍ଷୁ, କର୍ଣ୍ଣ ଇତ୍ୟାଦି) କାର୍ଯ୍ୟ ଓ କାରକ (ହାତ, ଗୋଡ଼, ପେଶୀ) ସବୁର କାର୍ଯ୍ୟ ମଧ୍ୟରେ ସମନ୍ୱୟ ଯେତେ ଅଧିକ, ଶିଶୁର ବୁଦ୍ଧିର ମାତ୍ରା ସେତେବେଶି ବୋଲି ଗ୍ରହଣ କରାଯାଏ ।

ବିକାଶର ଦ୍ୱିତୀୟ ସୋପାନଟିକୁ ପିଆଜେ ପ୍ରାକ୍-କ୍ରିୟାତ୍ମକ ବୋଲି କହୁଥିଲେ । ଦୁଇ ବର୍ଷରୁ ପାଞ୍ଚବର୍ଷ ମଧ୍ୟରେ ଏହି ବିକାଶଟି ସଂଘଟିତ ହୁଏ । ପାଞ୍ଚବର୍ଷ ପରେ ଶିଶୁ ନିଜର ଅନ୍ୱେଷଣ ଓ ନିଜର କ୍ରିୟା (ଅପରେସନ ) ଫଳରେ ଯେଉଁ ବୁଦ୍ଧିମତ୍ତା ଦର୍ଶାଏ, ତାହାର ପୂର୍ବପ୍ରସ୍ତୁତି ଏହି ବୟସସୀମା (୨ବର୍ଷରୁ ୫ ବର୍ଷ) ମଧ୍ୟରେ ଘଟୁଥିବାରୁ ପିଆଜେ ପ୍ରାକ୍-କ୍ରିୟାତ୍ମକ ସୋପାନ ନାମକରଣ କରିଛନ୍ତି । ଏ ପ୍ରାକ୍-କ୍ରିୟାତ୍ମକ ସୋପାନର କେତୋଟି ବୈଶିଷ୍ଟ୍ୟ ରହିଛି ।

ପ୍ରଥମତଃ ଶିଶୁର ଦୁଇବର୍ଷ ବେଳକୁ ସେ ତାର ପ୍ରଥମ ସୋପାନ ଅତିକ୍ରମ କରି ଦ୍ୱିତୀୟ ସୋପାନରେ ପଦାର୍ପଣ କଲାବେଳକୁ ସେ ବେଶ୍ କିଛି ଶାରୀରିକ ସମ୍ବଳ (ଯଥା: ଚାଲିବା) ହାସଲ କରିସାରିଥାଏ । ପୁଣି ବସ୍ତୁସବୁ ତାର ଚକ୍ଷୁର ଅନ୍ତରାଳରେ ରହିଥିଲେ ମଧ୍ୟ ସେସବୁ ବସ୍ତୁ ତିଷ୍ଠି ରହିଛି, ଏପରି ଧାରଣା ତା ମନରେ ଜନ୍ମଲାଭ କରେ । ପୂର୍ବରୁ ଏହିପରି ଧାରଣା ଶିଶୁ ମନରେ ସ୍ଥାନ ପାଉନଥିଲା । କୌଣସି ବସ୍ତୁ ତା' ଦୃଷ୍ଟିର ବାହାରକୁ ଚାଲିଗଲେ, ସେ ବସ୍ତୁର ଉପସ୍ଥିତି ସମ୍ପର୍କରେ ଶିଶୁ ମନରେ କୌଣସି ଭାବନା ନଥିଲା । ମାତ୍ର ଏବେ ସେ ଭାବିବାକୁ ଆରମ୍ଭ କରେ ଯେ ମା' ତା ପାଖରେ ନଥିଲେ ମଧ୍ୟ ଅନ୍ୟତ୍ର ରହିଛନ୍ତି ।

ଦ୍ୱିତୀୟତଃ ପ୍ରାକ୍-କ୍ରିୟାତ୍ମକ ସୋପାନରେ ଅନ୍ୟ ଏକ ବୈଶିଷ୍ଟ୍ୟ ହେଉଛି ଶିଶୁର ଆତ୍ମକୈନ୍ଦ୍ରିକ ପ୍ରତ୍ୟକ୍ଷ । ବସ୍ତୁସବୁ ଶିଶୁକୁ ଯେପରି ଦେଖାଯାଉଛି, ଅନ୍ୟମାନଙ୍କୁ ମଧ୍ୟ ସେହିପରି ଦେଖାଯାଉଛି ବୋଲି ଶିଶୁ ଭାବିଥାଏ । ଅନ୍ୟମାନେ ଭିନ୍ନ ଭିନ୍ନ ସ୍ଥାନରେ ଠିଆ ହୋଇଥିବାରୁ ବସ୍ତୁଟିକୁ ଭିନ୍ନ ଭିନ୍ନ ଭାବରେ ଦେଖିଥାଇ ପାରନ୍ତି, ଏପରି ଧାରଣା ଶିଶୁ ମନରେ ସ୍ଥାନ ପାଇନଥାଏ । ଶିଶୁ ଠିଆ ହୋଇଥିବା ସ୍ଥାନରୁ ଖଟଟିର ଗୋଟିଏ କୋଣ ଦେଖାଯାଉଥିଲେ ଅନ୍ୟମାନେ ମଧ୍ୟ ଖଟଟିର ଗୋଟିଏ କୋଣ ଦେଖୁଛନ୍ତି ବୋଲି ଶିଶୁଟି ଅନୁଭବ କରେ । ଶିଶୁର ଏପରି ଅନୁଭବ ଆତ୍ମକୈନ୍ଦ୍ରିକ ହେଲେ ମଧ୍ୟ ସାମାଜିକ ପରିପ୍ରେକ୍ଷୀରେ ଶିଶୁ ଅନ୍ୟର ଦୃଷ୍ଟିଭଙ୍ଗୀ ବୁଝିପାରିଥାଏ । ଦୃଷ୍ଟାନ୍ତ ସ୍ୱରୂପ, ଅନ୍ୟ ଗୋଟିଏ ପିଲାର କ୍ଷତଟି ହୋଇ ସେ କାନ୍ଦୁଥିଲେ ଶିଶୁଟି ତାକୁ ଦେଖି ନିଜର ସମବେଦନା ଜଣାଏ ।

ତୃତୀୟତଃ ଶିଶୁ ବିକାଶର ଏହି ସୋପାନରେ ଶିଶୁର ଗୋଟିଏ ଅସାମର୍ଥ୍ୟ ହେଉଛି ଯେ, ସେ ମାନସିକ ସ୍ତରରେ କେତେକ ଅବସ୍ଥାର ପରିବର୍ତ୍ତନ ଦେଖିଲେ ମଧ୍ୟ ପରିବର୍ତ୍ତନର ପୂର୍ବ ଅବସ୍ଥାଟି କଳ୍ପନା କରିବା ତା ପକ୍ଷରେ ସହଜସାଧ୍ୟ ହୋଇ ନଥାଏ । ଉଦାହରଣ ସ୍ୱରୂପ ଧାଡ଼ି ଧାଡ଼ି କରି ରଖାଯାଇଥିବା ମାଳିଗୁଡ଼ିକ ଘୁଞ୍ଚାଇ ଆଣି ତାକୁ ଗୋଟିଏ ସ୍ଥାନରେ ଉଚ୍ଚକରି ଜମା କରି ଦିଆଯାଇପାରେ । ମାତ୍ର ବର୍ତ୍ତମାନ ବନ୍ଧପରି ଜମା ହୋଇଥିବା ମାଳିସବୁ ଯେ ଧାଡ଼ି ଧାଡ଼ି ହୋଇ ରହିଥିଲା, ସେ କଥା ଶିଶୁ ନିଜ ମନରେ କଳ୍ପନା କରିପାରେ ନାହିଁ । ବର୍ତ୍ତମାନ ଜମା ହୋଇଥିବା ମାଳିସବୁର ପୂର୍ବବସ୍ଥା କଣ ଥିଲା, ଏହି ମାନସିକ କଳ୍ପନା ଏହି ବୟସରେ ସମ୍ଭବ ହୋଇ ନଥାଏ ।

ପରିଶେଷରେ କୁହାଯାଇ ପାରେ ଯେ, ଦୁଇବର୍ଷରୁ ପାଞ୍ଚବର୍ଷ ମଧ୍ୟରେ ଶିଶୁ କାର୍ଯ୍ୟ ଓ କାରଣ ମଧ୍ୟରେ ଏକ ସରଳ ଓ ଭୌତିକ ସମ୍ପର୍କ ଦେଖେ । ଛବି ତାକୁ ଗୋଟିଏ ଲଜେନ୍ସ ଦେଇଛି, ତେଣୁ ଛବି ଭଲ ପିଲା । ବାବି ତାକୁ ଲଜେନ୍ସ ଦେଇନାହିଁ, ତେଣୁ ସେ ଖରାପ ପିଲା । ଏପରି ଭାବଧାରାରେ ଶିଶୁ ପରିଚାଳିତ ହୁଏ । ବେଳେ ବେଳେ କାର୍ଯ୍ୟକାରିତା ମଧ୍ୟରେ ଭିନ୍ନ ସମ୍ପର୍କ ଦେଖିଲେ ସେ ଅଡୁଆ ଅନୁଭବ କରେ । ଶିଶୁ ଯାଉଥିବା ନର୍ସରୀ ସ୍କୁଲରେ କେବଳ ଦିଦି (ଶିକ୍ଷୟିତ୍ରୀ) ମାନଙ୍କୁ ନିର୍ଦ୍ଦିଷ୍ଟ ଭୂମିକାରେ ଦେଖେ । ଦୂରଦର୍ଶନର କାର୍ଯ୍ୟକ୍ରମରେ କୌଣସି ପୁରୁଷ-ଶିକ୍ଷକଙ୍କୁ ଛୋଟ ପିଲାଙ୍କ ସ୍କୁଲ ପରିସର ମଧ୍ୟରେ ଦେଖିଦେଲେ ଶିଶୁଟି ଅଡୁଆ ଅନୁଭବ କରେ । ଏଠାରେ ଦିଦି ରହିବା କଥା ବୋଲି ସେ ପ୍ରକାଶ କରେ । ମୂଳତଃ ପ୍ରାକ୍-କ୍ରିୟାତ୍ମକ ସ୍ତରରେ ଶିଶୁ ନିଜର ପରିବେଶକୁ ପରଖି ନେବାରେ ଯେଉଁ ପ୍ରସ୍ତୁତି ଆରମ୍ଭ କରେ, ବୟସ୍କମାନଙ୍କ ଦୃଷ୍ଟିକୋଣରୁ ଏଥିରେ ଶିଶୁ-ସୁଲଭ ତ୍ରୁଟି ବିଚ୍ୟୁତି ରହିଥାଏ । ମାନସିକ ସ୍ତରରେ ପିତାମାତା, ଶିକ୍ଷକ ଶିକ୍ଷୟିତ୍ରୀ ଓ ବୟସ୍କମାନେ ଶିଶୁର ଏପରି ପରିସୀମତ୍ୱକୁ ନ ବୁଝିଲେ ଅବାସ୍ତବ ପ୍ରତ୍ୟାଶା ନେଇ ସେମାନଙ୍କର ଅସହିଷ୍ଣୁ ମନୋଭାବ ପ୍ରକାଶ ପାଇବାର ସମ୍ଭାବନା ଅଛି । ଏ ଦୃଷ୍ଟିରୁ ବୟସ୍କମାନଙ୍କୁ ଯଥେଷ୍ଟ ସତର୍କତା ଅବଲମ୍ବନ କରିବାକୁ ହେବ ।

# ବୌଦ୍ଧିକ ବିକାଶ : ସଂଖ୍ୟା ସମ୍ପର୍କରେ ଧାରଣା

ଅଳ୍ପ ବୟସର ଶିଶୁକୁ ଅଙ୍କ ଶିଖାଉଥିବା ବୟସ୍କଜଣକ ବାରମ୍ବାର ଧୈର୍ଯ୍ୟ ହରାନ୍ତି । ଦୁଇଟି ଆମ୍ବ ସହିତ ଆଉ ଦୁଇଟି ଆମ୍ବ ମିଶିଲେ ଚାରୋଟି ଆମ୍ବ ହେବ ବୋଲି ବୁଝାଇସାରିବା ପରେ ସେ ଶିଶୁକୁ ପ୍ରଶ୍ନ କରନ୍ତି–ଦୁଇଟି ପିଲା ସହିତ ଆଉ ଦୁଇଟି ପିଲା ମିଶିଲେ କେତୋଟି ପିଲା ହେବ ? ଶିଶୁଟି ଏପଟ ସେପଟ ଚାହେଁ । ବୟସ୍କଜଣକ ବିରକ୍ତ ହୁଅନ୍ତି । ହୁଏତ ରାଗରେ ଦୁଇ ଚାପଡ଼ା ମାରନ୍ତି । ମାତ୍ର ବୟସ୍କଜଣକ ବୁଝିପାରନ୍ତି ନାହିଁ ଯେ, ଶିଶୁ ସଂଖ୍ୟା ସମ୍ପର୍କରେ ଧାରଣା କରିବାକୁ ସମର୍ଥ ହୋଇନାହିଁ । ସଂଖ୍ୟା 'ଦୁଇ' ଯେ, ଆମ୍ବଠାରୁ ଓ ପିଲାଠାରୁ ଭିନ୍ନ, ଏକଥା ସ୍ପଷ୍ଟ ରୂପେ ଧାରଣା କରିପାରେ ନାହିଁ । ଚାରିପାଞ୍ଚ ବର୍ଷ ବେଳକୁ ସଂଖ୍ୟା ସମ୍ପର୍କରେ ଧାରଣାର ଉନ୍ମେଷ ହୁଏ । ଧାରଣା କରିବାର ପ୍ରକୃତ ଅର୍ଥ ହେଉଛି କୌଣସି ଏକ ଧାରଣାର ସଂରକ୍ଷଣ । ସଂରକ୍ଷଣ (Conservation) କଥାଟିକୁ ଠିକ୍‌ଭାବରେ ବୁଝିବାକୁ ହେବ । ବାହାରେ ଯେପରି ଦେଖାଯାଉଛି, ତା' ଦ୍ୱାରା ପୂରାପୂରି ପ୍ରଭାବିତ ନହୋଇ ମୂଳ ଧାରଣାଟିକୁ ବଜାୟ ରଖିବା ହେଉଛି ସଂରକ୍ଷଣ । ଉଦାହରଣସ୍ୱରୂପ କୁହାଯାଇପାରେ ଯେ, ଦୁଇଟି ପିମ୍ପୁଡ଼ି, ଦୁଇଟି ହାତୀ, ଦୁଇଟି ଅଙ୍ଗୁର, ଏକ ନିର୍ଦ୍ଦିଷ୍ଟ ଧାରଣା । ସଂଖ୍ୟା ହିସାବରେ ଏହା ଅଶ୍ୱ, ହାତୀ, ମଣିଷ ଇତ୍ୟାଦିଠାରୁ ମୁକ୍ତ । ବସ୍ତୁ ବା ବସ୍ତୁନାମ ଦ୍ୱାରା ପ୍ରଭାବିତ ନହୋଇ 'ଦୁଇ'କୁ ସଂଖ୍ୟା ରୂପେ ଅବଧାରଣା କରିପାରୁଥିଲେ ସଂଖ୍ୟା ସମ୍ପର୍କରେ ଧାରଣାର ସଂରକ୍ଷଣ ହୋଇଛି ବୋଲି କୁହାଯିବ । ଠିକ୍ ସେହିପରି ନିର୍ଦ୍ଦିଷ୍ଟ ଦୈର୍ଘ୍ୟର ସୂତାକୁ ବୃତ୍ତାକାର ରଖାଯାଇପାରେ, ପୁଣି ଏହି ସୂତାକୁ ତ୍ରିକୋଣାକାର କରି ରଖାଯାଇପାରେ । ପରେ ପୁଣି ଏହାକୁ ତରଙ୍ଗାୟିତ ଭାବରେ ରଖାଯାଇପାରେ। ଏସବୁ ବାହ୍ୟିକ ପରିବର୍ତ୍ତନ ସତ୍ତ୍ୱେ ଶିଶୁ ଏହାକୁ ସମାନ ଦୈର୍ଘ୍ୟର ସୂତା ବୋଲି ଅବଧାରଣା କରିପାରୁଥିଲେ ଶିଶୁର ଦୈର୍ଘ୍ୟ ସମ୍ପର୍କରେ ସଂରକ୍ଷଣ ସାମର୍ଥ୍ୟ ଆସିଛି ବୋଲି କୁହାଯିବ । ଠିକ୍ ସେହିପରି ନିର୍ଦ୍ଦିଷ୍ଟ ପରିମାଣର କାଦୁଅ ନେଇ ତାକୁ ବିଭିନ୍ନ ଆକାର ଦିଆଯାଇପାରେ । ମାଟି କାଦୁଅରେ–ଏକ ଚଟକା ଥାଳୀ କଲାପରେ ତାହାକୁ ବଦଳାଇ ଶିଶୁର ଆଖି ସାମ୍ନାରେ ଅନ୍ୟ ଗୋଟିଏ ପାତ୍ର କରାଯାଇପାରେ । ଏହାର ବାହ୍ୟିକ ପରିବର୍ତ୍ତନ ସତ୍ତ୍ୱେ ଶିଶୁ ପ୍ରତିଟି ପାତ୍ର ସମାନ ପରିମାଣର ମାଟିକାଦୁଅକୁ ନେଇ ନିର୍ମିତ, ଏପରି ଭାବଧାରା ଜନ୍ମିଥିଲେ ସଂରକ୍ଷଣ ପ୍ରତିଷ୍ଠିତ ହୋଇଛି ବୋଲି ଧରାଯିବ । ମୋଟ ଉପରେ ଧାରଣାର ସଂରକ୍ଷଣ ପ୍ରତିଷ୍ଠିତ ହୋଇଥିଲେ ସେ ସମ୍ପର୍କରେ ଧାରଣା ହୋଇଛି ବୋଲି ବିଚାର କରାଯିବ ।

ସଂଖ୍ୟା ସମ୍ପର୍କରେ ଧାରଣା କ୍ଷେତ୍ରରେ ମଧ୍ୟ ସଂରକ୍ଷଣ ସାମର୍ଥ୍ୟଟି ଗୁରୁତ୍ୱପୂର୍ଣ୍ଣ । ପ୍ରାଥମିକ ଅବସ୍ଥାରେ ଗୋଟିଏ ସହିତ ଗୋଟିଏ ମିଳାଇ ଶିଶୁ ନିଜର ପରିବେଶରେ କ୍ରିୟାତ୍ମକ ଅନ୍ୱେଷଣ ଆରମ୍ଭ କରେ । ଧରାଯାଉ, ଦଶଟି ଆମ୍ବକୁ ଗୋଟିଏ ଧାଡ଼ିରେ ରଖିଦିଆଗଲା । ଏକା ପରିମାଣର ଆମ୍ବ ରଖିବାକୁ ଶିଶୁଟିକୁ କୁହାଗଲା । ପ୍ରଥମେ ଶିଶୁ ପ୍ରଥମ ଧାଡ଼ିର ପ୍ରଥମ ଆମ୍ବ ସାମ୍ନାରେ ଗୋଟିଏ ଆମ୍ବ, ଦ୍ୱିତୀୟ ଆମ୍ବ ସାମ୍ନାରେ ଆଉ ଗୋଟିଏ ଆମ୍ବ ଏବଂ ଏହିପରି ସଜାଇ ସଜାଇ କରି ଚାଲିଯିବ ।

ବର୍ତ୍ତମାନ ଧରାଯାଉ ପ୍ରଥମ ଧାଡ଼ିଟି ଅପରିବର୍ତ୍ତିତ ରଖି ଦ୍ୱିତୀୟ ଧାଡ଼ିର ଆମ୍ବସବୁକୁ ଦୂରେଇ ଦୂରେଇ ରଖାଗଲା । ଶିଶୁର ଆଖି ସାମ୍ନାରେ ଏପରି କରାଗଲା । "କେଉଁ ଧାଡ଼ିରେ ବେଶି ଆମ୍ବ ରହିଛି ? କେଉଁ ଧାଡ଼ିର ଆମ୍ବ ତୁମେ ନେବ ?" ଏପରି ପ୍ରଶ୍ନ ପଚରାଗଲେ ପ୍ରାକ୍-କ୍ରିୟାତ୍ମକ ସ୍ତରର ରହିଥିବା ଦୁଇତିନିବର୍ଷର ଶିଶୁଟି ଦ୍ୱିତୀୟ ଧାଡ଼ିରେ ଅଧିକ ଆମ୍ବ ଅଛି ବୋଲି କହିବ । ଏଠାରେ ଲକ୍ଷ୍ୟ କରିବାର କଥା ଯେ, ଶିଶୁଟିର ସଂଖ୍ୟା ସମ୍ପର୍କରେ ଧାରଣା ପ୍ରତିଷ୍ଠିତ ହୋଇନାହିଁ । ସଂଖ୍ୟା ସମ୍ପର୍କୀୟ ସଂରକ୍ଷଣ ସାମର୍ଥ୍ୟ ଆସିନାହିଁ । ସଂଖ୍ୟାର ଧାରଣା ପୂର୍ବରୁ ଦୀର୍ଘତାର ଧାରଣା ଆସିଥିବାରୁ ଅଧିକ ଲମ୍ବ ଧାଡ଼ିରେ ଅଧିକ ଆମ୍ବ ରହିଛି ବୋଲି ଶିଶୁ ମନେକରୁଛି । ମାତ୍ର ପାଞ୍ଚ ଛ' ବର୍ଷ ବେଳକୁ ଶିଶୁର ସଂରକ୍ଷଣ ସାମର୍ଥ୍ୟ ଆସିଥାଏ । ଏ ବୟସର ଶିଶୁ ଅନୁଭବ କରେ ଯେ, ଧାଡ଼ି ଦୁଇଟିର ଦୀର୍ଘତା ଭିନ୍ନ ହେଲେ ମଧ୍ୟ ଆମ୍ବର ସଂଖ୍ୟା ସମାନ । ଆମ୍ବର ସଜାକରଣରେ ଅନ୍ୟସବୁ ଜଟିଳ ଧରଣର ରୂପାନ୍ତର କରାଯାଇପାରେ । ମାତ୍ର ସଂରକ୍ଷଣ ସାମର୍ଥ୍ୟଲାଭ କରିଥିବା ଶିଶୁ ଏସବୁ ପରିବର୍ତ୍ତନ ସତ୍ତ୍ୱେ ସମାନ ଆମ୍ବ ରହିଛି ବୋଲି ପ୍ରତ୍ୟକ୍ଷଣ କରିଥାଏ ।

ଉପର ଆଲୋଚନାରୁ ପିତାମାତା ଓ ଶିଶୁର ଯତ୍ନକାରୀମାନଙ୍କ ପ୍ରତି ଦୁଇଟି ପରାମର୍ଶ ସ୍ପଷ୍ଟ । ପ୍ରଥମତଃ ପ୍ରାକ୍-ବିଦ୍ୟାଳୟ (ଚାରିପାଞ୍ଚ ବର୍ଷ) ପୂର୍ବରୁ ସଂଖ୍ୟା ସମ୍ପର୍କରେ ସ୍ପଷ୍ଟ ଧାରଣା ପିଲାମାନଙ୍କଠାରୁ ଆଶା କରିବା ଉଚିତ୍ ହେବନାହିଁ । ଅବଶ୍ୟ ଏପରି କମ୍ ବୟସର ପିଲାମାନେ "ବେଶି" ଓ "ଅଳ୍ପ"ର ଅର୍ଥ ବୁଝିଥାନ୍ତି । ପ୍ରାକ୍-ବିଦ୍ୟାଳୟ ସ୍ତରରେ ସଂଖ୍ୟା ସମ୍ପର୍କୀୟ ଧାରଣା ପ୍ରକାଶିତ ରୂପ ନିଏ । ଦ୍ୱିତୀୟତଃ ଶିଶୁର ସଂଖ୍ୟା ସମ୍ପର୍କୀୟ ସଂରକ୍ଷଣ ସାମର୍ଥ୍ୟ ବୃଦ୍ଧି କରିବାକୁ ବହୁ ବୈଷମ୍ୟପୂର୍ଣ୍ଣ ଉଦାହରଣ ଦେବେ । ଉଦାହରଣସ୍ୱରୂପ, "ଦୁଇ"ର ଧାରଣା ଦେବା ପାଇଁ ଦୁଇଟି ପିଳୁଳି, ଦୁଇଟି ହାତ, ଦୁଇଟି ନଦୀ, ଦୁଇଟି ଗଛ ଇତ୍ୟାଦିର ଉଦାହରଣ ବା ଚିତ୍ର ଦେବେ । କେବଳ ଦୁଇଟି ଆମ୍ବ କିମ୍ବା ଦୁଇଟି ଆତ, ଦୁଇଟି ପିଜୁଳି ଓ ଦୁଇଟି କଦଳୀ ଦେଖାଇଲେ ସଂଖ୍ୟାର ଧାରଣ ସହିତ "ଫଳ"ର ଧାରଣା ମିଶାମିଶି ହୋଇଯିବ । ଏ ଦୃଷ୍ଟିରୁ ସଂଖ୍ୟା ସମ୍ପର୍କରେ ଧାରଣା ଦେଲାବେଳେ ଆଲୋଚିତ ସତର୍କତାଗୁଡ଼ିକ ଅବଲମ୍ବନ କରାଯିବା ଉଚିତ ।

# ଶିଶୁ ବିଭାଗୀକରଣ ଶିକ୍ଷାକରେ କେଉଁ ପର୍ଯ୍ୟାୟରେ ?

ପୂର୍ବରୁ ସୂଚନା ଦିଆଯାଇଛି ଯେ ଶିଶୁର ବୌଦ୍ଧିକ ବିକାଶ କେତୋଟି ନିର୍ଦ୍ଦିଷ୍ଟ ସୋପାନ ଦେଇ ଗତି କରିଥାଏ । ବିଶ୍ୱବିଖ୍ୟାତ ମନୋବିଜ୍ଞାନୀ ଜାଁ ପିଆଜେ ଏହି ସୋପାନଗୁଡ଼ିକର କ୍ରମାନ୍ୱୟତା ଏବଂ ବୈଶିଷ୍ଟ୍ୟ ଖୁବ୍ ସ୍ୱଷ୍ଟଭାବରେ ସୂଚାଇଛନ୍ତି । ପୂର୍ବ ଆଲୋଚନାରେ ଉଲ୍ଲେଖ କରାଯାଇଛି ଯେ, ଜନ୍ମରୁ ଦୁଇବର୍ଷ ମଧ୍ୟରେ ଶିଶୁର ବୁଦ୍ଧିମତ୍ତା ତାହାର ଇନ୍ଦ୍ରିୟ (ସେନ୍ସ ଅର୍ଗାନ) ଏବଂ କାରକ (ମୋଟର ଅର୍ଗାନ) ମାଧ୍ୟମରେ ପ୍ରକାଶ୍ୟ ରୂପ ନେଇଥାଏ । ଇନ୍ଦ୍ରିୟ ଓ କାରକର ସମନ୍ୱୟ ରକ୍ଷାକରି ଶିଶୁ କେତେକ କାର୍ଯ୍ୟମାଧ୍ୟମରେ ନିଜର ବୁଦ୍ଧିମତ୍ତା ଦର୍ଶାଏ ।

ଏହି ସୋପାନର ପରବର୍ତ୍ତୀ ପର୍ଯ୍ୟାୟରେ ଶିଶୁ ନିଜ ପରିବେଶରେ ଥିବା ବସ୍ତୁସବୁ ସହିତ କାରବାର ଆରମ୍ଭ କରେ । ଏପରି କାରବାର ସମୟରେ ଶିଶୁ ନିଜର ବୁଦ୍ଧିମତ୍ତା ପ୍ରକାଶ କରୁଥିବାରୁ ପିଆଜେ ଏହି ସୋପାନକୁ (ଦୁଇବର୍ଷ ବୟସରୁ ସାତବର୍ଷ ପର୍ଯ୍ୟନ୍ତ) ପ୍ରାକ୍-କ୍ରିୟାତ୍ମକ (ପ୍ରି-ଅପରେସନାଲ) ସ୍ତର ରୂପେ ନାମକରଣ କରିଛନ୍ତି । ଏହି ସ୍ତରର ଆରମ୍ଭ ସମୟରେ କେତେକ ବସ୍ତୁକୁ ମାନସିକ ସ୍ତରରେ କଳ୍ପନା କରିବାର ସାମର୍ଥ୍ୟ ଶିଶୁର ନଥାଏ । ଏହାକୁ ଗୋଟିଏ ସ୍ୱଷ୍ଟ ଉଦାହରଣ ଦ୍ୱାରା ପ୍ରାଞ୍ଜଳ କରାଯାଇପାରେ । ଧରାଯାଉ, ପ୍ରତିଟି ପିଙ୍ଗୁଳି ଅନ୍ୟ ପିଙ୍ଗୁଳିଠାରୁ ଅଳ୍ପ ଦୂରରେ ରହିଛି ଏବଂ ଏହିପରି ସାତଆଠଗୋଟି ପିଙ୍ଗୁଳି ରହିଛି । ବର୍ତ୍ତମାନ ଏହି ପିଙ୍ଗୁଳିସବୁକୁ ଦୂରେଇ ଦୂରେଇ ରଖାଗଲେ ଧାଡ଼ିଟି ଅଧିକ ଲମ୍ବ ହେବ । ଶିଶୁର ଉପସ୍ଥିତିରେ ଏବଂ ଶିଶୁର ଆଖିଆଗରେ ଏସବୁ ପରିବର୍ତ୍ତନ କରାଗଲେ ମଧ୍ୟ ସମାନ ସଂଖ୍ୟକ ପିଙ୍ଗୁଳି ରହିଛି ବୋଲି ଶିଶୁ କଳ୍ପନା କରିପାରେ ନାହିଁ । ପିଙ୍ଗୁଳିର ଧାଡ଼ିଟି ବଢ଼ିଯାଉଥିବାରୁ ସେ ଏହି ପ୍ରକ୍ରିୟାକୁ ମନମଧ୍ୟରେ ପୂର୍ବସ୍ଥିତିକୁ ଫେରାଇନେଇ ସାମାନ୍ୟସଂଖ୍ୟକ ପିଙ୍ଗୁଳିର କଳ୍ପନା କରିପାରେ ନାହିଁ ।

ଏହି ପ୍ରାକ୍-କ୍ରିୟାତ୍ମକ ସୋପାନରେ ଶେଷଆଡ଼କୁ ଶିଶୁ ବସ୍ତୁସବୁକୁ ତା' ମାନସିକ ସ୍ତରରେ ସୂଚିତ କରିବାର ସାମର୍ଥ୍ୟ ଲାଭକରେ । ଅବଶ୍ୟ ଏ କ୍ଷେତ୍ରରେ ମଧ୍ୟ ସେ ଆଖିରେ ଦେଖିଥିବା ଏବଂ ଦେଖୁଥିବା ଘଟଣାର ମାନସିକ କଳ୍ପନା କରେ । ଚାରିପାଞ୍ଚବର୍ଷ ବେଳକୁ ଶିଶୁର ବୌଦ୍ଧିକ ବିକାଶର ଏକ ପରିପ୍ରକାଶ ରୂପେ ତାହାର ବିଭାଗୀକରଣ କ୍ରିୟା ଆରମ୍ଭ ହୁଏ । ଏକ ନିର୍ଦ୍ଦିଷ୍ଟ ରଂଗର ବସ୍ତୁକୁ ଏକାଠି ରଖିବାର କ୍ରିୟାକଳାପ ପ୍ରକାଶ ପାଏ । ବସ୍ତୁର

ରଂଗ ଶିଶୁର ଦୃଷ୍ଟିକୁ ଅଧିକ ଆକର୍ଷଣ କରୁଥିବାରୁ ଶିଶୁ ପ୍ରଥମେ ରଂଗର ଧାରଣାଟି ଦ୍ୱାରା ପ୍ରଭାବିତ ହୁଏ । ଶିଶୁକୁ ବିଭିନ୍ନ ରଂଗର କାଠିସବୁ ଦିଆଗଲେ ସେ ଲାଲରଂଗର କାଠିକୁ ଏକାଠି କରିବା ଏବଂ କଳାରଂଗର କାଠିକୁ ଏକାଠି କରିବାର ଉପକ୍ରମ କରେ ।

ପ୍ରାକ୍-କ୍ରିୟାତ୍ମକ ସୋପାନ ଅତିକ୍ରମକରି ଶିଶୁ ସାତବର୍ଷ ବୟସରେ କ୍ରିୟାତ୍ମକ ପର୍ଯ୍ୟାୟରେ ପାଦଦିଏ । ଏହି ସମୟରେ ଶିଶୁର ବିଭାଗୀକରଣ-କାର୍ଯ୍ୟ ଆଉ ଏକ ରୂପନିଏ । ଗୋଟିଏ ରଂଗର ବସ୍ତୁସବୁକୁ ଏକାଠି କରି ସେଗୁଡ଼ିକ ଗୋଟିଏ ପରିବାରର ସଭ୍ୟସବୁ ବୋଲି ଶିଶୁ ବିଚାରକରେ । "ଏମାନେ ସମସ୍ତେ ମୋର ସାଙ୍ଗ ଏବଂ ମୋ ସହିତ ସ୍କୁଲକୁ ଯିବେ" ଏହିପରି କହି ଶିଶୁ ହୁଏତ ଏସବୁ ଏକାରଙ୍ଗର ବସ୍ତୁକୁ ଅନ୍ୟ ଗୋଟିଏ ସ୍ଥାନ ବା ଘରକୁ ନେଇଯାଏ । ଏପରି ମିଛି ମିଛିକା ଖେଳ ମାଧ୍ୟମରେ ଶିଶୁ ବିଭାଗୀକରଣ (ଯଥା- ଲାଲ ରଂଗର କାଠିସବୁ ଗୋଟିଏ ପରିବାରର) ଏବଂ ସେ ସମ୍ପର୍କୀୟ ମାନସିକ କଳ୍ପନା ପ୍ରକାଶ କରେ ।

ପରବର୍ତ୍ତୀ ସ୍ତରରେ ଶିଶୁ ଏକାଧିକ ଧାରଣାକୁ ଆଶ୍ରୟ କରି ବିଭାଗୀକରଣ କରିପାରେ । ମନେ କରାଯାଉ ଅଳ୍ପବୟସର ଗୋଟିଏ ଶିଶୁକୁ ତିନୋଟି ଲାଲ ରଂଗର ବସ୍ତୁ, ତିନୋଟି ନୀଳ ରଂଗର ଓ ତିନୋଟି ଧଳାରଂଗର ବସ୍ତୁ ଦିଆଗଲା । ପ୍ରତି ରଂଗର ବସ୍ତୁ ମଧ୍ୟରେ ଗୋଟିଏ ଗୋଲାକୃତି, ଗୋଟିଏ ନଳ ଆକାରର ଏବଂ ଗୋଟିଏ ଇଟା ଆକାରରେ ବସ୍ତୁ ରହିଥିଲା । ବର୍ତ୍ତମାନ ନ'ଟି ବସ୍ତୁ ଗୋଟିଏ ଛୋଟ ଶିଶୁକୁ ଦେଇ ସେଗୁଡ଼ିକ ଅଲଗା ଅଲଗା ରଖିବାକୁ କୁହାଗଲେ ଶିଶୁଟି ଲାଲରଂଗର ବସ୍ତୁ, ନୀଳ ରଂଗର ବସ୍ତୁ ଓ ଧଳା ବସ୍ତୁକୁ ଭାଗଭାଗକରି ରଖିବ । ଅନ୍ୟ ପ୍ରକାରେ ଭାଗକରି ରଖିବାକୁ କୁହାଗଲେ ଛୋଟ ଶିଶୁଟି ଚେଷ୍ଟା କରିବ, ମାତ୍ର ସଫଳ ହେବନାହିଁ । ବୟସରେ ବଡ଼ ହୋଇଥିବା ଶିଶୁଟି ପ୍ରଥମେ ରଂଗକୁ ଭିତ୍ତିକରି ବିଭାଗୀକରଣ କରିସାରିବା ପରେ ପୁନଶ୍ଚ ଆକୃତିକୁ ଭିତ୍ତିକରି ସେଗୁଡ଼ିକ ତିନୋଟି ଭାଗରେ ବିଭକ୍ତ କରିପାରିବ । ଏହାର ତାତ୍ପର୍ଯ୍ୟ ହେଉଛି ଯେ ବୟସର ବୃଦ୍ଧି ସହିତ ଶିଶୁ ଅଧିକରୁ ଅଧିକ ଉପାଦାନ ବା ଗୁଣକୁ ଭିତ୍ତିକରି ବିଭାଗୀକରଣ କରିଥାଏ ।

ମୁଖ୍ୟତଃ ଶିଶୁର ପ୍ରାକ୍-କ୍ରିୟାତ୍ମକ ସ୍ତର (ଦୁଇବର୍ଷରୁ ସାତବର୍ଷ) ଏବଂ କ୍ରିୟାତ୍ମକ (ସାତବର୍ଷରୁ ଏଗାରବର୍ଷ)ର ସନ୍ଧିକ୍ଷଣରେ ଶିଶୁ ବିଭିନ୍ନ ପ୍ରକାର ବିଭାଗୀକରଣର ଧାରଣ ଶିକ୍ଷାକଲେ ମଧ୍ୟ ଏଥିରେ କ୍ରମାନ୍ୱୟତା ରହିଥାଏ । ଶିଶୁ ପ୍ରଥମେ ପ୍ରଥମେ ସରଳ ବିଭାଗୀକରଣ ଶିକ୍ଷାକରେ ଏବଂ ପରେ ପରେ ଏହା ଜଟିଳରୁ ଜଟିଳତର ହୁଏ । ଶିଶୁର ଶିକ୍ଷାଦୀକ୍ଷା ଓ ଲାଳନପାଳନ ଦାୟିତ୍ୱରେ ଥିବା ବୟସ୍କମାନେ ଏହି କ୍ରମାନ୍ୱୟତା ଅନୁସାରେ ଶିଶୁକୁ ବିଭିନ୍ନ ବସ୍ତୁ ଓ ପରିବେଶର ସୁଯୋଗ ଦେଲେ ଶିକ୍ଷା ଅଧିକ ଫଳପ୍ରଦ ହୋଇଥାଏ । ନିମ୍ନରେ ସେହି କ୍ରମାନ୍ୱୟତାର ସୂଚନା ଦିଆଯାଇଛି ।

- ରଂଗ, ଆକାର ଓ ଆକୃତି
- ବସ୍ତୁଗୁଡ଼ିକ ତିଆରି ହୋଇଥିବା ମୂଳପଦାର୍ଥ (ଯଥା କାଗଜ,ମାଟି, କନା ଇତ୍ୟାଦି) ଅନୁଯାୟୀ ବିଭାଗୀକରଣ ।

- ପ୍ୟାଟର୍ଣ୍ଣ ବା ଢାଞ୍ଚା  ଅନୁଯାୟୀ ବିଭାଗୀକରଣ (ଯଥା: ବୁନ୍ଦାବୁନ୍ଦା, ଗାରଗାର)
- ଏକା ପ୍ରକାର କାର୍ଯ୍ୟରେ ବ୍ୟବହାର କରାଯାଉଥିବା ଜିନିଷ (ଯଥା : ସବୁ ଖାଇବା ଜିନିଷ, ସବୁ ଲେଖାପଢ଼ାରେ ବ୍ୟବହୃତ ଜିନିଷ)
- ଏକତ୍ର ହେଉଥିବା ଜିନିଷସବୁ, ଅଥଚ କାର୍ଯ୍ୟ ଭିନ୍ନ (ଯଥା: କ୍ଷୀର ଓ କପକୁ ଗୋଟିଏ ବିଭାଗରେ ରଖିବା, ଦିଆସିଲି ଓ ମହମବତୀକୁ ଗୋଟିଏ ବିଭାଗରେ ରଖିବା)
- ନାମକରଣ (ଭାଷାଗତ) ଅନୁଯାୟୀ ବିଭାଗ (ଯଥା ଫଳ, ଫୁଲ, ଖାଦ୍ୟପଦାର୍ଥ)
- ସମାନଧରଣର ଅଂଶବିଶେଷକୁ ଭିତ୍ତି କରି ବିଭାଗୀକରଣ (ଯଥା ଚକଥିବା ସବୁବସ୍ତୁକୁ ଗୋଟିଏ ବିଭାଗରେ ରଖିବା)

# ଶିଶୁ ଦୃଷ୍ଟିକୋଣର ପରିବର୍ତ୍ତନ

ଶିଶୁର ପ୍ରାକ୍ ବିଦ୍ୟାଳୟ ସ୍ତରରେ ବାହ୍ୟ ଜଗତକୁ ଯେପରି ଦେଖେ ତାହାର ଏକ ନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ ରହିଛି । ପ୍ରାରମ୍ଭିକ ପର୍ଯ୍ୟାୟରେ ଶିଶୁର ଅନୁଭବ ମୁଖ୍ୟତଃ ଅହଂକେନ୍ଦ୍ରୀ (ଇଗୋ ସେଣ୍ଟ୍ରିକ୍) । ଏଠାରେ ଅହଂକେନ୍ଦ୍ରୀର ଅର୍ଥ ସ୍ୱାର୍ଥପରତା ନୁହେଁ । କାରଣ ଶିଶୁ ଏ ବୟସରେ ନିଜର ସ୍ୱାର୍ଥ ଓ ଅନ୍ୟର ସ୍ୱାର୍ଥ ମଧ୍ୟରେ ଥିବା ପାର୍ଥକ୍ୟ ବୁଝିପାରି ନଥାଏ । ଅହଂକେନ୍ଦ୍ରୀର ଅର୍ଥ ହେଉଛି ପରିବେଶର ଏକ ନିର୍ଦ୍ଦିଷ୍ଟ ଦିଗ ଭାବନାକେନ୍ଦ୍ରିକ ହୋଇ ଅନ୍ୟ ସବୁ ଦିଗ ବିଚାର ନ କରିବା । ଉଦାହରଣ ସ୍ୱରୂପ, ଗୋଟିଏ କାଚପାତ୍ରରେ ରହିଥିବା ଜଳର ପରିମାଣକୁ କେବଳ କାଚପାତ୍ରର ଉଚ୍ଚତା ଦେଖି କଳନା କରିବାର ମନୋଭାବ ଏ ଧରଣର । ପାତ୍ରଟିର ଚଉଡ଼ା ଯେ ଜଳର ପରିମାଣକୁ କମ୍ ବା ବେଶି କରିପାରେ, ଏ ଧାରଣା ଶିଶୁ ମନରେ ସ୍ଥାନ ପାଇନଥାଏ । ତିନି ଚାରି ବର୍ଷ ବୟସରେ ଶିଶୁ ଏହି ପର୍ଯ୍ୟାୟରେ ଥାଏ । ଗୋଟିଏ ସୁନ୍ଦର ପରୀକ୍ଷା ଦ୍ୱାରା ଶିଶୁ ମନର ଏହି ପରିସୀମିତ୍ୱ ବୁଝାଇ ହେବ । ମନେକରାଯାଉ, ଗୋଟିଏ ଟେବୁଲ ଉପରେ ତିନୋଟି ବିଭିନ୍ନ ଆକାରର ପାହାଡ଼ର ମଡ଼େଲଟି ରଖାଗଲା । ଟେବୁଲର କୌଣସି ଏକ ସ୍ଥାନରେ ଖେଳନା ଶିଶୁଟିଏ ରଖାଗଲା । ବର୍ତ୍ତମାନ ପଚରାଗଲା– ଏହି (ଖେଳନା ଶିଶୁ)ଟିକୁ ପାହାଡ଼ ସବୁ କିପରି ଦିଶୁଥିବ । ଶିଶୁର ଉତ୍ତରକୁ ସହଜ କରିବାପାଇଁ ଶିଶୁକୁ ପାହାଡ଼ ତିନୋଟିର ଭିନ୍ନ ଭିନ୍ନ ଛବି ଦିଆଯାଇ କେଉଁ ଛବିଟି ଖେଳନା ଶିଶୁର ଅନୁଭବକୁ ପ୍ରକାଶ କରିବ ବୋଲି ପଚରା ଯାଇପାରେ । ଶିଶୁ ନିର୍ଦ୍ଦିଷ୍ଟ ଛବିଟଏ ବାଛିଦେଇ ଉତ୍ତର ଦେଇସାରିଲା ପରେ ପୁନଶ୍ଚ ଖେଳନା ଶିଶୁଟିକୁ ଟେବୁଲର ଅନ୍ୟ ଏକ ସ୍ଥାନରେ ରଖି ପୂର୍ବପରି ପ୍ରଶ୍ନ ପଚରା ଯାଇପାରେ ।

ଏପରି ସବୁ ପରୀକ୍ଷା କଲେ ଦେଖାଯିବ ଯେ, ଶିଶୁର ଉତ୍ତରରେ ବିଶେଷ ପରିବର୍ତ୍ତନ ଘଟୁନାହିଁ । ଶିଶୁ ନିଜେ ଠିଆ ହୋଇଥିବା ସ୍ଥାନରୁ ପାହାଡ଼ସବୁକୁ ଯେପରି ଦେଖୁଛି, ଖେଳନା ଶିଶୁ ମଧ୍ୟ ସେପରି ଦେଖିବ ବୋଲି ଉତ୍ତର ଦେଇଥାଏ । ଶିଶୁ ନିଜ କଥାରେ ଏପରି ପ୍ରକାଶ ନକଲେ ମଧ୍ୟ ସେ ଉତ୍ତର ଛଳରେ ବାଛିଥିବା ଛବିଟି ଏପରି ସୂଚନା ଦିଏ । ଏପରି ପରୀକ୍ଷା ସବୁ ଶିଶୁର ଅହଂକେନ୍ଦ୍ରୀ ଅନୁଭବର ପରିଚୟ ଦେଲେ ମଧ୍ୟ ଏହାର ଅନ୍ୟ ଏକ ଦିଗ ରହିଛି । କେତେକ ମନୋବିଜ୍ଞାନୀ ଲକ୍ଷ୍ୟ କରିଛନ୍ତି ଯେ, ପରିବେଶଟି ପରିଚିତ ହୋଇଥିଲେ ୪/୫ ବର୍ଷର ଶିଶୁ ମଧ୍ୟ ଅନ୍ୟର ଅନୁଭବ ବିଚାର କରିପାରେ । ଉଦାହରଣ ସ୍ୱରୂପ, ଗୋଟିଏ ଟେବୁଲ ଉପରେ ସେହି ପାହାଡ଼ସବୁର ମଡେଲ ରଖିଦେଇ ଗୋଟିଏ ସ୍ଥାନରେ ପୋଲିସ୍ ପୋଷାକ ପିନ୍ଧିଥିବା ଖେଳନାଟି ରଖାଯାଇପାରେ । ଅନ୍ୟ ଗୋଟିଏ ଖେଳନାକୁ ଶିଶୁହାତରେ ଧରାଇ କୁହାଯାଇପାରେ ଖେଳନାଟି ହେଉଛି ଚୋର । ଏହାକୁ ଏପରି ସ୍ଥାନରେ ରଖ, ଯେପରିକି

ପୋଲିସ୍ ଦେଖିପାରିବ ନାହିଁ । ଶିଶୁ ଗୋଟେଥର ଖେଳନାଟିକୁ ଏକ ସ୍ଥାନରେ ରଖିବା ପରେ ପୁନଶ୍ଚ ପୋଲିସ୍‌ର ସ୍ଥାନ ବଦଳାଇ ପ୍ରଶ୍ନର ପୁନରାବୃତ୍ତି କରାଯାଇପାରେ । ଦେଖାଯିବ ଯେ, ଅଧିକାଂଶ ଥର ଶିଶୁ ଖେଳନା ଶିଶୁଟିକୁ ପୋଲିସର ଦୃଷ୍ଟି ଉହାଡ଼ରେ ରଖିପାରୁଛି । ଏହାର ତାତ୍ପର୍ଯ୍ୟ ହେଲା ଯେ, ପୋଲିସ କେଉଁ ସ୍ଥାନରେ ରହିଲେ କେଉଁ କେଉଁ ଅଂଶ ଦେଖୁଥିବ ଏବଂ କେଉଁ କେଉଁ ଅଂଶ ଦେଖିପାରୁ ନଥିବ, ସେ ବିଷୟରେ ଶିଶୁର ଧାରଣା ରହିଛି । ଶିଶୁ ଲୁଚକାଳି ଖେଳ ମାଧ୍ୟମରେ ଏପରି ଭାବରେ ସର୍ବତ୍ର ପରିଚିତ ହୁଏ । ସୁତରାଂ ପୋଲିସ ସମ୍ପର୍କୀୟ ପରୀକ୍ଷାରେ ସେ ଅନ୍ୟର ପ୍ରତ୍ୟକ୍ଷ ସମ୍ପର୍କରେ ସଠିକ୍ ଉତ୍ତର ଦିଏ । ଅନ୍ୟର ଦୃଷ୍ଟିକୋଣରୁ ବିଚାର କରିବାର ସାମର୍ଥ୍ୟ ପରିଚିତ ପରିବେଶରେ ପ୍ରକାଶ ପାଏ । ଶିଶୁ ଭାବନାର ଅହଂକେନ୍ଦ୍ରୀ ସ୍ୱରୂପ ଶିଶୁର କଥୋପକଥନରେ ମଧ୍ୟ ପ୍ରକାଶ ପାଏ । ମନେକରାଯାଉ ଗୋଟିଏ ଛବି ବିଷୟରେ ବର୍ଣ୍ଣନା କରିବାକୁ ଶିଶୁକୁ କୁହାଗଲା । ଏପରି ମଧ୍ୟ କୁହାଗଲା ଯେ, ଶିଶୁଟି ଏପରି ଭାବରେ ବର୍ଣ୍ଣନା କରିବ, ଯେପରିକି ଅନ୍ୟ ଶିଶୁଟି ତାହା ଶୁଣି ସେହି ଛବିଟି ଅଙ୍କନ କରିପାରିବ । ଲକ୍ଷ୍ୟ କଲେ ଦେଖାଯିବ ଯେ, ଶିଶୁଟିର ବର୍ଣ୍ଣନା ବହୁ ଦୃଷ୍ଟିରୁ ଅସମ୍ପୂର୍ଣ୍ଣ । ଶିଶୁ ଛବିଟିର ନିର୍ଦ୍ଦିଷ୍ଟ କେତେକ ଦିଗ ପ୍ରତି ମାତ୍ରାଧିକ ଗୁରୁତ୍ୱ ଆରୋପ କରି ସେସବୁର ପୁନରାବୃତ୍ତି କରି କହିବାବେଳେ ଅନ୍ୟ ଦିଗ ସବୁ ବର୍ଣ୍ଣନା କରୁନାହିଁ । ଯୋତା କିପରି ଠିକ୍ ଭାବରେ ପିନ୍ଧିବାକୁ ହେବ, ତାହା ମଧ୍ୟ ଶିଶୁଟି ଅନ୍ୟ ଶିଶୁକୁ କହିବା ସମୟରେ କହିବା ଶୈଳୀ ତ୍ରୁଟିପୂର୍ଣ୍ଣ ହେଉଛି । ମନଧ୍ୟାନ ଦେଇ ଶୁଣିଲେ ମଧ୍ୟ ଶୁଣୁଥିବା ଅନ୍ୟ ଶିଶୁ କେବଳ ଶୁଣାକଥାକୁ ଭିତ୍ତିକରି ଯୋତା ପିନ୍ଧିପାରିବ ନାହିଁ । ମାତ୍ର କୌତୂହଳର ବିଷୟ ଯେ, ଶୁଣୁଥିବା ଶିଶୁଟିର ଆଖିରେ ଅନ୍ଧପୁତୁଳି ବାନ୍ଧିଦେଇ କହୁଥିବା ଶିଶୁକୁ ଚିତ୍ରର ବର୍ଣ୍ଣନା ଦେବାକୁ କୁହାଗଲେ କେତେକ ପରିବର୍ତ୍ତନ ପରିଦୃଷ୍ଟ ହେବ । କହୁଥିବା ଶିଶୁଟି ଅନେକ ସତର୍କତାର ସହିତ କହିବ ଏବଂ କଥାଟି କହିବା ଶୈଳୀରେ ଅସମ୍ପୂର୍ଣ୍ଣତାର ମାତ୍ରା କମ୍ ରହିବ । ଶୁଣୁଥିବା ଶିଶୁର ଅସୁବିଧାକୁ ବିଚାରକୁ ନେଇ କହୁଥିବା ଶିଶୁଟି ଉନ୍ନତ ଶୈଳୀର ଉପଯୋଗ କରୁଥିବାରୁ ଶିଶୁ ଅନ୍ୟର ଦୃଷ୍ଟିକୋଣକୁ ସବୁ ସମୟରେ ଉପେକ୍ଷା କରେ ବୋଲି କୁହାଯିବ ନାହିଁ । ଦୁଇ ଶିଶୁଙ୍କ ମଧ୍ୟରେ କଥାବାର୍ତ୍ତା ସମୟରେ ପ୍ରକାଶ ପାଉଥିବା ଅସମ୍ପୂର୍ଣ୍ଣତାର କେତୋଟି କାରଣ ରହିଛି । ପ୍ରଥମତଃ କହୁଥିବା ଶିଶୁଟି ଠିକ୍ ଜାଣିପାରେ ନାହିଁ ଯେ, ଅନ୍ୟ ଶିଶୁଟି ଶୁଣୁଛି କି ନାହିଁ । ପ୍ରଥମ ଶିଶୁଟି ଠିକ୍ ଶୁଣାଇଥିବା ସମୟରେ ଦ୍ୱିତୀୟ ଶିଶୁଟି ପୂରାପୂରି ଅନ୍ୟ ଚିନ୍ତାରେ ବୁଡ଼ି ରହିଥାଇପାରେ । ପ୍ରଥମ ଶିଶୁର ଏ ସମ୍ପର୍କରେ କିଛି ଧାରଣା ମଧ୍ୟ ନଥାଇପାରେ । ଦ୍ୱିତୀୟତଃ କେଉଁ କୌଶଳର ଅବଲମ୍ବନ କଲେ ଶିଶୁଟି ଶ୍ରୋତାର ଧ୍ୟାନ ଆକର୍ଷଣ କରିପାରିବ, ତାହାର ସ୍ପଷ୍ଟ ଧାରଣା ନଥାଏ । ତୃତୀୟତଃ ଶୁଣୁଥିବା ଶିଶୁଟି ମଧ୍ୟ ଠିକ୍ ରୂପେ ଜାଣିନଥାଏ ଯେ, ସେ କେଉଁ ଉପାୟରେ ସଠିକ୍ ସଂକେତ ଦେବ ଯେ ସେ ପ୍ରକୃତରେ ଶୁଣୁଛି । ଏହିସବୁ କାରଣରୁ ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁମାନଙ୍କର ପାରସ୍ପରିକ କଥାବାର୍ତ୍ତା ଅସମ୍ପୂର୍ଣ୍ଣ ରହିଯାଏ । ଶିକ୍ଷକ ଶିକ୍ଷୟିତ୍ରୀ ଓ ପିତାମାତା ଶିଶୁ ସହିତ କଥାବାର୍ତ୍ତା କରିବା ସମୟରେ କହିବା ଓ ଶୁଣିବା କୌଶଳସବୁର ସ୍ପଷ୍ଟ ପ୍ରୟୋଗ କରି ଏ ଅବହେଳିତ ଦିଗ ପ୍ରତି ଶିଶୁର ଦୃଷ୍ଟି ଆକର୍ଷଣ କରାନ୍ତି । କ୍ରମଶଃ ଶିଶୁର କଥାବାର୍ତ୍ତା ଅଧିକ ସ୍ପଷ୍ଟ ହୁଏ ଏବଂ ଶିଶୁ ଅନ୍ୟର ଦୃଷ୍ଟିକୋଣ ଠିକ୍ ବୁଝିପାରେ ।

# ଶିଶୁର ଚିନ୍ତନ-ଶୈଳୀ

ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁର ବୌଦ୍ଧିକ ବିକାଶ ଏକ ନିର୍ଦ୍ଦିଷ୍ଟ ରୂପରେଖ ନିଏ । ନିଜର ପାରିପାର୍ଶ୍ୱିକ ବସ୍ତୁକୁ ଏବଂ ନିଜର ଅନୁଭବକୁ ଚିନ୍ତାଜଗତରେ ରଖିବାର କୌଶଳ ଶିକ୍ଷା କରିବାକୁ ଆରମ୍ଭ କରେ । ନିଜର ଦୃଷ୍ଟିକୋଣ ଏବଂ ଅନ୍ୟ ଦୃଷ୍ଟିକୋଣ ମଧ୍ୟରେ ଥିବା କିଛିଟା ପାର୍ଥକ୍ୟ ଅନୁଭବ କରେ । ପିଲାଟି ଗୃହର ପ୍ରବେଶ ଦ୍ୱାର ଦେଇ ଗୃହ ମଧ୍ୟକୁ ପ୍ରବେଶ କଲାବେଳେ ଘରଟି ଗୋଟିଏ ପ୍ରକାର ଦିଶୁଛି । ଅଥଚ ଘରର ଗୋଟିଏ କୋଣରେ ବସିଥିବା ପରିବାରର ଅନ୍ୟଜଣକ ଘରଟି ଅଲଗା ଦିଶୁଥିବ, ଏପରି ଅନୁଭବ ଧୀରେ ଧୀରେ ଆସେ । ଆଖିରେ ପଡୁଥିବା ପ୍ରତି ଦୃଶ୍ୟ ଏବଂ ବାସ୍ତବିକତା ମଧ୍ୟରେ ପ୍ରଭେଦ ମଧ୍ୟ ଧୀରେ ଧୀରେ ଅନୁଭବ କରେ । ଗୋଟିଏ ଖେଳନା ବିଭିନ୍ନ ପ୍ରକାର ପୋଷାକରେ ସଜ୍ଜିତ ହେଲେ ଖେଳନାଟି ଏକ ଓ ଅଭିନ୍ନ, ଏ ଧାରଣା ଜନ୍ମେ । ଶୈଶବ ସମୟରେ ଏପରି ଧାରଣା ନଥାଏ । ମାତ୍ର ପ୍ରାକ୍-ବିଦ୍ୟାଳୟ ସ୍ତରରେ ଏସବୁ ମାନସିକ ବିକାଶ ସଂଘଟିତ ହୁଏ ।

ପୂର୍ବରୁ ସୂଚନା ଦିଆଯାଇଛି ଯେ, ସୁଇଜରଲାଣ୍ଡର ବିଶ୍ୱବିଖ୍ୟାତ ମନୋବିଜ୍ଞାନୀ ପିଆଜେଙ୍କ ଅନୁଧ୍ୟାନ ଓ ପର୍ଯ୍ୟବେକ୍ଷଣ ଫଳରେ ଶିଶୁର ବୌଦ୍ଧିକ ବିକାଶ ସମ୍ପର୍କରେ ବହୁ ମୂଲ୍ୟବାନ ତଥ୍ୟ ମିଳିପାରିଛି । ପିଆଜେଙ୍କ ମତରେ ଏହି ପର୍ଯ୍ୟାୟରେ (ଦୁଇ ବର୍ଷରୁ ସାତବର୍ଷ ମଧ୍ୟରେ) ଶିଶୁ ପ୍ରତୀକସବୁ ପ୍ରୟୋଗ କରିବାକୁ ଆରମ୍ଭ କରେ । ପାନୀୟ କ୍ଷୀର ପିଇବାକୁ ଇଚ୍ଛା କରି 'କ୍ଷୀର' ଶବ୍ଦଟି ପ୍ରୟୋଗ କରେ । ସେହିପରି ଗୋଟିଏ କାଠି ନେଇ ତାକୁ 'ମହମବତୀ' ପରି ସଜାଏ । ଗୋଟିଏ ଭାବନା ବା କାର୍ଯ୍ୟକୁ ସୂଚାଇବା ପାଇଁ ଅନ୍ୟ କିଛିଟା ବ୍ୟବହାର କରିବାର ପ୍ରତୀକଧର୍ମୀ ଚିନ୍ତନ-ଶୈଳୀ ଆରମ୍ଭ ହୁଏ ।

ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁ କିଛି ପରିମାଣର କାର୍ଯ୍ୟ-କାରଣ ସମ୍ପର୍କ ବୁଝିବାକୁ ଆରମ୍ଭ କରେ । ବହୁତ ଭୋକ ଲାଗୁଥିବାରୁ ଶିଶୁଟି ବେଶି ଖାଇବ ବୋଲି ଭାବିନିଏ । ଡେଙ୍ଗା ହୋଇ ସେ ଅଧିକ ଶକ୍ତିଶାଳୀ ହେଉଛି ବୋଲି ଭାବିବସେ । ଜୋର୍‌ରେ ଚାଲୁଥିବାରୁ ସେ ସ୍କୁଲରେ ଶୀଘ୍ର ପହଞ୍ଚିବ ବୋଲି ବିଚାର କରେ । ମାତ୍ର କାର୍ଯ୍ୟ-କାରଣ ସମ୍ପର୍କରେ ପୂର୍ଣ୍ଣାଙ୍ଗ ଅନୁଭବ ଆସିନଥାଏ । କେତେ ଜୋର୍‌ରେ ଚାଲିଲେ ସେ କେତେ ଶୀଘ୍ର ସ୍କୁଲରେ ପହଂଚିବ, ସେ ବିଷୟରେ ସ୍ପଷ୍ଟ ଧାରଣା ନଥାଏ । କାର୍ଯ୍ୟକାରଣ ସମ୍ପର୍କ ବିଚାର କଲାବେଳେ ଶିଶୁ କ୍ଷେତ୍ରରେ ଅନ୍ୟ ଦୁଇଟି ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । ପ୍ରଥମଟି ହେଉଛି ଚଳନଶୀଳତା । ଶିଶୁ ପ୍ରତ୍ୟେକ ବସ୍ତୁଟିରେ ମାନବୀୟତା ଆରୋପ କରେ । ଗଛଲତା, ପାଣିପବନ ଏବଂ ବସ୍ତୁସବୁକୁ ମଣିଷ ପରି ବିଚାର କରି ସେଥିରେ ଚଳନଶୀଳତା ଦେଖେ । କାରଟି ଆଘାତ

ପାଇ ମନଦୁଃଖ କରି କାନ୍ଦୁଛି ବୋଲି ଶିଶୁ କହେ । ଅନ୍ୟଟି ହେଉଛି ଘଟଣାସବୁ ମଣିଷ ପାଇଁ ଅଭିପ୍ରେତ ବୋଲି ଚିନ୍ତା କରିବାର ଭଙ୍ଗୀ । ସୂର୍ଯ୍ୟାଲୋକ ଯୋଗୁଁ ମନୁଷ୍ୟ ତିଷ୍ଠି ରହିଛି, ଏହା ସେ ଭାବି ନଥାଏ । ମନୁଷ୍ୟକୁ ଆଲୋକ ଦେବା ପାଇଁ ସୂର୍ଯ୍ୟ ରହିଛି । ମନୁଷ୍ୟକୁ ଫଳ ଦେବା ପାଇଁ ବୃକ୍ଷସବୁ ରହିଛନ୍ତି । ମନୁଷ୍ୟକୁ ଜଳ ଦେବା ପାଇଁ ନଦୀ ରହିଛି । ଏହିପରି ମନୁଷ୍ୟ-କେନ୍ଦ୍ରିତ କାରଣ ସବୁ ଶିଶୁମନରେ ସ୍ଥାନ ପାଏ । ତିନିବର୍ଷରୁ ପାଞ୍ଚ ବର୍ଷ ବୟସର ଶିଶୁ ''କାହିଁକି ?'' ପ୍ରଶ୍ନର ଉତ୍ତର ନିଜସ୍ୱ ଶୈଳୀରେ ସମାଧାନ କରେ । ବୟସ୍କର ଦୃଷ୍ଟିକୋଣରୁ ଏସବୁର ଉତ୍ତର ଭୁଲ୍ ହୋଇପାରେ । ମାତ୍ର ଏସବୁ ଉତ୍ତର ଶିଶୁର ମାନସିକ ବିକାଶର ରୂପରେଖ ସୂଚିତ କରେ । ଉଦାହରଣ ସ୍ୱରୂପ, ଆମେ ଖରାପ ହୋଇଥିବାରୁ ଆମେ ଆଘାତ ପାଇଲୁ, ଏପରି ବିଚାର ସ୍ଥାନ ପାଏ । ଦୁଇଟି ଜିନିଷ ପାଖାପାଖି ରହିଥିଲେ କିମ୍ବା ଅଳ୍ପ ସମୟ ବ୍ୟବଧାନରେ ଘଟିଥିଲେ ଶିଶୁ ସେ ଦୁଇଟି ମଧ୍ୟରେ କାର୍ଯ୍ୟ-କାରଣ ସମ୍ପର୍କ ଦେଖେ ।

କାରଣ ଏବଂ ଫଳାଫଳର ସମ୍ପର୍କ ବ୍ୟତୀତ ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁ ଅନ୍ୟ କେତୋଟି ବିକାଶ ସୂଚାଏ । ସାଧାରଣତଃ ଆମେ ଆମର ଦୈନନ୍ଦିନ-ଜୀବନରେ ରଙ୍ଗ, ଆକାର କିମ୍ବା ବୟସକୁ ଭିତ୍ତି କରି ବସ୍ତୁ ବା ମଣିଷମାନଙ୍କୁ ସଜାଇଥାଉ । କୌଣସି ଏକ କ୍ରମରେ (ବଡ଼ରୁ ସାନ କିମ୍ବା ସାନରୁ ବଡ଼) ସଜାଇବାର କୌଶଳ ଶିଶୁ ଏହି ପର୍ଯ୍ୟାୟରେ ଶିକ୍ଷା କରେ । ପ୍ରଥମେ ସେ ଛୋଟ ଓ ବଡ଼ – ଏ ଦୁଇଟି ବସ୍ତୁକୁ ଠିକ୍ ଭାବରେ ପୃଥକ୍ କରେ ଏବଂ ସଜାଏ । ଏପରି କ୍ରମ-ସଜ୍ଜୀକରଣ ଧୀରେ ଧୀରେ ବିକଶିତ ରୂପ ନିଏ । ଛୋଟ, ବଡ଼ ଓ ମଧ୍ୟମ – ଏପରି ତିନୋଟି ବସ୍ତୁ ସଜାଇପାରେ । ଗଳ୍ପରେ ମଧ୍ୟ ସାନ ଭାଲୁ, ମଝିଆଁ ଭାଲୁ ଓ ବଡ଼ ଭାଲୁର ବର୍ଣ୍ଣନା ବୁଝେ ଏବଂ ନିଜେ ମଧ୍ୟ କଥାରେ ବ୍ୟବହାର କରେ । ବୟସର ବୃଦ୍ଧି ଘଟିଲେ ସେ ଅଧିକ ସଂଖ୍ୟକ କ୍ରମ ସଜ୍ଜୀକରଣ ଦର୍ଶାଇ ଥାଏ ।

କ୍ରମ-ସଜ୍ଜୀକରଣ ବ୍ୟତୀତ ଶିଶୁ ବସ୍ତୁ ଓ ସ୍ଥାନର ସମ୍ପର୍କ ବୁଝିବାକୁ ଶିଖେ । ବସ୍ତୁଟି ପାଖରେ ଅଛି କି ତଳେ ରହିଛି କିମ୍ବା ଉପରେ ରହିଛି – ଏପରି ଶିକ୍ଷା ଲାଭ କରେ । ବ୍ଲକ୍‌ସବୁ ସଜାଡ଼ିବା ସମୟରେ ଏପରି ଧାରଣା ବିକଶିତ ହୁଏ । ଏହାର ତାତ୍ପର୍ଯ୍ୟ ହେଉଛି ଯେ ଶିଶୁକୁ ଅଧିକ ସ୍ପଷ୍ଟ ଭାବରେ ଏପରି ଧାରଣା ଶିକ୍ଷା ଦେବା ସମୟରେ ବିଭିନ୍ନ ରଙ୍ଗର ଏବଂ ବିଭିନ୍ନ ପ୍ରକାରର ବ୍ଲକ୍‌ସବୁ ଦେଇ ସେଗୁଡ଼ିକୁ ସଜାଇବାର ସୁଯୋଗ ଦିଆଯିବା ଉଚିତ । ଏପରି କାର୍ଯ୍ୟ ଓ ଖେଳ ସମୟରେ ଶିଶୁ କେଉଁ ରଙ୍ଗର ବ୍ଲକ୍‌ଟି ତଳେ ରହିଛି ଏବଂ କେଉଁଟି ଉପରେ ରହୁଛି – ତାହା ଲକ୍ଷ୍ୟ କରେ । ସଜାଇବା ସମୟରେ ନିଜେ କେତେକ ନିଷ୍ପତ୍ତି ମଧ୍ୟ ନିଏ । ସ୍ଥୂଳତଃ ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁ ନିଜର କାର୍ଯ୍ୟ ମାଧ୍ୟମରେ ଅନେକଗୁଡ଼ିଏ ଧାରଣା ଗଠନ କରେ । ଅବଶ୍ୟ ଧାରଣା ଗଠନ ପରିପ୍ରେକ୍ଷୀରେ କେତୋଟି ଅସମ୍ପୂର୍ଣ୍ଣତା ରହିଥାଏ । ସେଥିପାଇଁ ପିଆଜେ ଏ ସ୍ତରକୁ ପ୍ରାକ୍-କ୍ରିୟାତ୍ମକ ସୋପାନ ବୋଲି ଆଖ୍ୟା ଦେଇଛନ୍ତି । ଶିଶୁ ନିଜ ପରିବେଶର ସବୁଦିଗକୁ ବିଚାର ନକରି କେବଳ ଗୋଟିଏ ଦୁଇଟି ଦିଗକୁ ଗୁରୁତ୍ୱ ଦେବା ଫଳରେ କେତେକ ଅସଂପୂର୍ଣ୍ଣତା ପ୍ରକାଶ ପାଏ । ଅବଶ୍ୟ ଶିଶୁର ପରବର୍ତ୍ତୀ ସୋପାନ ବେଳକୁ ଚିନ୍ତନ ଶୈଳୀ ଅଧିକ ଉନ୍ନତ ହୋଇ ଏପରି ଅସଂପୂର୍ଣ୍ଣତା ଦୂର ହୁଏ ।

# ବୌଦ୍ଧିକ ବିକାଶକୁ ତ୍ୱରାନ୍ୱିତ କରିବା ସମ୍ଭବ କି ?

ପୂର୍ବ ଆଲୋଚନା ଅନୁଯାୟୀ ଦୁଇବର୍ଷରୁ ସାତବର୍ଷ ମଧ୍ୟରେ ଶିଶୁର ଯେଉଁ ପ୍ରାକ୍-କ୍ରିୟାତ୍ମକ ବୌଦ୍ଧିକ ବିକାଶ ଘଟେ, ତାହାର ସମ୍ଭାବନା ଶିଶୁ ମଧ୍ୟରେ ପ୍ରଚ୍ଛନ୍ନ ଭାବରେ ରହିଥାଏ । ବିଶେଷତଃ ଜାଁ ପିଆଜେଙ୍କ ଏହି ମତବାଦ ମୋଟାମୋଟି ଭାବରେ ସ୍ୱୀକୃତି ଲାଭ କରିଛି । ବୟସର ସ୍ତର ସହିତ ସମାନ୍ତରତା ରକ୍ଷା କରି ସାମର୍ଥ୍ୟ ସବୁ ଧୀରେ ଧୀରେ ପ୍ରକାଶ୍ୟ ରୂପନିଏ । ବାହ୍ୟଜଗତ ସ୍ୱାଭାବିକ ଅବସ୍ଥାରେ ରହିଥିଲେ ଶିଶୁର ପ୍ରଚ୍ଛନ୍ନ ସାମର୍ଥ୍ୟସବୁ ସ୍ୱତଃ ବିକଶିତ ହୁଏ । ତେବେ ବାହ୍ୟଜଗତର ସମୃଦ୍ଧିକରଣ ଏବଂ କିଛି ଉନ୍ନତ ତାଲିମ ବ୍ୟବସ୍ଥାର ଆୟୋଜନ କରାଯାଇ ଶିଶୁର ସ୍ୱାଭାବିକ ବିକାଶକୁ ଅଧିକ ତ୍ୱରାନ୍ୱିତ କରାଯିବା ସମ୍ଭବ କି ନୁହେଁ, ଏ ବିଷୟରେ ପ୍ରଶ୍ନ ଉଠିପାରେ ।

ଏହାର ଉତ୍ତରରେ ଦୁଇଟି ମନ୍ତବ୍ୟ ଦିଆଯାଇପାରେ । ପ୍ରଥମତଃ ଯେଉଁ ଅବଧାରଣା (Concept) ଲାଗି ଶିଶୁକୁ ତାଲିମ ଦିଆଯିବ, ଶିଶୁଟି ବୟସ ଦୃଷ୍ଟିରୁ ଅନ୍ତତଃ ତାହାର ପାଖାପାଖି ବୟସରେ ପାଦଦେଇଥିବ । ଦ୍ୱିତୀୟତଃ ତାଲିମ ଦେବାର ଏକାଧିକ କୌଶଳ ରହିଥିଲେ, ସବୁ କୌଶଳ ଶିଶୁପାଇଁ ସମାନ ପରିମାଣରେ ସଫଳ ହୋଇନଥାଏ । କେତେକ ତାଲିମ ପଦ୍ଧତି ଅପେକ୍ଷାକୃତ ଅଧିକ ଫଳପ୍ରଦ ହୁଏ ।

ଗୋଟିଏ ଦୃଷ୍ଟାନ୍ତର ବର୍ଣ୍ଣନା କରାଯାଇ ଦ୍ୱିତୀୟ ନୀତିଟିକୁ ପ୍ରାଞ୍ଜଳ କରାଯାଇପାରେ । ଶିଶୁର ବୟସ ବୃଦ୍ଧି ସହିତ ଯେ ବିଭିନ୍ନ ଧରଣର ସଂରକ୍ଷଣ (Conservation) ସାମର୍ଥ୍ୟ ହାସଲ କରେ । ବାହ୍ୟ ଅବସ୍ଥାଟିର ପରିବର୍ତ୍ତନ ଘଟୁଥିଲେ ମଧ୍ୟ ମୂଳ ଅବଧାରଣାଟି ଅପରିବର୍ତ୍ତିତ ରହିଛି, ଏପରି ବୁଝାମଣା ସଂରକ୍ଷଣ ସାମର୍ଥ୍ୟର ସୂଚକ । ଧରାଯାଉ ନିର୍ଦ୍ଦିଷ୍ଟ ପରିମାଣର ମାଟିଗୁଳାକୁ ହାତରେ ନେଇ ଶିଶୁର ଆଖି ସାମନାରେ ତା'କୁ ଭିନ୍ନ ଭିନ୍ନ ଆକୃତି ଦିଆଗଲା । ମାଟିକୁ ବଲ ପରି ଗୋଲକ ଆକୃତିର କରାଗଲା, ପୁଣି ତାକୁ ଚାପ ଦେଇ ଏକ ଚଟକା ଥାଳୀ ପରି କରାଗଲା । କେଉଁଥିରେ ଅଧିକ ପରିମାଣର ମାଟି ରହିଛି, ତାହା ଶିଶୁକୁ ପଚରାଯାଇପାରେ । ଦୁଇଟିଯାକ ଜିନିଷର ସମାନ ପରିମାଣରେ ସମାନ ପରିମାଣର ମାଟି ରହିଛି । ଶିଶୁଟି ଏପରି ଅନୁଭବ କରୁଥିଲେ ଏବଂ ଉତ୍ତର ଦେଉଥିଲେ ତା'ର "ପରିମାଣ" ଅବଧାରଣା ସମ୍ପର୍କରେ ସଂରକ୍ଷଣ ସାମର୍ଥ୍ୟ (Conservation ability) ଆସିଛି ବୋଲି କୁହାଯାଇପାରିବ ।

ସେହିପରି ସଂଖ୍ୟାର ଅବଧାରଣା (Number Concept) ସମ୍ପର୍କରେ ବିଚାର କରାଯାଉ । ଧରାଯାଉ ଗୋଟିଏ ଧାଡ଼ିରେ କେତୋଟି ଅଣ୍ଡା ରଖାଗଲା । ପୁଣି ତା'ର ସାମନା

ଧାଡ଼ିରେ ପୂର୍ବର ଗୋଟିଏ ଅଣ୍ଡା ସାମନାରେ ଆଉ ଗୋଟିଏ ଅଣ୍ଡା ରଖାଯାଇ ଦ୍ୱିତୀୟ ଧାଡ଼ିରେ ମଧ୍ୟ ସମାନସଂଖ୍ୟକ ଅଣ୍ଡା ରଖାଗଲା । କେଉଁ ଧାଡ଼ିରେ ଅଧିକ ଅଣ୍ଡା ଅଛି ବୋଲି ପଚରାଗଲେ ଶିଶୁ ହୁଏତ କହିବ– ସମାନ ସଂଖ୍ୟକ ଅଣ୍ଡା ରହିଛି । ମନେ ରଖିବାକୁ ହେବ ଯେ ଶିଶୁର ଆଖିଆଗରେ ଏ ସମସ୍ତ ବ୍ୟବସ୍ଥା କରାଯାଇଛି । ବର୍ତ୍ତମାନ ଧରାଯାଉ ଶିଶୁର ଆଖିଆଗରେ ଦ୍ୱିତୀୟ ଧାଡ଼ିରେ ରହିଥିବା ଅଣ୍ଡାସବୁକୁ ପରସ୍ପରଠାରୁ ସାମାନ୍ୟ ଦୂରେଇ ଦିଆଗଲା । ଫଳରେ ଦ୍ୱିତୀୟ ଧାଡ଼ିଟି ପ୍ରଥମ ଧାଡ଼ି ଅପେକ୍ଷା ଦୀର୍ଘତର ଦେଖାଯିବ । ଶିଶୁଟି ପାଇଁ ପୂର୍ବ ପ୍ରଶ୍ନର ପୁନରାବୃତ୍ତି କରାଯିବ – "କେଉଁ ଧାଡ଼ିରେ ଅଧିକ ସଂଖ୍ୟକ ଅଣ୍ଡା ରହିଛି ?" କହିବା ଅନାବଶ୍ୟକ ଯେ ସଂରକ୍ଷଣ ସାମର୍ଥ୍ୟ ହାସଲ କରିନଥିବା ପିଲାଟି ଉତ୍ତର ଦେବ – "ଦ୍ୱିତୀୟ ଧାଡ଼ିରେ ଅଧିକ ଅଣ୍ଡା ରହିଛି ।" ସଂଖ୍ୟାର ଧାରଣା ସଂରକ୍ଷଣ ପୂର୍ବରୁ ଦୀର୍ଘତା ସମ୍ପର୍କରେ ଧାରଣା ଆସିଥିବାରୁ ଦୀର୍ଘତର ଧାଡ଼ିରେ ବେଶି ଅଣ୍ଡାର କଳ୍ପନା କରିବସିବ । ଅନ୍ୟ ପକ୍ଷରେ ଦୁଇ ଧାଡ଼ିର ଦୀର୍ଘତା ଭିନ୍ନ ହେବା ସତ୍ତ୍ୱେ ଅଧିକ ବୟସରେ ପିଲାଟି ସମାନ ସଂଖ୍ୟକ ଅଣ୍ଡାର ଉତ୍ତର ଦେବ । ଧାଡ଼ିର ଦୀର୍ଘତା ଭିନ୍ନ ହେବା ସତ୍ତ୍ୱେ "ସଂଖ୍ୟା" ଅପରିବର୍ତ୍ତିତ, ଏପରି ଧାରଣା ଜନ୍ମିସାରିଥିବ ।

ବର୍ତ୍ତମାନ ସଂଖ୍ୟା ସମ୍ପର୍କରେ ଶିଶୁର ସଂରକ୍ଷଣ ସାମର୍ଥ୍ୟରେ ଦ୍ରୁତ ବିକାଶ ପାଇଁ ତିନୋଟି ତାଲିମ ପଦ୍ଧତିର ପ୍ରୟୋଗ କରାଯାଇପାରେ । ଶିଶୁକୁ ସଂଖ୍ୟା ସଂରକ୍ଷଣ ବୁଝାଇବା ସମୟରେ ତିନୋଟି ପୃଥକ୍ ପୃଥକ୍ ନୀତି ବ୍ୟବହାର କରାଯାଇପାରେ ।

ପ୍ରଥମ ତାଲିମ ନୀତିଟିକୁ ସମାନତା (Identity) କୁହାଯାଇପାରେ । ଶିଶୁଟିକୁ କୁହାଯାଇପାରେ– "ପୂର୍ବରୁ ପ୍ରଥମ ଧାଡ଼ିରେ ଯାହା ଥିଲା ଦ୍ୱିତୀୟ ଧାଡ଼ିରେ ସେତିକଟି ଜିନିଷ ଥିଲା, ଏ କଥା ତୁମେ କହିଛ । ବର୍ତ୍ତମାନ କୌଣସି ଧାଡ଼ିରୁ କିଛି କାଢ଼ିନିଆ ହୋଇନାହିଁ କିମ୍ବା ଅଧିକା କିଛି ମିଶାଯାଇନାହିଁ । ସୁତରାଂ ଅଣ୍ଡାର ସଂଖ୍ୟା ସମାନ ।" ଏପରି ଶିଖାଇବା ପ୍ରଣାଳୀଟି ସମାନତା ନୀତି ଉପରେ ପ୍ରତିଷ୍ଠିତ ।

ସଂରକ୍ଷଣ (Conservation) ଶିକ୍ଷାଦେବାର ଦ୍ୱିତୀୟ ପ୍ରଣାଳୀଟି ପୂର୍ବ ଅବସ୍ଥାନ୍ତର (Reversibility) ନୀତି ଉପରେ ପ୍ରତିଷ୍ଠିତ । ଦୁଇଟି ଯାକ ଧାଡ଼ିରେ ସମାନ ସଂଖ୍ୟକ ଅଣ୍ଡା ରହିଛି, ଏହାକୁ ଶିକ୍ଷାଦେବା ପାଇଁ ଶିଶୁକୁ ଏପ୍ରକାର ବୁଝାଇ ଦିଆଯାଇପାରେ । "ଦେଖ ! ଦ୍ୱିତୀୟ ଧାଡ଼ିଟି ଲମ୍ବା ଦେଖାଯାଉଛି, କାରଣ ଅଣ୍ଡା ଅଣ୍ଡା ମଧ୍ୟରେ ବେଶି ଶୂନ୍ୟସ୍ଥାନ ରହିଛି । ଦୁଇପାଖରୁ ହାତରେ ଚାପଦେଲେ ଦ୍ୱିତୀୟ ଧାଡ଼ିଟି ପୁଣି ଛୋଟ ହୋଇ ପ୍ରଥମ ଧାଡ଼ି ସହିତ ସମାନ ହେଇଯିବ । ବଡ଼ ଧାଡ଼ିଟି ପୁଣି ପୂର୍ବପରି ସାନ ଧାଡ଼ି ହେଇଯିବ । ସୁତରାଂ ଦୁଇ ସମାନ ଧାଡ଼ିରେ ସମାନ ସଂଖ୍ୟକ ଅଣ୍ଡା ରହିଛି ।"

ତୃତୀୟ ତାଲିମ ପଦ୍ଧତିଟି କ୍ଷତିପୂରଣ (Compensation) ପ୍ରଣାଳୀ । ଶିଶୁକୁ ଏହିପରି ବୁଝାଇ ଦିଆଯାଇପାରେ । କୁହାଯିବ – ଦେଖ । ତମେ ଭାବୁଛ ଦ୍ୱିତୀୟ ଧାଡ଼ିଟି ବଡ଼ ହୋଇଥିବାରୁ ବେଶି ସଂଖ୍ୟାର ଅଣ୍ଡା ରହିଛି । ମାତ୍ର ଲକ୍ଷ୍ୟ କଲେ ଦେଖିବ ଯେ ଧାଡ଼ିର ଲମ୍ବ

ଯେପରି ବଢ଼ିଛି, ପାଖାପାଖି ଥିବା ଅଣ୍ଡା ଦୁଇଟି ମଧ୍ୟରେ ଶୂନ୍ୟସ୍ଥାନ ସେପରି ବଢ଼ିଛି । ସୁତରାଂ ଦୁଇଧାଡ଼ିରେ ସମାନ ସଂଖ୍ୟକ ଅଣ୍ଡା ରହିଛି ।

ଏକ ପରୀକ୍ଷାମୂଳକ ପରିବେଶରେ ଏ ତିନିପ୍ରକାର ତାଲିମ ପ୍ରଣାଳୀର ପ୍ରୟୋଗ କରାଯାଇ ଦେଖାଯାଇଛି ଯେ, ତିନି ଚାରିବର୍ଷର ଶିଶୁମାନେ ପ୍ରଥମ ପ୍ରଣାଳୀରେ ଖୁବ୍ ଶୀଘ୍ର ସଂଖ୍ୟାର ଅବଧାରଣା ଗଠନ କରନ୍ତି । ଦ୍ୱିତୀୟ ପ୍ରଣାଳୀଟି ମଧ୍ୟ କାର୍ଯ୍ୟକାରୀ ହୁଏ । ମାତ୍ର ତୃତୀୟ ପ୍ରଣାଳୀଟି ଅପେକ୍ଷାକୃତ କମ୍ ପ୍ରଭାବଶୀଳ ହୋଇଥାଏ । ଅଧିକ ବୟସରେ ଏହାର ଉପଯୋଗ କରାଯାଇପାରେ ।

କେବଳ ସଂଖ୍ୟା ଅବଧାରଣା (Number Concept)ର ସଂରକ୍ଷଣ (Conservation) ନୁହେଁ, ଅନ୍ୟସବୁ ଧାରଣାର ସଂରକ୍ଷଣ ସାମର୍ଥ୍ୟର ବିକାଶ ପାଇଁ ଏହି ତାଲିମ ପ୍ରଣାଳୀର ବ୍ୟବହାର କରାଯାଇପାରେ । ଗୋଟିଏ ନିର୍ଦ୍ଦିଷ୍ଟ ସାମର୍ଥ୍ୟ ପାଇଁ ଉପଯୋଗୀ ବୟସର ପାଖାପାଖି ହେବାମାତ୍ରେ ପିତାମାତା, ଶିକ୍ଷକ ଶିକ୍ଷୟିତ୍ରୀ ଏବଂ ବୟସ୍କମାନେ ଠିକ୍ ପ୍ରଣାଳୀଟି ବ୍ୟବହାର କରି ଶିଶୁର ବୌଦ୍ଧିକ ବିକାଶକୁ ତ୍ୱରାନ୍ୱିତ କରିପାରନ୍ତି ।

## ଦୃଷ୍ଟାନ୍ତମୂଳକ ତାଲିମ ପ୍ରଣାଳୀର ରୂପରେଖ

*ଲକ୍ଷ୍ୟ : ଶିଶୁକୁ ଘନତା (Volume)ର ସଂରକ୍ଷଣ (Conservation) ସାମର୍ଥ୍ୟ ଶିକ୍ଷା ଦେବା ।*

*କାର୍ଯ୍ୟ : ଶିଶୁ ସମ୍ମୁଖରେ ଦୁଇଟି ପାତ୍ର ରଖାଯିବ । ଗୋଟିଏ ନଳାକୃତିର ପାତ୍ର ଓ ଅନ୍ୟଟି ଚଟକା (Flat) ପାତ୍ର । ନଳାକୃତି ପାତ୍ରରେ ପ୍ରଥମେ ପାଣି ରହିବ । ତା'ପରେ ସେ ପାଣିକୁ ଚଟକା ପାତ୍ରରେ ଢାଳି ଦିଆଯିବ ।*

*ପ୍ରଶ୍ନ : କେଉଁ ପାଖେ ଅଧିକା ପାଣି ଅଛି ? ପ୍ରତ୍ୟାଶିତ ଉତ୍ତର : ଘନତା ସମ୍ପର୍କରେ ଅବଧାରଣା ନଥିବା ପିଲାଟି କହିବ ପ୍ରଥମ ପାତ୍ରରେ ବେଶି ପାଣି ଅଛି, କାରଣ ଏହା ଉଚ୍ଚ ଦେଖାଯାଉଛି । (ଘନତାର ଅବଧାରଣା ପୂର୍ବରୁ ଶିଶୁ ମନରେ ଦୀର୍ଘତାର ଧାରଣା ଆସିଯାଇ ଥିବାରୁ ସେ ଦୀର୍ଘତାର ପ୍ରତ୍ୟକ୍ଷଣ ଦ୍ୱାରା ପ୍ରଭାବିତ ହେବ)*



## ଶିକ୍ଷାଦାନ (ତାଲିମ) କୌଶଳ

ପ୍ରଥମ ପ୍ରଣାଳୀ (ସମାନତା ନୀତି) – ଶିଶୁକୁ କୁହାଯାଇପାରେ – ଦେଖ ପ୍ରଥମ ପାତ୍ରର ପାଣି ଦ୍ବିତୀୟ ପାତ୍ରକୁ ଢଳା ଯାଇଛି । କିଛି ପାଣି କାଢ଼ି ନିଆଯାଇନାହିଁ କିମ୍ବା କିଛି ପାଣି ଯୋଗ କରାଯାଇ ନାହିଁ, ସୁତରାଂ ପାଣିର ପରିମାଣ ସମାନ ।

ଦ୍ବିତୀୟ ପ୍ରଣାଳୀ (ପୂର୍ବ ଅବସ୍ଥାନ୍ତର ନୀତି) –

ଶିଶୁକୁ କୁହାଯାଇପାରେ –

ଦେଖ, ଦ୍ବିତୀୟ ପାତ୍ରରେ ଯେଉଁ ପାଣି ଅଛି ତାହାକୁ ପୁନର୍ବାର ପ୍ରଥମ ପାତ୍ରରେ ଢାଳିଦେଲେ ତାହା ପୂର୍ବପରି ଉଚ୍ଚ ହୋଇ ରହିବ । ସୁତରାଂ, ଦୁଇ ପାତ୍ରରେ ପାଣିର ପରିମାଣ ସମାନ ।

ତୃତୀୟ ପ୍ରଣାଳୀ – (କ୍ଷତିପୂରଣ ନୀତି)

ଶିଶୁକୁ କୁହାଯାଇପାରେ –

ଦେଖ, ଦ୍ବିତୀୟ ପାତ୍ରଟିରେ ପାଣିର ଉଚ୍ଚତା କମିଥିବାରୁ ତମେ ଭାବୁଛ ଯେ ଦ୍ବିତୀୟ ପାତ୍ରରେ କମ୍ ପରିମାଣର ପାଣି ରହିଛି । ମାତ୍ର ଉଚ୍ଚତା କମିଗଲେ ମଧ ଭୂମିକୁ ଲାଗି ରହିଥିବା ତଳ ଅଂଶଟି କେତେ ଲମ୍ବିଯାଇଛି ଦେଖ । ଉପର ଉଚ୍ଚତା କମିଛି, କିନ୍ତୁ ତଳର ଲମ୍ବ ବଢ଼ିଛି । ସୁତରାଂ ପାଣିର ପରିମାଣ କମିନାହିଁ ।

ମୋଟ ଉପରେ ପରିମାଣ ବା ଘନତା ସମ୍ପର୍କରେ ଧାରଣା ଦେବା ପାଇଁ ଏହି ତିନୋଟି ତାଲିମ ବା ଶିକ୍ଷା କୌଶଳର ସାହାଯ୍ୟ ନିଆଯାଇଥାଏ । ପ୍ରଥମଟି ଅଧିକ ଫଳପ୍ରଦ ହୁଏ ବୋଲି ପ୍ରମାଣ ରହିଥିଲେ ମଧ ଆମେ ନିଜେ ପ୍ରୟୋଗ କରି ନିର୍ଦ୍ଦିଷ୍ଟ ଶିଶୁକ୍ଷେତ୍ରରେ କେଉଁଟି ଅଧିକ କାର୍ଯ୍ୟକାରୀ ହେଉଛି, ତାହା ସ୍ଥିର କରିପାରିବା ।

କେବଳ ପରିମାଣ ବା ଘନତା ନୁହେଁ, ଅନ୍ୟସବୁ ଅବଧାରଣା କ୍ଷେତ୍ରରେ ମଧ୍ୟ ଏସବୁ ଶିକ୍ଷା ପ୍ରଣାଳୀର ଉପଯୋଗ କରାଯାଇପାରେ ।

# ବୌଦ୍ଧିକ ବିକାଶର ସାମାଜିକ ସାଂସ୍କୃତିକ ପରିପ୍ରେକ୍ଷୀ

ଶିଶୁ ଏକ ପୂର୍ବ ନିର୍ଦ୍ଧାରିତ ବିକାଶର ସୋପାନ ଦେଇ ଗତିକରେ ବୋଲି ବିଶିଷ୍ଟ ମନୋବିଜ୍ଞାନୀ ଜାଁ ପିଆଜେ ପ୍ରଖ୍ୟାପନ କରିଥିଲେ । ବିକାଶର ପ୍ରତିଟି ସୋପାନ ଓ ଉପସୋପାନ ସହିତ ସେ ଭିନ୍ନ ଭିନ୍ନ ଜନ୍ମଗତ ବୟସସ୍ତରର ସମ୍ପୃକ୍ତି ଦର୍ଶାଇଥିଲେ । ପୂର୍ବରୁ କୁହାଯାଇଛି ଯେ ବିକାଶ ସୋପାନସବୁର କ୍ରମାନ୍ୱୟତା (Sequence of Developmental Stages) ପ୍ରାୟ ପରିଲକ୍ଷିତ ହୁଏ । ଅବଶ୍ୟ ବୟସ ସୀମାର ସାମାନ୍ୟ ପରିବର୍ତ୍ତନ ଘଟିଥାଏ । ଉଦାହରଣ ସ୍ୱରୂପ, ଶିଶୁର ପ୍ରାକ୍‌କ୍ରିୟାତ୍ମକ ସୋପାନ (Preoperational stage) କେତେକ ଦେଶରେ ଦୁଇବର୍ଷ ବୟସରେ ଆରମ୍ଭ ହେଉଥିବା ସ୍ଥଳେ ଅନ୍ୟ ସମାଜରେ ଅଢ଼େଇବର୍ଷରୁ ଆରମ୍ଭ ହୋଇପାରେ । ମାତ୍ର ଏହା ସ୍ୱୀକୃତ ଯେ ଶିଶୁର ଇନ୍ଦ୍ରିୟ–କାରକ (Sensori - Motor) ସୋପାନ ପରେ ହିଁ ପ୍ରାକ୍-କ୍ରିୟାତ୍ମକ ସୋପାନ ଆରମ୍ଭ ହୁଏ । ଗୋଟିଏ ଦୃଷ୍ଟିରୁ ବିଚାର କଲେ ପିଆଜେଙ୍କ ତତ୍ତ୍ୱଧାରାରେ ସଚରାଚରତ୍ୱ (Universality) ରହିଛି ।

ଏପରି ସଚରାଚରତ୍ୱ କେତେ ମାତ୍ରାର ସମର୍ଥନ–ଯୋଗ୍ୟ, ତାହା ଏକ ପ୍ରଶ୍ନ ହୋଇପାରେ । ବିଶେଷତଃ ବିଂଶ ଶତକର ଅନ୍ୟତମ ପ୍ରଖ୍ୟାତ ଋଷୀୟ ମନୋବିଜ୍ଞାନୀ ଭିଗୋଟ୍‌ସ୍କିଙ୍କ ମତରେ ଶିଶୁର ବିକାଶକୁ ପୂରାପୂରି ଅଲଗା କରି ବିଚାର କରିହେବ ନାହିଁ । ଶିଶୁ ଯେଉଁ ସାମାଜିକ, ସାଂସ୍କୃତିକ ପରିପ୍ରେକ୍ଷୀ ମଧ୍ୟରେ ବିକାଶ ଲାଭ କରିଛି, ସେ ସମାଜ ଓ ସଂସ୍କୃତିର ଉପାଦାନସବୁକୁ ବିଚାର କରିବାକୁ ହେବ ।

ଭିଗୋଟ୍‌ସ୍କିଙ୍କ ମତରେ ଶିଶୁର ଶାରୀରିକ ଓ ମାନସିକ ବିକାଶ କ୍ଷେତ୍ରରେ ପ୍ରତି ବୟସ ସ୍ତରରେ ଗୋଟିଏ ପ୍ରତ୍ୟାଶିତ ସୀମା ରହିଛି । ଭିଗୋଟ୍‌ସ୍କି ଏହାକୁ ଆସନ୍ନ ବିକାଶର ପରିସର (Zone of Proximal Development or ZPD) କହିଥାନ୍ତି । ଏକ ନିର୍ଦ୍ଦିଷ୍ଟ ବୟସରେ ଯେଉଁ ସମସ୍ତ ଅପେକ୍ଷାକୃତ କଷ୍ଟକର କାର୍ଯ୍ୟ ଶିଶୁ ଅନ୍ୟମାନଙ୍କ ସହାୟତା ନେଇ କରିପାରିବ, ସେହିସବୁ କାର୍ଯ୍ୟ ଏପରି ପରିସର ଗଠନ କରିଥାଏ । ତାଙ୍କ ମତରେ ଏକ ନିର୍ଦ୍ଦିଷ୍ଟ ବୟସରେ ଶିଶୁ ନିଜେ ନିଜେ କେତେକ କାର୍ଯ୍ୟକରେ ଏବଂ ସ୍ୱାଧୀନ ଭାବରେ କେତେ ସାମର୍ଥ୍ୟ ଦର୍ଶାଏ । ମାତ୍ର ଅନ୍ୟକେତେକ ଦକ୍ଷତା ପାଇଁ ତା'କୁ ପିତାମାତା, ଶିକ୍ଷକ ଶିକ୍ଷୟିତ୍ରୀ ଏବଂ ଅନ୍ୟସବୁ ପ୍ରଶିକ୍ଷଣ ଉପରେ ନିର୍ଭର କରିବାକୁ ହୁଏ । ମୁଖ୍ୟତଃ ପାରସ୍ପରିକ କ୍ରିୟା ଅନୁକ୍ରିୟା ଫଳରେ ଶିଶୁ କଷ୍ଟକର କାର୍ଯ୍ୟ କରିବାର ଦକ୍ଷତା ହାସଲ କରେ । ଏହା ତା'ର ଦକ୍ଷତା ପରିସର ନିର୍ମାଣ କରେ । ପୁନଶ୍ଚ ସେ ପରବର୍ତ୍ତୀ ବୟସର କାର୍ଯ୍ୟସବୁ ପାଇଁ ଆକାଂକ୍ଷିତ ହୁଏ ଏବଂ ଅନ୍ୟର ସହାୟତା ଆବଶ୍ୟକ କରେ ।

ସମାଜ ଓ ସଂସ୍କୃତି ଦୁଇଟି ଉପାୟରେ ଶିଶୁ ବିକାଶକୁ ପ୍ରଭାବିତ କରେ । ପ୍ରଥମଟି ଏକ ଯାନ୍ତ୍ରିକ (Instrumental) ଦିଗ । ସ୍କୁଲ୍ ପରି ବିଧିବଦ୍ଧ ଶିକ୍ଷା ବ୍ୟବସ୍ଥା, ପରିବେଶଗତ ବ୍ୟବସ୍ଥା (ଯଥା – ନିଜ ପରିବେଶରେ କମ୍ପ୍ୟୁଟର ଦେଖିବା) ଏବଂ ବୈଷୟିକ ବ୍ୟବସ୍ଥାସବୁ

ଶିଶୁ ବିକାଶକୁ ପ୍ରଭାବିତ କରେ । ଏହା ସହଜରେ ଅନୁମେୟ ଯେ ବର୍ତ୍ତମାନର ସମାଜରେ ମୋବାଇଲ ଟେଲିଫୋନ, କମ୍ପ୍ୟୁଟର ଓ ଦୂରଦର୍ଶନର ବହୁଳ ବ୍ୟବହାର ବିକାଶକୁ ଯେଉଁ ଏକ ମୋଡ଼ ଦେଇଛି, ତାହା କିଛି ଦଶକ ତଳେ ସମ୍ଭବ ନଥିଲା ।

ଦ୍ୱିତୀୟ ଉପାୟଟି ହେଉଛି ସାମାଜିକ ଭାବ ଆଦାନ ପ୍ରଦାନର ମାର୍ଗ । କଥାବାର୍ତ୍ତା ଏବଂ କ୍ରିୟା ଅନୁକ୍ରିୟା (Interaction) ମାଧ୍ୟମରେ ଶିଶୁ ବହୁ ଜିନିଷ ଗ୍ରହଣ କରେ। ତାର ମାନସିକ ବିକାଶ ଘଟିଥାଏ । ଶିଶୁ କେଉଁଟି ଶିକ୍ଷା କରିବା ନିତାନ୍ତ ଆବଶ୍ୟକ, ତାହା ଆମର ଜ୍ଞାତସାରରେ ଏବଂ ଆମର ଅଜ୍ଞାତସାରରେ ଆମେ ଶିଶୁକୁ ପ୍ରଦାନ କରିଥାଉ । ଭିଗୋଟ୍‌ସ୍କିଙ୍କ ମତରେ ପ୍ରତି ସମାଜ ଓ ସଂସ୍କୃତିର ନିଜସ୍ୱ ଇତିହାସ ରହିଛି । ପୁଣି ପ୍ରତି ସମାଜ ଓ ସଂସ୍କୃତିର ନିଜସ୍ୱ ମୌଳିକତା ରହିଛି । ଗୋଟିଏ ସମାଜରେ ଯେଉଁ ବିଷୟକୁ ଗୁରୁତ୍ୱ ଦିଆଯାଏ, ଅନ୍ୟ ସମାଜରେ ତାହାର ଗୁରୁତ୍ୱ ନଥାଇପାରେ । ସୁତରାଂ ଶିଶୁର ମାନସିକ ବିକାଶରେ ଏହାର ପ୍ରତିଫଳନ ଦେଖାଯିବା ସ୍ୱାଭାବିକ ।

ଗୋଟିଏ ଦୁଇଟି ଉଦାହରଣ ସାହାଯ୍ୟରେ ଶିଶୁର ବୌଦ୍ଧିକ ବିକାଶ ଓ ସାଂସ୍କୃତିକ ପରିପ୍ରେକ୍ଷୀର ସମ୍ପର୍କକୁ ସ୍ପଷ୍ଟ କରାଯାଇପାରେ । ଚୀନ ଦେଶରେ ଭାଷା ବ୍ୟବହାର କ୍ଷେତ୍ରରେ କେତେକ ସ୍ୱତନ୍ତ୍ରତା ମଧ୍ୟରୁ ଗୋଟିଏ ସ୍ୱାତନ୍ତ୍ର୍ୟ ହେଉଛି କ୍ରିୟାପଦର ପ୍ରୟୋଗ । ଚୀନା ଭାଷାରେ ବାକ୍ୟରେ ବ୍ୟବହାର କରଯାଉଥିବା କ୍ରିୟାପଦଟି ଅପରିବର୍ତ୍ତିତ ନରହି ବସ୍ତୁର ଆକୃତି ଅନୁଯାୟୀ ପରିବର୍ତ୍ତିତ ହୁଏ । ଏହାର ଅର୍ଥ ହେଉଛି "ଟେବୁଲ ଉପରେ କପ୍‌ଟିଏ ରହିଛି" କହିବା ପାଇଁ ବ୍ୟବହାର କରାଯାଉଥିବା କ୍ରିୟାପଦକୁ "ଟେବୁଲ ଉପରେ ବଲ୍‌ଟି ଅଛି" କହିବା ସମୟରେ ପ୍ରୟୋଗ କରାଯାଏ ନାହିଁ । କପ ଓ ବଲ୍‌ର ଆକୃତି ଭିନ୍ନ ହୋଇଥିବାରୁ କ୍ରିୟାପଦରେ ପାର୍ଥକ୍ୟ ରକ୍ଷା କରାଯାଇଥାଏ । ଏହାର ବିଶେଷ ତାତ୍ପର୍ଯ୍ୟ ହେଉଛି ଯେ ଭାଷା ବ୍ୟବହାର ସମୟରେ ବସ୍ତୁର ଆକାର ଓ ଆକୃତି ପ୍ରତି ସଚେତନ ହେବା ସ୍ୱାଭାବିକ । ଏହାର ଫଳାଫଳ ସ୍ୱରୂପ କୁହାଯାଇପାରେ ଯେ ଶିଶୁଟି ଅନ୍ୟର କଥା ଶୁଣିବା ଏବଂ ନିଜର କଥା କହିବା ମାଧ୍ୟମରେ ବସ୍ତୁସବୁର ଆକାର ଓ ଆକୃତି ପ୍ରତି ସଚେତନ ହେବା ଖୁବ୍ ପ୍ରତ୍ୟାଶିତ ବ୍ୟବହାର । ଅନ୍ୟ ଭାଷାରେ କହିଲେ ଚୀନା ଦେଶର ଶିଶୁମାନେ ଅନ୍ୟ ଦେଶର ଶିଶୁମାନଙ୍କ ତୁଳନାର ଆକାର ଆକୃତିର ଧାରଣା ଅପେକ୍ଷାକୃତ କମ୍ ବୟସରେ ଏବଂ ଅପେକ୍ଷାକୃତ ଅଧିକ ଦକ୍ଷତାର ସହିତ କରିପାରିବେ ।

ଏହି ଯୁକ୍ତିକୁ ଅବଲମ୍ବନ କରି କୁହାଯିବ ଯେ ଭାରତରେ ହିନ୍ଦୀ ଭାଷାରେ ମଧ କର୍ତ୍ତା (Subject)ର ଲିଙ୍ଗ ଉପରେ ନିର୍ଭର କରି କ୍ରିୟାପଦ ବଦଳୁଥିବାରୁ ଏସବୁ ଭାଷାଗୋଷ୍ଠୀର ପିଲାମାନେ କେଉଁଟି ପୁରୁଷ ଏବଂ କେଉଁଟି ସ୍ତ୍ରୀ, ସେ ଦିଗରେ ଅଧିକ ସଚେତନ ହେବେ । ସେହିପରି ଏସ୍କିମୋ ସମାଜର ପିଲାମାନେ ଅଳ୍ପବୟସରୁ ବିଭିନ୍ନ ଶ୍ରେଣୀର ତୁଷାର ବିଷୟରେ ଧାରଣା ଗଠନ କରିବା ଖୁବ୍ ସ୍ୱାଭାବିକ । ଆରବ ଦେଶର ଶିଶୁମାନେ ବିଭିନ୍ନ ଶ୍ରେଣୀରେ ଓଟମାନଙ୍କ ସମ୍ପର୍କରେ ଧାରଣା ଗଠନ କରିବା ଏକ ପ୍ରତ୍ୟାଶିତ ବ୍ୟବହାର । ସ୍ୱଭାବତଃ ସାମାଜିକ ସାଂସ୍କୃତିକ ଉପାଦାନ କେତେକ ଧାରଣାର ଆତ୍ମୀକରଣକୁ ସହଜ କରିବା ସ୍ଥଳେ ଅନ୍ୟ କେତେକ ଧାରଣାର ଗଠନକୁ କଷ୍ଟକର କରିବ, ଏଥିରେ ସନ୍ଦେହ ନାହିଁ ।

# ମିଛି ମିଛିକା ଖେଳ : ଭାଷା–ବିକାଶର ପୂର୍ବାଭାସ

ଶିଶୁର ଖେଳ କୌତୁକ କେବଳ ମନୋରଂଜନର ସାମଗ୍ରୀ ନୁହେଁ । ଶିଶୁ ଖେଳପ୍ରିୟ । ଜନ୍ମର ପରେ ପ୦ର ଶିଶୁ ତା'ର ଖେଳୁଆଡ଼ ମନୋଭାବ ଦର୍ଶାଇଥାଏ । ବୟସରେ ବୃଦ୍ଧି ସହିତ ଖେଳର ସ୍ୱରୂପ ଓ ପରିସର ପରିବର୍ତ୍ତିତ ହୁଏ । ଶିଶୁର ଖେଳକୁ ଲକ୍ଷ୍ୟ କରି ଶିଶୁର ମାନସିକ ବିକାଶ ସମ୍ପର୍କରେ ବେଶ୍ କିଛି ସିଦ୍ଧାନ୍ତ ଗ୍ରହଣ କରାଯାଇପାରେ ।

ଶିଶୁର ମିଛିମିଛିକା ଖେଳ ସହିତ ଆମେ ସମସ୍ତେ ପରିଚିତ । ଛଳନା କରି ଶିଶୁ ଯେଉଁସବୁ ଖେଳ ପ୍ରଦର୍ଶନ କରେ, ତାହା ତା'ର ମାନସିକ ବିକାଶକୁ ସୂଚିତ କରିଥାଏ । ଗୋଟିଏ ବସ୍ତୁକୁ ନେଇ ଅନ୍ୟ ଗୋଟିଏ ବସ୍ତୁର ଛଳନା କରିବାର ସାମର୍ଥ୍ୟ ଏକ ବିଶେଷ ଧରଣର ଦକ୍ଷତା । ଏହା ପ୍ରତୀକ (ସିମ୍ବଲ) ବ୍ୟବହାର କରିବାର ପୂର୍ବ ସୂଚନା । ଏହା ଏକ ସାଧାରଣ କଥା ଯେ ଆମେ ଭାଷା ବ୍ୟବହାର କଲାବେଳେ ପ୍ରତୀକ (ସିମ୍ବଲ)ର ଉପଯୋଗ କରୁ । ଆମେ କଥାରେ ପ୍ରକାଶ କରୁଥିବା ଶବ୍ଦଟି ଏକ ନିର୍ଦ୍ଦିଷ୍ଟ ବସ୍ତୁ ବା ଘଟଣା ପାଇଁ ବ୍ୟବହୃତ ହୁଏ । ଭାଷା–ଶିକ୍ଷା କରିବା ମୂଳରେ ପ୍ରତୀକ (ସିମ୍ବଲ)ର ବ୍ୟବହାର ଅପରିହାର୍ଯ୍ୟ । ଶିଶୁ ମିଛିମିଛିକା ଖେଳ ମାଧ୍ୟମରେ ଏପରି ପ୍ରତୀକଧର୍ମୀ ବ୍ୟବହାର ଶିକ୍ଷାକରେ ।

ଶିଶୁର ମିଛିମିଛିକା ଖେଳର କେତୋଟି ନିର୍ଦ୍ଦିଷ୍ଟ ପର୍ଯ୍ୟାୟ ବା ସୋପାନ ରହିଛି । ଏପରି ସୋପାନଗୁଡ଼ିକୁ ବିକେନ୍ଦ୍ରୀକରଣ, ଭିନ୍ନ ପ୍ରସଙ୍ଗକରଣ ଏବଂ ସମନ୍ୱୟକରଣ କୁହାଯାଇପାରେ ।

ଜନ୍ମର ପରେ ପରେ ଶିଶୁ ଖେଳୁଆଡ଼ ମନୋଭାବ ଦର୍ଶାଇଲେ ମଧ୍ୟ ପ୍ରାୟ ଏକ ବର୍ଷ ବେଳକୁ ଶିଶୁର ମିଛିମିଛିକା ଖେଳ ପ୍ରକାଶ୍ୟ ରୂପ ନିଏ । ଏହି ପର୍ଯ୍ୟାୟରେ ଶିଶୁ ନିଜର ପ୍ରକୃତ ସତ୍ତାକୁ ଦୂରେଇ ନେଇ ଅନ୍ୟସବୁ ଚରିତ୍ରର ଛଳନା କରେ । ସେ ଖଟରେ ଲୋଟି ଯାଇ ଶୋଇପଡ଼ିବା ଛଳନା କରେ । କୌଣସି ଏକ ସ୍ଥାନରେ ବସିଯାଇ ଶୋଇବାର ଛଳନା କରେ । ଏପରି କରିବା ସମୟରେ ଶିଶୁ ମଝିରେ ମଝିରେ ହସିଦିଏ । ଏଥିରୁ ଜଣାପଡ଼େ ଯେ ଶିଶୁ ଛଳନା କରୁଛି । ପ୍ରାରମ୍ଭିକ ସ୍ତରରେ ଶିଶୁ ନିଜକୁ ନେଇ ଛଳନା କରେ ଏବଂ ତାର ଦୈନନ୍ଦିନ ଜୀବନର କାର୍ଯ୍ୟ (ଯଥା– ଖାଇବା, ଶୋଇବା , ଗାଧୋଇବାକୁ) ଆଧାର କରି ଛଳନା କରିଥାଏ ।

ପ୍ରାୟ ଦେଢ଼ବର୍ଷ ଦୁଇବର୍ଷ ବୟସ ବେଳକୁ ଶିଶୁ ନିଜର ମିଛିମିଛିକା ଖେଳରେ ଅନ୍ୟମାନଙ୍କୁ ଅନ୍ତର୍ଭୁକ୍ତ କରେ । ଖେଳନା କୁଣ୍ଢେଇଟିନେଇ ତାହାକୁ ଶୋଇବା, ଶୁଆଇବା

ଏବଂ ଗାଧୋଇବା କାର୍ଯ୍ୟର ଛଳନା କରେ । ଏହାର ପରେ ପରେ ଶିଶୁ ମିଛି ମିଛିକା ଖେଳରେ ବ୍ୟବହାର କରୁଥିବା ବସ୍ତୁକୁ ଜୀବନ୍ତ ମନେ କରିବାର ଛଳନା କରେ । ପୂର୍ବରୁ ସେ କୁଣ୍ଢେଇଟିକୁ ଖୁଆଇ ଦେବାର, ଶୁଆଇ ଦେବାର, ଛଳନା କରୁଥିଲା । ମାତ୍ର ଏବେ ଖେଳନା କୁଣ୍ଢେଇଟି ନିଜେ ନିଜେ ଖାଉଛି ବା ନିଜେ ଶୋଇବାର କାର୍ଯ୍ୟ କରୁଛି ବୋଲି ଖେଳ ମାଧ୍ୟମରେ ଦର୍ଶାଏ ।

ଶିଶୁର ମିଛିମିଛିକା ଖେଳର ଦ୍ୱିତୀୟ ସୋପାନଟି ହେଉଛି ଭିନ୍ନ ପ୍ରସଙ୍ଗକରଣ । ଶିଶୁର ବୟସ ଚାରିବର୍ଷ ହେଲାବେଳକୁ ଶିଶୁର ମିଛିମିଛିକା ଖେଳରେ ଗୋଟିଏ ସ୍ୱତନ୍ତ୍ର ଦିଗ ଦୃଷ୍ଟିଗୋଚର ହୁଏ । ପୂର୍ବରୁ ଶିଶୁଟି ହୁଏତ ଖଣ୍ଡିଏ ବାଡ଼ିକୁ ଗୋଟିଏ ଖେଳନା କୁଣ୍ଢେଇ ଏବଂ କାଗଜ ଖଣ୍ଡକୁ କପ୍ ବୋଲି ଛଳନା କରି କୁଣ୍ଢେଇକୁ ଶୁଆଇ ଦେବାର ଖେଳ ଖେଳୁଥିଲା । ମାତ୍ର ବର୍ତ୍ତମାନ ଏ ବୟସରେ ସେ ମିଛିମିଛିକା ଖେଳରେ ବ୍ୟବହାର କରୁଥିବା ବସ୍ତୁସବୁ ପୂରାପୂରି ଅସମ୍ପୃକ୍ତ ନ ହୋଇ କିଛିଟା ସାଦୃଶ୍ୟ ଥିବା ବସ୍ତୁର ଉପଯୋଗ କରେ । ନର୍ସରୀ ସ୍କୁଲରେ ପ୍ରବେଶ କରିବାର ଛଳନା କରି ସେ ନିଜ ଘର କବାଟରେ ମୃଦୁ ଆଘାତ ଦିଏ । ସେହିପରି କପ୍ ରୂପେ ଛଳନା କରୁଥିବା ବସ୍ତୁଟି କିଛି ମାତ୍ରାରେ କପ୍ ଭଳି ହୋଇଥିବା ଦରକାର ଏବଂ ଖବରକାଗଜଟି କିଛିମାତ୍ରାରେ କାଗଜର ହୋଇଥିବା ଆବଶ୍ୟକ ।

ପ୍ରକୃତ ବସ୍ତୁ ବଦଳରେ ବ୍ୟବହାର କରାଯାଉଥିବା ବସ୍ତୁଟି ନିର୍ବାଚନ କଲାବେଳେ ଶିଶୁର ବୁଦ୍ଧିମତ୍ତା ଜଣାପଡ଼େ ।

ବସ୍ତୁଟିକୁ ଭିନ୍ନ ପ୍ରସଙ୍ଗ ବା ପରିପ୍ରେକ୍ଷୀରେ ସେ ବ୍ୟବହାର କରିଥାଏ । ମାତ୍ର ଛଳନା କରାଯାଉଥିବା ବସ୍ତୁର ପ୍ରତିନିଧିତ୍ୱ କରିବା ପାଇଁ ଶିଶୁ ବାଛିଥିବା ପଦାର୍ଥଟି ପୂରାପୂରି ଅଲଗା ହୋଇ ନଥାଏ । କେଉଁ ସବୁ ବସ୍ତୁ କେଉଁ ପଦାର୍ଥର ପ୍ରତୀକ (ସିମ୍ବଲ) ହୋଇପାରିବ, ଯେପରି ବିଚାରଧାରା ଶିଶୁର ଖେଳରେ ପ୍ରତିବିମ୍ବିତ ହୁଏ ।

ପରବର୍ତ୍ତୀ ସୋପାନଟି ହେଉଛି ସମନ୍ୱୟକରଣ । ବର୍ତ୍ତମାନ ଶିଶୁ ଏକାଧିକ ଭୂମିକାର ଛଳନା କରି ସେସବୁ ମଧ୍ୟରେ ସମନ୍ୱୟ ରକ୍ଷାକରେ । ପୂର୍ବରୁ ଖେଳର ବିଷୟବସ୍ତୁ ଗୋଟିଏ ପ୍ରକାରର ଥିଲା ବୋଲି କୁହାଯାଇପାରେ । ଶିଶୁଟି ଗୋଟିଏ ଖେଳନା କୁଣ୍ଢେଇକୁ ଗାଧୋଇବା, ପରେ ଖୁଆଇବା ଏବଂ ପରେ ଶୁଆଇବା ଖେଳ ଖେଳୁଥିଲା । ଏଥିରେ କାର୍ଯ୍ୟ ଭିନ୍ନ ଭିନ୍ନ ହେଲେ ମଧ୍ୟ କେନ୍ଦ୍ରବିନ୍ଦୁ ଗୋଟିଏ କୁଣ୍ଢେଇ । ମାତ୍ର ଚାରି/ପାଞ୍ଚବର୍ଷ ବେଳକୁ ଶିଶୁ ନିଜେ ବାପାଙ୍କର ଭୂମିକା ଗ୍ରହଣ କରି ହାତରେ ଖବରକାଗଜ ଧରି ମା'କୁ ଖାଦ୍ୟ ସଜାଡ଼ିବାର ନିର୍ଦ୍ଦେଶ ଦେବାର ଛଳନା କରେ । ଏ କ୍ଷେତ୍ରରେ ଦୁଇଟି ଭୂମିକାର ସମନ୍ୱୟ ଏବଂ ଏକାଧିକ ବିଷୟବସ୍ତୁର ସଂଯୋଜନା ପ୍ରତିଫଳିତ । ମୋଟ ଉପରେ ମିଛି ମିଛିକା ଖେଳ ମାଧ୍ୟମରେ ପ୍ରତୀକସବୁର ବ୍ୟବହାର ଗଭୀର ଓ ପରିବ୍ୟାପ୍ତ ହୁଏ । ଶିଶୁର ବୁଦ୍ଧିମତ୍ତା ମଧ୍ୟ ଏସବୁ ଖେଳ ମାଧ୍ୟମରେ ପ୍ରକାଶ୍ୟ ରୂପ ନିଏ । ପରବର୍ତ୍ତୀ ସମୟରେ ଶିଶୁ ବଡ଼ ହୋଇ ଅନ୍ୟମାନଙ୍କର ଦୃଷ୍ଟିଭଙ୍ଗୀ ବିଚାର କରିବାର ଯେଉଁ ସାମର୍ଥ୍ୟ ହାସଲ କରେ, ତାହାର ପୂର୍ବାଭାସ ପିଲାଟି ମିଛିମିଛିକା ଖେଳ ମାଧ୍ୟମରେ ପ୍ରକଟିତ ହୋଇଥାଏ ।

# ଶିଶୁର ପ୍ରାରମ୍ଭିକ ବାକ୍‌ରୀତି

ଶିଶୁର ଭାଷାଗତ ସାମର୍ଥ୍ୟର ଅଙ୍କୁରଣ ଓ ବିକାଶ ବେଶ୍ ବିସ୍ମୟ-ପୂର୍ଣ୍ଣ । ବିଦ୍ୟାଳୟ ଜୀବନ ଆରମ୍ଭ ପରେ ପରେ ଔପଚାରିକ ଭାବରେ ପିଲାଟି ସ୍କୁଲରେ ବ୍ୟାକରଣ ଶିକ୍ଷା କରେ ଏବଂ ଭାଷାକୁ କିପରି ଶୁଦ୍ଧ ଭାବରେ ବ୍ୟବହାର କରାଯିବ, ତାହା ଅଭ୍ୟାସ କରେ । ମାତ୍ର ଏହାର ବହୁ ପୂର୍ବରୁ ଶିଶୁ କେତେକ ବାକ୍‌ରୀତି ଆରମ୍ଭ କରି ସାରିଥାଏ । ପିତାମାତା ଯେ ଶିଶୁକୁ ନିର୍ଦ୍ଦିଷ୍ଟ ଭାବରେ ଏପରି ବାକ୍‌ରୀତି ଶିକ୍ଷା ଦିଅନ୍ତି, ତାହା ମଧ୍ୟ ଠିକ୍ ନୁହେଁ ।

ପରିବେଶ ମଧ୍ୟରେ ଏବଂ ଅନ୍ୟମାନଙ୍କ କଥାବାର୍ତ୍ତା ଶୁଣି ଶିଶୁ କେତେକ ଦକ୍ଷତାର ସ୍ୱତଃ ଅଧିକାରୀ ହୋଇଥାଏ ।

ବାକ୍‌ରୀତିରେ ଶବ୍ଦଗୁଡ଼ିକର କ୍ରମାନ୍ୱୟତା ଏବଂ ପରସ୍ପର ମଧ୍ୟରେ ସମ୍ପର୍କ ଗୁରୁତ୍ୱପୂର୍ଣ୍ଣ । କେତେକ ବାକ୍‌ରୀତି ଖୁବ୍ ସରଳ ଓ ବ୍ୟାପକ । ଧରାଯାଉ– "ଛବି ନିଶାକୁ ମାରୁଛି" କିମ୍ବା "ଛବି ନିଶାକୁ ମାରିଲା ।" ଏଠାରେ ପ୍ରଥମଟି (ଛବି) କର୍ତ୍ତା ଏବଂ ଦ୍ୱିତୀୟଟି (ନିଶା) ଫଳାଫଳର ଅଧିକାରୀ । ଏହି ରୀତିକୁ ପ୍ରୟାଗ କରି ଶିଶୁ ଅସଂଖ୍ୟ ଯେ କୌଣସି ନାମ ଏବଂ ନିଶା ସ୍ଥାନରେ ଅନ୍ୟ ଯେ କୌଣସି ନାମ ପ୍ରୟୋଗ କରି ଶିଶୁ ଅସଂଖ୍ୟ ବାକ୍ୟ ଗଠନ କରିଥାଏ । ଛବି ମାତାକୁ ଧରିଛି, ଲତା ମିତାକୁ ଦେଉଛି ଏବଂ ଏହିପରି ବାକ୍ୟସବୁ ଗଠନ କରିବାରେ ଶିଶୁର ଅସୁବିଧା ହୁଏ ନାହିଁ । ସେହିପରି "ମାଗୁଛି" ଏବଂ "ମାଗିଲା"ର ପାର୍ଥକ୍ୟ ବୁଝିବାରେ ଶିଶୁର ବିଶେଷ ଅସୁବିଧା ହୁଏନାହିଁ । ଗୋଟିଏ କାମ ବର୍ତ୍ତମାନ ଚାଲୁଛି ଏବଂ ଅନ୍ୟ କାମଟି ହୋଇଯାଇଛି, ଏପରି ବୁଝିଲା ପରେ ଶିଶୁ ଅନୁରୂପ କାର୍ଯ୍ୟମାନ ପ୍ରକାଶ କରିଥାଏ । ଏପରି ବାକ୍‌ରୀତି ପ୍ରୟୋଗ ଶିକ୍ଷା କରିବା ପୂର୍ବରୁ ଶିଶୁ ସାଧାରଣତଃ ଟେଲିଗ୍ରାଫିକ୍ ଭାଷା ବ୍ୟବହାର କରିଥାଏ । ପ୍ରାଥମିକ ପ୍ରୟୋଗସବୁ ଦୁଇଟି ଶବ୍ଦକୁ ନେଇ ଗଠିତ ହୋଇଥାଏ । ସ୍ଥାନ, କାଳ, ପାତ୍ରସବୁକୁ ବିଚାର କରି ଶିଶୁର କଥା ଓ ଭାଷାର ଅର୍ଥ ବୁଝିବାକୁ ପଡ଼ିଥାଏ । "ମା' ଚଟି" କଥାଟିରେ ଶିଶୁ ତିନୋଟି ମନୋଭାବ ପ୍ରକାଶ କରିପାରେ । ଏହି ଟେଲିଗ୍ରାଫିକ ଉଚ୍ଚାରଣରେ ଶିଶୁମାନଙ୍କର ଚଟି ଅଥବା ମା' ଚଟି ପିନ୍ଧୁଛନ୍ତି ବା ମା' ମୋତେ ଚଟି ପିନ୍ଧାଇଦିଅ ପରି ଭାବସବୁ ପ୍ରକାଶ ପାଇଥାଏ । ବାକ୍‌ରୀତିର ପ୍ରୟୋଗ ପୂର୍ବରୁ ଶିଶୁର କଥାବାର୍ତ୍ତା କେବଳ ଦୁଇଟି ଶବ୍ଦ ମଧ୍ୟରେ ସୀମିତ ଥାଏ ।

ବାକ୍‌ରୀତି ପ୍ରୟୋଗ କଲାପରେ ଶିଶୁ ତିନୋଟି ବା ଅଧିକ ଶବ୍ଦ ବ୍ୟବହାର କରେ । ବେଳେ ବେଳେ ଶୁଣିଥିବା ଗୋଟିଏ ରୀତିର ମାତ୍ରାଧିକ ପ୍ରୟୋଗ ଜଟିଳତା ସୃଷ୍ଟି କରିଥାଏ ।

ଉଦାହରଣ ସ୍ୱରୂପ, ଶିଶୁଟି ବହୁବାର ଶୁଣେ ଯେ ରମା ଭାତ ଖାଉଛି; ରମା ଗୀତ ଗାଉଛି ଇତ୍ୟାଦି । ଏହାକୁ ଅନୁକରଣ କରି ସେ ହୁଏତ କହେ – ଗୀତା ହାତ କୁଣ୍ଡୁଛି । ଲକ୍ଷ୍ୟ କରିବାର କଥା ଯେ, ଖାଉଛି, ଗାଉଛି କ୍ରମରେ ସେ କୁଣ୍ଡୁଛି ଶବ୍ଦଟି କହିଦିଏ । ଠିକ୍ ପ୍ରୟୋଗରେ ଏହା ଯେ କୁଣ୍ଡାଉଛି ହେବ, ଏହା ସେ ପରବର୍ତ୍ତୀ ପର୍ଯ୍ୟାୟରେ ଶିକ୍ଷା କରେ । ଆମର କଥିତ ଭାଷାକୁ ଶିଶୁ କିପରି ବାକ୍ୟରୀତି ଶିକ୍ଷା କରେ, ସେ ସମ୍ପର୍କରେ କିଛି ତଥ୍ୟ ସଂଗ୍ରହ କରାଯାଇଛି । ଲକ୍ଷ୍ୟ କରାଯାଇଛି ଯେ, ଶିଶୁ ବୟସ୍କମାନଙ୍କର କଥାବାର୍ତ୍ତା ଶୁଣେ ଏବଂ ସେମାନଙ୍କର ଉଚ୍ଚାରଣସବୁ ଶୁଆଶାରୀ ପରି ଅନୁକରଣ କରେ । ଏହି ଅନୁକରଣ କରିବା ମାଧ୍ୟମରେ ସେ କେତେକ ବାକ୍ୟରୀତି ସହଜରେ ବାଛିନିଏ । କେତେକ ଭୁଲ୍ ପ୍ରୟୋଗ ମଧ୍ୟ ସେ ଆରମ୍ଭ କରେ ଏବଂ ଧୀରେ ଧୀରେ ଏହି ତ୍ରୁଟିପୂର୍ଣ୍ଣ ପ୍ରୟୋଗ ସବୁ ସଂଶୋଧିତ ହୋଇ ତ୍ରୁଟିହୀନ ରୂପ ନିଏ । କୌତୂହଳର ବିଷୟ ଯେ, ପିତାମାତା ଓ ଅନ୍ୟ ବୟସ୍କ ବ୍ୟକ୍ତିମାନଙ୍କର ସିଧାସଳଖ ତାଲିମ ବିଶେଷ ଫଳପ୍ରଦ ହୋଇନଥାଏ । ଧରାଯାଉ ଶିଶୁଟି କହୁଛି – ଗୁରୁମା ବହି ଧରିଥିଲା । ମା' ସଂଶୋଧନ କରି କୁହନ୍ତି "ଗୁରୁମା ବହି ଧରିଥିଲେ । ଏହି କଥା କହୁଛୁ ତ ?" ଶିଶୁ ପୁଣି କହେ ଗୁରୁମା ବହି ଧରିଥିଲା । ଅବଶ୍ୟ ପରେ ପରେ ଶିଶୁ ଠିକ୍ କ୍ରିୟା ଶବ୍ଦଟି ପ୍ରୟୋଗ କରିଥାଏ । ଏହି ଦୃଷ୍ଟାନ୍ତରୁ ବୁଝିବାକୁ ହେବନାହିଁ ଯେ ଭାଷା ଶିକ୍ଷା କ୍ଷେତ୍ରରେ ପରିବେଷ୍ଟନୀର କୌଣସି ପ୍ରଭାବ ନାହିଁ । କିନ୍ତୁ ଏହା ସ୍ୱୀକୃତ ଯେ, ଶିଶୁର ଭାଷାଶିକ୍ଷା କେଉଁ ସମୟରେ ଏକ ବିକଶିତ ରୂପ ନେବ ତାହା ସହଜରେ କହିହେବ ନାହିଁ । ଅନେକ ସମୟରେ ଶିଶୁ ତାହାର ପରିବେଶରେ ଭାଷାର ଭୁଲ୍ ପ୍ରୟୋଗ ଓ ଠିକ୍ ପ୍ରୟୋଗ ଶୁଣୁଥିଲେ ମଧ୍ୟ ଶିଶୁ କୌଣସି ଏକ ସମୟରେ ଠିକ୍ ପ୍ରୟୋଗଟି ବାଛିନିଏ । ଭାଷାଶିକ୍ଷାର ଏହି ଆକସ୍ମିକ ସଂଯୋଗ ହେତୁ ଏ ପ୍ରକାର ସାମର୍ଥ୍ୟର ଜନ୍ମଗତ ଭିତ୍ତିଭୂମି ରହିଛି ବୋଲି ଅନେକ ମନୋବିଜ୍ଞାନୀ ମତ ଦିଅନ୍ତି ।

# କଥନ-ଶୈଳୀର ବିକାଶ

ଶିଶୁର ମସ୍ତିଷ୍କ ନିଷ୍କ୍ରିୟ ନୁହେଁ । ଏହା ଭାବନା କାର୍ଯ୍ୟରେ ସକ୍ରିୟତା ଦର୍ଶାଏ । ଶିଶୁ ନିଜ ପିତାମାତା ଏବଂ ଯତ୍ନକାରୀ ବୟସ୍କମାନଙ୍କ ସଂସ୍ପର୍ଶରେ ଆସି ଏକ ଭାଷାଗତ ପରିବେଶ ତିଆରି କରେ । ଯେଉଁସବୁ ମୂଳ ଉପାଦାନ ନେଇ ଶିଶୁ ତାର ଭାଷାଗତ ପରିବେଶ ଗଠନ କରିଥାଏ, କ୍ରମଶଃ ଏହି ପରିବେଶର ବିକାଶ ଘଟେ । ଶିଶୁର ମଧ୍ୟ ଭାଷାଗତ ବିକାଶ ସଂଘଟିତ ହୁଏ । ପ୍ରୋତ୍ସାହନ, ଅନୁକରଣ ଏବଂ ଅଭ୍ୟାସ ମାଧ୍ୟମରେ ଶିଶୁର ଭାଷାଗତ ଦକ୍ଷତା ସୁରକ୍ଷିତ ଏବଂ ସୁବିସ୍ତୃତ ହୁଏ ।

କେବଳ ଭାଷାଗତ ଦକ୍ଷତା ନୁହେଁ, ପ୍ରତିଟି ବ୍ୟବହାରର ଗଠନ ଓ ବିକାଶ କ୍ଷେତ୍ରରେ ପ୍ରୋତ୍ସାହନର ଭୂମିକା ରହିଛି । ପ୍ରୋତ୍ସାହନରେ ନିୟମ ଖୁବ୍ ସରଳ ଅଥଚ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରୋତ୍ସାହନ ନିୟମ ହେଉଛି ଯେ ବ୍ୟବହାରଟିର ପରେ ପରେ ସୁଖକର ଅନୁଭବ ସୃଷ୍ଟି ହେଲେ ବ୍ୟବହାରଟି ତିଷ୍ଠି ରହିବାର ସମ୍ଭାବନା ବୃଦ୍ଧି ପାଏ । ଅନ୍ୟ ପକ୍ଷରେ ବ୍ୟବହାର ପରେ ପରେ ପ୍ରୀତିପଦ ଅନୁଭବ ନଆସିଲେ କିମ୍ବା ଅପ୍ରୀତିକର ଅନୁଭୂତି ସଂଚାର ହୋଇ ବ୍ୟବହାରଟି ଦୁର୍ବଳ ହୋଇ ଲୋପ ହୋଇଯିବାର ସମ୍ଭାବନା ସୃଷ୍ଟି ହୁଏ । ଭାଷା ଶିକ୍ଷା କ୍ଷେତ୍ରରେ ମଧ୍ୟ ଏପରି ଘଟେ । ପିଲାଟି ପ୍ରଥମେ ହୁଏତ ଅସ୍ପଷ୍ଟ ଓ ଅର୍ଥହୀନ ଶବ୍ଦସବୁ ଉଚ୍ଚାରଣ କରେ । ପ୍ରକୃତ ଅର୍ଥପୂର୍ଣ୍ଣ ଶବ୍ଦ ସହିତ ଏହା ସମାନ ହୋଇନଥାଏ । ମାତ୍ର ପିତାମାତା କିମ୍ବା ଅନ୍ୟ ଯତ୍ନକାରୀ ଶିଶୁର ଉଚ୍ଚାରିତ ଶବ୍ଦ ସହିତ ପ୍ରକୃତ ଶବ୍ଦର କିଛିଟା ସାମଞ୍ଜସ୍ୟ ଲକ୍ଷ୍ୟ କରି ଶିଶୁକୁ ପ୍ରୋତ୍ସାହନ ଦିଅନ୍ତି । ଶିଶୁ 'ବଲ୍' ନକହି କେବଳ 'ବ' କହିଲେ ମଧ୍ୟ ପିତାମାତା ସ୍ମିତ ହସରେ ଅନୁମୋଦନ କରନ୍ତି । ପିଠି ଥାପୁଡ଼ାଇ କିମ୍ବା ଆଲିଙ୍ଗନ କରି ଶିଶୁକୁ ପ୍ରୋତ୍ସାହନ ଦିଅନ୍ତି । ଏପରି ପ୍ରୋତ୍ସାହନର ପୁନରାବୃତ୍ତି ଶିଶୁକୁ ଶବ୍ଦାଂଶଟି ଉଚ୍ଚାରଣ କରିବାରେ ଉତ୍ସାହିତ କରେ । କିଛିଦିନ ପରେ ଶିଶୁ ବଲ୍ ପରି ଠିକ୍ ଶବ୍ଦଟି ଉଚ୍ଚାରଣ କରେ ।

ଏହି ପ୍ରୋତ୍ସାହନ ପ୍ରକ୍ରିୟା ବହୁଦିନ ଅବ୍ୟାହତ ରହେ । ଶିଶୁ ସ୍କୁଲଯିବା ଆରମ୍ଭ କରିବା ପୂର୍ବରୁ ପିତାମାତା ଶିଶୁ ବାକ୍ୟର ବ୍ୟାକରଣ ଦିଗ ପ୍ରତି ଦୃଷ୍ଟି ଦିଅନ୍ତି । ଲକ୍ଷ୍ୟକରାଯାଇଛି ଯେ, ପିତାମାତା ଓ ଯତ୍ନକାରୀ ହୁଏତ ସମୟ ସମୟରେ ପିଲାର ବାକ୍ୟରେ ଥିବା ବସ୍ତୁଗତ ଭୁଲଭଟ୍ଟକା ଏଡ଼ାଇ ଯାଆନ୍ତି । ମାତ୍ର ବ୍ୟାକରଣଗତ ଅଶୁଦ୍ଧିକୁ ଠିକ୍ କରିବାରେ ବେଶି ତତ୍ପର ହୋଇଛନ୍ତି । ତା'ର ତିନିଟି ହାତ – ଶିଶୁ ଏପରି କହିବାବେଳେ ହୁଏତ ପିତାମାତା ନିରବ ରୁହନ୍ତି । ମାତ୍ର ଶିଶୁ ତା'ର ଦୁଇଟା ହାତ ଅଛନ୍ତି କହିବା ବେଳେ ପିତାମାତା ଓ ଅନ୍ୟ ଯତ୍ନକାରୀ ବିଶେଷକରି

ଆଗ୍ରହ ପ୍ରକାଶ କରି ତୁରନ୍ତ ସଂଶୋଧନ କାମଟି କରିଦିଅନ୍ତି । ଅଛନ୍ତି ସ୍ଥାନରେ ଅଛି କହି ଶିଶୁକୁ ବାକ୍ୟ ସଂଶୋଧନରେ ସାହାଯ୍ୟ କରନ୍ତି । ଅବଶ୍ୟ ଅନେକ ସମୟରେ ପିତାମାତା, ଶିକ୍ଷକ ଶିକ୍ଷୟିତ୍ରୀ ଏବଂ ବୟସ୍କମାନେ ସିଧାସଳଖ ବ୍ୟାକରଣ ସଂଶୋଧନ ନ ଶିଖାଇ ଶିଶୁ କହିଥିବା ଭଲ ବାକ୍ୟଟିର ସଠିକ୍ ସଂପ୍ରସାରଣ କରନ୍ତି । ଉପର ଉଦାହରଣ କ୍ଷେତ୍ରରେ ପିତାମାତା କହନ୍ତି 'କୁନିର ଦୁଇଟି ହାତ ଅଛି, ସେ ଦୁଇ ହାତରେ କାନ୍ଥଧରି ଚାଲୁଛି ।' ଏପରି ଭାବ ସଂପ୍ରସାରଣରେ ଦୁଇଟି ଉପଯୋଗିତା ରହିଛି । ପ୍ରଥମତଃ ଶିଶୁ ଅଧିକରୁ ଅଧିକ ଶବ୍ଦ ଶିକ୍ଷାକରେ । ଦ୍ୱିତୀୟତଃ ପିତାମାତା ଓ ବୟସ୍କମାନେ ଶିଶୁର ବର୍ଦ୍ଧିଷ୍ଣୁ ଶବ୍ଦ ଚାହିଦାକୁ ଲକ୍ଷ୍ୟରଖି ଭାଷା ପ୍ରୟୋଗରେ ବେଶି ସତର୍କତା ଅବଲମ୍ବନ କରନ୍ତି । ପ୍ରୋତ୍ସାହନ ବ୍ୟତୀତ ଅନୁକରଣ ଓ ଅଭ୍ୟାସ ଶିଶୁର ଭାଷା ସାମର୍ଥ୍ୟରେ ବିଶେଷ ଭୂମିକା ଗ୍ରହଣ କରେ । ଶିଶୁ ସବୁ ସମୟରେ ଶୁଆ ପରି ଅନ୍ୟର କଥା ଅନୁକରଣ କରିନଥାଏ । କେତେକ ପୁରୁଣା କଥା ନୂଆ ରୂପରେ ବ୍ୟବହୃତ ହେଉଥିବାର ଶୁଣି ଶିଶୁ ସେଗୁଡ଼ିକ ଅନୁକରଣ କରିଥାଏ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ଶିଶୁ ହୁଏତ କଳା ଓ ପାଣି ଶବ୍ଦଦୁଇଟି ଆଗରୁ ଶୁଣିଥାଏ । ମାତ୍ର ବୟସ୍କମାନେ କାଳିଚିଆ ଲାଲ ଓ ପାଣିଚିଆ ଗୋଲାପି ଶବ୍ଦସବୁ ପ୍ରୟୋଗ କଲେ ଶିଶୁର ଦୃଷ୍ଟି ଆକର୍ଷିତ ହୁଏ । ସେ ବାରମ୍ବାର କାଳିଚିଆ ଓ ପାଣିଚିଆ ଶବ୍ଦଦୁଇଟିକୁ ପୁନରାବୃତ୍ତି କରେ । କଳା ଓ ପାଣି ଶବ୍ଦ ଦୁଇଟି ନୂତନ ରୂପରେ ବ୍ୟବହାର କରାଯାଇଥିବାରୁ ଶିଶୁର ଅନୁକରଣ ଆଗ୍ରହ ବୃଦ୍ଧି ପାଏ ।

ଅନ୍ୟ ସମୟରେ ପରିଚିତ ଶବ୍ଦ ନୂଆ ପ୍ରକାରରେ କୁହାଯାଉଥିଲେ ଶିଶୁର ଦୃଷ୍ଟି ଆକର୍ଷିତ ହୁଏ । ଅବଶ୍ୟ ବୁଝାପଡୁଥିବା ଅଥଚ ନୂଆ ଶବ୍ଦସବୁ ଶିଶୁ ଅନୁକରଣ କରେ । ଦୃଷ୍ଟି ଆକର୍ଷଣ କରୁଥିବା ଶବ୍ଦସବୁକୁ ବାରମ୍ବାର କହିବାର ଅଭ୍ୟାସ ଫଳରେ ଶିଶୁର ଭାଷାଗତ ପରିସର ବିସ୍ତୃତ ହୁଏ ।

ପୂର୍ବରୁ ସୂଚନା ଦିଆଯାଇଛି ଯେ, ଶିଶୁ ସହିତ ପିତାମାତା ଏବଂ ବୟସ୍କମାନଙ୍କର କ୍ରିୟା ଅନୁକ୍ରିୟା ହିଁ ବିଶେଷ ଫଳପ୍ରଦ ଭୂମିକା ଗ୍ରହଣ କରିଥାଏ । ଅଳ୍ପ ବୟସର ଶିଶୁ ଦୁଇ ବା ତିନୋଟି ଶବ୍ଦ ଗ୍ରହଣ କରି ନିଜର ମନୋଭାବ ପ୍ରକାଶ କରେ । ମାତ୍ର ତିନିଚାରି ବର୍ଷ ବେଳକୁ ଶିଶୁର ବାକ୍ୟସବୁ ପୂର୍ଣ୍ଣାଙ୍ଗ ରୂପ ନିଏ । ଏ କ୍ଷେତ୍ରରେ ପିତାମାତା ଓ ଅଭିଭାବକମାନଙ୍କର ପୁନଃପ୍ରକାଶ ତାତ୍ପର୍ଯ୍ୟପୂର୍ଣ୍ଣ ଭୂମିକା ନେଇଥାଏ । ଶିଶୁଟି "ମୁଁ ଦହି" କହିବା ମାତ୍ରେ ମା' କୁହନ୍ତି – "ତୋର ଦହି ଦରକାର । ନୁହେଁ କି ?" ଶିଶୁଟି ଏହା ଶୁଣିବାର ସୁଯୋଗ ପାଇବା ମାତ୍ରେ "ମୁଁ ଦହି ଖାଇବି କିମ୍ବା ମୋର ଦହି ଦରକାର" ବୋଲି କହିଥାଏ । ସୁତରାଂ ଶିଶୁର ଭ୍ରମପୂର୍ଣ୍ଣ ବକ୍ତବ୍ୟଟିକୁ ସଂଶୋଧନ କରିବା ପାଇଁ ତା' ସ୍ଥାନରେ ଶୁଦ୍ଧ ପରିପ୍ରକାଶ ଏବଂ ଭାବ ସଂପ୍ରସାରଣର ଆବଶ୍ୟକତା ରହିଛି । ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁ ସହିତ କଥୋପକଥନ ଛଳରେ ଉପଯୁକ୍ତ ଶବ୍ଦ ଓ ବାକ୍ୟର ପ୍ରୟୋଗ ଶିଶୁର ଭାଷାଗତ ସାମର୍ଥ୍ୟକୁ ବୃଦ୍ଧିମନ୍ତ କରିଥାଏ ।

# ଭାଷାଗତ ସାମର୍ଥ୍ୟ

ଶିଶୁର ଭାଷା ସାମର୍ଥ୍ୟ କ୍ଷେତ୍ରରେ ଜନ୍ମଗତ କ୍ଷମତାର ପରିକଳ୍ପନା ମୂଳରେ ଦୁଇ ତିନୋଟି କାରଣ ରହିଛି । ଶିଶୁର ଜନ୍ମଗତ ସାମର୍ଥ୍ୟ ଉପରେ ଗୁରୁତ୍ୱ ଦେଉଥିବା ବିଶେଷଜ୍ଞମାନେ କହନ୍ତି ଯେ, ଅଳ୍ପ ବୟସରେ ଶିଶୁ ଯେଉଁ ଭାଷାଗତ ପରିବେଶର ସମ୍ମୁଖୀନ ହୁଏ, ଯେଉଁ ବାତାବରଣର ସମ୍ମୁଖୀନ ହୁଏ, ସେ ବାତାବରଣଟି ଅନେକ ଦୃଷ୍ଟିରୁ ଅସମ୍ପୂର୍ଣ୍ଣ । ଶିଶୁମାନେ ଶୁଣୁଥିବା ଅନେକ ବାକ୍ୟର ବ୍ୟାକରଣଗତ ଶୁଦ୍ଧି ନଥାଏ । ବାପା ମା' ଅନେକ ସମୟରେ ଅସମ୍ପୂର୍ଣ୍ଣ ବାକ୍ୟ ବ୍ୟବହାର କରନ୍ତି । ପୁଣି ବାକ୍ୟଗୁଡ଼ିକରେ ବ୍ୟାକରଣଗତ ତ୍ରୁଟି ରହିଥାଏ । ବେଳେବେଳେ ପ୍ରଶ୍ନର ଉତ୍ତର ନଦେଇ ବାପା ମା' ଚୁପ୍ ରୁହନ୍ତି । ଶୁଦ୍ଧ ଭାଷାର ଏପରି ଅଭାବ ସତ୍ତେ ପିଲାମାନେ ଭାଷାର ପ୍ରୟୋଗ ଠିକ୍ ରୂପେ ଶିଖିଥାନ୍ତି ।

ଶିଶୁମାନଙ୍କର ଭାଷାର ପରିସର ଓ ଭାଷାଶୈଳୀ ଅନୁଶୀଳନ କଲେ ଦେଖାଯିବ ଯେ, ଏସବୁ କେବଳ ସେମାନଙ୍କର ପିତାମାତାଙ୍କ ଦ୍ୱାରା ବ୍ୟବହୃତ ଶବ୍ଦ ସମ୍ଭାର ଓ କଥନ ଶୈଳୀ ମଧ୍ୟରେ ସୀମିତ ନୁହେଁ । ପୂର୍ବରୁ ବିଶେଷଭାବେ ଶୁଣିନଥିବା କିମ୍ବା ବ୍ୟବହାର କରି ନଥିବା 'ବହୁବଚନ'ର ହଠାତ୍ ପ୍ରୟୋଗ ଅନ୍ୟମାନଙ୍କୁ ବିସ୍ମିତ କରିଥାଏ ।

ଅବଶ୍ୟ ଭାଷା-ଶିକ୍ଷା କରିବାର ଏକ ଜନ୍ମଗତ ସାମର୍ଥ୍ୟର ସୂଚନା ଥିଲେ ମଧ୍ୟ ଅନୁଭୂତିର ଭୂମିକାକୁ ଅସ୍ୱୀକାର କରିହେବ ନାହିଁ । ଯମଜ ଓ ଅବହେଳିତ ଶିଶୁମାନଙ୍କର ଭାଷା ପ୍ରୟୋଗ ପ୍ରତି ଲକ୍ଷ୍ୟ କଲେ ଜଣାଯିବ ଯେ, ଭାଷା ଶିକ୍ଷା କ୍ଷେତ୍ରରେ କୌଶଳ ଓ ପ୍ରାକ୍-ବିଦ୍ୟାଳୟ ସ୍ତରରେ କେତେକ ଅନୁଭବ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଅନ୍ୟମାନଙ୍କ କଥା ଶୁଣିବାର ସୁଯୋଗ ଏବଂ ପ୍ରଶ୍ନର ଉତ୍ତର ଦେବାର ଅନୁଭୂତି ଶିଶୁର ଭାଷା ଶିକ୍ଷାକୁ ସମୃଦ୍ଧ କରେ । ପୁଣି ଶିଶୁ ଲାଳିତ ପାଳିତ ହେଉଥିବା ଭାଷା ସମ୍ପ୍ରଦାୟ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୁଏ । ଏସବୁକୁ ଲକ୍ଷ୍ୟ ରଖି କୁହାଯିବ ଯେ, ଶିଶୁ ଭାଷା ଶିକ୍ଷାର କେତେକ ସମ୍ଭାବନା ନେଇ ଜନ୍ମ ହୋଇଥିଲେ ମଧ୍ୟ ବାସ୍ତବ ଜଗତର ଅନୁଭବ ତା'ର ଭାଷା ଦକ୍ଷତାକୁ ନିର୍ଦ୍ଦିଷ୍ଟ ରୂପ ଦିଏ ।

ଭାଷା ଶିକ୍ଷାର ପରିବେଶ ମଧ୍ୟରେ ପିତାମାତାଙ୍କର ଅନୁକ୍ରିୟା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । ପିତାମାତା ସହଜ ସରଳ ବାକ୍ୟ କହି ଶିଶୁକୁ ଅଧିକ ସାହାଯ୍ୟ କରନ୍ତି । ଅଧିକ ପରିମାଣରେ 'ସର୍ବନାମ' ବ୍ୟବହାର କରିବା ପରିବର୍ତ୍ତେ ଦୃଶ୍ୟମାନ ବିଶେଷ୍ୟପଦର ବହୁଳ ପ୍ରୟୋଗ ଅଧିକ ସହାୟକ ହୁଏ । ବାପା ବା ମା' ହୁଏତ କହିଥାନ୍ତି—''ଜୋତା ବାହାର କରିଦିଅ । ତା'ପରେ ଜୋତାକୁ ବାହାର ଘରେ ରଖ । ହାତ ଧୋଇନିଅ । ତା' ପରେ ମୋ

ପାଖରେ ଖାଇନିଅ ।'' ଏପରି ନକହି ଅନ୍ୟ ଜଣେ କହିପାରନ୍ତି– ''ଜୋତାକୁ ଖୋଲି ସେସବୁ ବାହାର ଘରେ ରଖି ହାତଧୋଇ ମୋ ପାଖରେ ଖାଇନିଅ ।'' ଏ କ୍ଷେତ୍ରରେ ପ୍ରଥମ ବ୍ୟକ୍ତିଙ୍କ ବାକ୍ୟ ସହଜ ଓ ସରଳ । ଶିଶୁର ଭାଷା ଶିକ୍ଷା ପାଇଁ ଏହା ଅଧିକ ସହାୟକ । ଏପରି ଭାଷା ପ୍ରୟୋଗ ଅଧିକ ମାତ୍ରାରେ ଶିଶୁକେନ୍ଦ୍ରିକ ।

ସେହିପରି ଶିଶୁକୁ ଭାଷା ଶିକ୍ଷା ଦେବାର ଆଉ ଗୋଟିଏ ଦିଗ ହେଉଛି ପୁନଃପ୍ରକାଶ । ଅନେକ ସମୟରେ ଶିଶୁ ନିଜର ଭାବବ୍ୟକ୍ତ କରିବା ପାଇଁ ଗୋଟିଏ ଦୁଇଟି ଶବ୍ଦ କିମ୍ବା ଅସମ୍ପୂର୍ଣ୍ଣ ବାକ୍ୟାଂଶଟି କହିଥାଏ । ଶିଶୁଟି ହୁଏତ କହିପାରେ, ''ମା' ଭାତ ।'' ପୁନଃପ୍ରକାଶର ସୁଯୋଗ ଦେଇ ମା' କହିପାରନ୍ତି– ''ତୋର ଭାତ ଦରକାର କି ?'' ସେହିପରି ଶିଶୁଟି ତ୍ରୁଟିପୂର୍ଣ୍ଣ ବାକ୍ୟ ମା' ଚଟି କହିଲା ବେଳେ ମା' ସଂଶୋଧନ କରି ମା' ଚଟି ପିନ୍ଧୁଛନ୍ତି ବୋଲି କହିପାରନ୍ତି । ଏପରି ସବୁ ପୁନଃପ୍ରକାଶ ଶିଶୁର ଅଭିବ୍ୟକ୍ତିକୁ ପ୍ରାଞ୍ଜଳ କରେ ।

ଅନ୍ୟ କେତେକ ସ୍ଥଳରେ ଶିଶୁର ଭାଷାଗତ ଦକ୍ଷତାର ବୃଦ୍ଧି ପାଇଁ ଭାବ ସମ୍ପ୍ରସାରଣ ପଦ୍ଧତି ପ୍ରୟୋଗ କରାଯିବା ଉଚିତ । ପିଲାଟି 'ଫୁଲ' କହି ସାରିବା ପରେ ବୟସ୍କ ବ୍ୟକ୍ତି 'ସୁନ୍ଦର ଫୁଲ' କହିପାରନ୍ତି । ଶିଶୁର ମୂଳ ଶବ୍ଦଟିକୁ ଆଧାର କରି ତାହାକୁ ପରିବର୍ଦ୍ଧିତ କରି କହିବା ଫଳରେ ଶିଶୁ ନୂଆ ନୂଆ ଶବ୍ଦ ଶିକ୍ଷା କରେ ଏବଂ ସେସବୁର ପ୍ରାସଙ୍ଗିକତା ମଧ୍ୟ ଶିକ୍ଷା କରିଥାଏ ।

ମୂଳତଃ ଶିଶୁର ଶୈଶବ ଓ ପ୍ରାକ୍ ବିଦ୍ୟାଳୟ ସ୍ତରରେ ପିତାମାତାଙ୍କର ଭାଷା ପ୍ରୟୋଗ ଓରା ପରି କାର୍ଯ୍ୟ କରେ । ବଡ଼ ବଡ଼ କୋଠା ତିଆରି ସମୟରେ ଛାତ ଓ କାନ୍ଥକୁ ସହାୟତା ଦେବାପାଇଁ ସାମୟିକ ଭାବରେ କାଠପଟା ଦେଇ ସହାୟକ ବ୍ୟବସ୍ଥା ସ୍ୱରୂପ ଓରା ତିଆରି କରାଯାଏ । ଛାତ ବା କାନ୍ଥସବୁ ଶୁଖିଗଲେ ଏସବୁ କାଠପଟା ଧୀରେ ଧୀରେ ବାହାର କରିଦିଆଯାଏ । ସେହିପରି ଶିଶୁର ଭାଷା–ଶିକ୍ଷା ପାଇଁ ପିତାମାତା, ଅଭିଭାବକ ଏବଂ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ସହାୟତା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଶିଶୁକେନ୍ଦ୍ରିକ ଭାଷାର ବ୍ୟବହାର, ଶିଶୁ ସହିତ କଥାବାର୍ତ୍ତା ଏବଂ ପ୍ରଶ୍ନୋତ୍ତର ମାଧ୍ୟମରେ ଭାଷା ବିକାଶକୁ ତ୍ୱରାନ୍ୱିତ କରାଯାଇପାରିବ । ଶିଶୁକୁ ପ୍ରଶ୍ନ ପଚାରିବା ସମୟରେ ମଧ୍ୟ ଏକ ବିଶେଷ ଦିଗ ପ୍ରତି ଦୃଷ୍ଟି ଦେବାକୁ ହେବ । 'ହଁ' କିମ୍ବା 'ନାହିଁ'ରେ ଉତ୍ତର ଦିଆଯାଇ ପାରିବାର ପ୍ରଶ୍ନ ଅପେକ୍ଷା ନିର୍ଦ୍ଦିଷ୍ଟ ଶବ୍ଦ ଦ୍ୱାରା ଉତ୍ତର ମିଳିବାର ପ୍ରଶ୍ନ ସବୁ ଅଧିକ ଉପଯୋଗୀ । ସ୍ୱାଭାବିକ ଭାବରେ ଶିଶୁ ନିଜର ଅନ୍ତର୍ନିହିତ ସାମର୍ଥ୍ୟ ବଳରେ ଭାଷା ଶିକ୍ଷା କରୁଥିଲେ ମଧ୍ୟ ଆମର ଦାୟିତ୍ୱଶୀଳ ଓ ପ୍ରେରଣାଦାୟକ କ୍ରିୟା ଅନୁକ୍ରିୟା ଶିଶୁର ଭାଷା ଦକ୍ଷତାକୁ ଅଧିକ ବିକଶିତ କରିବ ।

# ଭାଷାଗତ ଦକ୍ଷତାର ବିକାଶ ସମ୍ପର୍କରେ

ଶିଶୁର ଭାଷାଗତ ସାମର୍ଥ୍ୟ ସମ୍ପର୍କରେ ଦୁଇଟି ପୃଥକ୍ ମତ ରହିଛି । ଚମୋସ୍କିଙ୍କ ପରି ବିଶ୍ୱବିଖ୍ୟାତ ମନୋଭାଷା-ତତ୍ତ୍ୱବିତ୍ ଶିଶୁର ଏପରି ଦକ୍ଷତାକୁ ଏକ ସ୍ୱଭାବଗତ ଅନ୍ତର୍ନିହିତ ଦକ୍ଷତା ରୂପେ ବିଚାର କରନ୍ତି । ଏ ଦୃଷ୍ଟିରୁ ଶିଶୁର ଭାଷା ଦକ୍ଷତାକୁ ସ୍ୱାଭାବିକ ପ୍ରକାଶ (ଲାଙ୍ଗୁଏଜ୍ ଆକ୍ୱିଜିସନ୍ ଡିଭାଇସ୍ ବା ଲ୍ୟାଡ୍) ସପକ୍ଷରେ ମତ ଦିଅନ୍ତି । ଅନ୍ୟପକ୍ଷରେ ଅନ୍ୟସବୁ ବିଶେଷଜ୍ଞମାନେ ଶିଶୁର ପରିବେଶ ଏବଂ ବିଶେଷ କରି ପିତାମାତାଙ୍କ ସହିତ ଶିଶୁର କ୍ରିୟା ଅନୁକ୍ରିୟା ଉପରେ ପ୍ରାଧାନ୍ୟ ଦିଅନ୍ତି । ସେମାନଙ୍କ ଦୃଷ୍ଟିଭଙ୍ଗୀରେ ଭାଷାଶିକ୍ଷା ପାଇଁ ଏକ ସହାୟକ ଅବସ୍ଥା ଅଧିକ ପ୍ରୟୋଜନ ।

ପ୍ରକୃତରେ ଦେଖିବାକୁ ଗଲେ ଲ୍ୟାଡ୍‌ର ଅନ୍ତର୍ନିହିତ ପ୍ରକ୍ରିୟା ପୂରାପୂରି ଭୁଲ ନହେଲେ ମଧ ଶିଶୁର ଭାଷାଗତ ଦକ୍ଷତାର ଅଭିବୃଦ୍ଧି ପାଇଁ ଉପଯୋଗୀ ପରିବେଶ ନିତାନ୍ତ ଆବଶ୍ୟକ । ନିଜର ଅଜ୍ଞାତସାରରେ ପିତାମାତା ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ଶିଶୁର ଏହି ଦକ୍ଷତାର ଅଭିବୃଦ୍ଧି ଦିଗରେ ସହାୟକ ଭୂମିକା ନିର୍ବାହ କରିଥାନ୍ତି । ଶିଶୁ ସହିତ କାରବାର କରିବାର କେତୋଟି ପ୍ରକ୍ରିୟା ଶିଶୁର ଦକ୍ଷତାକୁ ପରିପୁଷ୍ଟ କରେ । କେଉଁ କେଉଁ ଉପାୟରେ ପିତାମାତା ଓ ବୟସ୍କମାନେ ଶିଶୁର ଭାଷା ଦକ୍ଷତାକୁ ଅଧିକ ପରିପୁଷ୍ଟ କରିପାରିବେ, ସେସବୁ ସୂଚନା ବେଶ୍ ଶିକ୍ଷାପ୍ରଦ ।

ପ୍ରଥମତଃ ଭାଷା ବ୍ୟବହାର ନକରି ପିତାମାତା ପିଲାମାନଙ୍କ ସହିତ ଖେଳୁଥିବା କେତେକ ଖେଳ ମଧ୍ୟ ପ୍ରକାରାନ୍ତରେ ଭାଷା ଶିକ୍ଷାକୁ ସକ୍ରିୟ କରେ । ମନେକରାଯାଉ କିଛି କଥା ନକହି ମଧ ମା' ଗୋଟିଏ ଜିନିଷକୁ ଲୁଚାଇ ଦେଉଛନ୍ତି ଏବଂ ଶିଶୁଟି ଚାଦର ତଳୁ ତାହାକୁ ବାହାର କରିଛି । ପୁଣି ମା' ଜିନିଷଟିକୁ ତକିଆ ତଳେ ଲୁଚାଇ ଦେଉଛନ୍ତି ଏବଂ ଶିଶୁଟି ପୁଣି ଖୋଜି ତାହାକୁ ବାହାର କରୁଛି । ବାହ୍ୟ ଦୃଷ୍ଟିରୁ ଏପରି ଖେଳ ସହିତ ଭାଷା ଶିକ୍ଷାର କୌଣସି ସମ୍ପର୍କ ନଥିଲେ ମଧ ଏହାର ଅନ୍ତରାଳରେ ଏକ ତାତ୍ପର୍ଯ୍ୟ ରହିଛି । ଜିନିଷଟି ଶିଶୁ ଆଖି ଆଗରୁ ଲୁଚିଯିବା ଏବଂ ପୁଣି ବାହାର କରିବାର ପୁନରାବୃତ୍ତି ଫଳରେ ଶିଶୁ ନିଜର ପାଳିପଡ଼ିବା ପର୍ଯ୍ୟନ୍ତ ଅପେକ୍ଷା କରିବାର ବ୍ୟବହାରଟି ଶିଖେ । ପ୍ରଥମେ ମା' ଲୁଚାଇବେ ଏବଂ ତା'ପରେ ଶିଶୁ ଖୋଜିବ, ଏପରି ଏକ ଢାଞ୍ଚା ଭାଷା ଶିକ୍ଷା କ୍ଷେତ୍ରରେ ଏକ ପ୍ରାରମ୍ଭିକ ପ୍ରସ୍ତୁତି । ଭାଷା ଶିକ୍ଷା କରିବା ପାଇଁ କହିବା ଓ ଶୁଣିବା ଏବଂ ପୁଣି ଶୁଣିବା ଓ କହିବା ପାଳିକରି ଆଗେଇବାର ଅଭ୍ୟାସ ଶିଶୁ ପାଇଁ ଉପଯୋଗୀ ହୋଇଥାଏ ।

ଦ୍ୱିତୀୟତଃ ପିତାମାତା ବସ୍ତୁସବୁ ବ୍ୟବହାର କଲାବେଳେ ସମ୍ମୁଖରେ ବସ୍ତୁଗୁଡ଼ିକର ନାମ କହିଥାନ୍ତି । ରୁଟି ଖୁଆଇଲା ବେଳେ ରୁଟି ଶବ୍ଦଟିକୁ ବାରମ୍ବାର କହିବା, ବଲ୍ ଖେଳାଇଲା ବେଳେ ବଲ ଶବ୍ଦଟିକୁ ବାରମ୍ବାର କହିବାର ଅଭ୍ୟାସ ଫଳପ୍ରଦ ହୁଏ । ଏପରି ସଂଯୋଗର ପୁନରାବୃତ୍ତି ଫଳରେ ଶିଶୁଟି ନିଜ ପରିବେଶର ଦୃଶ୍ୟମାନ ପଦାର୍ଥସବୁର ନାମ ଭାଷାରେ ପ୍ରକାଶ କରିବାର ସାମର୍ଥ୍ୟ ହାସଲ କରେ ।

ତୃତୀୟତଃ ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ, ଶିଶୁକୁ ଭାଷା-ଶିକ୍ଷା ଦେଲାବେଳେ ଦାୟିତ୍ୱଶୀଳ ପିତାମାତା ଓ ବୟସ୍କମାନେ ପ୍ରଥମେ ପ୍ରଥମେ ସହଜ ସରଳ ଶବ୍ଦର ବାକ୍ୟାଂଶ ଓ ବାକ୍ୟସବୁ ବ୍ୟବହାର କରନ୍ତି । ସଂକ୍ଷିପ୍ତ ବାକ୍ୟଟି କହିଲା ବେଳେ ବିଭିନ୍ନ ଶବ୍ଦ ମଧ୍ୟରେ ଥିବା ସମ୍ପର୍କକୁ ଶିଶୁ ଯେପରି ବୁଝିପାରିବ, ସେଥିପ୍ରତି ଦୃଷ୍ଟି ଦିଅନ୍ତି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ "ବଲ୍‌ଟି ଖଟ ଉପରେ ପଡ଼ିଛି" କହିବା ସମୟରେ ମା' "ଉପରେ" ଶବ୍ଦଟି ଉପରେ ଜୋର ଦେଇପାରନ୍ତି । ଏପରି ଭାବରେ ଶିଶୁଟି "ଉପର" ଓ "ତଳ" ଶବ୍ଦ ଦୁଇଟି ସହିତ ଖଟର ସମ୍ପର୍କ ଠିକ୍ ବୁଝିପାରିବ । ସେହିପରି ଶିଶୁଟିକୁ କୌଣସି ବସ୍ତୁଟିର ନାମ ଶିଖାଇବାକୁ ଚେଷ୍ଟା କଲାବେଳେ "ଏହା ଗୋଟିଏ ଫୁଲ" କହିବା ସମୟରେ ଉଚ୍ଚସ୍ୱରରେ ଗୁରୁତ୍ୱ ଦେଇ ଫୁଲଟି ଉଚ୍ଚାରଣ କରିବେ । ଫୁଲଟି ଉପରେ ଗୁରୁତ୍ୱାରୋପ ଏବଂ ଏହାର ପୁନରାବୃତ୍ତି ଫଳରେ ଶିଶୁଟି କେଉଁ ବସ୍ତୁକୁ ଫୁଲ କୁହାଯିବ- ତାହା ଶିକ୍ଷାକରି ଉପଯୁକ୍ତ ଭାଷା ପ୍ରୟୋଗ କରିବ । କହିବା ସମୟରେ "ଫୁଲ" ଶବ୍ଦଟିକୁ ଅତିରଂଜିତ କରାଯାଉଥିଲେ ମଧ୍ୟ ଏହା ଶିଶୁର ଭାଷାଗତ ସାମର୍ଥ୍ୟ ଲାଭରେ ସହାୟକ ହୋଇଥାଏ ।

ଶିଶୁକୁ ଭାଷା ଶିଖାଇବାର ଅନ୍ୟତମ କୌଶଳଟି ହେଉଛି ଭାବବିସ୍ତାର ଓ ପୁନରାବୃତ୍ତି । ଶିଶୁ ଅନେକ ସମୟରେ ଖଣ୍ଡିତ ବାକ୍ୟ କହିଥାଏ । ଶିଶୁର ବାକ୍ୟରେ ବ୍ୟାକରଣଗତ ଅଶୁଦ୍ଧି ଥାଇପାରେ । ଉଦାହରଣ ସ୍ୱରୂପ, କୁକୁରଟି ଭାତ ଖାଉଛି ନକହି "କୁକୁର ଭାତ ଖାଇଛି" ବୋଲି ଏକାଧିକବାର କହିବା ସମୁଚିତ ହେବ । ସେହିପରି ଶିଶୁର କେତେକ ବାକ୍ୟରେ ଅର୍ଥଗତ ତ୍ରୁଟି ଥାଇପାରେ । ଗୋଟିଏ ବିରାଡ଼ିକୁ ଦେଖି ଶିଶୁ "କୁକୁର ଠିଆ"ବୋଲି କହିପାରେ । ଏ କ୍ଷେତ୍ରରେ ପିତାମାତା ସଂଶୋଧନ କରି "ବିରାଡ଼ିଟି ଠିଆ ହୋଇଛି" କହିପାରନ୍ତି ।

ମୋଟ ଉପରେ ଭାବପ୍ରକାଶ ପାଇଁ ଶିଶୁ ବ୍ୟବହାର କରିଥିବା ଶବ୍ଦ, ବାକ୍ୟାଂଶ ବା ବାକ୍ୟସବୁକୁ ସମ୍ପୂର୍ଣ୍ଣ ଭାବରେ ବିସ୍ତାରିତ କରି ପୁନଃପ୍ରକାଶ କରାଯିବାର ଉଦ୍ୟମ ଶିଶୁ ପାଇଁ ସହାୟକ ଅବସ୍ଥା ସୃଷ୍ଟିକରେ । ଏତଦ୍‌ବ୍ୟତୀତ ଶିଶୁଟି ପିତାମାତା କିମ୍ବା ବୟସ୍କମାନଙ୍କଠାରୁ ଶୁଣିସାରିବା ପରେ ଠିକ୍ ଭାବରେ ନିଜକୁ ବ୍ୟକ୍ତ କରିପାରିଛି, ବଡ଼ମାନେ ଏ ସମ୍ପର୍କରେ ସ୍ପଷ୍ଟ ସୂଚନା ଦେବେ । ଶିଶୁର ବକ୍ତବ୍ୟରେ ତ୍ରୁଟିଥିଲେ ତାହା ସଂଶୋଧନ କରାଯାଇ ଶିଶୁର ଗ୍ରହଣଯୋଗ୍ୟ ଭାଷାରେ ପ୍ରକାଶ କରାଯିବ ଏବଂ ଠିକ୍‌ଥିଲେ ସେ ସମ୍ପର୍କରେ ଆଖିର ଚାହାଣୀ, ଦେହର ଅଙ୍ଗଭଙ୍ଗୀ କିମ୍ବା କଥା ମାଧ୍ୟମରେ ସ୍ପଷ୍ଟ ସଂକେତ ଦିଆଯିବ । ବୟସ୍କମାନଙ୍କର ଏପରି ସଚେତନଶୀଳ ବ୍ୟବହାର ଶିଶୁର ଭାଷାଗତ ସାମର୍ଥ୍ୟକୁ ବିକଶିତ କରିବ ।

## ସହାୟକ ପରାମର୍ଶ

୧. ଆପଣ ଶିଶୁକୁ ନୂତନ ଶବ୍ଦଟିଏ ଶିଖାଇବା ସମୟରେ ଏହି ଶବ୍ଦ ସହିତ କୌଣସି ବସ୍ତୁ ଜଡ଼ିତ ଥିଲେ, ବସ୍ତୁଟି ପ୍ରତି ଦୃଷ୍ଟି ଆକର୍ଷଣ କରାନ୍ତୁ । ଉଦାହରଣସ୍ୱରୂପ, 'କୁକୁର' ଶବ୍ଦଟି ଶିଖାଇବା ସମୟରେ କୁକୁର ଦେଖାଇ ପାରନ୍ତି ।

୨. ଭାବ ସଂପ୍ରସାରଣ ପାଇଁ ଧୀରେ ଧୀରେ ବିଶେଷଣ ପଦ ବ୍ୟବହାର କରନ୍ତୁ । ଶିଶୁଟି 'ଫୁଲ' କହିବା ସମୟରେ ଆପଣ 'ଲାଲଫୁଲ' କିମ୍ବା 'ସୁନ୍ଦର ଫୁଲ' କହିପାରନ୍ତି ।

୩. ଶିଶୁର ଅସମାପ୍ତ ବାକ୍ୟଟିକୁ ଆପଣ ଛାଡ଼ି ନଦେଇ ତାହାକୁ ସମ୍ପୂର୍ଣ୍ଣ କରନ୍ତୁ । ଶିଶୁଟି "ମା' ବ୍ୟାଗ୍" କହିବା ସମୟରେ ଆପଣ "ମା' ବ୍ୟାଗ ଧରିଛନ୍ତି" ବୋଲି କହିପାରନ୍ତି।

୪. ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ଶିଶୁର ବୟସକୁ ଚାହିଁ ବୁଝିପାରିବା ଭଳି ଗପଟିଏ କହିବା ଏବଂ କିଛି ସମୟ ବ୍ୟବଧାନରେ ଗପଟି କହିବା ପାଇଁ ଶିଶୁକୁ ସୁଯୋଗ ଦେବା ଉଚିତ । ଏହାର ନିୟମିତ ବ୍ୟବହାର କରନ୍ତୁ ।

# ବୁଦ୍ଧିଅଙ୍କ ଓ ଭାବଅଙ୍କ

ପ୍ରତି ପିତାମାତା ଓ ଅଭିଭାବକଙ୍କର ଅଭୀପ୍ସା ଯେ ସେମାନଙ୍କ ପିଲା ଚତୁର (ସ୍ମାର୍ଟ) ହେଉ । ପିଲାଟି ନିଜର ବୁଦ୍ଧିମତ୍ତା (Intelligence) ଫଳରେ ସମସ୍ତଙ୍କୁ ବିସ୍ମିତ କରୁ ବୋଲି ପିତାମାତା ଉଚ୍ଚ ଅଭିଳାଷ ପୋଷଣ କରନ୍ତି । ପିଲାଟିର ସ୍କୁଲ ଜୀବନ ଓ ସାମାଜିକ ଜୀବନର ସଫଳତା କ୍ଷେତ୍ରରେ ସେମାନେ ବୁଦ୍ଧିମତ୍ତାକୁ ହିଁ ପ୍ରଧାନ କାରଣ ରୂପେ ବିଚାର କରନ୍ତି । ବୁଦ୍ଧିମତ୍ତାକୁ ଦିଆଯାଉଥିବା ଗୁରୁତ୍ୱ ଫଳରେ ବୁଦ୍ଧିମତ୍ତାକୁ ମାପ କରୁଥିବା ବହୁ ମନସ୍ତାତ୍ତ୍ୱିକ ମାପକ (Tests) ପ୍ରସାର ଲାଭ କରିଛି ଏବଂ ବୁଦ୍ଧିମତ୍ତା ପରିମାଣସୂଚକ ବୁଦ୍ଧି ଅଙ୍କ ବା (Intelligence Quotient (IQ) ଆମ ଦୈନନ୍ଦିନ ପରିଭାଷାରେ ଏକ ମୁଖ୍ୟ ଭୂମିକା ନେଇଛି ।

ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବୁଦ୍ଧିମତ୍ତାର ଏକ ସ୍ୱତନ୍ତ୍ର ଅର୍ଥ ଓ ଗୁରୁତ୍ୱ ରହିଛି । ଅନ୍ୟ ସମୟରେ ଏହାର ବିଚାର କରାଯାଇପାରେ । ମାତ୍ର ସାଧାରଣ ଭାବେ କହିବାକୁ ଗଲେ ବୁଦ୍ଧିମତ୍ତା ହେଉଛି ବାହ୍ୟ ପରିବେଶ ସହିତ ସମନ୍ୱୟ ରକ୍ଷା କରିବାର ଦକ୍ଷତା । ଜୀବନର ବିଭିନ୍ନ ପରିସ୍ଥିତି ସହିତ ସମନ୍ୱୟ ରକ୍ଷା କରିବା ପାଇଁ ଏହା ନିତାନ୍ତ ଆବଶ୍ୟକ । ଏ ଦୃଷ୍ଟିରୁ ଛୋଟବଡ଼ ସମସ୍ତଙ୍କ ପାଇଁ ସମନ୍ୱୟଶୀଳତା ରକ୍ଷା କରିବାର ସାମର୍ଥ୍ୟ ଦରକାର । ପିଲାମାନଙ୍କ ପାଇଁ ମଧ୍ୟ ଏହା ପ୍ରୟୋଜନ ।

ବୁଦ୍ଧିମତ୍ତା ପ୍ରାଣୀର ଭାବନା ବା ଚିନ୍ତନ, ଯୁକ୍ତିଯୁକ୍ତତା ଓ ସୁଦୂରପ୍ରସାରୀ ଭାବନା ବୁଦ୍ଧିମତ୍ତାରେ ପ୍ରତିଫଳିତ ହୁଏ । ପୁଣି ପ୍ରାଣୀ ମସ୍ତିଷ୍କର କେତେକ ସ୍ୱତନ୍ତ୍ର କେନ୍ଦ୍ର ଏହି ଭାବନାକୁ ନିୟନ୍ତ୍ରଣ କରେ ।

ବୁଦ୍ଧିମତ୍ତାର ପରିମାଣ ଜୀବନର ସକଳ ସଫଳତାକୁ ନିୟନ୍ତ୍ରଣ କରୁଛି ବୋଲି ଏଯାବତ୍ ବିଶ୍ୱାସ କରାଯାଉଥିଲେ ମଧ୍ୟ ନିକଟ ଅତୀତରେ ଏକ ଭିନ୍ନ ଧରଣର ମନସ୍ତାତ୍ତ୍ୱିକ ସତ୍ୟ ଉଦ୍‌ଘାଟିତ ହୋଇଛି । ତାହା ହେଉଛି ବୁଦ୍ଧିମତ୍ତା-ସର୍ବସ୍ୱ ଜୀବନ ଏକ ସଫଳ ଜୀବନ ନୁହେଁ । ଏହା କହିବାର ଉଦ୍ଦେଶ୍ୟ ହେଉଛି ଯେ, କେବଳ ଭାବନା ଆମର ଜୀବନକୁ କମନୀୟ କରିପାରିବ ନାହିଁ । ଭାବନା ସହିତ ଭାବର ସମନ୍ୱୟ ଜୀବନ ପାଇଁ ଅତ୍ୟାବଶ୍ୟକ ।

ଅବଶ୍ୟ ଭାବାବେଗ ବା ଭାବର ଆଧିକ୍ୟକୁ ଆମେ ଅନୁପଯୋଗୀ ବିଚାର କରିଥାଉ । ଏହା ଠିକ୍ କଥା । ମାତ୍ର ପରିମିତ ପରିମାଣର ଭାବ ଜୀବନକୁ ସରସ ସୁନ୍ଦର କରିଥାଏ ।

ଏହା ବେଶ୍ ଗୁରୁତ୍ୱପୂର୍ଣ୍ଣ ଯେ ବିବର୍ତ୍ତନ ଧାରାରେ ଭାବହିଁ ମନୁଷ୍ୟ ଜୀବନରେ ପ୍ରଥମେ ପ୍ରବେଶ କରିଥିଲା । ବିବର୍ତ୍ତନ ଧାରାରେ ମନୁଷ୍ୟ ସରୀସୃପ ଅବସ୍ଥାରେ ପହଞ୍ଚିବା ବେଳକୁ

ପ୍ରାଣୀର ବୃନ୍ତମସ୍ତିଷ୍କରେ (ଯେଉଁ ସ୍ଥାନରେ ମେରୁମଜ୍ଜା ମସ୍ତିଷ୍କ ସହିତ ସଂଯୁକ୍ତ ହୋଇଛି) ମୁଦି ଆକାରରେ କିଛି ସ୍ନାୟୁ ତିଆରି ହେଲା । ଗ୍ରୀକ୍ ଭାଷାରେ ମୁଦିକୁ ଲିମ୍ବସ୍ କୁହାଯାଉଥିବାରୁ ଏହାକୁ ଲିମ୍ବିକ୍-ମଣ୍ଡଳ କୁହାଗଲା । ଏହି ଲିମ୍ବିକ୍ ମଣ୍ଡଳ ପ୍ରାଣୀର ଭାବର ଅନୁଭବର ଦାୟିତ୍ୱ ନେଲା । ବିବର୍ତ୍ତନର ପରବର୍ତ୍ତୀ ପର୍ଯ୍ୟାୟରେ ହିଁ ଚିନ୍ତା ବା ବିଚାର କରିବାର କେନ୍ଦ୍ରମାନ ମସ୍ତିଷ୍କରେ ରୂପନେଲା ।

ଲକ୍ଷ୍ୟ କରିବାର କଥା ଯେ ଗଠନ ଦୃଷ୍ଟିରୁ ମନୁଷ୍ୟର ମସ୍ତିଷ୍କ ଗୋଟିଏ ହେଲେ ମଧ୍ୟ କାର୍ଯ୍ୟ ଦୃଷ୍ଟିରୁ ଏଥିରେ ଦୁଇଟି ମନ ସକ୍ରିୟ : ଭାବନାମୁଖୀ ମନ ଓ ଭାବମୁଖୀ ମନ । ପୁଣି ଭାବମୁଖୀ ମନଟି ଭାବନାମୁଖୀ ମନଠାରୁ ଅଧିକ ପୁରୁଣା । କାରଣ ବିବର୍ତ୍ତନ ଧାରାରେ ଏହା ପ୍ରଥମେ ରୂପ ନେଇଥିଲା ।

ଦୁଃଖର ବିଷୟ ଯେ ମନୁଷ୍ୟ ଜୀବନରୁ ଧୀରେ ଧୀରେ ଭାବର ସ୍ଥାନ ସଂକୁଚିତ ହୋଇଯାଇଛି । ଆଧୁନିକ ଜଗତରେ ମନୁଷ୍ୟ ନିଜର ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟ, ଅଭିଳାଷ ଏବଂ ଯୁକ୍ତିତର୍କକୁ ଗୁରୁତ୍ୱ ଦେବା ଫଳରେ ଭାବ କ୍ରମଶଃ ନିର୍ବାସିତ ହେଉଛି । ବିଶ୍ୱରେ ଭାବ ଦାରିଦ୍ର୍ୟ ସୃଷ୍ଟି ହୋଇ ଏକ ଅବାଞ୍ଛିତ ଅବସ୍ଥା ସୃଷ୍ଟି ହୋଇଛି । ଏ ଦୃଷ୍ଟିରୁ ମନୋବିଜ୍ଞାନୀମାନେ ସମସ୍ତଙ୍କ ପାଇଁ ଭାବଅଙ୍କର ଉତ୍କର୍ଷ ପ୍ରଖ୍ୟାପନ କରୁଛନ୍ତି । ଶିଶୁ ଓ ବାଲ୍ୟ ଜୀବନରେ ବହୁ ଉପାଦାନର ସୂତ୍ରପାତ ହୋଇଥିବାରୁ ଜୀବନର ଏହି ଆଦ୍ୟସୋପାନରେ ଭାବର ଗୁରୁତ୍ୱ ପ୍ରଖ୍ୟାପନ କରାଯାଉଛି ।

ମନରେ ପ୍ରଶ୍ନ ଉଠିପାରେ କେଉଁ କେଉଁ ଉପାଦାନ ଭାବଅଙ୍କର ସୂଚକ ? ମନୋବୈଜ୍ଞାନିକ ଗବେଷଣାରୁ ଜଣାପଡ଼ିଛି ଯେ , ଛ'ଟି ଉପାଦାନକୁ ନେଇ ଭାବ ପ୍ରକଟିତ ହୁଏ । ପ୍ରଥମତଃ ଉଚ୍ଚ ଭାବଅଙ୍କ ଥିବା ପିଲା ଓ ବ୍ୟକ୍ତିର ଆତ୍ମସଚେତନତା । ଉଚ୍ଚ ଭାବଅଙ୍କ ଥିବା ପିଲାମାନେ ନିଜର ଦକ୍ଷତାକୁ ଯେପରି ବୁଝିଥାନ୍ତି, ନିଜର ପରିସୀମତ୍ୱ ବା ଅକ୍ଷମତାକୁ ମଧ୍ୟ ଜାଣିଥାନ୍ତି । ସେମାନେ କ'ଣ କରିପାରିବେ ଏବଂ କ'ଣ ନକରିପାରିବେ, ଏପରି ଆକଳନ କରିବାର ସାମର୍ଥ୍ୟ ସେମାନଙ୍କର ରହିଥାଏ । ଦ୍ୱିତୀୟତଃ ଉଚ୍ଚ ଭାବଅଙ୍କ ଥିବା ପିଲାମାନଙ୍କର ସାମାଜିକ ଦକ୍ଷତା ଅଧିକ । ଅନ୍ୟମାନଙ୍କ ସହିତ ମିଳିମିଶି ଚଳିବା, ପ୍ରୀତିପୂର୍ଣ୍ଣ ବ୍ୟବହାର କରିବା ଏବଂ ଅନ୍ୟମାନଙ୍କୁ ଆନନ୍ଦ ଦେବାରେ ଏମାନେ ପାରଙ୍ଗମ । ଗୋଷ୍ଠୀଗତ ପରିପ୍ରେକ୍ଷୀରେ ଏମାନଙ୍କର ବ୍ୟବହାର ଖୁବ୍ ପ୍ରସିଦ୍ଧ । ତୃତୀୟତଃ ଉଚ୍ଚ ଭାବଅଙ୍କ ଥିବା ପିଲାମାନଙ୍କର ମିଜାଜ ବିଷାଦ-ଗ୍ରସ୍ତ ହୋଇ ନଥାଏ । ଅଧିକାଂଶ ସମୟରେ ସେମାନେ ଖୁସି ମିଜାସର ହୋଇଥାନ୍ତି । ଏମାନଙ୍କର ଚିଡ଼ିଚିଡ଼ି ଭାବ ପ୍ରାୟ ନଥାଏ ।

ଚତୁର୍ଥତଃ ଉଚ୍ଚ ଭାବଅଙ୍କ ଥିବା ପିଲାମାନେ ସହନଶୀଳ । ଅନ୍ୟ ପିଲାମାନଙ୍କର ହାବଭାବ ପୃଥକ ହୋଇଥିଲେ ମଧ୍ୟ ଏହା ସହ୍ୟ କରନ୍ତି । ନିଜର ରୁଚିକୁ ଜବରଦସ୍ତ ଅନ୍ୟ ଉପରେ ଲଦି ଦେବାର ଯୋଜନା କରନ୍ତି ନାହିଁ । ପ୍ରଥମତଃ ଏମାନଙ୍କର ଆତ୍ମସଂଯମ ଅଧିକ । ନିଜର ଭାବକୁ ଏମାନେ ଠିକ୍ ରୂପେ ନିୟନ୍ତ୍ରଣ କରି ପାରନ୍ତି । ଭାବର ନିୟନ୍ତ୍ରଣ ଏମାନଙ୍କ

ଚରିତ୍ରର ଏକ ବିଶିଷ୍ଟତା । ପରିଶେଷରେ ଜାଣିବାକୁ ହେବ ଯେ, ଉଚ୍ଚ ଭାବଅଙ୍କ ଥିବା ପିଲାମାନଙ୍କର ସମାନାନୁଭୂତି ଗୁଣଥାଏ । ଏହା କେବଳ ସହାନୁଭୂତି ନୁହେଁ, ଏହା ଏକ ବିଶେଷ ଧରଣର ସମ୍ବେଦନଶୀଳତା । ଅନ୍ୟର କଥା ଶୁଣିଲାବେଳେ ଏମାନେ ମନେ ମନେ ନିଜକୁ କହୁଥିବା ବ୍ୟକ୍ତିର ସ୍ଥାନକୁ ଖସାଇ ନେଇ ବକ୍ତବ୍ୟର ବିଚାର କରନ୍ତି । ଦୁଃଖୀର କଥା ଶୁଣିବା ବେଳେ ଏମାନଙ୍କ ମନ ଦୁଃଖୀ ହେଲାବେଳେ ସୁଖୀର କଥା ଶୁଣିବା ସମୟରେ ଏମାନେ ସୁଖାନୁଭୂତି ପାଆନ୍ତି ।

ସ୍ଥୂଳତଃ ଭାବାବେଗ ଅନୁପଯୋଗୀ ହେଲେ ମଧ୍ୟ ନିୟନ୍ତ୍ରିତ ପରିମାଣର ଭାବ ଜୀବନର ଉତ୍କର୍ଷର ସୂଚକ । ଶିଶୁ ଜୀବନରେ ଭାବର ପରିମାଣ (ଭାବାଙ୍କ)ର ଯେପରି ବୃଦ୍ଧିଘଟେ, ସେ ଦିଗରେ ପିତାମାତା, ଶିକ୍ଷକ ଶିକ୍ଷୟିତ୍ରୀ ଓ ଅଭିଭାବକମାନେ ଯତ୍ନବାନ ହେବା ସମୁଚିତ ।

# ବ୍ୟକ୍ତିତ୍ୱର ବିକାଶ

ବ୍ୟକ୍ତିତ୍ୱର ବିକାଶ ବେଳେ ବ୍ୟକ୍ତି ସହିତ ସଂଶ୍ଳିଷ୍ଟ ବୋଲି ଅନେକ ଧାରଣା କରିପାରନ୍ତି । ଶିଶୁମାନଙ୍କର ଯେ ବ୍ୟକ୍ତିତ୍ୱ ରହିଛି, ଏପରି କଥାଟିକୁ ଗ୍ରହଣ କରି ନେବାରେ ବେଶ୍ କିଛି ଲୋକଙ୍କର ଅସୁବିଧା ହୋଇପାରେ । ମାତ୍ର ଏହା ସତ୍ୟ ଯେ, ଶିଶୁମାନଙ୍କର ମଧ୍ୟ ବ୍ୟକ୍ତିତ୍ୱ ରହିଛି ଏବଂ ଏହା କେତୋଟି ସୋପାନ ଦେଇ ବିକଶିତ ହେଇଥାଏ । ବ୍ୟକ୍ତିତ୍ୱ ହେଉଛି ସମନ୍ୱୟ- କୌଶଳ । ପ୍ରକୃତରେ ଆମେ ଯାହା ବ୍ୟକ୍ତ କରୁ ତାହା ହେଉଛି ଆମର ବ୍ୟକ୍ତିତ୍ୱ । ଖ୍ରୀଷ୍ଟଜନ୍ମ ପୂର୍ବରୁ ଗ୍ରୀକ୍‌ମାନେ ନାଟକ ମଞ୍ଚସ୍ଥ କରିବା ସମୟରେ (Mask) ମୁଖା ବ୍ୟବହାର କରୁଥିଲେ । ପ୍ରସାଧାନ ସାମଗ୍ରୀ ଏବଂ ବିଭିନ୍ନ ଚରିତ୍ରର ବେଶଭୂଷା ପାଇଁ ବିଶେଷ ଉପଯୋଗୀ ସାମଗ୍ରୀ ନଥିବାରୁ ସେମାନେ Persona ବା ମୁଖା ବ୍ୟବହାର କରୁଥିଲେ । ଗ୍ରୀକ୍‌ମାନଙ୍କର ଏହି Persona ଶବ୍ଦରୁ ଇଂରାଜୀ ପ୍ରତିଶବ୍ଦ Personality (ବ୍ୟକ୍ତିତ୍ୱ) ଗୃହୀତ ହୋଇଛି । ସୁତରାଂ ମୂଳଭିତ୍ତିକୁ ବିଚାର କରି ବ୍ୟକ୍ତିତ୍ୱ (Personality) ପରିଭାଷାଟି ଆମର ପ୍ରକାଶ୍ୟରୂପକୁ ବୁଝାଇଥାଏ ।

କହିବା ଅନାବଶ୍ୟକ ଯେ ବ୍ୟକ୍ତିତ୍ୱର ବିକାଶ ଏକ ନିରବିଚ୍ଛିନ୍ନ ପ୍ରକ୍ରିୟା । ଶିଶୁଟି ଜରାୟୁରେ ଥିବା ଅବସ୍ଥାରେ ମଧ ମା'ର ବ୍ୟକ୍ତିତ୍ୱ, ଅଭିରୁଚି ଏବଂ ଆଚରଣ ଶିଶୁ-ବ୍ୟକ୍ତିତ୍ୱକୁ ପ୍ରଭାବିତ କରେ । ବଂଶାନୁକ୍ରମିକତା ସୂତ୍ରରେ ଶିଶୁ ଆହରଣ କରିଥିବା ଜିନ୍ ଏବଂ ଜନ୍ମର ପୂର୍ବରୁ ଓ ପରେ ପରେ ବାହ୍ୟ ପରିବେଶ ବ୍ୟକ୍ତିତ୍ୱ ଗଠନ ଆରମ୍ଭ କରେ । ବ୍ୟକ୍ତିତ୍ୱର ଧାରାଟି ଜୀବନର ଶେଷ ସମୟ ପର୍ଯ୍ୟାନ୍ତ ଚାଲିଥାଏ । ତେବେ ଜୀବନର କେଉଁ ପର୍ଯ୍ୟାୟରେ ବ୍ୟକ୍ତିତ୍ୱର ବିକାଶ ଅପେକ୍ଷାକୃତ ଦ୍ରୁତତର ହୁଏ, ସେ ସମ୍ପର୍କରେ ମନୋବିଜ୍ଞାନୀମାନଙ୍କ ମଧରେ କିଛିଟା ପାର୍ଥକ୍ୟ ରହିଛି । ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁର ବ୍ୟକ୍ତିତ୍ୱ ଯେଉଁ ରୂପରେଖ ନିଏ, ତାହା ଠିକ୍‌ରୂପେ ବୁଝିବାକୁ ହେଲେ ଏକାଧିକ ବିଚାର ସହିତ ପରିଚିତି ଆବଶ୍ୟକ । ଅବଶ୍ୟ କେଉଁ ମତବାଦର କେଉଁ ଦିଗଟି ଅଧିକ ଗ୍ରହଣୀୟ, ତାହା ମଧ ଜାଣିବାକୁ ହେବ । ମୁଖ୍ୟ ତତ୍ତ୍ୱଗୁଡ଼ିକର ସଂକ୍ଷିପ୍ତ ବର୍ଣ୍ଣନା ଓ ପ୍ରତିଟି ତତ୍ତ୍ୱର ଗ୍ରହଣୀୟ ଦିଗଟି ଏଠାରେ ସୂଚିତ କରାଯିବ ।

## ଫ୍ରଏଡ୍ରୀୟ ବିଚାରଧାରା

ଶିଶୁ ବ୍ୟକ୍ତିତ୍ୱର ବିକାଶ କ୍ଷେତ୍ରରେ ସିଗ୍‌ମଣ୍ଡ ଫ୍ରଏଡ୍ ଜଣେ ଅଗ୍ରଣୀ ତତ୍ତ୍ୱବିଦ୍ । ବିଂଶ ଶତକର ପ୍ରାରମ୍ଭରେ ମଣିଷର ମାନସିକ ବିକୃତି ଓ ମାନସିକ ବିକାଶ ସମ୍ପର୍କରେ ସେ ଯେଉଁ ତତ୍ତ୍ୱ

ପ୍ରଖ୍ୟାପନ କରିଥିଲେ, ସେସବୁ ଆଧୁନିକ ଯୁଗରେ ପୂର୍ଣ୍ଣମାତ୍ରାରେ ସମର୍ଥିତ ହୋଇ ନଥିଲେ ମଧ୍ୟ ତାଙ୍କର କେତେକ ପର୍ଯ୍ୟବେକ୍ଷଣକୁ ଗୁରୁତ୍ୱ ଦିଆଯାଇଛି । ଫ୍ରଏଡ୍‌ଙ୍କ ମତରେ ଜନ୍ମର ପ୍ରଥମ ପାଞ୍ଚ ଛ'ବର୍ଷ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଏହି ସମୟରେ ଶିଶୁର ବ୍ୟକ୍ତିତ୍ୱ ପ୍ରାୟ ପୂରାପୂରି ଗଠିତ ହୋଇଥାଏ । ପରବର୍ତ୍ତୀ ସମୟରେ କାଁ ଭାଁ ଅଳ୍ପ କିଛି ପରିବର୍ତ୍ତନ ହୁଏ । ଫ୍ରଏଡ୍ ବିଶ୍ୱାସ କରିଥିଲେ ଯେ ଜୀବନର ପ୍ରଥମ ପାଞ୍ଚବର୍ଷ ମଧ୍ୟରେ ବିକଶିତ ହୋଇଥିବା ବ୍ୟକ୍ତିତ୍ୱ ପ୍ରାୟ ଅପରିବର୍ତ୍ତିତ ହୁଏ ।

ଫ୍ରଏଡ୍‌ଙ୍କ ମତରେ ଶିଶୁର ଦୈହିକ ଓ ମାନସିକ ବିକାଶ ସମାନ୍ତର ଗତିରେ ଚାଲିଥାଏ । ଜନ୍ମର ପରେ ପରେ ଶିଶୁ ତା'ର ଶରୀରର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗରୁ ଆନନ୍ଦାନୁଭୂତି ଗ୍ରହଣ କରିବାର ଉଦ୍ୟମ କରେ । ଶରୀରର ସବୁ ଅଂଶ ସବୁ ସମୟରେ ଶିଶୁକୁ ସମାନ ପରିମାଣରେ ଆନନ୍ଦ ଦେଇନଥାଏ । ପ୍ରଥମ ବର୍ଷର ଶିଶୁ ମୁଖ୍ୟତଃ ନିଜର ପାଟିରୁ ଆନନ୍ଦ ଗ୍ରହଣ କରେ । ସ୍ତନ୍ୟପାନ କରି ସେ ଆନନ୍ଦ ଅନୁଭବ କରେ । ପରେ ପରେ (ଦୁଇ ତିନିବର୍ଷ ବେଳକୁ) ସେ ଶୌଚାଳୟର ବ୍ୟବହାର କଲାବେଳେ ମଳତ୍ୟାଗ କରି ଆନନ୍ଦ ପାଏ । ଆନନ୍ଦର ଉତ୍ସ ମୁଖ (Mouth) ନହୋଇ ମଳଦ୍ୱାର ଏହି ଆନନ୍ଦାନୁଭୂତିର କେନ୍ଦ୍ରବିନ୍ଦୁ ହୁଏ । ପୁଣି ପରବର୍ତ୍ତୀ ପର୍ଯ୍ୟାୟରେ ଯୌନାଙ୍ଗକୁ ଆନନ୍ଦର ଉତ୍ସ ରୂପେ ପର୍ଯ୍ୟାୟକ୍ରମେ ଗ୍ରହଣ କରେ । ପ୍ରତି ସୋପାନରେ ଶିଶୁ ଏକ ନିର୍ଦ୍ଦିଷ୍ଟ ପରିମାଣର ଆନନ୍ଦାନୁଭୂତି ପ୍ରତ୍ୟାଶା କରେ । ଏହି ଅନୁଭବର ପରିମାଣ ଠିକ୍ ରହିଲେ ସେ ନିମ୍ନ ସୋପାନଟି ଅତିକ୍ରମ କରି ପରବର୍ତ୍ତୀ ସୋପାନକୁ ଗତିକରେ । ମାତ୍ର କୌଣସି କାରଣରୁ ଗୋଟିଏ ସୋପାନରେ ତା'ର ଆନନ୍ଦ ଖୁବ୍ କମ୍ କିମ୍ୱା ମାତ୍ରାଧିକ ହେଲେ ସମସ୍ୟା ସୃଷ୍ଟି ହୁଏ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ଗୋଟିଏ ଶିଶୁର ମାତୃବିୟୋଗ ଘଟିଲେ କିମ୍ୱା ସେ ମା'ଠାରୁ ଦୂରେଇ ଗଲେ ତା'ର ସ୍ତନ୍ୟପାନଜନିତ ଆନନ୍ଦ ଖୁବ୍ କମିଯାଏ । ଏହାଫଳରେ ଶିଶୁର ବୟସ ବଢ଼ି ସେ ବଡ଼ ହୋଇଯାଇଥିଲେ ମଧ୍ୟ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ସେ ପୂର୍ବ ସୋପାନରେ ଅଟକି ରହେ । ବଡ଼ହୋଇ ମଧ୍ୟ ସେ ମୁଖଜନିତ ଆନନ୍ଦ (ଯଥା-ପାନ ଚୋବାଇବା) ଦେଉଥିବା କେତେକ ଅସ୍ୱାଭାବିକ ବ୍ୟବହାର ଦର୍ଶାଏ ।

ଲକ୍ଷ୍ୟ କରିବାର କଥା ଯେ ଫ୍ରଏଡ୍ ଶିଶୁର ଦୈହିକ ପରିବର୍ତ୍ତନକୁ ଭିତ୍ତି କରି ମାନସିକ ବିକାଶର ପରିକଳ୍ପନା କରିଛନ୍ତି । ଭବିଷ୍ୟତ ଜୀବନର ସ୍ୱାଭାବିକତା ଯେପରି ଅଳ୍ପବୟସ (ପାଞ୍ଚ / ଛ'ବର୍ଷ ମଧ୍ୟରେ)ରେ ନିର୍ଦ୍ଧାରିତ, ପରବର୍ତ୍ତୀ ଅସ୍ୱଭାବୀ (Abnormal) ବ୍ୟବହାରର ମଞ୍ଜି ମଧ୍ୟ ଏହି ସମୟରେ ବପନ କରାଯାଇଥାଏ ବୋଲି ଫ୍ରଏଡ୍‌ଙ୍କର ଦୃଢ଼ଧାରଣା ଥିଲା । ଅବଶ୍ୟ ବ୍ୟକ୍ତିତ୍ୱ ପରିବର୍ତ୍ତିତ ହୋଇ ଚାଲିଥାଏ ଏବଂ ଏହା ପରିବର୍ତ୍ତନୀୟ ବୋଲି ଆଧୁନିକ ମନୋବିଜ୍ଞାନୀମାନେ ମତ ଦିଅନ୍ତି । ଏ ଦୃଷ୍ଟିରୁ ବାଲ୍ୟକାଳୀନ ଅନୁଭୂତିକୁ ଫ୍ରଏଡ୍ ମାତ୍ରାଧିକ ଗୁରୁତ୍ୱ ଦେଇଛନ୍ତି ବୋଲି ସମୀକ୍ଷକମାନେ କହିଥାନ୍ତି । ତଥାପି ସ୍ୱୀକାର କରାଯିବ ଯେ, ବାଲ୍ୟକାଳୀନ ଅନୁଭୂତିର ଏକ ସ୍ୱତନ୍ତ୍ର ପ୍ରଭାବ ରହିଛି । ଅବଶ୍ୟ ଏପରି ସ୍ୱାତନ୍ତ୍ର୍ୟର ମୂଳଭିତ୍ତି

ଦେହଜ ନହୋଇ ସାମାଜିକ ସାଂସ୍କୃତିକ ପୃଷ୍ଠଭୂମି ହୋଇପାରେ । ପ୍ରଖ୍ୟାତ ମନୋବିଜ୍ଞାନୀ ଏରିକ୍ସନ୍ ଏହିପରି ଏକ ସାମାଜିକ ଦୃଷ୍ଟିଭଙ୍ଗୀର ବର୍ଣ୍ଣନା ଦେଇଛନ୍ତି ।

## ଏରିକ୍ସନୀୟ ଦୃଷ୍ଟିଭଙ୍ଗୀ

ଫ୍ରଏଡ୍‌ଙ୍କ ପରି ଏରିକ୍ସନ୍ ବିକାଶର ସୋପାନ ପରିକଳ୍ପନା କରିଥିଲେ ମଧ୍ୟ ତାଙ୍କ ବିଚାରର ଭିତ୍ତିଭୂମି ମୁଖ୍ୟତଃ ସାମାଜିକ ପରିବେଷ୍ଟନୀ । ତାଙ୍କ ମତରେ ମନୁଷ୍ୟ ଜନ୍ମଠାରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ବିଭିନ୍ନ ଧରଣର ଦ୍ୱନ୍ଦ (Conflict) ଦେଇ ଗତିକରେ । ପ୍ରତିଟି ଦ୍ୱନ୍ଦର ମାତ୍ରା ଓ ତାର ସମାଧାନ ତା'ର ବ୍ୟକ୍ତିତ୍ୱକୁ ରୂପଦିଏ । ସାମାଜିକ ପରିପ୍ରେକ୍ଷୀ ଦୃଷ୍ଟିରୁ ଏପରିସବୁ ଦ୍ୱନ୍ଦ ଜନ୍ମନିଏ ।

ଜନ୍ମର ପରେ ପରେ ଶୈଶବ ଅବସ୍ଥାରେ ଶିଶୁ ବିଶ୍ୱାସ-ଅବିଶ୍ୱାସର ଦ୍ୱନ୍ଦ ମଧ୍ୟରେ ଗତିକରେ । ନିଜର ଚାହିଦା ପୂରଣ ପାଇଁ ବାହ୍ୟ ପରିବେଶ ଓ ଅନ୍ୟମାନଙ୍କ ଉପରେ ନିର୍ଭର କରିବ କି ନାହିଁ, ଏପରି ମାନସିକ ସଂଘର୍ଷ ସୃଷ୍ଟିହୁଏ । ପିତାମାତା ବିଶେଷତଃ ଜନନୀ ସମ୍ବେଦନଶୀଳ ହୋଇଥିଲେ ଏବଂ ବାହ୍ୟ ପରିବେଶ ସହାନୁଭୂତିଶୀଳ ହୋଇଥିଲେ ଶିଶୁର ଅନ୍ୟମାନଙ୍କ ପ୍ରତି ଆସ୍ଥା ବଢ଼ିଥାଏ । ସୁତରାଂ ଭଲ ପରିବେଶରେ ଶିଶୁ ଅବିଶ୍ୱାସକୁ ଜୟ କରି ଉନ୍ନତ  ବିକାଶର (ବିଶ୍ୱାସବୋଧ) ଅଧିକାରୀ ହୁଏ ।

ଦୁଇତିନିବର୍ଷ ବୟସ ବେଳକୁ ଶିଶୁ ବିକାଶର ଦ୍ୱିତୀୟ ସୋପାନରେ ପାଦଦିଏ । ସ୍ୱାଧୀନ ହେବାର ଇଚ୍ଛା ଏବଂ  ନିଜର ଶକ୍ତିସାମର୍ଥ୍ୟ ପ୍ରତି ସନ୍ଦେହ, ଏହିପରି ଦୁଇଟି ପରସ୍ପର ବିରୋଧୀ ମନୋଭାବ ମଧ୍ୟରେ ଶିଶୁ ଗତିକରିଥାଏ । ବେଳେବେଳେ ସେ ଭାରି ସୁଟ୍‌କେଶ୍ ସବୁକୁ ଉଠାଇବାର ଚେଷ୍ଟା କରେ । ପୁଣି ଅନ୍ୟ ସମୟରେ ପାଦରେ ଜୋତାଟି ଗଳାଇ ଦେବାପାଇଁ ମା'କୁ ଡାକିଥାଏ । ପିତାମାତା, ଶିକ୍ଷକ ଓ ଅନ୍ୟ ବୟସ୍କବ୍ୟକ୍ତିମାନଙ୍କ ତାଲିମ ଏପରି ଦ୍ୱନ୍ଦର ସମାଧାନ ଦିଗରେ ସହାୟକ ହୁଏ । ଶିଶୁ କଣ କରିପାରିବ ଏବଂ କେଉଁସବୁ କାର୍ଯ୍ୟ ତା' ଶକ୍ତିର ପରିସର ବାହାରେ, ଏପରି ଧାରଣା ଶିଶୁକୁ ଦିଆଯିବା ଉଚିତ ।

ଚାରିପାଞ୍ଚବର୍ଷ ବୟସ ବେଳକୁ ଶିଶୁ ତୃତୀୟ ସୋପାନରେ ପାଦଦିଏ । ଉଦ୍ୟମଶୀଳତା ଓ ଅପରାଧବୋଧ ପରି ଦୁଇଟି ପରସ୍ପର ବିରୋଧୀ ଭାବଧାରା ମଧ୍ୟରେ  ସେ ଗତିକରେ । କାରବାର ଦେଖାଇବାକୁ ଯାଇ ଶିଶୁଟି  ସରବତ୍  ତିଆରି କରିବାର ଉପକ୍ରମ କରେ । ମାତ୍ର କାମ ଅଧାରେ ବିଫଳ ହୋଇ ଲଜ୍ଜା ଅନୁଭବ କରେ । ସେହିପରି କାମିକା ହେବାର ଚେଷ୍ଟା କରି ସାନଭାଇଟିକୁ କାନ୍ଧରେ ବୋହିବାର ଯତ୍ନ କରେ । ମାତ୍ର ସଫଳ ନହୋଇ ନିଜକୁ ନିଜେ ଦୋଷଦିଏ । ଏ କ୍ଷେତ୍ରରେ ମଧ୍ୟ ବୟସ୍କମାନଙ୍କର ସୁଚିନ୍ତିତ ପରାମର୍ଶ ଶିଶୁଟି ପ୍ରତି ଉପଯୋଗୀ ହୋଇଥାଏ । ଦ୍ୱନ୍ଦଟିର ସଫଳ ସମାଧାନ କରି ସେ ପରବର୍ତ୍ତୀ  ସୋପାନକୁ  ଗତି କରିଥାଏ । ଅନ୍ୟ ପାଞ୍ଚୋଟି ସୋପାନ ପ୍ରାକ୍-ବିଦ୍ୟାଳୟ ବୟସର ପରବର୍ତ୍ତୀ ପର୍ଯ୍ୟାୟରେ ସଂଘଟିତ ହେଉଥିବାରୁ ତାହା ଏଠାରେ ଆଲୋଚନା କରାଯାଉ ନାହିଁ । ତେବେ ଏରିକ୍ସନୀୟ ଦୃଷ୍ଟିକୋଣକୁ

ବିଚାର କଲେ ସ୍ପଷ୍ଟ ଅନୁମେୟ ଯେ ପିଲାଟିର ଲାଳନ ପାଳନ ସମୟରେ ଉପଯୋଗୀ ସାମାଜୀକରଣ (Socialization) ଶିଶୁର ମାନସିକ ଦ୍ୱନ୍ଦର ତୀବ୍ରତାକୁ ହ୍ରାସ କରି ତା'କୁ ବିକାଶ ସୋପାନରେ ଆଗେଇ ନେଇପାରିବ ।

## ବ୍ୟବହାରବାଦୀ ଦୃଷ୍ଟିକୋଣ

ବ୍ୟବହାରବାଦରେ ବିଶ୍ୱାସ କରୁଥିବା ମନୋବିଜ୍ଞାନୀମାନେ ଅନ୍ତର୍ନିହିତ ଏବଂ ଆମ ଦୃଷ୍ଟିର ଅନ୍ତରାଳରେ ସକ୍ରିୟଥିବା ଉପାଦାନସବୁକୁ ଗୁରୁତ୍ୱ ଦିଅନ୍ତି ନାହିଁ । ସେମାନଙ୍କ ମତରେ ଖୁବ୍ ସରଳ ନିୟମର ପ୍ରୟୋଗ କରି ବ୍ୟକ୍ତିତ୍ୱର ବିକାଶକୁ ବୁଝାଇ ହେବ । ସେମାନଙ୍କ ମତରେ ବ୍ୟକ୍ତିତ୍ୱ ହେଉଛି କେତେକ ଶିକ୍ଷାକୃତ ଅଭ୍ୟାସର ସମଷ୍ଟି ମାତ୍ର । ଏ ସମସ୍ତ ଶିକ୍ଷାନ୍ତ ଅଭ୍ୟାସ (Learned habits) ପ୍ରୋତ୍ସାହନ (Reinforement) ନିୟମରେ ଗଠିତ ଓ ସଂବର୍ଦ୍ଧିତ ହୋଇଥାଏ ।

ପ୍ରୋତ୍ସାହନ ନିୟମଟି ଖୁବ୍ ସରଳ । କୌଣସି ବ୍ୟବହାର ପ୍ରୋତ୍ସାହିତ ହେଲେ ଏହା ଗଠିତ ଓ ଦୃଢ଼ୀଭୂତ ହୁଏ । ଅନ୍ୟ ପକ୍ଷରେ ବ୍ୟବହାରଟି ତିରସ୍କୃତ ହେଲେ କିମ୍ବା ପ୍ରୋତ୍ସାହନ ହରାଇଲେ ଏହା ଦୁର୍ବଳ ହୋଇ ଧୀରେ ଧୀରେ ଅପସାରିତ ହୋଇଯାଏ । ବିଶିଷ୍ଟ ମନୋବିଜ୍ଞାନୀ ସ୍କିନର୍‌ଙ୍କ ମତରେ ଏହା ନିଶ୍ଚିତ ଭାବରେ କାର୍ଯ୍ୟ କରେ । ଧରାଯାଉ ପିଲାଟି ଗୋଟିଏ ଶବ୍ଦ କହିବା ମାତ୍ରେ ପିତାମାତା ପ୍ରୋତ୍ସାହନ ଦେଉଛନ୍ତି । ଏପରି ପ୍ରୋତ୍ସାହନ ବିଭିନ୍ନ ଉପାୟରେ ଦିଆଯାଇପାରେ । ପିତାମାତା ହସିଦେଇ ସମ୍ମତିସୂଚକ ଇଙ୍ଗିତ ଦେଇପାରନ୍ତି । ଶିଶୁଟିକୁ ଗୋଟିଏ ଲଜେନ୍ସ ଦେଇପାରନ୍ତି । ଶିଶୁଟିର ପ୍ରିୟ ବସ୍ତୁ ଦେଇପାରନ୍ତି । ଶିଶୁଟିକୁ କୋଳେଇ ମଧ୍ୟ ନେଇ ପାରନ୍ତି । ପ୍ରତିଟି ବ୍ୟବହାର ପୁରସ୍କାର ବା ପ୍ରୋତ୍ସାହନ ଭଳି କାମ କରିବ ।

ଅନ୍ୟ ପକ୍ଷରେ ଶିଶୁ ଗୋଟିଏ ବ୍ୟବହାର ଦର୍ଶାଇବା ପରେ ପିତାମାତା କୌଣସି ପ୍ରତିକ୍ରିୟା ନ ଦର୍ଶାଇବା ପ୍ରୋତ୍ସାହନ ଅପସାରଣ ଆଖ୍ୟା ଦିଆଯିବ । ଶିଶୁଟିର ବ୍ୟବହାର ପ୍ରୋତ୍ସାହିତ ନ ହେଲେ ତାହା ଦୁର୍ବଳ ହୋଇ ଶେଷରେ ନିର୍ବାସିତ ହୋଇଯିବ । ଅନ୍ୟ ସମୟରେ ତିରସ୍କାର ଓ ଶାସ୍ତିବିଧାନ ମଧ୍ୟ ଅନୁପଯୋଗୀ ବ୍ୟବହାର ଅପସାରଣର ସହାୟକ ହୁଏ । ମାତ୍ର ଶାସ୍ତିବିଧାନରେ ଜଟିଳତା ଥିବାରୁ ନିହାତି ଆବଶ୍ୟକ ନହେଲେ ଏହାକୁ ବ୍ୟବହାର କରିବା ଅନୁଚିତ । ମୋଟ ଉପରେ ପ୍ରୋତ୍ସାହନ ପ୍ରଦାନ କରି ଉପଯୋଗୀ ବ୍ୟବହାରର ଗଠନ ଓ ଦୃଢ଼ୀକରଣ ସମ୍ଭବ । ସେହିପରି ପ୍ରୋତ୍ସାହନର ଅପସାରଣ ଦ୍ୱାରା ଅନୁପଯୋଗୀ ବା ଅସ୍ୱୀକୃତ ବ୍ୟବହାରର ବିଲୋପକରଣ ସମ୍ଭବ । ଗୋଟିଏ ଉଦାହରଣ ଦେଇ ଏହାକୁ ସ୍ପଷ୍ଟ କରାଯାଇପାରେ । ମନେ କରାଯାଉ ଶିଶୁଟି ପ୍ରତିଦିନ ହାତଧୋଇ ସାରି ନିଜର ଖାଦ୍ୟ ଗ୍ରହଣ କରେ । ଏ କ୍ଷେତ୍ରରେ "ବାଃ" କିମ୍ବା "ଖୁବ୍ ଭଲ" ଶବ୍ଦର ଉଚ୍ଚାରଣ ପ୍ରୋତ୍ସାହନର କାର୍ଯ୍ୟ କରିବ । ଅନ୍ୟ ପକ୍ଷରେ ଶିଶୁଟି ହାତ ନଧୋଇ ଖାଇବାକୁ ଜିଦ୍ ଧରୁଥିଲେ ଅନ୍ୟ

ପ୍ରକାର ବ୍ୟବସ୍ଥା ଗ୍ରହଣ କରାଯିବା ଉଚିତ । ପିଲାଙ୍କୁ ଶାସ୍ତି ଦେଲେ ପରିଣତ ଖରାପ ହୋଇପାରେ । ମାତ୍ର ମା' କହିପାରନ୍ତି- ''ହାତ ନଧୋଇଲେ ମୋ ସହିତ ଖାଇବୁ ନାହିଁ ।'' ଏ କ୍ଷେତ୍ରରେ ପ୍ରୋତ୍ସାହନର ଅପସାରଣ (Withdrawal of Reinforcement) ଭଲ କାର୍ଯ୍ୟ କରିବ । ପିଲାଟି ମା' ସହିତ ଏକାଠି ବସି ଖାଇବାକୁ ଭଲପାଏ । ବର୍ତ୍ତମାନ ଏପରି ଏକ ସୁଯୋଗରୁ ବଞ୍ଚିତ ହେବାର ଆଶଙ୍କା ଖରାପ ବ୍ୟବହାରର ଦୂରୀକରଣରେ ସହାୟକ ହେବ । ସ୍ଥୂଳତଃ ପ୍ରୋତ୍ସାହନ ପ୍ରଦାନ ଦ୍ୱାରା ଉପଯୋଗୀ ବ୍ୟବହାର ଗଠନ ଏବଂ ପ୍ରୋତ୍ସାହନର ଅପସାରଣ ଦ୍ୱାରା ଅନୁପଯୋଗୀ ବ୍ୟବହାରର ନିର୍ମୂଳକରଣ ସମ୍ଭବ । ଏ ନୀତିର ଆଶ୍ରୟ ନେଇ ଶିଶୁର ଗଠିତ ହୋଇଥିବା ବ୍ୟବହାରକୁ ବୁଝିବା ଯେପରି ସମ୍ଭବ, ନୂତନ ବ୍ୟବହାରର ଗଠନ ଏବଂ ଅନୁପଯୋଗୀ ପୁରାତନ ବ୍ୟବହାର ବିଲୋପ ମଧ୍ୟ ସମ୍ଭବ ।

**ସାମାଜିକ ଶିକ୍ଷଣ ବିଚାରଧାରା**

ଉପର ଆଲୋଚିତ ବ୍ୟବହାରବାଦୀ ବିଚାର ବହୁ ଦୃଷ୍ଟିରୁ ଗ୍ରହଣୀୟ ହେଲେ ମଧ୍ୟ କେତେକ ମନୋବିଜ୍ଞାନୀ ଏହାର ପରିସରକୁ ଆଉ କିଛି ପରିବ୍ୟାପ୍ତ କରିଛନ୍ତି । ଆଲବର୍ଟ ବାନ୍ଦୁରା ନାମକ ପ୍ରଖ୍ୟାତ ମନୋବିଜ୍ଞାନୀ ମତ ଦିଅନ୍ତି ଯେ ବ୍ୟକ୍ତିତ୍ୱ ଓ ବ୍ୟବହାର ଗଠନ ଦିଗରେ ପ୍ରୋତ୍ସାହନ (Reinforcement) କାର୍ଯ୍ୟ କରୁଥିଲେ ମଧ୍ୟ ପ୍ରୋତ୍ସାହନଟି ସିଧାସଳଖ (Direct) ନହୋଇପାରେ । ପ୍ରୋତ୍ସାହନର ବ୍ୟକ୍ତିଗତ ଅନୁଭବ ନଥାଇ ମଧ୍ୟ ଜଣେ ଶିଶୁ ବା ବ୍ୟକ୍ତି ଅନ୍ୟକୁ ପର୍ଯ୍ୟବେକ୍ଷଣ କରି ନିଜର ବ୍ୟବହାର ଗଠନ କରିପାରେ । ଭଲକାମ ପାଇଁ ଅନ୍ୟ ଗୋଟିଏ ଶିଶୁ ଇନ୍‌ସେନ୍ଟିଭ ପାଉଛି, ତାହା ପର୍ଯ୍ୟବେକ୍ଷଣ (Observation) କଲାପରେ ସେ ମଧ୍ୟ ଭଲକାମ ପାଇଁ ପ୍ରବୃତ୍ତ ହେବ । ସୁତରାଂ ଶିଶୁର ବ୍ୟକ୍ତିତ୍ୱ ଓ ବ୍ୟବହାର ଗଠନରେ ସାମାଜିକ **ପରିପ୍ରେକ୍ଷୀରେ ପର୍ଯ୍ୟବେକ୍ଷଣ ଓ ଅନୁକରଣ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ ।**

ପିତାମାତା ପ୍ରତ୍ୟକ୍ଷ ଭାବରେ କହୁନଥିଲେ ମଧ୍ୟ ଅନେକ ସମୟରେ ପୁତ୍ରକନ୍ୟା ନିଜର ପିତାମାତା ପରି ବ୍ୟକ୍ତିତ୍ୱ ଦର୍ଶାଇ ପାରନ୍ତି । ପିତାମାତାକୁ ଭଲପାଇ ସେମାନଙ୍କୁ (Imitation) ଅନୁକରଣ କରିବାର ପ୍ରକ୍ରିୟାରୁ ଏପରି ପରିଣତି ଉପୁଜେ । ଅନ୍ୟ ସମୟରେ ଶିଶୁ ବାହ୍ୟଜଗତରୁ ତା'ର ଆଦର୍ଶ ନାୟକ (Role Model) ଖୋଜିନିଏ । ଏପରି ମଡ଼େଲ ବା ନାୟକଙ୍କୁ ଅନୁସରଣ କରି ସେ ଜ୍ଞାତସାରରେ ଏବଂ ଅଜ୍ଞାତସାରରେ ନିଜର ବ୍ୟକ୍ତିତ୍ୱ ଓ ବ୍ୟବହାର ଗଠନ କରେ । ନମୁନାସବୁ ଶିଶୁର ବ୍ୟବହାରକୁ ପ୍ରୋତ୍ସାହିତ କରନ୍ତି । ନମୁନାମାନଙ୍କର କାର୍ଯ୍ୟ ଏବଂ ସେମାନଙ୍କ କାର୍ଯ୍ୟରେ ଭଲ ଫଳାଫଳ ଦେଖି ଶିଶୁ ସେଦିଗରେ ପ୍ରବୃତ୍ତ ହୁଏ । ଏହି କାରଣରୁ ଅନେକ ସମୟରେ ଶିଶୁମାନେ ଦୂରଦର୍ଶନର ପରଦା ଉପରେ ଦେଖୁଥିବା ଚରିତ୍ରସବୁକୁ ଅନୁକରଣ କରନ୍ତି । ଏସବୁ ଶିଶୁ ବ୍ୟକ୍ତିତ୍ୱକୁ ପ୍ରଭାବିତ କରେ । ପରିଶେଷରେ କୁହାଯିବ ଯେ ଶିଶୁର ବ୍ୟକ୍ତିତ୍ୱ ଗଠନ କ୍ଷେତ୍ରରେ ଏକାଧିକ ନୀତି ନିୟମ କାର୍ଯ୍ୟ କରିଥାଏ ।

## ବ୍ୟକ୍ତିତ୍ୱ ବିକାଶର ମୁଖ୍ୟ ନୀତି ଓ ପରାମର୍ଶ

| ଦୃଷ୍ଟିଭଙ୍ଗୀ | ମୂଳନୀତି | କ'ଣ କରିବେ |
|---|---|---|
| ଫ୍ରଏଡ଼ୀୟ ବିଚାରଧାରା | ଜନ୍ମରୁ ପାଞ୍ଚ ଛ' ବର୍ଷ ମଧ୍ୟରେ ଶାରୀରିକ ପରିବର୍ତ୍ତନ ଏବଂ ଆନନ୍ଦାନୁଭୂତିର ଗୁରୁତ୍ୱ | ଶିଶୁର ଶାରୀରିକ ପରିବର୍ତ୍ତନକୁ ଦୃଷ୍ଟିରେ ରଖି ତା'ର ଆନନ୍ଦ ଗ୍ରହଣର ମାତ୍ରାକୁ ନିୟନ୍ତ୍ରଣ କରନ୍ତୁ । |
| ଏରିକ୍‌ସନ୍‌ଙ୍କ ଦୃଷ୍ଟିକୋଣ | ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁମାନଙ୍କର ସ୍ୱାଧୀନତା ଓ ଆତ୍ମ-ସନ୍ଦେହର ଦ୍ୱନ୍ଦ୍ୱ ଏବଂ ଉଦ୍ୟମଶୀଳତା ଓ ଅପରାଧବୋଧର ଦ୍ୱନ୍ଦ୍ୱ ମୁଖ୍ୟ ଭୂମିକା ନିଏ । | ଶିଶୁର ନିଜସ୍ୱସାମର୍ଥ୍ୟ ସମ୍ପର୍କରେ ଶିକ୍ଷା ଦିଅନ୍ତୁ, ଶିଶୁର ପରିସୀମତ୍ୱ (Limitation) ମଧ୍ୟ ବୁଝାଇ ଦିଅନ୍ତୁ । |
| ବ୍ୟବହାରବାଦୀ ଚିନ୍ତାଧାରା | ପ୍ରୋତ୍ସାହନ ପ୍ରଦାନରେ ବ୍ୟବହାର ଗଠିତ ହୁଏ, ପ୍ରୋତ୍ସାହନର ଅପସାରଣରେ ବ୍ୟବହାର ଦୁର୍ବଳ ଓ ନିର୍ମୂଳ ହୁଏ । | ଉପଯୋଗୀ ବ୍ୟବହାରର ଗଠନ ଓ ଦୃଢ଼ୀକରଣ ପାଇଁ ପ୍ରୋତ୍ସାହନ ଦିଅନ୍ତୁ । ଅନୁପଯୋଗୀ ବ୍ୟବହାର ଦୂର କରିବାକୁ ପ୍ରୋତ୍ସାହନର ଅପସାରଣ କରନ୍ତୁ । ନିହାତି ଦରକାର ନପଡ଼ିଲେ ଶାସ୍ତିବିଧାନର ପ୍ରୟୋଗ କରନ୍ତୁ ନାହିଁ । |
| ସାମାଜିକ ଶିକ୍ଷଣ ନୀତି | ଅନ୍ୟମାନଙ୍କର ବ୍ୟବହାର କିପରି ପ୍ରୋତ୍ସାହିତ ହେଉଛି କିମ୍ବା ତିରସ୍କୃତ ହେଉଛି, ତା'ର ପର୍ଯ୍ୟବେକ୍ଷଣ ବ୍ୟକ୍ତିତ୍ୱ ଓ ବ୍ୟବହାର ଗଠନ କରେ । | ପିଲାର ନିକଟ ପରିବେଶରେ ଉପଯୋଗୀ ନାୟକ (Role Models)ର ବ୍ୟବସ୍ଥା କରନ୍ତୁ । ପିଲାଙ୍କ ପାଇଁ ନିଜେ ଆଦର୍ଶ (Role Model) ହୁଅନ୍ତୁ । |

# ସମ୍ପର୍କର ବଳୟ

ଶିଶୁର ସାମାଜିକ ଓ ଭାବଗତ ବିକାଶ ଏକ ପୃଥକୀକୃତ ପ୍ରକ୍ରିୟା ନୁହେ । ଶିଶୁ ଯେଉଁ ସାମାଜିକ ସମ୍ପର୍କର ବଳୟ ମଧ୍ୟରେ ଜୀବନ ଯାପନ କରେ, ତାହାର ବୈଶିଷ୍ଟ୍ୟ ଶିଶୁର ବ୍ୟକ୍ତିତ୍ୱ ଓ ସାମାଜିକ ବ୍ୟବହାରକୁ ରୂପଦିଏ । ଶିଶୁର ପିତାମାତା ଓ ଅନ୍ୟାନ୍ୟ ଆତ୍ମୀୟସ୍ୱଜନ, ଭାଇଭଉଣୀ ଏବଂ ଖେଳସାଥୀମାନଙ୍କ ସହିତ ସମ୍ପର୍କର ରୂପରେଖ ପ୍ରଭାବ ସୃଷ୍ଟିକରେ । ଏହା ବ୍ୟତୀତ ଭାଇଭଉଣୀଙ୍କ ସଂଖ୍ୟା, ଶିଶୁର ଜନ୍ମକ୍ରମିକତା (Birth order ) ଏବଂ ଶିଶୁଟି ବାଳକ କି ବାଳିକା ଏସବୁ ମଧ୍ୟ ଶିଶୁ ବିକାଶରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରେ ।

ପ୍ରାରମ୍ଭରେ ଶିଶୁ ପିତାମାତାଙ୍କ ସହିତ ଏକ ମହତ୍ତ୍ୱପୂର୍ଣ୍ଣ ସମ୍ପର୍କର ବଳୟ ମଧ୍ୟରେ ତା'ର ପ୍ରାଥମିକ ଅନୁଭବସବୁ ସଂଗ୍ରହ କରେ । ପିତାମାତାଙ୍କର କେଉଁ ପ୍ରକାର ଲାଳନ ପାଳନ ବ୍ୟବସ୍ଥା କେଉଁପରି ପ୍ରଭାବ ସୃଷ୍ଟିକରେ, ତାହା ଅନ୍ୟତ୍ର ବର୍ଣ୍ଣନା ହୋଇଥିବାରୁ ଏଠାରେ ତାହାର ପୁନରାବୃତ୍ତି କରାଯାଉ ନାହିଁ । ତେବେ ପିତାମାତାଙ୍କ ସହିତ ନିବିଡ଼ ଓ ସୁରକ୍ଷାର ସମ୍ପର୍କ (Securely attached) ସୃଷ୍ଟି ହୋଇଥିଲେ ପରବର୍ତ୍ତୀ ପର୍ଯ୍ୟାୟରେ ଶିଶୁ ଏକ ବିଶ୍ୱାସବୋଧ ନେଇ ଅନ୍ୟମାନଙ୍କର ସମ୍ମୁଖୀନ ହୁଏ । ସେ ଅନ୍ତତଃ ପ୍ରଥମରୁ ଅନ୍ୟମାନଙ୍କ ଉପରେ ଆସ୍ଥା ସ୍ଥାପନ କରିବାର ଭରସା ରଖେ । ଏ ଦୃଷ୍ଟିରୁ ପିତାମାତା ଏବଂ ବିଶେଷ କରି ମା' ସହିତ ଶିଶୁର ସମ୍ପର୍କ ଭିତ୍ତିପ୍ରସ୍ତର ରୂପେ କାର୍ଯ୍ୟ କରିଥାଏ ।

ପ୍ରଥମରେ ଜନ୍ମଗ୍ରହଣ କରିଥିବା ସନ୍ତାନଟି ପିତାମାତାଙ୍କଠାରୁ ଅଧିକ ସ୍ନେହଶ୍ରଦ୍ଧା ପାଇଥାଏ । ଦ୍ୱିତୀୟ ସନ୍ତାନର ଜନ୍ମବେଳକୁ ଜ୍ୟେଷ୍ଠ ସନ୍ତାନ କିଛିଟା ଅସ୍ଥିରତା ଅନୁଭବ କରେ । ତା'ପାଇଁ ପୂର୍ବରୁ ଦିଆଯାଉଥିବା ସ୍ନେହଶ୍ରଦ୍ଧାର ପରିମାଣ କମିଯିବାର ସେ ଆଶଙ୍କା କରେ । ବହୁ କ୍ଷେତ୍ରରେ ଏପରି ଆଶଙ୍କା ଅମୂଳକ । ସାମୟିକ ଭାବରେ ନବଜନ୍ମିତ ଶିଶୁ ଘରକୁ ଆସିବା ପରେ ପରେ ପିତାମାତା ଜ୍ୟେଷ୍ଠ ସନ୍ତାନକୁ କିଛି କମ୍ ସମୟ ଦେଉଥିଲେ ମଧ୍ୟ ଜ୍ୟେଷ୍ଠ ସନ୍ତାନ ସହିତ ନିବିଡ଼ତା ରହିଥାଏ । ପିତାମାତା ଜ୍ୟେଷ୍ଠ ସନ୍ତାନଠାରୁ ଅଧିକ ପ୍ରତ୍ୟାଶା ରଖନ୍ତି । ଏହି ସନ୍ତାନର ସଫଳତାରେ ଅଧିକ ଖୁସି ଏବଂ ବିଫଳତାରେ ଅଧିକ ମର୍ମାହତ ହୁଅନ୍ତି । ଜ୍ୟେଷ୍ଠସନ୍ତାନ ମଧ୍ୟ ଏପରି ଏକ ପରିବେଶ ମଧ୍ୟରେ ତା'ର ସ୍ୱାଧୀନତା ଓ ଦାୟିତ୍ୱବୋଧ ଉପରେ କିଛିଟା ଚାପ ଅନୁଭବ କରେ ।

ଆଧୁନିକ ସମାଜରେ ବେଶ୍ କିଛି ପରିବାରରେ ଏକମାତ୍ର ସନ୍ତାନର ପରିବେଶ ସୃଷ୍ଟି ହେବାରେ ଲାଗିଛି । ଏପରି ପରିବେଶର ସ୍ୱାତନ୍ତ୍ର୍ୟ ଓ ସମସ୍ୟା ଅନ୍ୟତ୍ର ଆଲୋଚିତ ହୋଇଥିବାରୁ

ଏଠାରେ ତାହାର ବିଶଦ ବର୍ଣ୍ଣନା ଦିଆଯାଉ ନାହିଁ । ଶିଶୁମାନଙ୍କ କ୍ଷେତ୍ରରେ ଯେଉଁ ଦୁଇଟି ମୁଖ୍ୟ ସମ୍ପର୍କ ବଳୟର ପ୍ରଭାବ ରହିଛି, ସେ ଦୁଇଟି ହେଉଛି ଭାଇଭଉଣୀମାନଙ୍କ ସମ୍ପର୍କ ଏବଂ ସାଙ୍ଗସାଥୀର ବଳୟ ।

## ଭାଇଭଉଣୀମାନଙ୍କର ପାରସ୍ପାରିକତା

ଅନେକଙ୍କର ଧାରଣା ଯେ ପରିବାରରେ ଭାଇଭଉଣୀମାନେ ଛୋଟ ବୟସରେ ଝଗଡ଼ା କରନ୍ତି ଏବଂ ସେମାନଙ୍କର ମଧ୍ୟ କ୍ରୋଧଭାବ ପ୍ରକାଶିତ ହୁଏ । ମାତ୍ର ଲକ୍ଷ୍ୟ କରିବାର କଥା ଯେ ସେମାନଙ୍କ ମଧ୍ୟରେ ପାରସ୍ପାରିକ ହିଂସା ଓ ଆକ୍ରମଣାତ୍ମକ ବ୍ୟବହାର ପ୍ରକାଶ ପାଉଥିଲେ ମଧ୍ୟ ସ୍ନେହଶ୍ରଦ୍ଧା ଓ ସହାନୁଭୂତି ପରି ସାମାଜିକ ଗୁଣସବୁ ଏହି ପରିପ୍ରେକ୍ଷୀ ମଧ୍ୟରେ ଶିକ୍ଷା କରନ୍ତି । ଗୋଟିଏ ପରିବାରର ଏକ ନବଜନ୍ମିତ ତୃତୀୟ ଶିଶୁ ନର୍ସିଂହୋମରୁ ଘରକୁ ଆସିବା ଦିନ ଅନ୍ୟ ଦୁଇଟି ଶିଶୁ ଏକରକମ ଉତ୍ସବ ପାଳନ କରନ୍ତି । ସେମାନଙ୍କୁ ଥଣ୍ଡା ଧରିଥିଲେ ମଧ୍ୟ ସେମାନେ ମୁହଁରେ ଲୁଗାଦେଇ କୁନି ଭାଇ (କିମ୍ବା ଭଉଣୀ)ଟିର ଆଦର କରିବାର ବ୍ୟଗ୍ରତା ଦର୍ଶାନ୍ତି । ଗୋଟିଏ ଶିଶୁ ରୋଗାକ୍ରାନ୍ତ ହେଲେ ତା'ର ବଡ଼ଭାଇ କିମ୍ବା ବଡ଼ଭଉଣୀ ତା'ର ଦାୟିତ୍ୱ ନେବା ଏବଂ ତା'କୁ ସ୍ନେହ ଆଦର ଦର୍ଶାଇବାର ଦୃଶ୍ୟ ବିରଳ ନୁହେଁ । ସମ୍ବେଦନଶୀଳ ଭାବରେ ଅନ୍ୟର ବ୍ୟଥା ବୁଝିବାର ସାମର୍ଥ୍ୟ ଏହିଠାରୁ ଆରମ୍ଭ ହୁଏ । ସମାନାନୁଭୂତି (Empathy) ଏବଂ ଅନ୍ୟର ଅସୁବିଧା ସମୟରେ ସାହାଯ୍ୟ କରିବାର ମନୋବୃତ୍ତିର ଶିକ୍ଷା ମଧ୍ୟ ବିକଶିତ ହୁଏ ।

ଭାଇ ଭଉଣୀମାନଙ୍କ ମଧ୍ୟରେ ବୟସର ବ୍ୟବଧାନ କିଛିଟା ପ୍ରମାଦ ଘଟାଏ । ଭାଇ ହେଉ ବା ଭଉଣୀ ହେଉ ଦୁଇଟି ସନ୍ତାନ ମଧ୍ୟରେ ବୟସର ବ୍ୟବଧାନ ଖୁବ୍ କମ୍ ହୋଇଥିଲେ ସାଧାରଣତଃ ବଡ଼ ସନ୍ତାନଟି ଛୋଟକୁ ଶିକ୍ଷାଦିଏ । ଅନ୍ୟକୁ କିପରି ସାହାଯ୍ୟ କରିବାକୁ ହୁଏ, ତାହା ହୁଏତ ସେ ଶିଖାଏ । ଅନେକ ସମୟରେ ଛୋଟ ବଡ଼ର ଅନୁକରଣ କରେ ।

ଅବଶ୍ୟ ସ୍ଥଳ ବିଶେଷରେ ସନ୍ତାନ ସନ୍ତତିଙ୍କ ମଧ୍ୟରେ ବୈରଭାବ (Sibling rivalry) ପ୍ରକଟିତ ହୁଏ । ଅନେକ ସମୟରେ ପିତାମାତାଙ୍କ ଅନୁପସ୍ଥିତିରେ ସେମାନେ ପରସ୍ପର ସହିତ ସହଯୋଗ କରୁଥିଲେ ମଧ୍ୟ ପିତାମାତାଙ୍କ ଉପସ୍ଥିତିରେ ପରସ୍ପର ପ୍ରତି ବୈରତା ଦର୍ଶାନ୍ତି । ପିତାମାତାଙ୍କ ଦୃଷ୍ଟିଆକର୍ଷଣ କରିବା ପାଇଁ ଏବଂ ସେମାନଙ୍କର ଅଧିକ ଆଦରଯତ୍ନ ପାଇବା ପାଇଁ ଏପରି କୌଶଳ ଅବଲମ୍ବନ କରାଯାଏ ।

## ସାଙ୍ଗସାଥୀର ବଳୟ

ଶିଶୁ ଖୁବ୍ ଅଳ୍ପ ବୟସରେ ସମାନ ପ୍ରକାର ଖେଳ ବା କାର୍ଯ୍ୟ ମାଧ୍ୟମରେ ଅନ୍ୟ ଶିଶୁମାନଙ୍କ ସହିତ ସମ୍ପର୍କ ରକ୍ଷାକଲେ ମଧ୍ୟ ବନ୍ଧୁତ୍ୱର ପ୍ରକୃତ ତାତ୍ପର୍ଯ୍ୟ ସେ ପ୍ରାୟ ତିନିବର୍ଷ ବୟସବେଳକୁ ଉପଲବ୍ଧି କରେ । ବନ୍ଧୁ ନିତାନ୍ତ ଦରକାର ଏବଂ ଅନ୍ୟର ବନ୍ଧୁତ୍ୱ ହାସଲ କରିବାକୁ ହେଲେ ନିଜକୁ କିଛି କରିବାକୁ ହେବ, ଏହାର ଗୁରୁତ୍ୱ ସେ ପ୍ରାୟ ତିନିବର୍ଷ ବୟସ ବେଳକୁ ଅନୁଭବ

କରେ । ସାଙ୍ଗସାଥୀ ମେଳରୁ ସେ ସମସ୍ୟା ସମାଧାନର କୌଶଳ ଶିଖେ, ଅନ୍ୟ ପ୍ରତି ସମାନାନୁଭୂତି (Empathy)ର ତାତ୍ପର୍ଯ୍ୟ ବୁଝେ ଏବଂ ଅନ୍ୟକୁ ଅନୁକରଣ କରିବାର କୌଶଳ ମଧ୍ୟ ଶିକ୍ଷାକରେ ।

ଚାରିବର୍ଷରୁ ସାତବର୍ଷ ବୟସର ପିଲାମାନଙ୍କୁ ପର୍ଯ୍ୟବେକ୍ଷଣ କରାଯାଇ ଦେଖାଯାଇଛି ଯେ ବନ୍ଧୁ ବଳୟଟି କେତୋଟି ଉପାଦାନ ଦ୍ୱାରା ନିୟନ୍ତ୍ରିତ ହୁଏ । ବନ୍ଧୁତ୍ୱ ଗଠନରେ ପ୍ରଥମ ଉପାଦାନଟି ହେଉଛି ଏକତ୍ରହୋଇ ସମୟ କାଟୁଥିବା କାର୍ଯ୍ୟସବୁର ସୁଯୋଗ । ଏକାଠି ଖେଳିବା, ଏକାଠି ହୋଇ ନର୍ସରୀ ସ୍କୁଲକୁ ଯିବା ଏବଂ ଏହିପରି ସାମୂହିକ କାର୍ଯ୍ୟକ୍ରମ ବନ୍ଧୁତାର ବଳୟ ସୃଷ୍ଟିକରେ । ଦ୍ୱିତୀୟରେ ପାରସ୍ପାରିକ ସ୍ନେହ ଶ୍ରଦ୍ଧା ବନ୍ଧୁତ୍ୱ ଗଠନ କରେ । ଶିଶୁ ଅନ୍ୟଶିଶୁଠାରୁ ଯତ୍ନ ଓ ସମ୍ବେଦନଶୀଳତା ଲାଭ କରେ । ସେ ବନ୍ଧୁତା ସୂତ୍ରରେ ପାଖେଇ ଆସେ । ତୃତୀୟତଃ ପରସ୍ପରକୁ କୌଣସି ବିଷୟରେ ସାହାଯ୍ୟ କରିବାର ଅବସ୍ଥା ବନ୍ଧୁତ୍ୱ ବଳୟ ନିର୍ମାଣ କରେ । ଚତୁର୍ଥରେ ପାଖାପାଖି ବସବାସ କରୁଥିବା ପିଲାମାନେ ପରସ୍ପରର ସାଙ୍ଗସାଥୀ ହେବାର ବିଶେଷ ସମ୍ଭାବନା ଥାଏ ।

ବନ୍ଧୁତାର ବଳୟ ଯେଉଁ ଉପାଦାନରୁ ଆରମ୍ଭ ହେଉନା କାହିଁକି, ଏହାର ଦୃଢ଼ୀକରଣ ପାଇଁ ଅନ୍ୟ କେତେକ ସହାୟକ ଅବସ୍ଥା ଦରକାର ହୁଏ । ଶିଶୁମାନେ ସାଧାରଣତଃ ହସଖୁସିଆ ପିଲାଙ୍କ ବନ୍ଧୁତ୍ୱ ପ୍ରତି ଆକୃଷ୍ଟ ହୁଅନ୍ତି । କ୍ରୋଧୀ ଓ ବଦ୍‌ରାଗୀ ପିଲାଠାରୁ ଦୂରେଇ ରହନ୍ତି । ଅତି ଚୁପ୍‌ଚାପ୍ ପିଲା ସହିତ ମଧ୍ୟ ବନ୍ଧୁ ହେବାର ଆଗ୍ରହ ଦର୍ଶାନ୍ତି ନାହିଁ । ଅନେକ ସମୟରେ କ୍ରୋଧୀ ଓ ବଦ୍‌ରାଗୀ ପିଲାମାନଙ୍କ ସହିତ ଶିଶୁମାନଙ୍କର ଝଗଡ଼ା ହୁଏ । ଅଳ୍ପ ବୟସରେ ଝଗଡ଼ା ମୁଖ୍ୟତଃ ଶାରୀରିକ (ମାଡ଼ଧର୍, ପେଲାପେଲି)ରେ ସୀମିତ ଥାଏ । ପରବର୍ତ୍ତୀ ପର୍ଯ୍ୟାୟରେ ଶାରୀରିକ ବୈରତା ସ୍ଥାନରେ ବାଚିକ (Verbal) ଗାଳିଗୁଲଜ ଏବଂ ବାଚିକ ଆକ୍ରମଣ ପ୍ରତିଆକ୍ରମଣର ରୂପ ନିଏ ।

## ଶିଶୁର ସାଙ୍ଗସାଥୀ ବଳୟ ଗଠନରେ ସାହାଯ୍ୟ କରିବେ କିପରି

୧. *ଶିଶୁ ବୁଝିପାରିବା ଭଳି ଏବଂ ଶିଶୁର ସହାୟକ ହେଲା ପରି ଶୃଙ୍ଖଳାର ନିୟମ ସବୁ ଉପଯୋଗ କରନ୍ତୁ । ଶିଶୁର ଉପଯୋଗୀ ସାମାଜିକ ବ୍ୟବହାର ସମୟରେ ପ୍ରୋତ୍ସାହନ (ପୁରସ୍କାର, ପ୍ରଶଂସା ବା କିଛି ଉପହାର) ଦିଅନ୍ତୁ । ଶୃଙ୍ଖଳାର ନିୟମ ବ୍ୟବହାର କରିବା ସମୟରେ ନିୟମ କାହିଁକି ଦରକାର, ତାହା ବୁଝାଇ ଦିଅନ୍ତୁ ।*

୨. *ଅନ୍ୟ ପ୍ରତି ଅଭିନିବେଶ (Attention), ସ୍ନେହ, ଶ୍ରଦ୍ଧା ଓ ଆନ୍ତରିକତା କିପରି ଦର୍ଶାଇବାକୁ ହୁଏ, ଶିଶୁ ତାହା ଆପଣଙ୍କଠାରୁ ଶିକ୍ଷା କରୁ । ଆପଣ ଶିଶୁର ଆଦର୍ଶ ନାୟକ ବା ନମୁନା (Role model) ହୁଅନ୍ତୁ ।*

୩. *ଆପଣ ନିଜେ ଅନ୍ୟକୁ ସାହାଯ୍ୟ କରନ୍ତୁ ଏବଂ ଶିଶୁ ଅନ୍ୟକୁ ସାହାଯ୍ୟ କରିବା ସମୟରେ ତାକୁ ପ୍ରଶଂସା କରନ୍ତୁ ।*

୪. ପିଲା ଆପେ ଆପେ ତା'ର ଖେଳସାଥୀ ବାଛିନେବ, ଏପରି ଚିନ୍ତାକରି ନିଷ୍କ୍ରିୟ ରୁହନ୍ତୁ ନାହିଁ । ପିଲାଟିର ଉପଯୋଗୀ ଖେଳଦଳ (Play group) ବାହାର କରିବା ପାଇଁ ବ୍ୟକ୍ତିଗତଭାବେ ଉଦ୍ୟମ କରନ୍ତୁ ।

୫. ପିଲାଟି ଚୁପ୍‌ଚାପ୍ କିମ୍ବା ଏକୁଟିଆ ରହିବାକୁ ପସନ୍ଦ କରୁଥିଲେ ତା' ପାଇଁ ପ୍ରଥମେ ଦୁଇ କିମ୍ବା ତିନିଜଣିଆ ଗୋଟିଏ ଛୋଟ ଦଳର ସନ୍ଧାନ କରନ୍ତୁ । ଏହି ଦଳର ସଭ୍ୟମାନଙ୍କ ସହିତ ଶିଶୁଟିକୁ ପ୍ରଥମେ ପରିଚିତ କରାନ୍ତୁ ।

୬. ଶିଶୁଟି ମନରେ ସାଙ୍ଗସାଥୀର ଗୁରୁତ୍ୱଭାବ ସୃଷ୍ଟି କରାଇବା ପାଇଁ କେତେକ କୌଶଳର ଉପଯୋଗ କରାଯାଇପାରେ । କୁଣ୍ଢେଇ ଖେଳ, ବନ୍ଧୁତ୍ୱ ସମ୍ପର୍କରେ ଗଳ୍ପ କଥନ ଏବଂ ପଶୁପକ୍ଷୀ, ଜୀବଜନ୍ତୁମାନଙ୍କର ଗଳ୍ପ ମାଧ୍ୟମରେ ଅନୁକୂଳ ମନୋଭାବ ଗଠନ କରନ୍ତୁ ।

# ଏକମାତ୍ର ସନ୍ତାନ ସମ୍ପର୍କରେ

ଜନବସତିର ଚାପ ଏବଂ ଅଧିକ ଆର୍ଥିକ ସ୍ୱଚ୍ଛଳତା ହାସଲ କରିବାର ଅଭୀପ୍ସା ଆଧୁନିକ ଜଗତରେ ଖୁବ୍ ସ୍ପଷ୍ଟ । ଜନସଂଖ୍ୟାକୁ ସୀମିତ ରଖିବାର ଲକ୍ଷ୍ୟ ପୂର୍ଣ୍ଣମାତ୍ରାରେ ସଫଳ ହୋଇ ନଥିଲେ ମଧ ପରିବାରର ଆକାର ଯେ କ୍ରମଶଃ କମିବାରେ ଲାଗିଛି, ଏଥିରେ ସନ୍ଦେହ ନାହିଁ । ପ୍ରତି ପରିବାରରେ ପିଲାମାନଙ୍କ ସଂଖ୍ୟା କମିବାରେ ଲାଗିଛି । ଗୋଟିଏ ମାତ୍ର ସନ୍ତାନ ଥିବା ପରିବାରର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ଅବଶ୍ୟ ଚୀନ୍ ପରି ଦେଶରେ ୧୯୭୯ ମସିହାରୁ ଜାତୀୟ ନୀତି ପ୍ରଣୟନ କରାଯାଇ ପରିବାରରେ ସନ୍ତାନ ସଂଖ୍ୟା ଗୋଟିଏରେ ସୀମିତ ରଖିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଅନ୍ୟ ସବୁ ଦେଶରେ ସେପରି ବାଧ୍ୟ ବାଧ୍ୟକତା ନଥିଲେ ମଧ୍ୟ ଏକମାତ୍ର ସନ୍ତାନଥିବା ପରିବାରର ସଂଖ୍ୟା ଉଲ୍ଲେଖଯୋଗ୍ୟ ଭାବରେ ବୃଦ୍ଧିପାଇଛି । ବର୍ତ୍ତମାନ ଯୁକ୍ତରାଷ୍ଟ୍ର ଆମେରିକା ପରି ସମୃଦ୍ଧିଶାଳୀ ଦେଶରେ ଦଶଟି ପରିବାର ମଧ୍ୟରୁ ଅନ୍ତତଃ ଗୋଟିଏ ପରିବାରର ସନ୍ତାନ ସଂଖ୍ୟା ଏକରେ ସୀମାବଦ୍ଧ ବୋଲି ସର୍ବେକ୍ଷଣରୁ ଜଣାଯାଇଛି । ଭାରତରେ ମଧ ଅନୁରୂପ ଅଭିମୁଖତା ପ୍ରକାଶ ପାଇଛି । ବିଶେଷତଃ ଶିକ୍ଷିତ ଓ ଉଚ୍ଚମଧବିତ୍ତ ପରିବାରମାନଙ୍କରେ ଏକମାତ୍ର ସନ୍ତାନ କିଛିଟା ସୁଯୋଗର ଅଧିକାରୀ ।

ଅନେକଙ୍କର ଧାରଣା ଯେ ଅର୍ଥନୈତିକ ଚାପ ଏବଂ ସୁଖସ୍ୱାଚ୍ଛନ୍ଦ୍ୟର ପୂର୍ଣ୍ଣ ଉପଭୋଗ ପରିକଳ୍ପନାରୁ ଏପରି ସମ୍ଭାବନା ସୃଷ୍ଟି ହୋଇଥିଲେ ମଧ ଏକମାତ୍ର ସନ୍ତାନର ବ୍ୟବସ୍ଥା ବହୁ ପରିମାଣରେ ତ୍ରୁଟିପୂର୍ଣ୍ଣ । ସେମାନେ ଅପେକ୍ଷାକୃତ ଅଧିକ ସ୍ୱାର୍ଥପର, ଅସହଯୋଗୀ, ନିଃସଙ୍ଗତା – ପ୍ରପୀଡ଼ିତ ଏବଂ ସମନ୍ୱୟ କୌଶଳ–ବିହୀନ ବୋଲି ଲୋକବିଶ୍ୱାସ ରହିଛି । ମାତ୍ର କୌଣସି ଏବଂ ନିର୍ଦ୍ଦିଷ୍ଟ ସର୍ବେକ୍ଷଣ ବା ଅନୁଧ୍ୟାନକୁ ବିଚାର ନକରି ସାମଗ୍ରିକ ଭାବରେ ବହୁଗୁଡ଼ିଏ ଅନୁସନ୍ଧାନକୁ ପରିସରଭୁକ୍ତ କଲେ ଏକମାତ୍ର ସନ୍ତାନ ସମ୍ପର୍କରେ ନକରାତ୍ମକ ଚିତ୍ର ମିଳିନଥାଏ । ବରଂ ଦେଖାଯାଏ ଯେ, ଶିକ୍ଷା ଓ ବୃତ୍ତିଗତ ସ୍ତରରେ ଏମାନଙ୍କର ସାଫଲ୍ୟର ମାତ୍ରା ଅଧିକ । ବ୍ୟକ୍ତିତ୍ୱ ଓ ବୁଦ୍ଧିମତ୍ତା କ୍ଷେତ୍ରରେ ଏମାନେ ଅଧିକ ଉତ୍କର୍ଷ ଦର୍ଶାନ୍ତି । ବିଶେଷତଃ ଅନେକଗୁଡ଼ିଏ ଭାଇଭଉଣୀ ଥିବା କିମ୍ବା ଖୁବ୍ ବେଶି ବୟସର ଭାଇ (କିମ୍ବା ଭଉଣୀ) ଥିବା ପରିବାରର ପିଲାମାନଙ୍କ ତୁଳନାରେ ଏମାନେ ଅଧିକ ସଫଳତା ପ୍ରଦର୍ଶନ କରନ୍ତି ।

ଏହାର ସମ୍ଭାବ୍ୟ କାରଣ ସମ୍ପର୍କରେ କୌତୂହଳ ସୃଷ୍ଟି ହୋଇପାରେ । ସମ୍ଭବତଃ ଏକାମାତ୍ର ସନ୍ତାନଥିବା ପିତାମାତାମାନେ ସେମାନଙ୍କର ସନ୍ତାନର ବିକାଶ ସମ୍ପର୍କରେ ଅଧିକ ଅଭିନିବିଷ୍ଟ (Attentive) ରୁହନ୍ତି । ସନ୍ତାନ ସହିତ ଅପେକ୍ଷାକୃତ ଅଧିକ କଥାବାର୍ତ୍ତା କରନ୍ତି ।

ସନ୍ତାନର ବିକାଶରେ ସେମାନଙ୍କର ଆଗ୍ରହ ଅଧିକ କେନ୍ଦ୍ରୀଭୂତ ହେବା ସ୍ୱାଭାବିକ । ଏକମାତ୍ର ସନ୍ତାନମାନଙ୍କଠାରୁ ଉଚ୍ଚ ପ୍ରତ୍ୟାଶା ମଧ୍ୟ ନିର୍ମାଣ କରାଯାଇଥାଏ । ଅବଶ୍ୟ ମାତ୍ରାଧିକ ପରିମାଣରେ ଅବାସ୍ତବ ପ୍ରତ୍ୟାଶା (Expectation) ସନ୍ତାନର କ୍ଷତି କରିଥାଏ । କିନ୍ତୁ ବାସ୍ତବତାପୂର୍ଣ୍ଣ ଉଚ୍ଚ ପ୍ରତ୍ୟାଶା ଏବଂ ସକାରାତ୍ମକ ଉପାଦାନ ହିସାବରେ କାର୍ଯ୍ୟ କରିବାର ବହୁ ପ୍ରମାଣ ରହିଛି । ବାସ୍ତବତାପୂର୍ଣ୍ଣ ଉଚ୍ଚ ପ୍ରତ୍ୟାଶା ଫଳରେ ପିତାମାତା ନିଜର ଜ୍ଞାତସାରରେ ଏବଂ ଅଜ୍ଞାତସାରରେ ପିଲା ସହିତ ଉନ୍ନତ ବ୍ୟବହାର ପ୍ରଦର୍ଶନ କରନ୍ତି । ପାରସ୍ପାରିକତା ରକ୍ଷାକରି ସନ୍ତାନ ମଧ୍ୟ ପିତାମାତାଙ୍କ ଅକାଂକ୍ଷିତ ଲକ୍ଷ୍ୟସବୁକୁ ସୁହାଇଲା ଭଳି ଆଚରଣ ପ୍ରଦର୍ଶନ କରେ ।

ଏକମାତ୍ର ସନ୍ତାନର ସପକ୍ଷରେ ପ୍ରାପ୍ତ ଚିତ୍ରଟି ମୋଟାମୋଟି ଭାବରେ ସକରାତ୍ମକ ହେଲେ ମଧ୍ୟ ଏକମାତ୍ର ସନ୍ତାନର ଦେଶ "ଚୀନ"ରେ ଏକ ବିବାଦୀୟ ସିଦ୍ଧାନ୍ତର ପରିଚୟ ମିଳେ । ଥରେ ଚୀନ ଦେଶରେ ଗୋଟିଏ ବଡ଼ ଧରଣର ସର୍ବେକ୍ଷଣ କରାଗଲା । ପ୍ରାକ୍‌ବିଦ୍ୟାଳୟ ସ୍ତରରେ ଶିଶୁମାନଙ୍କୁ କାଗଜ ଦିଆଯାଇ ସେସବୁକୁ କାଟି କିଛି ଖେଳିବା ବସ୍ତୁ ତିଆରି କରିବା ପାଇଁ କୁହାଗଲା । ଯେଉଁସବୁ ପିଲାମାନେ ସଫଳତାର ସହିତ ଏପରି କାର୍ଯ୍ୟ କରିପାରୁ ନାହାନ୍ତି, ସେମାନଙ୍କର ଗତିବିଧି ଉପରେ ଲକ୍ଷ୍ୟ ରଖାଗଲା । ଦେଖାଗଲା ଯେ, ବିଫଳ ହେଉଥିବା ପିଲାମାନଙ୍କ ମଧ୍ୟରୁ କେତେକ ପିଲା ସଫଳ ହେଉଥିବା ପିଲାମାନଙ୍କ କାର୍ଯ୍ୟକୁ ଚାହିଁରହିଛନ୍ତି ଏବଂ ସେମାନଙ୍କର କାର୍ଯ୍ୟକୁ ଅନୁକରଣ କରୁଛନ୍ତି। ଅନ୍ୟ ଦଳଟି କାର୍ଯ୍ୟଟି କରି ନପାରି ବିରକ୍ତି ପ୍ରକାଶ କରୁଛନ୍ତି । ସେମାନଙ୍କ ପକ୍ଷରୁ ଅନ୍ୟମାନେ କରିଦିଅନ୍ତୁ ବୋଲି ଆଶା ପ୍ରକାଶ କରୁଛନ୍ତି । ସ୍ଥଳବିଶେଷରେ ହତାଶ ହୋଇ କାନ୍ଦୁଛନ୍ତି । ସର୍ବେକ୍ଷଣରେ ଦେଖାଗଲା ଯେ ଏପରି ଅସହାୟତା ଏବଂ ଅସ୍ୱଭାବୀ ବ୍ୟବହାର ଦର୍ଶାଉଥିବା ଦ୍ୱିତୀୟ ଦଳଟି ସାଧାରଣତଃ ଏକମାତ୍ର ସନ୍ତାନଥିବା ପରିବାରର ଶିଶୁବର୍ଗ ।

ଅବଶ୍ୟ ଚୀନ ଦେଶର ପରିପ୍ରେକ୍ଷୀରେ ଏକମାତ୍ର ସନ୍ତାନମାନଙ୍କୁ ଅପେକ୍ଷାକୃତ ଅଧିକ ସାମର୍ଥ୍ୟର ଅଧିକାରୀ ରୂପେ ଚିତ୍ରିତ କରିବାର ଅନୁସନ୍ଧାନସବୁ ଅଲଭ୍ୟ ନୁହେଁ । ମାତ୍ର ସିଦ୍ଧାନ୍ତଟି ଏବେ ମଧ୍ୟ ଚୀନରେ ବିବାଦୀୟ ସ୍ତରରେ ରହିଛି ବୋଲି କୁହାଯିବ । ସମ୍ଭବତଃ ଏକମାତ୍ର ସନ୍ତାନର ଉତ୍କର୍ଷ ଅପକର୍ଷ ଗୋଟିଏ ଦେଶର ସାମାଜିକ ସାଂସ୍କୃତିକ ପରିବେଷ୍ଟନୀ ଉପରେ ନିର୍ଭର କରୁଛି । ଅଧିକନ୍ତୁ ଏହାର ନିରପେକ୍ଷ ସମୀକ୍ଷା ପାଇଁ ଅଧିକ ସମୟ ଓ ଅଧିକ ଗବେଷଣାର ଆବଶ୍ୟକତା ରହିଛି ।

# ଶିଶୁଖେଳର ତାତ୍ପର୍ଯ୍ୟ

ଅବସର ସମୟକୁ କଟାଇବା ପାଇଁ ଖେଳ ଓ ଖେଳ ଦେଖିବା ଏକ ସୁନ୍ଦର ମାଧ୍ୟମ । ଶିଶୁମାନଙ୍କ କ୍ଷେତ୍ରରେ ଖେଳ କେବଳ ଏକ ସମୟ ଅତିକ୍ରମ କରିବାର ମାଧ୍ୟମ ନୁହେଁ, ଏହା ଶିଶୁରୁ ଶାରୀରିକ ଓ ମାନସିକ ବିକାଶର ଏକ ପ୍ରତିଫଳନ ମଧ୍ୟ । ଶିଶୁ ଖେଳେ ଏବଂ ବଡ଼ମାନଙ୍କ ତୁଳନାରେ ଅଧିକ ସମୟ ଖେଳିଥାଏ । ଶିଶୁ କାହିଁକି ଖେଳେ, ତା'ର ଏକାଧିକ ତାତ୍ତ୍ୱିକ ବିଚାର ରହିଛି ।

ଫ୍ରଏଡ଼ ଏବଂ ଏରିକ୍‌ସନ୍‌ଙ୍କ ପରି ମନସମୀକ୍ଷକମାନେ ବିଚାର କରୁଥିଲେ ଯେ, ବୟସ୍କମାନଙ୍କ ପରି ଶିଶୁ ମଧ୍ୟ ବହୁ ଦ୍ୱନ୍ଦ (Conflict) ଏବଂ ଉଦ୍‌ବେଗ (Anxiety)ର ଶରବ୍ୟ ହୁଏ । ଶିଶୁର ଦ୍ୱନ୍ଦ ଓ ଉଦ୍‌ବେଗ ବୟସ୍କମାନଙ୍କର ଦ୍ୱନ୍ଦ୍ୱ ଓ ଉଦ୍‌ବେଗଟିରୁ ଭିନ୍ନ ଧରଣର । ତଥାପି ବାହ୍ୟ ପରିବେଶର ଚାପ ଏବଂ ଉଚିତ ଅନୁଚିତର ଦ୍ୱନ୍ଦ୍ୱ ଶିଶୁମନରେ ଅସ୍ଥିରତା ସୃଷ୍ଟିକରେ । ଏହି ଅସ୍ଥିରତାରୁ ମୁକ୍ତି ପାଇବା ପାଇଁ ଖେଳାଖେଳିର ଅଭ୍ୟାସ ଏକ ଭଲ ମାଧ୍ୟମ ଯୋଗାଏ । ମନ ଭିତରେ ପୁଞ୍ଜିଭୁତ ଆବେଗ ଏକ ଖୋଲା ବାଟ ଦେଇ ବାହାରିଯାଏ । ସୁତରାଂ ମନକୁ ହାଲୁକା କରିବା ପାଇଁ ଶିଶୁମାନେ ବେଶି ଖେଳାଖେଳି କରନ୍ତି । ବିଶେଷତଃ ସେମାନଙ୍କର ଅବଦମିତ (Repressed) କ୍ରୋଧ ଅନେକ ସମୟରେ ଅନୁମୋଦନୀୟ ଭାବରେ ଖେଳ ପଡ଼ିଆରେ ସହଜରେ ମୁକ୍ତ ହୋଇଥାଏ ।

କେବଳ ଆବେଗ (Emotion)ର ପରିପ୍ରକାଶ ନୁହେଁ, ଜ୍ଞାନଗତ ବିକାଶ ପାଇଁ (Cognitive Development) ମଧ୍ୟ ଖେଳ ଆବଶ୍ୟକ । ବିଶିଷ୍ଟ ମନୋବିଜ୍ଞାନୀ ଜାଁ ପିଆଜେଙ୍କ ମତରେ ବାଲ୍ୟ ଅବସ୍ଥାରେ ଶିଶୁର ଖେଳାଖେଳି ତା'ର ଜ୍ଞାନବିକାଶରେ ସହାୟକ ହୁଏ । ଖେଳ ମାଧ୍ୟମରେ ଶିଶୁ ତା'ର ବାହ୍ୟ ପରିବେଶରେ ଅନେକଗୁଡ଼ିଏ ପରୀକ୍ଷା ନିରୀକ୍ଷା କରେ । ଏସବୁ ପରୀକ୍ଷା ନିରୀକ୍ଷାର ଫଳାଫଳ ତା'କୁ ଅନେକଗୁଡ଼ିଏ ଧାରଣା (Concept) ଗଠନରେ ସହାୟକ ହୁଏ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ପାଣିର ଡଙ୍ଗା ଭସାଇବା ସମୟରେ କେଉଁ ବସ୍ତୁ ଜଳରେ ବୁଡ଼ିଯାଉଛି ଏବଂ କେଉଁ ବସ୍ତୁ ଭାସୁଛି, ତାହାର ଏବଂ ଧାରଣା ଧୀରେ ଧୀରେ ଆରମ୍ଭ ହୁଏ ।

କେତେକ ସ୍ଥଳରେ ବ୍ୟବହାର ଓ ତା'ର ପରିଣତି ମଧ୍ୟରେ ଥିବା ସମ୍ପର୍କ ବୁଝିପାରେ । ଖେଳଣା ଅନ୍ୟ ଶିଶୁକୁ ଦେଲେ ସେ ଶିଶୁଟି ଖୁସି ହେବ । ଏପରି ସମ୍ପର୍କର ପର୍ଯ୍ୟବେକ୍ଷଣ ତା'ର ଶିକ୍ଷଣ (Learning) ବୃଦ୍ଧି କରିଥାଏ । ସେହିପରି ଅନ୍ୟଠାରୁ ପ୍ରିୟ ଖେଳଣାଟି ଛଡ଼ାଇ ଆଣିଲେ ତା'ର ମନଦୁଃଖ ହେବ, ଏହା ମଧ୍ୟ ଶିକ୍ଷାକରେ । ମୋଟ ଉପରେ ଖେଳାଖେଳିର ସୁଯୋଗ ଶିଶୁର ଶିକ୍ଷଣ (Learning) ପାଇଁ ଏକ ଅନୌପଚାରିକ ପରିବେଶ ଯୋଗାଇଥାଏ ।

ବିଶେଷତଃ ଶିଶୁର ମିଛିମିଛିକା ଖେଳ (Pretend Play) ଶିଶୁର କେବଳ କଳ୍ପନା ପ୍ରବଣତା ସୂଚାଏ ନାହିଁ, ପ୍ରତୀକ (Symbols) ସବୁକୁ ବ୍ୟବହାର କରିବାର କୌଶଳ ଶିଶୁ ଶିକ୍ଷାକରେ । ମା'ର ଅଭିନୟ କରିବାର ସମୟରେ ସ୍ପଷ୍ଟସୂଚନା ମିଳେ ଯେ, ଗୋଟିଏ ବ୍ୟକ୍ତି ବା ବସ୍ତୁ ଅନ୍ୟର ପ୍ରତୀକ ହିସାବରେ ବ୍ୟବହାର କରାଯିବାର ସମ୍ଭାବନା ଶିଶୁ ମନରେ ସ୍ଥାନ ପାଉଛି । କହିବା ନିଷ୍ପ୍ରୟୋଜନ ଯେ ଏହା ଶିଶୁର ଭାଷାଗତ ବିକାଶକୁ ସାହାଯ୍ୟ କରେ । ଭାଷା ବ୍ୟବହାର କରିବା ସମୟରେ ଆମେ ମୁଖ୍ୟତଃ ପ୍ରତୀକସବୁ ବ୍ୟବହାର କରିଥାଉ । ଗୋଟିଏ ବସ୍ତୁ ବଦଳରେ ବସ୍ତୁଟିର ନାମ ବ୍ୟବହାର କରିଥାଉ । ଏ ଦୃଷ୍ଟିରୁ ଶିଶୁର ମିଛିମିଛିକା ଖେଳ ବା କଳ୍ପନାଧର୍ମୀ ଖେଳକୁ ବୟସ୍କମାନେ ପ୍ରୋତ୍ସାହିତ କରିବା ଉଚିତ ହେବ ।

ଶିଶୁର କୌତୂହଳପ୍ରବଣତା, ଅନୁସନ୍ଧିତ୍ସା ଏବଂ ଅନ୍ୱେଷଣମୁଖୀ ବ୍ୟବହାରର ଦୃଢ଼ୀକରଣ ପାଇଁ ଖେଳ ଏକ ସୁନ୍ଦର ମାଧ୍ୟମ । ଏହା ମାଧ୍ୟମରେ ଶିଶୁ ତା'ର ବସ୍ତୁ ଓ ସାମାଜିକ ଜଗତ ସହିତ ଯେଉଁ ସମ୍ପର୍କ ତିଆରି କରେ, ତାହା ଆଗାମୀ ଜୀବନକୁ ପ୍ରଭାବିତ କରେ । ଅବଶ୍ୟ ବୟସର ବୃଦ୍ଧି ସହିତ ଖେଳର ସ୍ୱରୂପ ମଧ୍ୟ ପରିବର୍ତ୍ତିତ ହୁଏ ।

ପ୍ରାକ୍-ବିଦ୍ୟାଳୟ ସ୍ତର ପୂର୍ବରୁ ଏବଂ ଏହି ସମୟରେ ଶିଶୁ ମୁଖ୍ୟତଃ ଦୁଇପ୍ରକାର ଖେଳରେ ସମୟ ଦିଏ । ପ୍ରଥମ ପ୍ରକାରରେ ତା'ର ସାମାଜିକ ଦକ୍ଷତା ପ୍ରତିଫଳିତ ହେବା ସ୍ଥଳେ ଅନ୍ୟ ପ୍ରକାର ଖେଳରେ ତା'ର ବୌଦ୍ଧିକ ଦକ୍ଷତା ପ୍ରତିବିମ୍ବିତ ହୁଏ ।

### ସାମାଜିକ ଖେଳ

ଅଳ୍ପ ବୟସର ଶିଶୁମାନଙ୍କର ଖେଳାଖେଳିକୁ ପର୍ଯ୍ୟବେକ୍ଷଣ କରି ଲକ୍ଷ୍ୟ କରାଯାଇଛି ଯେ, ଶିଶୁମାନେ ପ୍ରଥମରୁ ସାମାଜିକ ଖେଳ (Social play)ରେ ପ୍ରବୃତ୍ତ ହୋଇନଥାନ୍ତି । ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେମାନଙ୍କ ଖେଳରେ ଅଧିକ ସାମାଜିକତା ଓ ସହଯୋଗିତାର ଉପାଦାନ ବୃଦ୍ଧିପାଏ ।

## ସାମାଜିକ ଖେଳର କ୍ରମବିକାଶ

| ଖେଳର ପ୍ରକାର | ସଂକ୍ଷିପ୍ତ ସୂଚନା |
|---|---|
| *୧ । ନିମଗ୍ନତାହୀନ ବ୍ୟବହାର* | *ଶିଶୁ ଖେଳିଲା ପରି ମନେହୁଏ ନାହିଁ । କେବଳ ସେହି ସମୟରେ ତା'ର ଦୃଷ୍ଟି ଆକର୍ଷଣ କରୁଥିବା ବସ୍ତୁ ଆଡ଼କୁ ଚାହିଁ ରହେ ।* |
| *୨ । ଦର୍ଶକସ୍ୱରୂପୀ ବ୍ୟବହାର ହୁଏତ* | *ଶିଶୁଟି ଅନ୍ୟଶିଶୁମାନଙ୍କୁ ଖେଳୁଥିବାର ଦେଖେ । ସେ ସେମାନଙ୍କ ସହିତ କଥା କହିପାରେ କିମ୍ବା ପ୍ରଶ୍ନ ପଚାରିପାରେ । ମାତ୍ର ସେମାନଙ୍କ ସହିତ ଖେଳିନଥାଏ ।* |

| | | |
|---|---|---|
| ୩ । | ଏକାକୀ ସ୍ୱାଧୀନ ଖେଳ | ଶିଶୁ ଅନ୍ୟଶିଶୁମାନଙ୍କ ଉପସ୍ଥିତିରେ ଖେଳେ । ମାତ୍ର ତା'ର ଖେଳ ପୂରାପୂରି ଅଲଗା । ଅନ୍ୟମାନଙ୍କ ଖେଳ ସହିତ ତାହାର ସଂଯୋଗ ନଥାଏ । |
| ୪ । | ସମାନ୍ତରାଳ ଖେଳ | ଶିଶୁ ଅନ୍ୟଶିଶୁମାନଙ୍କ ଗହଣରେ ଖେଳେ । ଅନ୍ୟ ଶିଶୁମାନେ ଯେଉଁସବୁ ବସ୍ତୁ ବା ଖେଳଣା ବ୍ୟବହାର କରୁଛନ୍ତି, ସେ ମଧ୍ୟ ସେହିପରି ବସ୍ତୁ ବା ଖେଳଣା ବ୍ୟବହାର କରେ । ମାତ୍ର ତା'ର ଖେଳ ଅଲଗା ଓ ସ୍ୱାଧୀନ ଥାଏ । |
| ୫ । | ସଂଯୋଗଧର୍ମୀ ଖେଳ | ଶିଶୁ ଅନ୍ୟମାନଙ୍କ ସହିତ ଖେଳିବା ପାଇଁ କିଛିଟା ସଂଯୋଗ ପ୍ରତିଷ୍ଠା କରେ । ମାତ୍ର ପୂର୍ଣ୍ଣମାତ୍ରାର ସହଯୋଗ ଦର୍ଶାଇ ନଥାଏ । ନିଜର ବସ୍ତୁ ଓ ଖେଳଣା ମାଧ୍ୟମରେ ଅନ୍ୟମାନଙ୍କ ଉପରେ କର୍ତ୍ତୃତ୍ୱ ଜାରୀ କରିବାର ଉଦ୍ୟମ କରେ । |
| ୬ । | ସହଯୋଗିତା-ପୂର୍ଣ୍ଣ ସଂଗଠିତ ଖେଳ | ଏ ସ୍ତରରେ ଖେଳ ବେଶ୍ ସାମାଜିକ । ଅନ୍ୟ ଶିଶୁମାନଙ୍କ ସହିତ ସଂଯୋଗ ରକ୍ଷାକରି ଖେଳେ । |

ଶିଶୁ ଖେଳରେ ସାମାଜିକତାର ଉପାଦାନ ସମ୍ପର୍କରେ ମନ୍ତବ୍ୟ ଦେଲାବେଳେ ଗୋଟିଏ କଥା ମନେରଖିବାକୁ ହେବ । ପ୍ରାୟ ପଚାଶ ସତୁରୀ ବର୍ଷ ତଳେ ଶିଶୁମାନଙ୍କ ଖେଳର ଯେଉଁ ଢାଞ୍ଚାର ସର୍ବେକ୍ଷଣ କରାଯାଇଥିଲା, ସେଥିରେ ଅଳ୍ପବୟସ ଶିଶୁର ଖେଳରେ ଖୁବ୍ କମ୍ ସାମାଜିକତା ଏବଂ ପ୍ରାକ୍‌ବିଦ୍ୟାଳୟ ସ୍ତରର ଶିଶୁ କ୍ଷେତ୍ରରେ ଅଧିକ ସାମାଜିକ ଉପାଦାନର ପରିଚୟ ମିଳୁଥିଲା । ମାତ୍ର ବର୍ତ୍ତମାନ ଭିନ୍ନ ଏକ ଅବସ୍ଥା ଲକ୍ଷ୍ୟ କରାଯାଉଛି । ପିଲାମାନେ ଅଧିକରୁ ଅଧିକ ସମୟ ଧରି ଦୂରଦର୍ଶନର କାର୍ଯ୍ୟକ୍ରମ ଦେଖୁଥିବାରୁ ଏବଂ ପରିବାରର ଆକାର କ୍ରମଶଃ କମିଯାଇ ବେଶି ସଂଖ୍ୟାର ଭାଇଭଉଣୀର ସାହଚର୍ଯ୍ୟ ମିଳୁନଥିବାରୁ ସାମାଜିକ ଖେଳ ପରିବର୍ତ୍ତେ ଶିଶୁ ଏକାକୀ ଖେଳୁଛି । ଉନ୍ନତ ଧରଣର ଖେଳଣା ଏବଂ କମ୍ପ୍ୟୁଟର ସାମାଜିକତାହୀନ ଖେଳକୁ ଅଧିକ ପ୍ରୋତ୍ସାହନ ଦେଉଛି ।

ଏକାକୀ ଖେଳୁଥିବା ଶିଶୁ ପରବର୍ତ୍ତୀ ପର୍ଯ୍ୟାୟରେ ସ୍କୁଲରେ କମ୍ ଦକ୍ଷତା ଦର୍ଶାଇବ, ଏପରି ଆଶଙ୍କା ଜନ୍ମିପାରେ । ମାତ୍ର ଗବେଷଣାରୁ ଦେଖାଯାଇଛି ଯେ ଅପେକ୍ଷାକୃତ କମ୍ ସାମାଜିକତାପୂର୍ଣ୍ଣ ଖେଳ ଖେଳୁଥବା ପିଲାମାନଙ୍କର ଦକ୍ଷତା ବିଶେଷ କ୍ଷତିଗ୍ରସ୍ତ ହେଉନାହିଁ । ବରଂ ଆଜିକାଲି ସ୍କୁଲର ପ୍ରାରମ୍ଭିକ ପର୍ଯ୍ୟାୟରେ ବ୍ୟବହାର କରାଯାଉଥିବା କାର୍ଯ୍ୟସବୁରେ ସ୍ଥିରତା ଓ ମନନଶୀଳତାର ଗୁରୁତ୍ୱ ଥିବାରୁ ଏକାକୀ ଖେଳୁଥିବା ପିଲାମାନେ ଆଗୁଆ ରହିବାର ଦୃଷ୍ଟାନ୍ତ ଦେଖାଯାଉଛି । ଏହାର ଅର୍ଥ ନୁହେଁ ଯେ, ଶିଶୁର ସାମାଜିକ ବିକାଶ ଦିଗରେ ଆମେ

ନିଷ୍କ୍ରିୟ ରହିବୁ । ଶିଶୁର ସାମାଜିକ ବ୍ୟବହାରର ବିକାଶ ନିତାନ୍ତ ଜରୁରୀ । ମାତ୍ର କେବଳ ସାମାଜିକତାହୀନ ଖେଳକୁ ଭିତ୍ତି କରି ଶିଶୁ ସମ୍ପର୍କରେ ଆଶଙ୍କାଗ୍ରସ୍ତ ହେବା ଅନୁଚିତ ।

### ବୌଦ୍ଧିକ ଖେଳ

ବୟସର ବୃଦ୍ଧି ସହିତ ଶିଶୁର ବୌଦ୍ଧିକଖେଳ (Cognitive Play)ର ମାତ୍ରା ବୃଦ୍ଧିପାଏ । ଗୋଟିଏ ସର୍ବେକ୍ଷଣରୁ ଦେଖାଯାଇଛି ଯେ ତିନିବର୍ଷ ବୟସ ବେଳକୁ ମାତ୍ର ୧୦ରୁ ୧୭ପ୍ରତିଶତ ଶିଶୁ କଳ୍ପନାଧର୍ମୀ ଖେଳସବୁ ଖେଳୁଥିବା ସ୍ଥଳେ ଚାରି ପାଞ୍ଚ ବର୍ଷ ବେଳକୁ ୩୩ ପ୍ରତିଶତ ଶିଶୁ ଏପରି ସବୁ ଖେଳ ଖେଳନ୍ତି । ଛ'ବର୍ଷ ବେଳକୁ ଏମାନଙ୍କ ମିଛିମିଛିକା ଖେଳ ନାଟକୀୟ ରୂପନିଏ । ଶିଶୁର ତିନିଚାରି ବର୍ଷ ବେଳକୁ ସେ ହୁଏତ ଗୋଟିଏ ବାକ୍ସକୁ ବସ୍‌ର କଳ୍ପନା କରି ମିଛିମିଛିକା ଖେଳ ଆରମ୍ଭ କରେ । ମାତ୍ର ଛ'ବର୍ଷ ବେଳକୁ ଏହି ବାକ୍ସରେ ଅନ୍ୟ ଶିଶୁମାନଙ୍କର ଉପସ୍ଥିତିର କଳ୍ପନା କରି ସେ ସେମାନଙ୍କୁ ଯାତ୍ରୀ ମନେକରି କଣ୍ଡକ୍ଟରର ଭୂମିକା ଦର୍ଶାଏ । ମୋଟ ଉପରେ ନାଟକୀୟତାର ମାତ୍ରା ଧୀରେ ଧୀରେ ବୃଦ୍ଧିପାଏ ।

## ବୌଦ୍ଧିକ ଖେଳର କ୍ରମ ସୋପାନ

| ଖେଳର ପ୍ରକାର | | ସଂକ୍ଷିପ୍ତ ସୂଚନା |
|---|---|---|
| ୧ । | ଇନ୍ଦ୍ରିୟକାରକ କାର୍ଯ୍ୟମୁଖୀ ଖେଳ | ଏପରି ଖେଳ ସବୁରେ ଶିଶୁ ମୁଖ୍ୟତଃ ଇନ୍ଦ୍ରିୟ (ଚକ୍ଷୁ, କର୍ଣ୍ଣ) ଏବଂ କାରକ (ହାତ, ଗୋଡ଼) ମଧ୍ୟରେ ସଂଯୋଗର କୁଶଳତା ହାସଲ କରେ । ବଲ୍‌ଟିଏ ଗଡ଼ାଇବା କିମ୍ବା ଦଉଡ଼ିଟିଏ ଟାଣି ଆଣିବାର ଖେଳ ଏ ଧରଣର । |
| ୨ । | ରଚନାତ୍ମକ ଖେଳ | ପରିବେଶରେ କିଛିଟା ପରିବର୍ତ୍ତନ ସୃଷ୍ଟିକରି ନୂଆବସ୍ତୁଟିର କଳ୍ପନା କରିବା । ବାକ୍ସଟିକୁ ଟାଣି ଗାଡ଼ିର କଳ୍ପନା କରିବା କିମ୍ବା ଟେବୁଲ ଭିତରେ ପଶି ବସ୍‌ର କଳ୍ପନା କରିବା ଏ ଧରଣର ଖେଳ । |
| ୩ । | ନାଟକତାପୂର୍ଣ୍ଣ ଏପରି ମିଛିମିଛିକା ଖେଳ | ଖେଳରେ ଶିଶୁର କଳ୍ପନାପ୍ରବଣତା ପ୍ରକାଶ ପାଏ । ନିଜକୁ ଡାକ୍ତର ସଜାଇ ଅନ୍ୟ ଶିଶୁଟିକୁ ରୋଗୀ ସଜାଇ ଖେଳିବାର ନାଟକ ଏ ଧରଣର । |
| ୪ । | ନୀତିନିୟମ-ପୂର୍ଣ୍ଣ ଖେଳ | ଏପରି ସବୁ ଖେଳର ନିୟମ ଥାଏ । ଖେଳିବା ପୂର୍ବରୁ ଶିଶୁ ଏ ନିୟମ ସମ୍ପର୍କରେ ଜାଣିଥାଏ ଏବଂ ସେହି ଅନୁସାରେ ନିଜକୁ ପରିଚାଳନା କରେ । |

ବାକ୍ସରେ ଦେଖାଯାଇଥିବା ସୋପାନ ପରି ଶିଶୁର ଶୈଶବ ଖେଳସବୁ ବିକଶିତ ରୂପ ନିଏ । ଶେଷ ପର୍ଯ୍ୟାୟରେ ସେ ନୀତିନିୟମ ବନ୍ଧା ଖେଳସବୁରେ ଅଂଶଗ୍ରହଣ କରେ । ଖେଳିବା ପୂର୍ବରୁ ନୀତିନିୟମ ସହିତ ପରିଚିତ ହୁଏ ଏବଂ ନିଜକୁ ସେହି ଅନୁସାରେ ପରିକଳ୍ପନା କରେ ।

ଶିଶୁମାନଙ୍କର ଖେଳର ପର୍ଯ୍ୟବେକ୍ଷଣରୁ ଶିଶୁର ବୌଦ୍ଧିକତା ଏବଂ ସାମାଜିକତାର ଆକଳନ କରିବା ବେଶ୍ ସମ୍ଭବପର । ସେହିପରି ଶିଶୁ ନିଜର ଆବେଗକୁ ଉପଯୋଗୀ ଶୈଳୀରେ ବ୍ୟକ୍ତ କରୁଚି କି ନାହିଁ, ତାହା ମଧ ଜାଣିହେବ । ଶିଶୁର ବୟସ, ପରିବେଶ, ସାଙ୍ଗସାଥୀ ଓ ଭାଇଭଉଣୀଙ୍କ ପରିପ୍ରେକ୍ଷୀକୁ ଚାହିଁ ଖେଳସବୁର ବ୍ୟବସ୍ଥା କଲେ ଏହା ଶିଶୁର ଶାରୀରିକ ଓ ମାନସିକ ବିକାଶରେ ସହାୟକ ହେବ ।

## ବିଶେଷ ସୂଚନା

୧. *ଶିଶୁର ସାମାଜିକତାପୂର୍ଣ୍ଣ ଖେଳ ଓ ବୌଦ୍ଧିକ ଖେଳକୁ ପ୍ରୋତ୍ସାହନ ଦିଅନ୍ତୁ ।*

୨. *ଶିଶୁର କଳ୍ପନାଧର୍ମୀ ମିଛିମିଛିକା ଖେଳକୁ ଅବାନ୍ତର ଭାବି ନିରୁତ୍ସାହିତ କରନ୍ତୁ ନାହିଁ ।*

୩. *ବାକ୍ସରେ ସୂଚିତ କରାଯାଇଥିବା ଖେଳସବୁର ବିକାଶ କ୍ଷେତ୍ରରେ ଶିଶୁ ଗୋଟିଏ ସୋପାନରେ ଅଟକି ରହୁଥିଲେ ପରବର୍ତ୍ତୀ ସୋପାନ ପାଇଁ ସୁଯୋଗ ସୁବିଧା ସୃଷ୍ଟି କରନ୍ତୁ ।*

୪. *ଖେଳକୁ ଅନୌପଚାରିକ ଶିକ୍ଷଣ (Informal learning)ର ମାଧ୍ୟମ ରୂପେ ବିଚାର କରନ୍ତୁ ।*

# ଶିଶୁ କେଉଁ ସମୟରେ ନିଜକୁ ବାଳକ କି ବାଳିକା ବିଚାର କରେ

ଶିଶୁଟି ବାଳକ କି ବାଳିକା ଏହାର ସିଦ୍ଧାନ୍ତ ପିଲାଟିର ଆତ୍ମପରିଚିତି ପାଇଁ ନିତାନ୍ତ ଆବଶ୍ୟକ । ଏ ସମ୍ପର୍କରେ ଶିଶୁର ସଚେତନାର ବିକାଶ ତା'ର ସାମଗ୍ରିକ ବିକାଶର ଏକ ଅଂଶ ବିଶେଷ । ଏହି ସଚେତନତାର ବିକାଶ ପର୍ଯ୍ୟାୟକ୍ରମେ ସଂଘଟିତ ହୋଇଥାଏ । ଏହାର ବର୍ଣ୍ଣନା ପୂର୍ବରୁ ବାଳକ ବାଳିକାଙ୍କ ମଧ୍ୟରେ ପରିଦୃଷ୍ଟ ପାର୍ଥକ୍ୟ ସମ୍ପର୍କରେ ସୂଚନା ଆବଶ୍ୟକ ।

ବାଳକ ଓ ବାଳିକା ଶିଶୁ ମଧ୍ୟରେ ପାର୍ଥକ୍ୟର ଦୁଇଟି ସ୍ତର ରହିଛି । ପ୍ରଥମଟି ଦୈହିକ ବା ଶାରୀରିକ । ଶାରୀରିକ ପାର୍ଥକ୍ୟ (Sex Difference) ବ୍ୟତୀତ ମାନସିକ ଓ ବ୍ୟବହାର ସ୍ତରର ଆଉ କେତେକ ପାର୍ଥକ୍ୟ (Gender Difference) ପରିଦୃଷ୍ଟ ହୁଏ ।

ଏହା ଏକ ବହୁଆଲୋଚିତ ତଥ୍ୟ ଯେ, ଜନ୍ମର ବହୁ ପୂର୍ବରୁ ସନ୍ତାନର ଲିଙ୍ଗ ନିର୍ଣ୍ଣିତ ହୋଇ ସାରିଥାଏ । ଶାରୀରିକ ସ୍ତରରେ ବାଳକ ବାଳିକା ମଧ୍ୟରେ କେତେକ ସୂକ୍ଷ୍ମ ପାର୍ଥକ୍ୟ ରହିଥାଏ । ଶୈଶବ ଅବସ୍ଥାରେ ପାର୍ଥକ୍ୟଗୁଡ଼ିକ ସ୍ପଷ୍ଟରୂପେ ଧରାପଡ଼େ ନାହିଁ । ମାତ୍ର ତିନିବର୍ଷ ବୟସ ବେଳକୁ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ବାଳକମାନେ ବାଳିକାମାନଙ୍କ ତୁଳନାରେ ଓଜନରେ ଅଳ୍ପପରିମାଣରେ ବଡ଼ ଆକାରର ହୁଅନ୍ତି । ସେମାନଙ୍କର ଅପେକ୍ଷାକୃତ ଅଧିକ ମାଂସପେଶୀ ରହିଥାଏ । ସେମାନେ ମଧ୍ୟ ଅଧିକ ସକ୍ରିୟତା ଦର୍ଶାନ୍ତି । ମାନସିକ ଓ ବ୍ୟବହାରିକ ସ୍ତରରେ ପାର୍ଥକ୍ୟସବୁ ସୂକ୍ଷ୍ମ ଭାବରେ ରହିଥାଏ । ମାତ୍ର ସ୍କୁଲଯିବା ଆରମ୍ଭ କରିବା ପରେ ଏଗୁଡ଼ିକ ସ୍ପଷ୍ଟ ହୁଏ । ବାଳିକାମାନଙ୍କର ଅପେକ୍ଷାକୃତ ଅଧିକ ଭାଷାଗତ ଦକ୍ଷତା ଏବଂ ବାଳକମାନଙ୍କର ସ୍ଥାନ ଓ ବସ୍ତୁର ସମ୍ପର୍କଗତ (Spatial ability) ଦକ୍ଷତା ଅପେକ୍ଷାକୃତ ଅଧିକ ହୋଇଥାଏ । ବ୍ୟକ୍ତିତ୍ୱ ସ୍ତରରେ ସ୍ପଷ୍ଟ ପରିଲକ୍ଷିତ ହୁଏ ଯେ ବାଳକମାନେ ଅଧିକ ଆକ୍ରମଣାତ୍ମକ (Aggressive) ବ୍ୟବହାର ଦର୍ଶାଇବା ସ୍ଥଳେ ବାଳିକାମାନେ ଅଧିକ ନମନୀୟ ବ୍ୟବହାର ଦର୍ଶାନ୍ତି ।

ବାଳକ ବାଳିକା ମଧ୍ୟରେ କେଉଁ କାରଣରୁ ପାର୍ଥକ୍ୟର ଉତ୍ପତ୍ତି ଓ ବିସ୍ତୃତି ଘଟେ, ତାହାର ଆଲୋଚନା ଏଠାରେ ମୁଖ୍ୟ ପ୍ରସଙ୍ଗ ନୁହେଁ । ତଥାପି କୁହାଯାଇପାରିବ ଯେ ଜୀବତାତ୍ତ୍ୱିକ (Biological) ଏବଂ ସାମାଜିକ-ସାଂସ୍କୃତିକ ଉପାଦାନର ସକ୍ରିୟ ପାରସ୍ପରିକ ଅନୁକ୍ରିୟା ଫଳରେ ପାର୍ଥକ୍ୟ ସୃଷ୍ଟି ହୁଏ । ବିଶେଷତଃ ଜୀବତାତ୍ତ୍ୱିକ ସ୍ତରରେ ଯୌନ ହରମୋନ୍ (Sex Hormones)ର ଭୂମିକା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ବାଳକମାନଙ୍କର ଯୌନ ହରମୋନ୍

ଆଣ୍ଡ୍ରୋଜେନ୍ (Androgen) ମାଂସପେଶୀ ଗଠନରେ ସହାୟକ ହୁଏ ଏବଂ ଏହା ଆକ୍ରମଣାତ୍ମକ (Aggressive) ପ୍ରବଣତା ଜନ୍ମାଇଥାଏ । ଅନ୍ୟ ପକ୍ଷରେ ବାଳିକାମାନଙ୍କ ଶରୀରରେ କ୍ଷରିତ ହେଉଥିବା ଯୌନ ହରମୋନ୍ (Estrogen) ଆକ୍ରମଣାତ୍ମକ ଭାବକୁ ଅବଦମିତ କରେ । ପରୀକ୍ଷାଗାରରେ ପ୍ରାଣୀମାନଙ୍କ ଶରୀରରେ ହରମୋନ୍ ଇଞ୍ଜେକ୍ସନ ଦିଆଯାଇ ଲକ୍ଷ୍ୟ କରାଯାଇଛି ଯେ ନାରୀ ଜୀବଜନ୍ତୁ ଶରୀରର ଆଣ୍ଡ୍ରୋଜେନ୍ ଦିଆଗଲେ ସେମାନେ ଅଧିକ ଆକ୍ରମଣାତ୍ମକ ସ୍ୱଭାବ ଦର୍ଶାନ୍ତି । ଅବଶ୍ୟ ମନୁଷ୍ୟ କ୍ଷେତ୍ରରେ ଏହା ସମାନ ପରିମାଣର ପ୍ରଭାବ ସୃଷ୍ଟି କରିନଥାଏ ।

ହର୍‌ମୋନ୍ ବାଳକମାନଙ୍କୁ ଅଧିକ ଆକ୍ରମଣ-ପ୍ରବଣ ଓ ବାଳିକାମାନଙ୍କୁ ହର୍‌ମୋନ୍ ଅଧିକ ସ୍ନେହପ୍ରବଣ କରୁଥିଲେ ମଧ୍ୟ ହର୍‌ମୋନ୍‌କୁ ଏକ ନିର୍ଣ୍ଣାୟକ ଭୂମିକାର ସ୍ଥାନଦେବା ବିଜ୍ଞାନସମ୍ମତ ହେବନାହିଁ । ହର୍‌ମୋନ୍ କିଛିଟା ସମ୍ଭାବନା ସୃଷ୍ଟିକଲେ ମଧ ପାରିପାର୍ଶ୍ୱିକ ସାମାଜିକ ସାଂସ୍କୃତିକ ଉପାଦାନସବୁ ବହୁଭାବରେ ପ୍ରଭାବ ସୃଷ୍ଟି କରିଥାଏ । ବିଭିନ୍ନ ରୂପରେ ବିଭିନ୍ନ ମାଧମରେ ସେହିସବୁ ଉପାଦାନ ବାଳକ ବାଳିକା ମଧରେ ମାନସିକ ଓ ବ୍ୟବହାରିକ ପାର୍ଥକ୍ୟର ଅଙ୍କୁରଣ ଓ ବିକାଶ ଘଟାଏ ।

ଶିଶୁ ନିଜେ ବାଳକ କି ବାଳିକା, ଏପରି ସଚେତନତା ହଠାତ୍ ଆସି ନଥାଏ । ଏପରି ଧାରଣାର ବିକାଶ ପର୍ଯ୍ୟାୟ କ୍ରମେ ଆସିଥାଏ ଏବଂ ପ୍ରତିଟି ପର୍ଯ୍ୟାୟରେ ପାରିପାର୍ଶ୍ୱିକ ସାମାଜିକ ଓ ସାଂସ୍କୃତିକ ଉପାଦାନସବୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ବିଶେଷଜ୍ଞମାନଙ୍କ ମତରେ ଧାରଣାର ଉନ୍ମେଷ ଓ ବିକାଶର ତିନୋଟି ସୋପାନ ରହିଛି ।

| *ସୋପାନ* | *ବୟସ ସୀମା* | *ବୈଶିଷ୍ଟ୍ୟ* |
|---|---|---|
| *ପରିଚିତ ସୋପାନ* | *ଦୁଇ ତିନିବର୍ଷ* | *ଶିଶୁଟି କେବଳ ଜାଣେ ଯେ ସେ ବାଳକ କିମ୍ବା ବାଳିକା । ଏହାର ତାତ୍ପର୍ଯ୍ୟ ବୁଝେ ନାହିଁ ।* |
| *ପସନ୍ଦ ସୋପାନ* | *ପ୍ରାକ୍‌ବିଦ୍ୟାଳୟ (ଚାରି ପାଞ୍ଚବର୍ଷ)* | *ବାଳକ ବାଳିକାମାନଙ୍କର ଭିନ୍ନ ବେଶ ପୋଷାକ କେଶସଜା ଦେଖି ନିଜକୁ ସେପରି ସଜାଏ । ମାତ୍ର ସେ ଜାଣେ ନାହିଁ ଯେ ତା'ର ବାଳକତ୍ୱ ବା ବାଳିକାତ୍ୱ ସ୍ଥିର ଓ ଅପରିବର୍ତ୍ତୀୟ । ବେଶପୋଷାକ ବଦଳାଇ ସେ ଭିନ୍ନ ହୋଇପାରିବ, ଏହା ଭାବିଥାଏ ।* |
| *ସଚେତନାର ସୋପାନ* | *ଛ'ସାତ ବର୍ଷ ବୟସ* | *ତା'ର ବାଳକତ୍ୱ କିମ୍ବା ବାଳିକାତ୍ୱ ସ୍ଥିର ଓ ଅପରିବର୍ତ୍ତନୀୟ, ଏହା ଜାଣିଥାଏ ।* |

ଉପରେ ସୂଚିତ କରାଯାଇଥିବା ସୋପାନ ଅନୁଯାୟୀ ଶିଶୁ ଅନ୍ୟମାନଙ୍କର କଥାବାର୍ତ୍ତା ଓ ଭାବଭଙ୍ଗୀରୁ ଜାଣିବାକୁ ପାଏ ଯେ ସେ ବାଳକ କିମ୍ବା ବାଳିକା । ମାତ୍ର ଏହାର ପ୍ରକୃତ ଅର୍ଥ 'କ'ଣ, ସେ ତାହା ବୁଝି ନଥାଏ । ପ୍ରାକ୍‌ବିଦ୍ୟାଳୟ ସ୍ତରରେ ତା'ର ପର୍ଯ୍ୟବେକ୍ଷଣ ବିସ୍ତାରିତ ହୁଏ । ବାଳକ ବାଳିକାମାନଙ୍କର ଭିନ୍ନ ଭିନ୍ନ ଖେଳଣା, ପୃଥକ୍ ପୃଥକ୍ ପୋଷାକ ଓ କେଶସଜ୍ଜା ସେ ଲକ୍ଷ୍ୟ କରେ । ସେ ବାଳକ ହୋଇଥିଲେ ବାଳକମାନଙ୍କ ପାଇଁ ପୋଷାକ, କେଶସଜ୍ଜା ଓ ଖେଳଣା ପ୍ରତି ଆଗ୍ରହ ଦର୍ଶାଏ । ସେହିପରି ବାଳିକା ହୋଇଥିଲେ ସେ ଅନୁରୂପ ଆଗ୍ରହ ପ୍ରକାଶ କରେ । ତଥାପି ବାଳକତ୍ୱ ବା ବାଳିକାତ୍ୱ ଯେ ସ୍ଥିର ଓ ଅପରିବର୍ତ୍ତନୀୟ, ଏହା ବୁଝି ନଥାଏ । ବାଳିକା ପୋଷାକ ପିନ୍ଧି ସେ ବାଳିକା ହୋଇପାରିବ ଏବଂ ଟ୍ରକ ଚଳାଇ ସେ ବାଳକ ହୋଇପାରିବ, ଏପରି ଧାରଣା ତା'ର ରହିଥାଏ ।

ଛ' ସାତ ବର୍ଷ ବୟସ ବେଳକୁ ତା'ର ପ୍ରକୃତ ସଚେତନତା ଆସେ । ତା'ର ବାଳକତ୍ୱ ବା ବାଳିକାତ୍ୱ ଯେ ନିର୍ଦ୍ଧାରିତ ଓ ଅପରିବର୍ତ୍ତିତ, ଏପରି ସ୍ଥିର ଧାରଣା (Gender Constancy) ପରିଦୃଷ୍ଟ ହୁଏ । ଶେଷ ପର୍ଯ୍ୟନ୍ତ ତା'ର ଏପରି ସ୍ଥିତି ଅପରିବର୍ତ୍ତିତ ରହିବ, ଏହା ଶିକ୍ଷାକରେ ।

ଏପରି ଧାରଣାର ଉନ୍ମେଷ ଓ ବିକାଶ ଦିଗରେ ସାମାଜୀକରଣ (Socialization) ପ୍ରକ୍ରିୟା ହିଁ ମୁଖ୍ୟ ଭୂମିକା ନେଇଥାଏ । ଶିଶୁ ଯାହା ଦେଖେ ଏବଂ ଶୁଣେ ତାହାକୁ ଭିତ୍ତିକରି ତା'ର ଧାରଣା ଗଠିତ ଓ ବିକଶିତ ହୋଇଥାଏ । ପିତାମାତା, ଖେଳସାମଗ୍ରୀ, ସାଙ୍ଗସାଥୀ, ଶିକ୍ଷକଶିକ୍ଷୟିତ୍ରୀ, ଦୂରଦର୍ଶନର କାର୍ଯ୍ୟକ୍ରମ ଏବଂ ଅନ୍ୟସବୁ ସାମାଜିକ ପରିବେଶ ଏପରି ଆଗ୍ରହ ସୃଷ୍ଟି କରନ୍ତି ।

ଶିଶୁର ଜନ୍ମସମୟରୁ ଆରମ୍ଭ କରି ଦୀର୍ଘସମୟ ପର୍ଯ୍ୟନ୍ତ ପିତାମାତା ନିଜର ଜ୍ଞାତସାରରେ ଏବଂ ଅଜ୍ଞାତସାରରେ ପାର୍ଥକ୍ୟର ବୀଜ ବପନ କରନ୍ତି । ବାପ ମା' ସେମାନଙ୍କର ପୋଷାକ, କଥାବାର୍ତ୍ତା ଏବଂ କାର୍ଯ୍ୟକଳାପ ମାଧ୍ୟମରେ ଶିଶୁ ମନରେ ପାର୍ଥକ୍ୟର ପ୍ରଥମ ଛାପ ଅଙ୍କନ କରନ୍ତି । ପୁଣି ପୁତ୍ର ଓ କନ୍ୟାକୁ ଭିନ୍ନ ଭାବରେ ପ୍ରତିପାଳନ କରନ୍ତି । ପୁତ୍ର ପାଇଁ ଭିନ୍ନ ଧରଣର ପୋଷାକ, ଉପହାର, ଜୋତା, ଖେଳଣା ଏବଂ ଅନ୍ୟ ସାମଗ୍ରୀ କିଣାଯାଏ । କନ୍ୟା ପାଇଁ ମଧ୍ୟ ପୃଥକ୍ ପୋଷାକ, ଉପହାର ଓ ଖେଳନା ଯୋଗାଇ ଦିଆଯାଏ । ଏପରି ପୁତ୍ର ଓ କନ୍ୟାକୁ ପୃଥକ୍ ଧରଣର ପ୍ରୋତ୍ସାହନ ମଧ୍ୟ ଦିଆଯାଏ । ଶାରୀରିକ କାର୍ଯ୍ୟକୁ ବାଳକୋଚିତ କାର୍ଯ୍ୟର ମର୍ଯ୍ୟାଦା ଦେଇ ପିତାମାତା ହୁଏତ ପୁତ୍ରକୁ କୁହନ୍ତି – "ସୁନା ପୁଅଟି ପରି କେତେବଡ଼ ଟେବୁଲଟିକୁ ଟାଣିନେଉଛି" –"ସୁନା ଝିଅଟା ପରି କୁନିପୁଅକୁ ରଖିପାରୁଛି ।" ମୋଟଉପରେ ବାଳକ କ୍ଷେତ୍ରରେ ବାହ୍ୟିକ ସ୍ୱାଧୀନତା ଓ ଦୈହିକ କାର୍ଯ୍ୟକୁ ପ୍ରୋତ୍ସାହନ ଦିଆଯିବା ସ୍ଥଳେ ବାଳିକା (କନ୍ୟା) କ୍ଷେତ୍ରରେ ଦାୟିତ୍ୱଶୀଳତା, ସହନଶୀଳତା ଏବଂ ଯତ୍ନଶୀଳତାକୁ ପ୍ରୋତ୍ସାହନ ଦିଆଯାଏ । ଅନ୍ୟସବୁ ବୟସ୍କମାନେ ମଧ୍ୟ ଅନୁରୂପ ପାର୍ଥକ୍ୟ ଦର୍ଶାନ୍ତି ।

ସାଙ୍ଗସାଥୀ ଏବଂ ଖେଳସାମଗ୍ରୀର ମାଧ୍ୟମରେ ପାର୍ଥକ୍ୟ ଅଧିକ ଦୃଢ଼ୀଭୂତ ହୁଏ । ବାଳକମାନେ ଅଧିକ ଭାବରେ ବାଳକମାନଙ୍କ ସହିତ ବନ୍ଧୁତା ରଖନ୍ତି ଏବଂ ଖେଳ ଖେଳନ୍ତି ।

ବାଳିକାମାନେ ଅଧିକ ସଂଖ୍ୟାରେ ବାଳିକାମାନଙ୍କ ସହିତ ବନ୍ଧୁତ୍ୱ ପ୍ରତିଷ୍ଠା କରନ୍ତି । ଖେଳାଖେଳି ଏବଂ କଥାବାର୍ତ୍ତା ସମୟରେ ମଧ୍ୟ ବାଳକମାନେ ଅଧିକ ଯୁକ୍ତିପ୍ରବଣତା ଦର୍ଶାଇବାର ସୁଯୋଗ ପାଇବା ସ୍ଥଳେ ବାଳିକାମାନେ ଅନ୍ୟକୁ ସୁଯୋଗ ଦେବା ଏବଂ ସହିନେବାର ବ୍ୟକ୍ତିତ୍ୱ ଦର୍ଶାନ୍ତି ।

ନର୍ସରୀ ସ୍କୁଲକୁ ଯାଉଥିବା ଶିଶୁମାନେ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କଠାରୁ ପାର୍ଥକ୍ୟର କେତେକ ଦିଗ ଅନୁଭବ କରନ୍ତି । ମୁକ୍ତ ପରିବେଶରେ କାମ ଦେଲାବେଳେ ବାଳକ ଓ ବାଳିକାମାନଙ୍କୁ ଭିନ୍ନ ଭିନ୍ନ କାମଦେବାର ଦୃଷ୍ଟାନ୍ତ ବିରଳ ନୁହେଁ । ଖେଳ ସାମଗ୍ରୀ ଅନେକ କ୍ଷେତ୍ରରେ ଭିନ୍ନ ଥାଏ । ପ୍ରଶଂସାର ଭାଷା ମଧ୍ୟ ବାଳକ ଓ ବାଳିକାମାନଙ୍କ ପାଇଁ ଭିନ୍ନ ହେବାର ଉଦାହରଣ ଲକ୍ଷ୍ୟ କରାଯାଇଛି ।

ଆଧୁନିକ ଯୁଗରେ ଦୂରଦର୍ଶନ କାର୍ଯ୍ୟକ୍ରମର ବହୁଳତା ଓ ଲୋକପ୍ରିୟତା ବୃଦ୍ଧିପାଇଛି । ଶିଶୁମାନଙ୍କ କ୍ଷେତ୍ରରେ ମଧ୍ୟ ଏହାର ପ୍ରଭାବ କମ୍ ନୁହେଁ । ପୁରୁଷ ଓ ନାରୀମାନଙ୍କୁ ଗତାନୁଗତିକ ଭୂମିକାରେ ପ୍ରଦର୍ଶନ  କରିବାର ରୀତି ଶିଶୁମନକୁ ପ୍ରଭାବିତ କରିଥାଏ । ଶିଶୁ ଦେଖେ ଯେ ପୁରୁଷମାନେ ଅଧିକ ସଂଖ୍ୟାରେ କର୍ମଠ, ବଳଶାଳୀ ଓ ବୁଦ୍ଧିମାନର କାର୍ଯ୍ୟ କରୁଛନ୍ତି । ନାରୀମାନେ ପାରିବାରିକ ଭୂମିକାରେ ଅଧିକ ପ୍ରଦର୍ଶିତ ହେଉଛନ୍ତି । ପୁରୁଷମାନଙ୍କର ଭୂମିକାର ଅଧିକ ପରିମାଣରେ ବିଭିନ୍ନତା ରହିଛି । ନାରୀ ଭୂମିକାରେ ଅଧିକ ପରିସୀମତ୍ୱ ରହିଛି । ବଡ଼ ବଡ଼ ବ୍ୟବସାୟ,  ଉଚ୍ଚ ପଦପଦବୀ ଏବଂ ଦୁଃସାହସିକ କାର୍ଯ୍ୟରେ ପୁରୁଷମାନଙ୍କୁ ଅଧିକ ପ୍ରଦର୍ଶିତ କରାଯାଉଛି । ଏସବୁ ଦେଖିବା ଏବଂ ଶୁଣିବା ପ୍ରକ୍ରିୟାରେ ଶିଶୁମନରେ ବାଳକତ୍ୱ ଏବଂ ବାଳିକାତ୍ୱ ସମ୍ପର୍କରେ ଭିନ୍ନ ଭିନ୍ନ ଧାରଣା ସୃଷ୍ଟିହୁଏ । ସ୍ଥୂଳତଃ ପିତାମାତା ଶିକ୍ଷକ ଶିକ୍ଷୟିତ୍ରୀ, ସାଙ୍ଗସାଥୀ ଏବଂ ଦୂରଦର୍ଶନର ପର୍ଯ୍ୟବେକ୍ଷଣ ଏବଂ  ଅନୁଭବ ମାଧ୍ୟମରେ ଶିଶୁମନର ବାଳକତ୍ୱ ବାଳିକାତ୍ୱ ସମ୍ପର୍କରେ ସ୍ପଷ୍ଟ ପ୍ରତିଛବି ଗଠିତ ହୁଏ । ଏପରି ପ୍ରତିଛବି ନିର୍ଦ୍ଦିଷ୍ଟ ସମାଜ ଓ ସାଂସ୍କୃତିକ ପୃଷ୍ଠଭୂମି ଉପରେ ପର୍ଯ୍ୟବସିତ ।

ବର୍ତ୍ତମାନ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନଟି ହେଉଛି– ଗୋଟିଏ ବାଳକ ପୂର୍ଣ୍ଣମାତ୍ରାରେ ବାଳକତ୍ୱର ଅଧିକାରୀ ହେବା ତଥା ଗୋଟିଏ ବାଳିକା ପୂର୍ଣ୍ଣମାତ୍ରାରେ ବାଳିକାତ୍ୱରେ ଅଧିକାରୀ ହେବା କେତେଦୂର ସମୀଚୀନ ? ଗବେଷଣାରୁ ଦେଖାଯାଇଛି ଯେ ଶିଶୁଟି ସମନ୍ୱିତ ବ୍ୟକ୍ତିତ୍ୱର (Androgynous Personality) ଅଧିକାରୀ ହେବା ସମୁଚିତ । ଏହାର ଅର୍ଥ ହେଉଛି ଯେ ଗୋଟିଏ ସୁବିକଶିତ ଶିଶୁଠାରେ ବାଳକମାନଙ୍କର ସବୁ ଭଲଗୁଣ ଏବଂ ବାଳିକାମାନଙ୍କର ସବୁ ଭଲଗୁଣ ସମନ୍ୱିତ ଅବସ୍ଥାରେ ରହିବା ଉଚିତ ହେବ । ପିଲାଟି ବାଳକ ପରି ସ୍ୱାଧୀନଚେତା, ଆତ୍ମନିର୍ଭରଶୀଳ ଏବଂ ଦୃଢ଼ତାସମ୍ପନ୍ନ ହେବା ସ୍ଥଳେ ବାଳିକା ପରି ଯତ୍ନଶୀଳ, ଦାୟିତ୍ୱଶୀଳ ଏବଂ ସମ୍ବେଦନଶୀଳ ରହିବ । ଶିଶୁଟି ବାଳକ ହେଉ କି ବାଳିକା ହେଉ, ଦୁଇ ଧାରାର ସଦ୍‌ଗୁଣର ସମଷ୍ଟି ତାକୁ ଏକ ସମନ୍ୱିତ ବ୍ୟକ୍ତିତ୍ୱ ପ୍ରଦାନ କରିବ । ଏପରି ଶିଶୁ ତା'ର ସମନ୍ୱିତ ବ୍ୟକ୍ତିତ୍ୱ ବଳରେ ସଫଳ କୈଶୋର ଓ ଯୌବନକୁ  ମଧ୍ୟ ଗତି କରିବ । କେବଳ  ବାଲ୍ୟ ସୋପାନରେ ନୁହେଁ କୈଶୋର ଓ ଯୌବନ ସମୟରେ ଏପରି ସମନ୍ୱୟ ((Androgyny)

ମାନସିକ ସମ୍ବଳରେ କାର୍ଯ୍ୟ କରିବ । ସୁତରାଂ ଶିଶୁ ସହିତ ସମ୍ପୃକ୍ତ ଥିବା ପ୍ରତ୍ୟେକ ବ୍ୟକ୍ତି ଓ ଅନୁଷ୍ଠାନ (ପିତାମାତା, ସାଙ୍ଗସାଥୀ, ଶିକ୍ଷକ ଶିକ୍ଷୟିତ୍ରୀ, ଦୂରଦର୍ଶନ, ପୁସ୍ତକ ଇତ୍ୟାଦି) ସମନ୍ୱିତ ବ୍ୟକ୍ତିତ୍ୱ ବିକାଶର ସହାୟକ ହେବା ଉଚିତ ।

## ଶିଶୁର ସମନ୍ୱିତ (Androgynous) ବ୍ୟକ୍ତିତ୍ୱ ବିକାଶ ପାଇଁ କଣ କରିବେ

୧. *ନିଜେ ଶିଶୁ ପାଇଁ ଆଦର୍ଶ ନାୟକ ବା ନମୁନା (Role Model) ହୁଅନ୍ତୁ । ଆପଣ ପୁରୁଷ ହୋଇଥିଲେ କେବଳ ପୁରୁଷଜନୋଚିତ ଏବଂ ନାରୀ ହୋଇଥିଲେ କେବଳ ନାରୀସୁଲଭ ଗୁଣ ମଧ୍ୟରେ ନିଜକୁ ସୀମିତ ନରଖି ସମନ୍ୱିତ ବ୍ୟକ୍ତିତ୍ୱର ପ୍ରଦର୍ଶନ କରନ୍ତୁ । ପୁରୁଷ ପରି ଦୃଢ଼, କର୍ମଠ, ଅଭିଳାଷୀ ଓ ସ୍ୱାଧୀନଚେତା ହେବା ସଙ୍ଗେ ସଙ୍ଗେ ନାରୀ ପରି ଦାୟିତ୍ୱଶୀଳ, ସମ୍ବେଦନଶୀଳ, ମିଷ୍ଟଭାଷୀ ଏବଂ ମମତାପ୍ରବଣ ହୁଅନ୍ତୁ ।*

୨. *ଉପହାର ଦେଲାବେଳେ କେବଳ ଗତାନୁଗତିକ ଭଙ୍ଗୀରେ ବାଳକକୁ ରୁଚିନିର୍ବନ୍ଧ ଖେଳନା (ଯଥା–ଚକ) ଏବଂ ବାଳିକାକୁ ରୁଚିନିର୍ବନ୍ଧ ଖେଳନା (କୁଣ୍ଢେଇ) ଦିଅନ୍ତୁ ନାହିଁ । ଗତାନୁଗତିକତାର ଉର୍ଦ୍ଧ୍ୱକୁ ଯାଇ ଉପହାର ଦିଅନ୍ତୁ ।*

୩. *ପିଲାମାନଙ୍କର ଭବିଷ୍ୟତ କଥା କହିବା ସମୟରେ ଗତାନୁଗତି ଚାକିରି (ଯଥା– କନ୍ୟା ପାଇଁ ନର୍ସିଂ ଏବଂ ପୁତ୍ର ପାଇଁ ଇଞ୍ଜିନିୟରିଂ) କଥା ନକହି ଉଦାର ଦୃଷ୍ଟିଭଙ୍ଗୀ ଗ୍ରହଣ କରନ୍ତୁ ।*

୪. *ପିଲାମାନଙ୍କ ପାଇଁ ବହି ଏବଂ ଦୂରଦର୍ଶନର କାର୍ଯ୍ୟକ୍ରମ ନିର୍ବାଚନ କଲାବେଳେ ବାଳକମାନଙ୍କ ପାଇଁ ପୃଥକ୍ ଏବଂ ବାଳିକାମାନଙ୍କ ପାଇଁ ପୃଥକ୍ ସାମଗ୍ରୀ ନିର୍ବାଚନ କରନ୍ତୁ ନାହିଁ ।*

୫. *କେବଳ ଶାରୀରିକ ଭିନ୍ନତାକୁ ବାଦ୍‌ଦେଲେ ବାଳକ ବାଳିକାମାନଙ୍କ ମଧ୍ୟରେ ବହୁ କ୍ଷେତ୍ରରେ ସମତା ରହିଛି–ଏପରି ଭାବନାର ବିସ୍ତାରଣ ପାଇଁ ଉଦ୍ୟମ କରନ୍ତୁ । ସେମାନଙ୍କୁ ଏହାର ଅନୁଭବ ଦିଅନ୍ତୁ ।*

# ଶିଶୁର ଆବେଗ

ଭାବାବେଗ (Emotion) ଶବ୍ଦଟି ଆପାତତଃ ଜୀବନର କୈଶୋର, ତାରୁଣ୍ୟ, ଯୌବନ ଓ ବାର୍ଦ୍ଧକ୍ୟ ଅବସ୍ଥା ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ । ଶୈଶବକାଳରେ ଏହାର ବିଶେଷ ଭୂମିକା ଅଛି ବୋଲି ମନେହୁଏ ନାହିଁ । କିନ୍ତୁ ଏହା ଏକ ଭ୍ରମ ଧାରଣା । ପରିବେଶର ବିଭିନ୍ନ ଅବସ୍ଥା ସହିତ ସମନ୍ୱୟ ରକ୍ଷା କରିବାରେ ଭାବାବେଗ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । ପ୍ରାଣୀଜଗତର ବିବର୍ତ୍ତନ ଧାରାରେ ମଧ୍ୟ ଆବେଗର ଏକ ସ୍ୱତନ୍ତ୍ର ଭୂମିକା ନେଇଥିଲା । ବିବର୍ତ୍ତନ ଧାରାରେ ମସ୍ତିଷ୍କରେ ଭାବନା (Thinking) କେନ୍ଦ୍ରସବୁ ରୂପ ନେବା ପୂର୍ବରୁ ଭାବ (Feeling) କେନ୍ଦ୍ରମାନ ରୂପ ନେଇଥିଲା ।

ଜୀବନର ଆଦ୍ୟ ବିକାଶରେ ଭାବାବେଗର ଭୂମିକା ରହିଛି । ଶିଶୁ ମଧ୍ୟ ଆବେଗ ପ୍ରଦର୍ଶନ କରେ । ଶୈଶବକାଳୀନ ଆବେଗ କ୍ଷେତ୍ରରେ କେତୋଟି ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନ ରହିଛି । କେଉଁସବୁ ଉଦ୍ଦୀପକ ଆବେଗ ସୃଷ୍ଟିକରେ ? ଆବେଗର କିପରି ଉତ୍ପତ୍ତି ଘଟେ ? ବୟସର ବୃଦ୍ଧି ସହିତ ଆବେଗସବୁର କି କି ପରିବର୍ତ୍ତନ ଘଟେ ? ଶିଶୁର ସ୍ମିତହସ ଶିଶୁର ଆବେଗର ପ୍ରଥମ ପରିପ୍ରକାଶ ହୋଇଥିବାରୁ ପ୍ରଥମେ ଏହା ଆଲୋଚନା କରାଯାଇପାରେ ।

### ଶିଶୁର ସ୍ମିତହସ

ପ୍ରଥମତଃ ବୁଝିବାକୁ ହେବ ଯେ ଶିଶୁର ଆବେଗ କିଛି ମାତ୍ରାରେ ଲକ୍ଷ୍ୟ ପୂରଣ କରେ । ଏହା ଶିଶୁର ଅନୁଭବକୁ ରୂପ ଦିଏ, ତାହାର ଚାହିଦା ଓ କାମନାସବୁକୁ ପ୍ରକାଶ କରେ । ପୁନଶ୍ଚ ଶିଶୁ ନିଜର ଆବେଗ ମାଧମରେ ସେ ନିଜର ଯତ୍ନକାରୀର କେତେ ସନ୍ନିକଟବର୍ତ୍ତୀ ହେବ, ତାହା ସୂଚାଏ ।

*ସ୍ମିତହସ ଶିଶୁର ପ୍ରଥମ ସାମାଜିକ ସଂକେତ । ଜନ୍ମର୍ ଅଳ୍ପଦିନ ମଧରେ ଶିଶୁ ସ୍ମିତହସ ଦର୍ଶାଏ ।* ପ୍ରଥମେ ଶିଶୁର ଯେଉଁ ସ୍ମିତହସ ପ୍ରଦର୍ଶିତ ହୁଏ, ତାହାକୁ ପ୍ରତିବର୍ତ୍ତ ସ୍ମିତହସ (Reflex Smile) କହନ୍ତି । ଏପରି ହସ ଶିଶୁର ଆଭ୍ୟନ୍ତରୀଣ ଅବସ୍ଥାର ପରିପ୍ରକାଶ । ପ୍ରାଥମିକ ଅବସ୍ଥାରେ ଶିଶୁ ବହିର୍ଜଗତର ବସ୍ତୁ ବା ଘଟଣା ପ୍ରତି ପ୍ରତିକ୍ରିୟା ନ ଦର୍ଶାଇ ଅନ୍ତର୍ଜଗତର ଉଦ୍ଦୀପନା ପ୍ରତି ମୁଖ୍ୟତଃ ପ୍ରତିଫଳନ ପ୍ରକାଶ କରେ ।

ଶିଶୁଟିର ବୟସ ତିନିସପ୍ତାହରୁ ଆରମ୍ଭ କରି ଛ' ସପ୍ତାହ ହେବା ବେଳକୁ ସ୍ମିତହସ ସ୍ପଷ୍ଟ ରୂପେ ପ୍ରକାଶ ପାଏ । ମା'ର ଶବ୍ଦ ଉଚ୍ଚାରଣ ଓ ମୁଖମଣ୍ଡଳ ଦେଖି ସେ ସ୍ମିତହସ ସୂଚାଏ । ଲକ୍ଷ୍ୟ କରିବାର କଥା ଯେ ସାଧାରଣ ଭାବେ ଶିଶୁଟି ପ୍ରାୟ ଛ ସପ୍ତାହ ବୟସ

ବେଳକୁ ବାହ୍ୟ ଉଦ୍ଦୀପକ ଉପସ୍ଥିତିରେ ସ୍ମିତହସ ସୂଚାଏ । ପୁଣି ସୂକ୍ଷ୍ମ ପର୍ଯ୍ୟବେକ୍ଷଣରୁ ଲକ୍ଷ୍ୟ କରାଯାଇଛି ଯେ ଶିଶୁ ପ୍ରଥମେ ମା'ର ଚକ୍ଷୁଦ୍ୱଇଟି, ପରେ ମୁଖ ଏବଂ ତାହାପରେ ପୂରା ମୁଖମଣ୍ଡଳଟି ପ୍ରତି ସଚେତନ ହୋଇ ସ୍ମିତହସ ପ୍ରକାଶ କରେ ।

ପ୍ରାୟ ଛ' ମାସ ବେଳକୁ ଶିଶୁର ସ୍ମିତହସ ହସ (Laughter)ର ରୂପ ନିଏ । ଏପରି ବୟସରେ ବୟସ୍କମାନେ ବାହ୍ୟ ପାରିପାର୍ଶ୍ୱିକ ବସ୍ତୁର ସାହାଯ୍ୟ ନେଇ ଶିଶୁକୁ ହସାଇବାର ଚେଷ୍ଟା କରିଥାନ୍ତି । ଶିଶୁର ଦେହକୁ ସ୍ପର୍ଶ କରି କିମ୍ବା ଶିଶୁର କେଶରାଶି ମଧ୍ୟରେ ଧୀରେ ଧୀରେ ଫୁଙ୍କିଦେଇ ଶିଶୁକୁ ସ୍ପର୍ଶର ଅନୁଭୂତିଦେବା ମାଧ୍ୟମରେ ହସାଇବାର ଚେଷ୍ଟା କରାଯାଏ । ସେହିପରି ବୟସ୍କମାନେ ମୁହଁରେ ମୁଖା ପିନ୍ଧି, କିମ୍ବା ଲୁଚକାଳିର ଅଭିନୟ କରି ଶିଶୁକୁ ହସାଇବାର ଚେଷ୍ଟା କରନ୍ତି । ପୁଣି ଶବ୍ଦ କରୁଥିବା ଖେଳଣା ସବୁର ବ୍ୟବହାର କରାଯାଇ ଶିଶୁକୁ ହସାଇବାର ଚେଷ୍ଟା କରାଯାଏ ।

କୌତୂହଳର ବିଷୟ ଯେ କେଉଁସବୁ ବସ୍ତୁ ଶିଶୁ ମୁଖରେ ହସ ସୃଷ୍ଟି କରିବ ତାହାର ଏକ କ୍ରମିକ ସୋପାନ ରହିଛି । *ପ୍ରଥମେ ପ୍ରଥମେ ଶିଶୁ ଅନ୍ୟମାନଙ୍କ ପ୍ରଦତ୍ତ ବା ପରିବେଷ୍ଟିତ ବସ୍ତୁ ଦେଖି ହସୁଥିଲେ ମଧ୍ୟ ପରବର୍ତ୍ତୀ ପର୍ଯ୍ୟାୟରେ ଏ ସବୁ ବସ୍ତୁରେ ଆଗ୍ରହ କମିଯାଏ* । ଉଦାହରଣ ହେଉଛି ଅନ୍ୟ ଜଣେ ବ୍ୟକ୍ତି କିଛି ଗୋଟାଏ ଦେଖାଇବା । ଦ୍ୱିତୀୟ ପର୍ଯ୍ୟାୟରେ ଶିଶୁ ଅଂଶ ଗ୍ରହଣ କରୁଥିବା ଘଟଣାରେ ନିଜର ହସବ୍ୟକ୍ତ କରେ । ମା' କିମ୍ବା ଯତ୍ନକାରୀ ସହିତ ଲୁଚକାଳି ଏହିପରି ଏକ ପ୍ରକ୍ରିୟା । *ପରବର୍ତ୍ତୀ ପର୍ଯ୍ୟାୟରେ ଶିଶୁ ନିଜେ ସୃଷ୍ଟିକରୁଥିବା ଘଟଣାପ୍ରସଙ୍ଗରେ ହସ ବ୍ୟକ୍ତ କରେ* । ଶବ୍ଦ କରୁଥିବା କୁଣ୍ଢେଇଟି ନିଜେ ଚାପି ଏଥିରୁ ଶବ୍ଦ ବାହାର କରି ଖୁସିହୁଏ ଏବଂ ହସେ । ମୋଟ ଉପରେ କେଉଁସବୁ ବସ୍ତୁ ହସ ସୃଷ୍ଟି କରିବ, ସେସବୁ ଉଦ୍ଦୀପକ ବୟସର ବୃଦ୍ଧି ସହିତ ପରିବର୍ତ୍ତିତ ହେବାକୁ ଲାଗେ ।

କହିବା ଅନାବଶ୍ୟକ ଯେ ଶିଶୁର ହସ ପାଇଁ ମା ଓ ଅନ୍ୟମାନଙ୍କ ଅନୁକ୍ରିୟା (Interaction) ଆବଶ୍ୟକ । ଆମେ ଶିଶୁର ହସ ଦେଖି ଅନୁରୂପ ହସ ଦେଖାଇବା ଫଳରେ ଶିଶୁର ସ୍ମିତହସ ଓ ହସର ସମ୍ଭାବନା ବୃଦ୍ଧିପାଏ । ସର୍ବେକ୍ଷଣରୁ ଦେଖାଯାଇଛି ଯେ ପରିବାରର ସ୍ୱାଭାବିକ ପରିବେଶ ମଧ୍ୟରେ ଲାଳିତ ପାଳିତ ଶିଶୁ ଅନାଥାଶ୍ରମରେ ପାଳିତ ଶିଶୁ ତୁଳନାରେ ଶୀଘ୍ର ହସ ଦର୍ଶାଏ ଏବଂ ଅଧିକ ପରିମାଣର ଆନନ୍ଦ ପ୍ରକାଶ କରେ । ସ୍ମିତହସ ଓ ହସ କ୍ଷେତ୍ରରେ ଯତ୍ନକାରୀର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ସ୍ମିତହସର ଉତ୍ପତ୍ତି କେଉଁଠାରେ ? କେତେକ ମନୋବିଜ୍ଞାନୀ ମତଦିଅନ୍ତି ଯେ ସ୍ମିତହସ ଏକ ସହଜାତ ପ୍ରବୃତ୍ତି । ଏହାର ପ୍ରମାଣ ସ୍ୱରୂପ ସେମାନେ ଦର୍ଶାଇ ଥାଆନ୍ତି ଯେ ଭ୍ରୂଣ ସଞ୍ଚାରର ୪୬ ସପ୍ତାହ ପରେ ଅର୍ଥାତ୍ ଜନ୍ମର ଛ' ସପ୍ତାହ ପରେ ଶିଶୁ ହସେ । କୌଣସି ଶିଶୁ ଠିକ୍ ସମୟ (୪୦ ସପ୍ତାହ) ପୂର୍ବରୁ ଜନ୍ମ ହେଲେ ଏପରି ଶିଶୁ ଜନ୍ମଗ୍ରହଣର ୬ ସପ୍ତାହ ପରେ ହସିବା ପରିବର୍ତ୍ତେ ତା' ସଞ୍ଚାରର ୪୬ ସପ୍ତାହ ପରେ ହସିଥାଏ । ଏପରି ଶିଶୁ ଜନ୍ମହେବା ପରେ ଯେଉଁ ସମୟରେ ୪୬ ସପ୍ତାହ ପୂରଣ ହେଉଛି, ତାହାପରେ ହସ ସୂଚାଏ ।

ସ୍ମିତହସ ପୂର୍ବ ନିର୍ଦ୍ଧାରିତ ହେବାର କିଛି ସୂଚନା ସତ୍ତ୍ୱେ ପରିବେଶର ଗୁରୁତ୍ୱକୁ ଏଡ଼ାଇ ହେବନାହିଁ । ଶିଶୁ କେଉଁ କେଉଁ ବସ୍ତୁର ଉପସ୍ଥିତିରେ ହସୁଛି, କେଉଁ ବୟସରୁ ହସିବା ଆରମ୍ଭ କରୁଛି ଏବଂ ବୟସର ବୃଦ୍ଧି ସହିତ ଏପରି ଆଚରଣର କିଭଳି ପରିବର୍ତ୍ତନ ଘଟୁଛି, ତାହା ବହୁ ପରିମାଣରେ ପରିବେଶ ଉପରେ ନିର୍ଭର କରେ । ବିଶେଷଜ୍ଞ ପିତାମାତା ଓ ଅନ୍ୟସବୁ ଯତ୍ନକାରୀଙ୍କ ପାରସ୍ପରିକ କ୍ରିୟାକଳାପ ଓ ଶିଶୁର ହସକୁ ପ୍ରୋତ୍ସାହନ ଦେବାର ପରମ୍ପରା ବହୁ ତାରତମ୍ୟ ସୃଷ୍ଟିକରେ । ଏ ଦୃଷ୍ଟିରୁ ଶିଶୁର ସ୍ମିତହସ ଓ ହସ ପରି ଏକ ସାମାଜିକ ବ୍ୟବହାରର ଉନ୍ମେଷ ଓ ବିକାଶକୁ ତ୍ୱରାନ୍ୱିତ କରିବାର ପ୍ରଯତ୍ନକୁ ବାଦ୍ ଦେବା ଅନୁଚିତ ହେବ ।

## ସ୍ମିତହସରୁ ଅନୁରାଗ

ଶିଶୁର ସ୍ମିତହସରୁ ଯେଉଁ ସାମାଜିକ ବଳୟ ସୃଷ୍ଟିହୁଏ, ତାହା ଧୀରେ ଧୀରେ ଏକ ସାମାଜିକ ବନ୍ଧନର ରୂପ ନିଏ । ଶିଶୁର ନିଜର ମା' ଓ ଅନ୍ୟ ଯତ୍ନକାରୀ ସହିତ ଏକ ଅନୁରାଗପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠା କରେ । ଅନୁରାଗ ପ୍ରତିଷ୍ଠାର ତିନୋଟି କ୍ରମିକ ସୋପାନ ରହିଛି । ପ୍ରଥମ ସୋପାନରେ ଶିଶୁ ସାମାଜିକ ବସ୍ତୁ ପ୍ରତି ଆକର୍ଷଣ ଦର୍ଶାଏ ଏବଂ ଅନ୍ୟାନ୍ୟ ରୂପ ତୁଳନାରେ ମନୁଷ୍ୟର ରୂପ ବା ଛବି ପ୍ରତି ଅଧିକ ଆକର୍ଷିତ ହୁଏ । ଦ୍ୱିତୀୟ ସୋପାନରେ ସେ ପରିଚିତ ମାନବୀୟ ରୂପକୁ (ଯଥା–ପିତାମାତା ବା ଅନ୍ୟ ଯତ୍ନକାରୀ) ଅପରିଚିତ ବ୍ୟକ୍ତିଠାରୁ ପୃଥକ୍ କରି ଚିହ୍ନିପାରେ । ତୃତୀୟ ସୋପାନରେ ସେ ଚିହ୍ନି ପାରୁଥିବା ଏବଂ ଅଧିକ ଆକର୍ଷିତ ହେଉଥିବା ମଣିଷଟି ସହିତ ଏକ ଅନୁରାଗପୂର୍ଣ୍ଣ ସମ୍ପର୍କ ଗଢ଼ିତୋଳେ ।

କେଉଁ ବୟସରେ ଏ ସବୁ ଘଟେ, ତାହା କେତେକାଂଶରେ ନିର୍ଦ୍ଦିଷ୍ଟ ସମାଜ–ସଂସ୍କୃତି ଉପରେ ନିର୍ଭର କରୁଥିଲେ ମଧ୍ୟ ଗୋଟିଏ ସାମଗ୍ରିକ ଚିତ୍ର ଦିଆଯାଇପାରେ । ଏହା ମୁଖ୍ୟତଃ ଗବେଷଣା–ଲବ୍ଧ । ପୂର୍ବରୁ ସୂଚନା ଦିଆଯାଇଛି ଯେ ଖୁବ୍ କମ୍ ବୟସରେ ଏପରିକି ଜନ୍ମର ପରେ ପରେ ନବଜାତ ଶିଶୁ ମନୁଷ୍ୟର ମୁଖପ୍ରତି ଅଧିକ ଦୃଷ୍ଟି ଦେଇଥାଏ । ଦୁଇ ସପ୍ତାହର ବୟସ ବେଳକୁ ସେ ମା'ର ମୁହଁ ଚିହ୍ନିପାରେ । ଏ ପରିଚିତି ପ୍ରକ୍ରିୟା ଦୃଢ଼ତର ହୁଏ ଏବଂ ବୟସ ଦୁଇମାସ ହେଲାବେଳକୁ ସେ ନିଜର ପିତାଙ୍କୁ ଚିହ୍ନିପାରେ । ପରବର୍ତ୍ତୀ ମାସଗୁଡ଼ିକରେ ସେ ପିତାମାତାଙ୍କର ଅନ୍ୟସବୁ ସ୍ୱାତନ୍ତ୍ର୍ୟ ପ୍ରତି ଧ୍ୟାନଶୀଳ ହୁଏ । ସେମାନଙ୍କର ଶରୀରର ଅଙ୍ଗଭଙ୍ଗୀ, କଥାର ସ୍ୱର ଓ ଶୈଳୀ ଏବଂ ଅନ୍ୟ କେତେକ ବିଶିଷ୍ଟତା ପ୍ରତି ସଚେତନ ହୁଏ ।

ବୟସ ପ୍ରାୟ ସାତମାସ ହେଲାବେଳକୁ ଅନୁରାଗ (Attachment) ଏକ ସ୍ୱତନ୍ତ୍ର ରୂପନିଏ । ସାତମାସ ବୟସ ହେବା ପୂର୍ବରୁ ଶିଶୁଟି ହୁଏତ ମା'ର ସଂସର୍ଗ ପାଇଁ କାନ୍ଦୁଥିଲା । କିନ୍ତୁ ଏପରି କାନ୍ଦର ମୁଖ୍ୟ କାରଣ ହେଉଛି ଚାହିଦାମେଣ୍ଟାଇବା ପାଇଁ ମା'ର ଉପସ୍ଥିତି ବା ସଂସର୍ଗ କାମନା କରିବା । ମା' ଖାଦ୍ୟ ଦେବ ବା ଉଷ୍ମତା ଦେବ ବା ଶୀତଳତା ଦେବ – ଏ ଦୃଷ୍ଟିରୁ ଶିଶୁଟି କାନ୍ଦୁଥିଲା । ମାତ୍ର ଶିଶୁର ବୟସ ସାତମାସ ହେଲାପରେ ସେ ଅନ୍ୟ ଏକ ପ୍ରକାର ସଂକେତ ମଧ୍ୟ ଦିଏ । ମା' ଦୂରେଇ ଗଲେ ବା ତା' ଦୃଷ୍ଟିରୁ ଅପସରି ଗଲେ ସେ ସଂସର୍ଗ ପାଇଁ କାନ୍ଦେ । ମା' ଠାରୁ ପୃଥକ୍ ହେବା ସମୟରେ କାନ୍ଦିବାର ସଂକେତ ହେଉଛି ଅନୁରାଗର ଏକ ସ୍ୱତନ୍ତ୍ର ସୂଚକ ।

ପ୍ରାଥମିକ ଅବସ୍ଥାରେ ଶିଶୁ ଓ ଜନନୀ ମଧ୍ୟରେ ଥିବା ସଂସର୍ଗ (Contact)ରୁ ଅନୁରାଗର ଉନ୍ମେଷ ଘଟୁଥିଲେ ମଧ୍ୟ ଅନ୍ୟ କେତୋଟି ଉପାଦାନ ଅନୁରାଗକୁ ବିକଶିତ କରେ । ପିତାମାତା ଓ ଅନ୍ୟ ଯତ୍ନକାରୀମାନଙ୍କ ସହିତ ଶିଶୁର ଖେଳ କୌତୁକ ଅନୁରାଗ ଗଠନର ଏକ ସୁନ୍ଦର ମାଧ୍ୟମ । ମନୋବିଜ୍ଞାନୀମାନେ ଶିଶୁର କ୍ରୀଡ଼ା ଲକ୍ଷ୍ୟ କରି ଦେଖିଛନ୍ତି ଯେ ଶିଶୁର କ୍ରୀଡ଼ା ଏକ ସକ୍ରିୟ ପ୍ରକ୍ରିୟା । କ୍ରୀଡ଼ା ମାଧ୍ୟମରେ ବୟସ୍କବ୍ୟକ୍ତି (ଶିଶୁର ମା') ଶିଶୁପାଇଁ ଉଦ୍ଦୀପନା ଓ ଆକର୍ଷଣ ସୃଷ୍ଟି କରନ୍ତି । ସେହିପରି ଶିଶୁ ମଧ୍ୟ ଅନ୍ୟ ପାଇଁ ଉଦ୍ଦୀପନା ସୃଷ୍ଟିକରେ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ଶିଶୁର ଜନନୀ ଅତିରଞ୍ଜନର ଆଶ୍ରୟ ନେଇ ଅଧିକ ଆକର୍ଷଣ ସୃଷ୍ଟି କରନ୍ତି । କଥାଟିକୁ ଲମ୍ବାଇ ଲମ୍ବାଇ କହିବା, ସ୍ୱର ଲହରୀ ସୃଷ୍ଟି କରିବା ଇତ୍ୟାଦି ଅତିରଞ୍ଜନର କ୍ରିୟା କଳାପ । ଏହାଦ୍ୱାରା ଶିଶୁର ଧ୍ୟାନ ଆକର୍ଷିତ ହୁଏ । ଏପରି ପାରସ୍ପାରିକ କ୍ରିୟା ଅନୁରାଗର ବିକାଶରେ ସହାୟକ ହୁଏ ।

ଅନୁରାଗର ବିକାଶ ଓ ବିସ୍ତୃତି କ୍ଷେତ୍ରରେ ପିତାଙ୍କର ମଧ୍ୟ ଭୂମିକା ରହିଛି । ପୂର୍ବେ ପିତାଙ୍କ ଭୂମିକାକୁ ବିଶେଷ ଗୁରୁତ୍ୱ ଦିଆଯାଉ ନ ଥିଲା । ଶିଶୁର ସାମାଜିକ ବ୍ୟବହାର ବିକାଶରେ ମା'ର ଭୂମିକାକୁ ହିଁ ସ୍ୱୀକାର କରାଯାଉଥିଲା । ମାତ୍ର ବର୍ତ୍ତମାନ ପରିପ୍ରେକ୍ଷୀରେ ପିତାଙ୍କର ଭୂମିକା ନଗଣ୍ୟ ନୁହେଁ । ବିଶେଷତଃ ମା' ଶିଶୁପାଇଁ ଉଦ୍ଦୀପନା ସୃଷ୍ଟି କଲାବେଳେ କଥୋପକଥନର ଅଧିକ ବ୍ୟବହାର କରୁଥିବା ସ୍ଥଳେ ପିତା ଖେଳର ଅଧିକ ଉପଯୋଗ କରନ୍ତି । ଅଧିକାଂଶ ଖେଳ ଶରୀର-ଭିତ୍ତିକ । ସୁତରାଂ ଏ ଗୁଡ଼ିକର ଭିନ୍ନ ଏକ ଆବଶ୍ୟକତା ରହିଛି । *ଶାରୀରିକ ଖେଳ ପରିପ୍ରେକ୍ଷୀରେ ଶିଶୁ ଅଧିକ ମାତ୍ରାରେ ପିତାଙ୍କର ଉପସ୍ଥିତି ଓ ଅଂଶଗ୍ରହଣ କାମନା କରେ* । କ୍ରୀଡ଼ା ମାଧ୍ୟମରେ ପିତାଙ୍କ ସହିତ ଅନୁରାଗର ସମ୍ପର୍କ ଦୃଢ଼ ହୁଏ ।

ଅନୁରାଗର ଉନ୍ମେଷଟି ଏକ ବିକଶିତ ରୂପ ନେଲାପରେ ଏହା ଜୀବନର ଅନ୍ୟ ସୋପାନରେ (କିଶୋର ଓ ଯୁବାବସ୍ଥା ଇତ୍ୟାଦି) ଅତୁଟ ରହେ । ଅବଶ୍ୟ ଏହାର ପରିପ୍ରକାଶ ପଦ୍ଧତିରେ ପରିବର୍ତ୍ତନ ଘଟିପାରେ । ପ୍ରାଥମିକ ଅବସ୍ଥାରେ ଅନୁରାଗର ପରିପ୍ରକାଶ ସ୍ପର୍ଶ ଓ ସାନ୍ନିଧ୍ୟ ଦ୍ୱାରା ସୂଚିତ ହେଉଥିଲେ ମଧ୍ୟ ପରେ ପରେ ଅନୁରାଗକୁ ଭାଷାଦ୍ୱାରା ପ୍ରକାଶ କରାଯାଏ । ପୁଣି ସମାଜ ଓ ସଂସ୍କୃତି ଭେଦରେ ସ୍ପର୍ଶ ଓ ଭାଷା ପ୍ରୟୋଗର ତାରତମ୍ୟ ଦେଖାଯାଏ । ଜାପାନରେ ପିତାମାତା ଓ ବୟସ୍କମାନେ ଅଧିକ ମାତ୍ରାରେ ସ୍ପର୍ଶଦ୍ୱାରା ଶିଶୁପ୍ରତି ନିଜର ଅନୁରାଗ ପ୍ରକାଶ କରିବା ସ୍ଥଳେ ଆମେରିକାର ଲୋକମାନେ କଥାକହି ଗୀତଗାଇ ଶିଶୁପ୍ରତି ନିଜର ଅନୁରାଗ ପ୍ରକାଶ କରନ୍ତି ।

ଅନୁରାଗ ପ୍ରକାଶର ମାଧ୍ୟମ ଯାହା ହେଉଛି କାହିଁକି, ଅନୁରାଗ ଶିଶୁପାଇଁ ସୁଫଳ ଆଣିଥାଏ । ଏପରି ଶିଶୁମାନେ ଯେ ନିଜକୁ ସୁରକ୍ଷିତ ମନେ କରନ୍ତି, ତାହାର ବହୁ ପ୍ରମାଣ ମିଳିଛି । ଏତଦ୍‌ବ୍ୟତୀତ ଯଥେଷ୍ଟ ପରିମାଣରେ ଅନୁରାଗ ପାଇଥିବା ଶିଶୁମାନେ ନିଜର ପରିବେଶ ପ୍ରତି କୌତୂହଳ ପ୍ରଦର୍ଶନ କରନ୍ତି ଏବଂ ଅନ୍ୱେଷଣାତ୍ମକ (Exploratory) ବ୍ୟବହାର

ଦର୍ଶାନ୍ତି । କହିବା ଅନାବଶ୍ୟକ ଯେ ଶିଶୁର ଅନୁସନ୍ଧିତ୍ସା ଓ ଅନ୍ୱେଷଣାତ୍ମକ ବ୍ୟବହାର ଭବିଷ୍ୟତରେ ସମସ୍ୟା ସମାଧାନ ଦକ୍ଷତାକୁ ବିକଶିତ କରେ ।

ଅନୁରାଗ ପ୍ରସଙ୍ଗରେ ଦୁଇଟି ପ୍ରଶ୍ନ ଅନେକ ସମୟରେ ମୁଣ୍ଡ ଟେକିଛି । ପ୍ରଥମଟି ହେଉଛି–ଶିଶୁର ଏକାଧିକ ଓ ଅଧିକ ସଂଖ୍ୟକ ଯତ୍ନକାରୀ ଅନୁରାଗ ପ୍ରକ୍ରିୟାକୁ ବିପର୍ଯ୍ୟସ୍ତ କରନ୍ତି କି ? ଆଧୁନିକ ଯୁଗରେ ଅଧିକରୁ ଅଧିକ ସଂଖ୍ୟକ ମହିଳା କର୍ମ ସଂସ୍ଥାରେ ଯୋଗଦେଉଥିବାରୁ ଏବଂ ଧୀରେ ଧୀରେ ଶିଶୁମାନଙ୍କ ପାଇଁ ଶିଶୁ କେନ୍ଦ୍ରମାନ ବୃଦ୍ଧିପାଉଥିବାରୁ ଏ ପ୍ରଶ୍ନଟି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଅନୁରାଗ ସମ୍ପର୍କରେ ସବିଶେଷ ଗବେଷଣା କରିଥିବା ବ୍ରିଟିଶ ମନୋବିଜ୍ଞାନୀ ବଲ୍‌ବୀ ମତ ଦିଅନ୍ତି ଯେ ଜୀବନର ଆଦ୍ୟକାଳରେ (ଜନ୍ମର୍ ଠିକ୍ ପରେ ପରେ) ସଂସର୍ଗ ଲାଭ ପାଇଁ ଏକମାତ୍ର ଅନୁରାଗର ମଣିଷ ରହିବା ଭଲ । ଶିଶୁର ପ୍ରାଥମିକ ସମ୍ପର୍କ ଜଣେ ଯତ୍ନକାରୀ ଅର୍ଥାତ୍ ମା' ସହିତ ହେବା ଶ୍ରେୟସ୍କର । ମାତ୍ର ପରବର୍ତ୍ତୀ ପର୍ଯ୍ୟାୟରେ ଏକାଧିକ ଯତ୍ନକାରୀଙ୍କ ଉପସ୍ଥିତି ଓ ସାନ୍ନିଧ୍ୟ ଶିଶୁକୁ କ୍ଷତିଗ୍ରସ୍ତ କରି ନ ଥାଏ ।

ସେହିପରି ଇସ୍ରାଏଲରେ ଶିଶୁମାନେ ସମଷ୍ଟିଗତ ଭାବରେ କିବୁଜ୍‌ରେ ପ୍ରତିପାଳିତ ହୁଅନ୍ତି । ଏଠାରେ ଜଣେ ଜଣେ ପେଶାଦାର ଯତ୍ନକାରୀ ଥାଆନ୍ତି । କିବୁଜ୍‌ରେ ପ୍ରତିପାଳିତ ଶିଶୁମାନେ କ୍ଷତିଗ୍ରସ୍ତ ହେବାର ପ୍ରମାଣ ମିଳିନାହିଁ ।

ଦ୍ୱିତୀୟ ପ୍ରଶ୍ନଟି ହେଉଛି– ମା' ଭିନ୍ନ ଅନ୍ୟ କେହି ଶିଶୁର ଅନୁରାଗର ମଣିଷ ହୋଇପାରିବ କି ? ସ୍ୱାଭାବିକ ପ୍ରକ୍ରିୟାରେ ମା' ଶିଶୁର ମୌଳିକ ଅନୁରାଗର ମଣିଷ ହେଉଥିଲେ ମଧ୍ୟ ଅନ୍ୟମାନେ ଶିଶୁର ଅନୁରାଗ ମଣିଷ ହୋଇପାରିବେ । ଶିଶୁର ସାଥୀସବୁ ଅନୁରାଗ ମଣିଷ ହେବାର ଉଦାହରଣ ରହିଛି । ବିଶେଷତଃ ବିଶ୍ୱବିଖ୍ୟାତ ମନୋବିଜ୍ଞାନୀ ଫ୍ରଏଡ୍ ୧୯୫୧ ମସିହାରେ ସତ୍ୟ ଘଟଣାକୁ ଅବଲମ୍ବନ କରି ଛ'ଜଣ ଜର୍ମାନୀର ଇହୁଦୀ ଅନାଥ ପିଲାଙ୍କର ବିଷୟରେ ଯେଉଁ ଗପଟି ଲେଖିଥିଲେ, ତାହା ଅନୁରାଗର ଏକ ଅନାଲୋଚିତ ଦିଗ ସ୍ପଷ୍ଟଭାବେ ଦର୍ଶାଇଥାଏ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଏହି ଛ' ଜଣଙ୍କର ଇହୁଦୀ ପିତାମାତା ହିଟ୍‌ଲର୍‌ଙ୍କ ନାରକୀୟ ଯନ୍ତ୍ରଣା ଶିବିରର ଶିକାର ହୋଇଥିଲେ, ଗ୍ୟାସ ଚେମ୍ବରରେ ଏମାନେ ପ୍ରାଣ ହରାଇଥିଲେ । ହିଟଲରଙ୍କ ପତନ ପରେ ଏହି ଶିଶୁମାନଙ୍କୁ ଉଦ୍ଧାର କରାଯାଇଥିଲା । ସେତେବେଳକୁ ଏହି ଶିଶୁମାନଙ୍କର ବୟସ ସବୁ ଏକବର୍ଷର ପାଖାପାଖି ।

ବୁଲଡଗ୍ ବ୍ୟାଙ୍କ୍ ନାମକ ସ୍ଥାନରେ ଉଦ୍ଧାର ପାଇଥିବା ଶିଶୁମାନଙ୍କ ପାଇଁ ଗୋଟିଏ ନର୍ସରୀସ୍କୁଲ ପ୍ରତିଷ୍ଠା ହେଉଥିଲା । ଏହି ସ୍ଥାନରେ ଏହି ଅନାଥ ଶିଶୁମାନଙ୍କୁ ଛଡ଼ାଗଲା, ଏମାନଙ୍କର ବ୍ୟବହାର ସବୁ ବିଚିତ୍ର ଧରଣର ଥିଲା । ଏମାନେ ବୟସ୍କ ବ୍ୟକ୍ତିମାନଙ୍କୁ ଦେଖିଲେ ନିଜର କ୍ରୋଧ ପ୍ରକାଶ କରୁଥିଲେ । ଜିନିଷପତ୍ର ଭଙ୍ଗାଭଙ୍ଗି କରୁଥିଲେ । ଦୁଷ୍ଟାମୀ ଭାବ ଦେଖାଉଥିଲେ ।

ମାତ୍ର ଶିଶୁମାନେ ପରସ୍ପର ପ୍ରତି ଗଭୀର ସ୍ନେହ ପ୍ରକଟ କରୁଥିଲେ, ଟିକିଏ ବଡ଼ ହେବା ପରେ ସେମାନଙ୍କର ପାରସ୍ପରିକ ଅନୁରାଗ ସୁସ୍ପଷ୍ଟ ରୂପ ନେଲା । ଥରେ ଗୋଟିଏ ପିଲା ଖାଉଥିବା ସମୟରେ ଜାଣିବାକୁ ପାଇଲା ଯେ ରୁଟି କମ୍ ଥିବାରୁ ଦ୍ୱିତୀୟଥର ତାକୁ

ଆଉ କିଛି ମିଳିବ ନାହିଁ । ଏଥିପାଇଁ ସେ କାନ୍ଦିବାକୁ ଆରମ୍ଭ କଲା, ଅନ୍ୟ ଶିଶୁମାନେ ସଙ୍ଗେ ସଙ୍ଗେ ନିଜ ରୁଟିରୁ ଭାଗ ଦେଇ ତାକୁ ଶାନ୍ତ କରାଇଲେ ।

ଅନ୍ୟ ଏକ ଦିନ ବେଶ୍ ଥଣ୍ଡା ପଡ଼ିଥିବା ସମୟରେ ଗୋଟିଏ ପିଲା ତାହାର ଗ୍ଲୋଭସ୍‌ଟି ହଜାଇ ଦେଲା । ଅନ୍ୟ ଗୋଟିଏ ପିଲା କଷ୍ଟ ସହି ନିଜର ଗ୍ଲୋଭସଟି ଏହି ପିଲାକୁ ଦେଇଦେଲା ।

ଏହିପରି ଅନେକଗୁଡ଼ିଏ ଘଟଣା ସ୍ପଷ୍ଟ ପ୍ରମାଣ ଦିଏ ଯେ ଶିଶୁମାନେ ନିଜର ସାଥିମାନଙ୍କୁ ମଧ୍ୟ ଅନୁରାଗର ମଣିଷରୂପେ ଗ୍ରହଣ କରିପାରନ୍ତି । ବର୍ଣ୍ଣିତ ଶିଶୁମାନଙ୍କ କ୍ଷେତ୍ରରେ ତାହାହିଁ ହେଲା । ସେମାନଙ୍କ ମଧ୍ୟରେ ଈର୍ଷା, ପ୍ରତିଦ୍ୱନ୍ଦିତା ଏବଂ ସ୍ୱାର୍ଥପରତା ନଥିଲା । ପରବର୍ତ୍ତୀ ସମୟରେ ସେମାନେ ବଡ଼ ହୋଇ ବୟସ୍କମାନଙ୍କ ପ୍ରତି ସେମାନଙ୍କର ବିଦ୍ୱେଷପୂର୍ଣ୍ଣ ମନୋଭାବ ବଦଳାଇଲେ ମଧ୍ୟ ବୟସ୍କମାନଙ୍କୁ ମନରେ ଉଚ୍ଚସ୍ଥାନ ଦେଇପାରି ନଥିଲେ । ବନ୍ଧୁମାନଙ୍କ ପ୍ରତି ଗଭୀର ପ୍ରୀତି ଅତୁଟ ରହିଥିଲା । ସୁତରାଂ ମୂଳ ବିଶେଷତଃ ମା' ଭିନ୍ନ ଅନ୍ୟ ବ୍ୟକ୍ତି ପ୍ରତି ଅନୁରାଗ ସୃଷ୍ଟି ହେବାର ସମ୍ଭାବନାକୁ ଏଡ଼ାଇ ଦେଇହେବ ନାହିଁ ।

ଶିଶୁର ଆଦ୍ୟକାଳୀନ ଆବେଗର ଅନ୍ୟ ଏକ ଦିଗ ହେଉଛି ଶିଶୁ ଭୟ । ଏ ସମ୍ପର୍କରେ ମଧ୍ୟ ମନୋବିଜ୍ଞାନୀମାନେ ବେଶ୍ କିଛି ଉପାଦେୟ ତଥ୍ୟ ଯୋଗାଇଛନ୍ତି ।

## ଶିଶୁର ଭୟ

ଶିଶୁର ଭୟ ଏକ ସ୍ୱାଭାବିକ ଓ ବହୁ ପରିଦୃଷ୍ଟ ପ୍ରତିକ୍ରିୟା । ତିନିବର୍ଷର ଶିଶୁ ଡଲି ଗୋଟିଏ ବଡ଼ ଓ ଭୁକୁଥିବା କୁକୁରକୁ ଦେଖି ଭୟପାଏ । ତା' ପରଦିନ ସେ ଭୟରେ ବାହାରକୁ ଯିବା ପାଇଁ ଅନିଚ୍ଛା ପ୍ରକାଶ କରେ । ମା' ପଚାରିଲେ ତା'ର ପେଟ କାମୁଡୁଛି ବୋଲି କହେ । ଅଥଚ କିଛି ସମୟ ପରେ ଖାଦ୍ୟ ଦିଆଗଲେ ଘରେ ବସି ଆନନ୍ଦରେ ଖାଏ । ତା'ପର ଦିନ



ମଧ୍ୟ ଭୟକରି ଘର ବାହାରକୁ ଯିବାକୁ ଚାହେଁନାହିଁ । କିନ୍ତୁ ବାପା ଜିଦ୍ କରି ଧାଙ୍ଗରେ ନେଇ ବଜାର ବୁଲାଇ ଆଣିଲେ ସେଥିରେ ଖୁସିହୁଏ ।

ଆମର ପାରିପାର୍ଶ୍ୱରେ ଘଟୁଥିବା ଏପରି ବହୁ ଘଟଣାରୁ ଜାଣି ହେବ ଯେ ଅଳ୍ପ ବୟସର ଶିଶୁମାନଙ୍କର କେତେକ ଭୟ ସ୍ୱାଭାବିକ । ବୟସ ବଢ଼ିଲେ ଅନେକ ଭୟ ସ୍ୱତଃ ଚାଲିଯାଏ । ସାଧାରଣତଃ ବାଳକମାନଙ୍କ ତୁଳନାରେ ବାଳିକାମାନେ ଅଧିକ ଭୟାଳୁ । ପିତାମାତାମାନେ ଶିଶୁକନ୍ୟାର ଭୟାଳୁତାକୁ କିଛି ମାତ୍ରାରେ ଗ୍ରହଣ କରିନେବା ସ୍ଥଳେ ବାଳକ ଶିଶୁର ଭୟାଳୁତାକୁ ନିରୁତ୍ସାହ ପ୍ରଦର୍ଶନ କରନ୍ତି । ବାଳିକାମାନଙ୍କର ନିର୍ଭରଶୀଳତାକୁ ମଧ୍ୟ ପ୍ରଶ୍ରୟ ଦିଆଯାଏ । ଆଉ କେତେକ ସ୍ଥଳରେ ବାଳକମାନଙ୍କର ଭୟାଳୁତା ଥିଲେ ମଧ୍ୟ ସେମାନେ ତାହା ସ୍ୱୀକାର କରନ୍ତି ନାହିଁ ।

ଅଳ୍ପ ବୟସର ଶିଶୁମାନଙ୍କ ଭୟରେ ଦୁଇଟି ମୁଖ୍ୟ କାରଣ ରହିଛି । ପ୍ରଥମଟି ହେଉଛି ଅଭ୍ୟନୁକୂଳିତ (Conditioning)। ଆକସ୍ମିକ ଓ ଅପ୍ରତ୍ୟାଶିତ ଭାବରେ ଖୁବ୍ ଜୋରରେ ଶବ୍ଦଟିଏ ହେଲେ କେବଳ ଶିଶୁନୁହେଁ, ସମସ୍ତେ ଚମକି ପଡ଼ନ୍ତି । ଏହିପରି ଏକ ସମୟରେ ଅନ୍ୟ କୌଣସି ବସ୍ତୁ ବା ଘଟଣା ସଂଯୋଜିତ ହୋଇପଡ଼ିଲେ, ତାହା ଶିଶୁର ଭୟ ଉଦ୍ରେକ କରେ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ଖୁବ୍ ଜୋରରେ ଶବ୍ଦ ହେଉଥିବା ସମୟରେ କଳା ବିଲେଇଟି ଗୃହ ମଧ୍ୟରେ ପ୍ରବେଶ କଲେ ଶିଶୁପ୍ରଥମେ କଳା ବିରାଡ଼ିକୁ ଭୟ କରେ । ପରେ କଳାରଙ୍ଗ ବିସ୍ତାରିତ ହୋଇ କଳା ରଙ୍ଗର କାନ୍ଥ, କଳା ରଙ୍ଗର ବିଛଣା ଚାଦର ମଧ୍ୟ ଶିଶୁର ଭୟ ଜନ୍ମାଏ । ସୁତରାଂ ଭୟ ସୃଷ୍ଟି କରୁଥିବା ଘଟଣା ବା ବସ୍ତୁ ସହିତ ଆକସ୍ମିକ ସଂଯୋଗ ଫଳରେ କେତେକ ବସ୍ତୁ ଓ ଘଟଣା ଶିଶୁ ମନରେ ଭୟ ଜାତ କରେ ।

ଶିଶୁମନରେ ଭୟ ସଞ୍ଚାରର ଅନ୍ୟତମ କାରଣଟି ହେଉଛି ଶିଶୁ ମିଛିମିଛିକା (Fantasy) ବା ଅଭିନୟ ଏବଂ ପ୍ରକୃତ ଘଟଣା ମଧ୍ୟରେ ପାର୍ଥକ୍ୟ ବୁଝିପାରେ ନାହିଁ । 'ଭୂତ' ଓ 'ରାକ୍ଷାସ'ର ଛବି ଓ କଥା ଯେ କାଳ୍ପନିକ, ଏହା ବୁଝିବାକୁ ଏକ ବୟସସୀମା ଆବଶ୍ୟକ । ସର୍ବେକ୍ଷଣରୁ ଦେଖାଯାଇଛି ଯେ ଖୁବ୍ ଅଳ୍ପବୟସର ଶିଶୁ ମଧ୍ୟରୁ ପ୍ରତିଶତ ୭୫ ଏବଂ ଅଳ୍ପ ବୟସର ଶିଶୁମାନଙ୍କ ମଧ୍ୟରୁ ମାତ୍ର ପ୍ରତିଶତ ୫ ଜଣ ପିଲା ଭୂତ ଓ ରାକ୍ଷାସ କଥାରେ ଭୟ ଦର୍ଶାଇବାର ସ୍ଥଳେ ବଡ଼ ଶିଶୁମାନଙ୍କ ମଧ୍ୟରୁ ମାତ୍ର ପ୍ରତିଶତ ୫ ଜଣ ଶିଶୁ ଭୟ ଦର୍ଶାନ୍ତି । ଦଶ ବାର ବର୍ଷ ବେଳକୁ ପିଲାମାନେ କାର୍ଯ୍ୟ–କାରଣ ସମ୍ପର୍କ ବୁଝନ୍ତି । ସୁତରାଂ ଏ ସମୟରେ ବହୁତ ପ୍ରକାର ଭୟ ଚାଲିଯାଏ । କେବଳ ପ୍ରକୃତ କାରଣ ଥିବା ଶାରୀରିକ କ୍ଷତିର ଆଶଙ୍କା ଏବଂ ଅନ୍ୟାନ୍ୟ ବାସ୍ତବ ବିପଦ ସମ୍ଭାବନା ଏ ବୟସରେ ଭୟ ସୃଷ୍ଟି କରେ । ଚାରି ଛ'ବର୍ଷର ଶିଶୁ କେତେକ ଅପ୍ରାକୃତିକ ବସ୍ତୁ ଦେଖି ଭୟ ଦର୍ଶାଇପାରେ । ଅସୁନ୍ଦର ମଣିଷ, ଶାରୀରିକ ବିକୃତି ଥିବା ଲୋକ, ହୋଲି ଦିନ ରଙ୍ଗବେରଙ୍ଗର ଅସ୍ୱାଭାବିକ ରୂପ ଧାରଣ କରିଥିବା ବ୍ୟକ୍ତିଙ୍କୁ ଦେଖି ଭୟ ଦର୍ଶାଏ । ସେହିପରି ରେଡ଼ିଓ ଏବଂ ଟେଲିଭିଜନ୍‌ର ଅପ୍ରାକୃତିକ ଶବ୍ଦ ଓ ଦୃଶ୍ୟ ଭୟର କାରଣ ହୋଇପାରେ ।

କେତେକ ଶିଶୁଙ୍କର ଭୟର ଉତ୍ସ କଳ୍ପନା-ପ୍ରସୂତ ଘଟଣା ହେଲେ ମଧ୍ୟ ଅଧିକାଂଶ ଅଳ୍ପ ବୟସର ଶିଶୁମାନଙ୍କର ଭୟ ବାସ୍ତବିକ ଭୟପ୍ରଦ ଘଟଣା ଉପରେ ପର୍ଯ୍ୟବସିତ । କୁକୁର କାମୁଡ଼ିବା କିମ୍ବା ଚଳନ୍ତା ସାଇକେଲର ଧକ୍କା ଖାଇବା ଶିଶୁ ଏପରି ବସ୍ତୁ ପ୍ରତି ଭୟ ପ୍ରଦର୍ଶନ କରିବା ସ୍ୱାଭାବିକ । ଅତୀତର ଭୟପ୍ରଦ ଘଟଣା ଶିଶୁକୁ ଭୟାଳୁ କରେ ।

ଶିଶୁର ଭୟାଳୁତା କମାଇବା ସମ୍ଭବପର । ପ୍ରଥମତଃ ପିତାମାତା ଓ ବୟସ୍କମାନେ ବୁଝିବା ଉଚିତ ଯେ ଶିଶୁର ଭୟ ଏକ ପ୍ରାକୃତିକ ପ୍ରତିକ୍ରିୟା । ସୁତରାଂ ଶିଶୁ ଭୟାଳୁତା ଦର୍ଶାଇଲେ ତାକୁ ଉପହାସ ନ କରି ଶାସ୍ତି ବିଧାନ ନ କରି ଧୀରେ ଧୀରେ ଭୟ କଟାଇବାକୁ ହେବ । ଶିଶୁଟି କଳା ବିରାଡ଼ିକୁ ଭୟ କରୁଥିଲେ ଧୀରେ ଧୀରେ ଶିଶୁ ସହିତ ନିଜେ ପ୍ରଥମ ଦିନ କଳା ବିରାଡ଼ିଟିର ପାଖକୁ ଯିବା ଏବଂ ଏପରି କିଛିଥର ଘଟିଲା ପରେ କିଛିଦିନ ପରେ ବୟସ୍କ ନିଜେ କଳା ବିରାଡ଼ିଟିକୁ ସ୍ପର୍ଶ କରିବେ । *ଗୋଟିଏ ଥର ବା ମିନିଟ୍ ୨ ମିନିଟ୍ ମଧ୍ୟରେ ଶିଶୁର ଭୟାଳୁତା ଅପସାରଣ କରିବାର ଲକ୍ଷ୍ୟ ନ ରଖି ଧୀର ଓ ଯୋଜନାବଦ୍ଧ ଭାବରେ କଲେ ଶିଶୁର ଭୟ କମିବ* । ଶିଶୁ ପରେ ନିଜ ନିଜ ନିଜର ସ୍ପର୍ଶ ଦେଇ ଅନୁଭବ କରିବ ଯେ ବିରାଡ଼ିଟି ଭୟପ୍ରଦ ନୁହେଁ ।

ଅନେକ କ୍ଷେତ୍ରରେ ପିତାମାତା ଶିଶୁକୁ ଭୟର ଅନୁଭୂତି ନ ଦେବା ପାଇଁ ସଦାସର୍ବଦା ସୁରକ୍ଷା ମଧ୍ୟରେ ବା କୋଳରେ ରଖିଥାନ୍ତି । ଏହା ବାଞ୍ଛନୀୟ ନୁହେଁ । ଧରାଯାଉ ସର୍କସର ଜୀବଜନ୍ତୁ ଦେଖି ଶିଶୁ ଭୟ ପାଉଛି । ଏ କ୍ଷେତ୍ରରେ ଶିଶୁକୁ ଆଦୌ ସର୍କସ ଦେଖାଇବାକୁ ନ ନେବା କିମ୍ବା ସେଠାରେ ତାକୁ ପୂରାପୂରି ଲୁଗାକାନି ମଧ୍ୟରେ ଲୁଚାଇ ରଖିବା ଉଚିତ ହେବ ନାହିଁ । ବରଂ ତାକୁ ଦେଖିବାର ସୁଯୋଗ ଦେବା ସଙ୍ଗେ ସଙ୍ଗେ ତା'ର ପାଖାପାଖି ରହିବାକୁ ହେବ । ଶିଶୁର ସୁରକ୍ଷାକର୍ତ୍ତା ପାଖେ ପାଖେ ଅଛନ୍ତି, ଏପରି ଭାବ ଶିଶୁକୁ ସାହାସ ଦେବ । ସୁତରାଂ ବାହ୍ୟ ପରିବେଶରେ ଭୟର ଉପାଦାନ ଥିଲେ ମଧ୍ୟ ଶିଶୁ ଧୀରେ ଧୀରେ ତାହା ଗ୍ରହଣ କରି ଭୟ ପରି ଏକ ଆବେଗର ସୁନିୟନ୍ତ୍ରଣ ଶିକ୍ଷା କରିପାରିବ ।

## ଶିଶୁର କ୍ରୋଧ

ଅଳ୍ପବୟସ ଶିଶୁର ପ୍ରକୃତ କ୍ରୋଧ ନ ଥାଏ । ସେ କେବଳ ନିଜର ଅଭିଳଷିତ ବସ୍ତୁଟି ପାଇବାକୁ ଇଚ୍ଛା କରେ । ଏହା କାହାଠାରୁ ଜୋର୍‌ଜବରଦସ୍ତ ଛଡ଼ାଇ ଆଣିବା ଏବଂ ଅନ୍ୟମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରିବା ବା ଅନ୍ୟକୁ ଆଘାତ ଦେବାର ଇଚ୍ଛା ତାହାର ପ୍ରକାଶ ପାଇ ନଥାଏ । କିନ୍ତୁ ପରବର୍ତ୍ତୀ ସୋପାନରେ ଆକ୍ରମଣାତ୍ମକ ଭାବ ପ୍ରକାଶ ପାଏ । ଶାରୀରିକ ଶକ୍ତି ପ୍ରୟୋଗ କରି ଛଡ଼ାଇ ଆଣିବାର ବ୍ୟବହାର ସହିତ ଆକ୍ରମଣାତ୍ମକ ଭାଷା ଓ ଭାବଭଙ୍ଗୀ ପ୍ରକାଶ ପାଏ ।

ପ୍ରଥମ ସୋପାନରେ ଶିଶୁର କ୍ରୋଧ ଅନ୍ୟର କ୍ଷତି ଘଟାଇବାରେ ଅଭିପ୍ରେତ ନ ହେଲେ ମଧ୍ୟ ପାଟିକରି, ଗୋଡ଼ହାତ ଛାଟି ଶିଶୁ ନିଜର କ୍ରୋଧ ପ୍ରକାଶ କରେ । ଏପରି କ୍ରୋଧ କେବଳ ଇପ୍‌ସିତ ବସ୍ତୁ ଲାଭ କରିବାରେ କେନ୍ଦ୍ରିତ ଥାଏ । ଦୁଇତିନି ବର୍ଷ ବେଳକୁ

ଶିଶୁର ଅଭିନିବେଶ (Attention) ଏକ ନିର୍ଦ୍ଦିଷ୍ଟ ସମୟରେ ଏକ ନିର୍ଦ୍ଦିଷ୍ଟ ବସ୍ତୁରେ କେନ୍ଦ୍ରିତ ରହେ । ଏ ଦ୍ୱିତୀୟ ସୋପାନରେ ଶିଶୁ ନିଜର ଅଭିଳକ୍ଷିତ ଏପରି ବସ୍ତୁଟି ନ ପାଇଲେ ବାଧା ସୃଷ୍ଟି କରୁଥିବା ବ୍ୟକ୍ତି ବା ପିଲା ପ୍ରତି ନିଜର କ୍ରୋଧ ପ୍ରକାଶ କରେ । ପ୍ରକାଶିତ କ୍ରୋଧ ବଳପୂର୍ବକ ଛଡ଼ାଇଆଣିବା ପରି ଶାରୀରିକ ରୂପ ନିଏ । କିନ୍ତୁ ପରବର୍ତ୍ତୀ ସୋପାନରେ ଶିଶୁ ଭାଷାର ବ୍ୟବହାର କରି ଭାବ ପ୍ରକାଶ ଶିକ୍ଷା କଲାପରେ ଆକ୍ରମଣାତ୍ମକ ଭାଷା ମଧ୍ୟ ପ୍ରୟୋଗ କରେ । ଶିଶୁର ସାମାଜିକ ବ୍ୟବହାର ବିକାଶ ଓ ସମନ୍ୱୟ ପାଇଁ ଅଳ୍ପ ପରିମାଣର କ୍ରୋଧ ଉପଯୋଗୀ ହୋଇପାରେ । କିନ୍ତୁ ମାତ୍ରାଧିକ କ୍ରୋଧ ଶିଶୁ ଓ ଅନ୍ୟମାନଙ୍କ ପାଇ କ୍ଷତିକାରଣ ହୁଏ ।

କେଉଁ କେଉଁ ଉପାଦାନ ଶିଶୁର କ୍ରୋଧକୁ ଉଦ୍ଦୀପିତ କରେ ବୋଲି ମନରେ ପ୍ରଶ୍ନ ଉଠିଥାଏ । ବାଳକ ଶିଶୁ ମଧ୍ୟରେ ଥିବା ପୁରୁଷ ହରମୋନ୍ କ୍ରୋଧକୁ କିଛି ପରିମାଣରେ ଉଦ୍ଦୀପିତ କରେ । ଏହି କାରଣରୁ ପ୍ରାୟ ପ୍ରତି ସମାଜରେ ବାଳିକା ଅପେକ୍ଷା ବାଳକ ଏବଂ ନାରୀ ଅପେକ୍ଷା ପୁରୁଷ ଅଧିକ ମାତ୍ରାରେ କ୍ରୋଧୀ । ସଫଳ ଅଭିଭାବକତ୍ୱର ଅଭାବରେ ଶିଶୁ କେତେକ ତ୍ରୁଟିପୂର୍ଣ୍ଣ ବ୍ୟବହାର ଶିଖେ ଏବଂ କ୍ରୋଧ ଏହି ସମାଜ-ବିରୋଧୀ ବ୍ୟକ୍ତିତ୍ୱର ଏକ ମୁଖ୍ୟ ଅଂଶ ହୋଇଥାଏ । ପିଲାର ଏପରି ସମାଜ-ବିରୋଧୀ ବ୍ୟକ୍ତିତ୍ୱ ଗଠିତ ହେଲେ ସେ ସମଧର୍ମୀ ପିଲାମାନଙ୍କ ସହିତ ଏକାଠି ହୋଇ ଏହି ବଦ୍‌ଗୁଣକୁ ଅଧିକ ଦୃଢ଼କରେ ।

ଅସଫଳ ଅଭିଭାବକତ୍ୱ ଶିଶୁ କ୍ରୋଧର କାରଣ ବୋଲି କହିଲା ବେଳେ ସଫଳ ଅଭିଭାବକତ୍ୱ ସମ୍ପର୍କରେ ମନରେ ପ୍ରଶ୍ନ ଉଠିପାରେ । ଉତ୍ତମ ପିତା ବା ଉତ୍ତମ ମାତା କହିଲେ ବୁଝାଯାଏ ଯେ ଏପରି ପିତା ଓ ମାତା ଶିଶୁକୁ ଯଥୋଚିତ ଭାବରେ ଏବଂ ଧାରାବାହିକ ଭାବରେ ଶିଶୁର ଭଲ ବ୍ୟବହାର ଏବଂ ଶୃଙ୍ଖଳାପୂର୍ଣ୍ଣ ବ୍ୟବହାରକୁ ପ୍ରୋତ୍ସାହିତ ଦିଅନ୍ତି । ଶିଶୁର କାର୍ଯ୍ୟରେ ସେମାନେ ଗଭୀରଭାବେ ଜଡ଼ିତ ଏ କଥା ଶିଶୁକୁ ସୂଚାନ୍ତି । ଅନ୍ୟ ପକ୍ଷରେ ବେଳେବେଳେ ଶିଶୁକୁ ଅଧିକ ପ୍ରଶୟ ଦେବା ଏବଂ ବେଳେବେଳେ ଶିଶୁକୁ ଶାସ୍ତି ଦେବା କ୍ଷତିକାରକ ହୋଇଥାଏ । ସେହିପରି କେତେକ ପିତାମାତା ନିଜର ପିଲାମାନଙ୍କୁ ଅନ୍ୟପିଲାମାନଙ୍କ ପ୍ରତି ଆକ୍ରମଣାତ୍ମକ ଭାବ ଏବଂ ସେମାନଙ୍କ ପ୍ରତି ଅନାକ୍ରମଣାତ୍ମକ ଭାବ ଶିକ୍ଷା ଦିଅନ୍ତି । ଏହାର ପରିଣତି ମଧ୍ୟ ବିଷମ ହୁଏ ।

ଅନେକ ସମୟରେ କ୍ରୋଧର ମୂଳ କାରଣ ହେଉଛି ବ୍ୟର୍ଥତା । ଶିଶୁ ହେଉ ବା ବ୍ୟକ୍ତି ବିଶେଷ ହୁଅନ୍ତୁ, ବ୍ୟର୍ଥତାର ଶରବ୍ୟ ହେଲେ କ୍ରୋଧର ଉଦ୍‌ଭବ ହୁଏ । କୌତୂହଳର ବିଷୟ ଯେ, ଏପରି କ୍ରୋଧ ବ୍ୟର୍ଥତାର ମୂଳ କାରଣ ପ୍ରତି ଅଭିପ୍ରେତ ନହୋଇ ଅନ୍ୟ ଗୋଟିଏ ଦିଗରେ ପ୍ରେରିତ ହୁଏ । ଶିଶୁର ପ୍ରିୟ କଣ୍ଢେଇଟି ନେଇଯାଉଥିବା ପିଲାଟି ପ୍ରତି ଶିଶୁ ନିଜର କ୍ରୋଧ ପ୍ରକାଶ ନ କରି ତାହା ନିଜର ମା' ପ୍ରତି ପ୍ରକାଶ କରେ ।

କ୍ରୋଧର ଉଦ୍ଦୀପନା ଓ ପରିପ୍ରକାଶ କ୍ଷେତ୍ରରେ ନମୁନା (model) ସବୁର ବିଶେଷ ଭୂମିକା ରହିଛି । ବ୍ୟର୍ଥତା (frustration) ଏବଂ ନମୁନାକୁ ଅନୁକରଣ କରିବା ଭଳି ପ୍ରକ୍ରିୟା



ଏକା ସମୟରେ କାର୍ଯ୍ୟ କରିପାରେ । ଗବେଷଣାଗାରରେ ଗୋଟିଏ ପରୀକ୍ଷାରେ ଶିଶୁମାନଙ୍କୁ ଖୁବ୍ ଅଳ୍ପ ସମୟ ଆକର୍ଷଣୀୟ ଖେଳନା ସହିତ ଖେଳିବାର ସୁଯୋଗ ଦିଆଯାଇ ପୁଣି ସୁଯୋଗ କାଢ଼ିନିଆଗଲା । ସେମାନଙ୍କ ମନରେ ବ୍ୟର୍ଥତା ସୃଷ୍ଟିପାଇଁ ଏପରି କରାଗଲା । ଏପରି କରାଗଲା ପରେ ଅଧେ ଶିଶୁ ନିକଟସ୍ଥ ପରିବେଶରେ ଜଣେ ବୟସ୍କ ବ୍ୟକ୍ତିଙ୍କୁ ଦେଖିଲେ ଏବଂ ସେ ବ୍ୟକ୍ତି ଜଣକ ଆକ୍ରମଣାତ୍ମକ ଭାବ ଦର୍ଶାଉଥିଲେ । ଅନ୍ୟଭାଷାରେ କହିଲେ ଏହି ଶିଶୁମାନେ କ୍ରୋଧପୂର୍ଣ୍ଣ ନମୁନା ନିଜ ପରିବେଶରେ ଦେଖିବାସ୍ଥଳେ ଅନ୍ୟ ଅର୍ଦ୍ଧେକ ଶିଶୁ ଏପରି ନମୁନା ଦେଖି ନଥିଲେ ।

ପରବର୍ତ୍ତୀ ପର୍ଯ୍ୟାୟରେ ଏହି ଦୁଇଦଳର ଶିଶୁମାନଙ୍କର କ୍ରୋଧପୂର୍ଣ୍ଣ ବ୍ୟବହାର ପର୍ଯ୍ୟବେକ୍ଷଣ କରାଗଲା । ଖେଳ ସମୟରେ ସାମାଜିକ ପରିବେଶରେ ଏହି ପିଲାମାନଙ୍କ ଗହଣରେ ଏମାନଙ୍କର କ୍ରୋଧପୂର୍ଣ୍ଣ ବ୍ୟବହାର ଲକ୍ଷ୍ୟ କରାଗଲା । ଦେଖାଗଲା ଯେ କ୍ରୋଧୀ ନମୁନା ଦେଖିଥିବା ଶିଶୁମାନେ ଅଧିକ ପରିମାଣରେ କ୍ରୋଧପୂର୍ଣ୍ଣ ବ୍ୟବହାର ଦର୍ଶାଉଛନ୍ତି । କର୍କଶ ଭାଷାରେ କଥା କହିବା, ଅନ୍ୟ ପିଲାମାନଙ୍କୁ ଗାଳିଗୁଲଜ କରିବା ଏବଂ ମରାମରି କରିବାର ଦୃଷ୍ଟାନ୍ତ ମିଳୁଛି । ବିଶିଷ୍ଟ ମନୋବିଜ୍ଞାନୀ ବାନ୍ଦୁରାଙ୍କ ମତରେ ଆମର ନିକଟସ୍ଥ ପରିବେଶରେ ଆକ୍ରମଣାତ୍ମକ ବ୍ୟବହାର ଦର୍ଶାଉଥିବା ନମୁନା ସବୁ ଶିଶୁର କ୍ରୋଧପୂର୍ଣ୍ଣ ବ୍ୟବହାରକୁ ପ୍ରୋତ୍ସାହନ ଦିଏ ।

ଏ ପରିପ୍ରେକ୍ଷୀରେ ପିଲାମାନଙ୍କର ଆକ୍ରମଣାତ୍ମକ ବ୍ୟବହାର ସହିତ ଚଳଚିତ୍ର ଓ ଦୂରଦର୍ଶନରେ ପ୍ରଦର୍ଶିତ ହିଂସାତ୍ମକ ଦୃଶ୍ୟାବଳୀର ସମ୍ପର୍କ ଆଲୋଚନା କରାଯାଇପାରେ ।

ବାନ୍ଦୁରାଙ୍କ ମତରେ ଶିଶୁମାନେ ବାସ୍ତବ ଜୀବନରେ ନମୁନା (Models) ଅପେକ୍ଷା ଚଳଚିତ୍ର ଏବଂ ଦୂରଦର୍ଶନରେ ପ୍ରଦର୍ଶିତ ନମୁନା ଦ୍ୱାରା ଅଧିକ ପ୍ରଭାବିତ ହୁଅନ୍ତି । ଏ ଦୃଷ୍ଟିରୁ ଏ ଦୁଇଟି ମଧ୍ୟରେ ସମ୍ବନ୍ଧ ସହଜରେ ଅନୁମେୟ ।

## ଦୂରଦର୍ଶନ ଓ ଶିଶୁର ହିଂସ୍ର ଆଚରଣ

ସାମାଜିକ ଜୀବନରେ ହିଂସ୍ରତା ଯେତେ ବେଶୀ ପ୍ରକାଶ ପାଉଛି, ସେହି ଅନୁପାତରେ ହୁଏତ ଉଦ୍‌ବେଗ ପ୍ରକଟ ହେଉଛି । ମାତ୍ର ହିଂସ୍ର ଆଚରଣକୁ ନିୟନ୍ତ୍ରଣ କରି ସେ ସ୍ଥାନରେ ଉପଯୋଗୀ ଓ ସାମାଜିକ ବ୍ୟବହାରର ପ୍ରତିଷ୍ଠା କରିବା ସମ୍ପର୍କୀୟ ଉଦ୍ୟମ ସେତିକି ମାତ୍ରାରେ ହୋଇନାହିଁ । ଶିଶୁର କ୍ରୋଧ ଏବଂ ଅନ୍ୟର କ୍ଷତି ଘଟାଉଥିବା ତାହାର ଏକ ପରିବ୍ୟାପ୍ତ ପରିପ୍ରକାଶ ହିଂସ୍ର ଆଚରଣ ବିଷୟରେ କେତେଗୁଡ଼ିଏ ଉଦ୍ଦୀପକ ସମ୍ପର୍କରେ ପୂର୍ବରୁ ସୂଚନା ଦିଆଯାଇଛି । ଗୋଟିଏ ଉପାଦାନର ବିଶେଷ ଆଲୋଚନା ଆବଶ୍ୟକ । ତାହା ହେଉଛି ଦୂରଦର୍ଶନରେ ପ୍ରଦର୍ଶିତ ହିଂସାତ୍ମକ ଦୃଶ୍ୟାବଳୀର ପ୍ରଭାବ ।

ଦୂରଦର୍ଶନର ବ୍ୟବସାୟିକ ବିଶାଳତା ଏବଂ ସଫଳତା ସହିତ ଏ ପ୍ରଶ୍ନଟି ଜଡ଼ିତ ଥିବାରୁ ପ୍ରଥମେ ଦୁଇ ତିନୋଟି ସୂଚନାର ସ୍ପଷ୍ଟ ପ୍ରକାଶ ଆବଶ୍ୟକ । ଏହା ସତ୍ୟ ଯେ ଦୂରଦର୍ଶନରେ ପ୍ରଦର୍ଶିତ ହିଂସାତ୍ମକ ଦୃଶ୍ୟାବଳୀ ଏବଂ ଶିଶୁମାନଙ୍କର ହିଂସ୍ର ଆଚରଣ ସମ୍ପର୍କରେ ଭାରତ ପରି ଦେଶରେ ଯେତିକି ଗବେଷଣା ଓ ପ୍ରାମାଣିକ ତଥ୍ୟର ଆବଶ୍ୟକତା ରହିଛି, ସେପରି ପର୍ଯ୍ୟାପ୍ତ ମାତ୍ରାରେ ଗବେଷଣା ହୋଇନାହିଁ । ସୁତରାଂ ଦୂରଦର୍ଶନ ଏବଂ ହିଂସ୍ର ଆଚରଣର ସମ୍ବନ୍ଧ ସମ୍ପର୍କୀୟ ତଥ୍ୟ ମୁଖ୍ୟତଃ ବୈଦେଶିକ ଗବେଷଣା ଉପରେ ପର୍ଯ୍ୟବସିତ ।

ଦ୍ୱିତୀୟତଃ କୁହାଯାଇପାରେ ଯେ ଭାରତର ସାଂସ୍କୃତିକ ଓ ସାମାଜିକ ପରିପ୍ରେକ୍ଷୀରେ ନ ହେଲେ ମଧ୍ୟ ଭାରତ ବାହାରେ ଗବେଷଣା ଓ ପ୍ରାମାଣିକ ତଥ୍ୟ ରହିଛି । ତାକୁ ଭିତ୍ତିକରି ସ୍ଥିର ନିଶ୍ଚିତ ସିଦ୍ଧାନ୍ତ ନ ମିଳିଲେ ମଧ୍ୟ ସମ୍ଭାବନାର ଚିତ୍ର ଉପସ୍ଥାପନ କରିବାରେ ବାଧା ନାହିଁ ।

ତୃତୀୟତଃ ପାଶ୍ଚାତ୍ୟ ଦେଶମାନଙ୍କରେ ଚଳଚିତ୍ର ଓ ଦୂରଦର୍ଶନ ପ୍ରଦର୍ଶିତ ହିଂସାତ୍ମକ ଦୃଶ୍ୟାବଳୀ ଏବଂ ହିଂସ୍ର ଆଚରଣର ସମ୍ପର୍କ ବିଷୟରେ ଗବେଷଣାକୁ ଝାଁ ଭାଁ କହିହେବ ନାହିଁ । ଷଷ୍ଠ ଦଶକରୁ ଏ ବିଷୟରେ ବିଧିବଦ୍ଧ ଗବେଷଣା ହୋଇଛି ଏବଂ ବହୁଳ ଭାବରେ ଗୋଟିଏ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ମିଳିଛି । ପୁନଶ୍ଚ ଏପରି ଗବେଷଣାରେ ଯୁକ୍ତରାଷ୍ଟ୍ର ଆମେରିକାର ବିଶ୍ୱବିଖ୍ୟାତ ମନୋବୈଜ୍ଞାନିକ ବାନ୍ଦୁରାଙ୍କ ଅନୁଧ୍ୟାନ ସମ୍ପୃକ୍ତ ।

ଗବେଷଣାରୁ ସଂଗ୍ରହ କରାଯାଇଥିବା ମୁଖ୍ୟ ସିଦ୍ଧାନ୍ତଟି ହେଉଛି ଯେ ପିଲାମାନଙ୍କ ହିଂସ୍ର ଆଚରଣ ମୂଳରେ ଦୂରଦର୍ଶନର ହିଂସାତ୍ମକ ଦୃଶ୍ୟାବଳୀ କାରଣ ହୋଇପାରେ କିମ୍ବା ନ ହୋଇପାରେ । ମାତ୍ର ଏହା ସତ୍ୟ ଯେ ଦୁଇଟି ମଧ୍ୟରେ ସମ୍ବନ୍ଧ ରହିଛି । ଏହାର ଅର୍ଥ ହେଉଛି ଯେ ଦୂରଦର୍ଶନର ହିଂସାତ୍ମକ ଛବି ପିଲାମାନଙ୍କରେ ଥିବା ପ୍ରଚ୍ଛନ୍ନ କ୍ରୋଧ ଓ ହିଂସ୍ରଭାବକୁ ଉଦ୍ଦୀପିତ କରେ । ପୁଣି କ୍ରୋଧଭାବାପନ୍ନ ଓ ହିଂସ୍ର ଆଚରଣ ଦର୍ଶାଇବାକୁ ପିଲାମାନେ ଅଧିକରୁ ଅଧିକ ଏପରି ସବୁ ଦୃଶ୍ୟ ଦେଖିବାକୁ ଭଲ ପାଆନ୍ତି ।

ବିଶ୍ୱବିଖ୍ୟାତ ମନୋବିଜ୍ଞାନୀ ବାନ୍ଦୁରା ପୁଣି କହନ୍ତି ଯେ ଶିଶୁମାନେ ସେମାନଙ୍କର ବାସ୍ତବ ଜୀବନର (models) ନମୁନା ଅପେକ୍ଷା ଚଳଚିତ୍ର ଓ ଦୂରଦର୍ଶନର ନମୁନା ଦ୍ୱାରା ଅଧିକ ପ୍ରଭାବିତ ହୁଅନ୍ତି । ବେଶ୍ କିଛି ସମୟ ହିଂସାତ୍ମକ ଛବି ଓ କାର୍ଯ୍ୟ-କ୍ରମ ଦେଖିଲା ପରେ ଶିଶୁର ବ୍ୟବହାର ଓ କଥାରେ ହିଂସାତ୍ମକ ଭାବଭଙ୍ଗୀ ପ୍ରକାଶ ପାଏ ।

ହିଂସାତ୍ମକ ଭାବଭଙ୍ଗୀର ଅଂକୁରଣ ହେଲା ପରେ ଏପରି ସମାଜ-ବିରୋଧୀ ବ୍ୟକ୍ତିତ୍ୱ ଦର୍ଶାଉଥିବା ପିଲାମାନେ ଅଧିକରୁ ଅଧିକ ସମୟ ଅନୁରୂପ ଦୃଶ୍ୟାବଳୀ ଉପଭୋଗ କରିବାର ଲକ୍ଷ୍ୟ କରାଯାଇଛି । ଦୂରଦର୍ଶନରେ ପ୍ରଦର୍ଶିତ ନମୁନା (models)ର ଅଙ୍ଗଭଙ୍ଗୀ ଦର୍ଶାଉଥିବା କର୍କଶ ଭାଷା ବ୍ୟବହାର କରିବା ଏବଂ ଅନ୍ୟର ଦୃଷ୍ଟି ଆକର୍ଷଣ ପାଇଁ ସେପରି ବ୍ୟବହାରର ଆଶ୍ରୟ ନେବାର ଲକ୍ଷ୍ୟ କରାଯାଇଛି ।

ଏପରି ଏକ ସ୍ପଷ୍ଟ ପ୍ରତିଷ୍ଠିତ ସମ୍ବନ୍ଧ ଦୃଷ୍ଟିରୁ ପିଲାମାନଙ୍କର ହିଂସାତ୍ମକ ବ୍ୟବହାରର ନିୟନ୍ତ୍ରଣ ପାଇଁ ପିଲାମାନଙ୍କୁ ପରିମିତ ପରିମାଣରେ ଦୂରଦର୍ଶନ ଦେଖିବାର ସୁଯୋଗ ଦେବାପାଇଁ ଅଭିଭାବକମାନଙ୍କୁ ପରାମର୍ଶ ଦେବା ଯୁକ୍ତିଯୁକ୍ତ । ଭାରତ ପରି ଦେଶରେ ବହୁବର୍ଗର ଲୋକ ଓ ଶିଶୁମାନେ ବସବାସ କରନ୍ତି । ଏମାନଙ୍କ ମଧ୍ୟରେ ପରିପକ୍ୱତାର ପାର୍ଥକ୍ୟ ଖୁବ୍ ବେଶୀ । ସୁତରାଂ ପିତାମାତାଙ୍କର ଉପଦେଶ ଏବଂ ନିୟନ୍ତ୍ରଣ ଶିଶୁମାନଙ୍କ ପାଇଁ ଭାରତରେ ଅଧିକ ପ୍ରୟୋଜନ ।

ଏହା ଅବଶ୍ୟ ସତ୍ୟ ଯେ ଦୂରଦର୍ଶନ ଉପଭୋଗ କରିବାର ସମୟ ସୀମା ଏବଂ ବିଷୟ ବସ୍ତୁର ନିୟନ୍ତ୍ରଣ ସହିତ ଅନ୍ୟାନ୍ୟ ସହାୟକ ଅବସ୍ଥା ମଧ୍ୟ ଆବଶ୍ୟକ । ଅନେକ ସମୟରେ ପିତାମାତା ଶିଶୁର ହିଂସ୍ର ଆଚରଣ ନିୟନ୍ତ୍ରଣ କରିବାକୁ ଯାଇ ନିଜେ ହିଂସ୍ର ହୁଅନ୍ତି, ଶିଶୁକୁ ମାତ୍ରାଧିକ ଶାସ୍ତି ଦିଅନ୍ତି । ଏପରି ବିରୋଧାତ୍ମକ କାର୍ଯ୍ୟ କୁପରିଣତି ସୃଷ୍ଟିକରେ । ସ୍ଥଳ ବିଶେଷରେ ଖୁବ୍ ଅଳ୍ପ ପରିମାଣରେ ଶାସ୍ତି ଦିଆଯାଇପାରେ । ମାତ୍ର ଏପରି ଶାସ୍ତି ବିଧାନ ସମୟରେ ଯଥେଷ୍ଟ ସତର୍କତା ଅବଲମ୍ବନ କରିବାକୁ ହେବ ଏବଂ ଶାସ୍ତି ବିଧାନର କାରଣ ଶିଶୁକୁ ବୁଝାଇ ଦିଆଯିବ । କିନ୍ତୁ ହିଂସାତ୍ମକ ଭାବରେ କଠୋର ଶାସ୍ତିବିଧାନ ସମସ୍ୟା ସୃଷ୍ଟି କରିପାରେ ।

ଶିଶୁର ହିଂସାତ୍ମକ ବ୍ୟବହାର କମାଇବା ପାଇଁ ଶିଶୁର ଉପଯୋଗୀ ବା ଭଲ ବ୍ୟବହାରକୁ ଯଥାଯଥ ଭାବରେ ଓ ଧାରାବାହିକ ଭାବରେ ପ୍ରୋତ୍ସାହନ ଦେବାକୁ ହେବ । ଶିଶୁର ନିକଟସ୍ଥ ପରିବେଶରେ ଥିବା ଶାନ୍ତ ଏବଂ ହିଂସାରହିତ ବ୍ୟକ୍ତି ବିଶେଷଙ୍କ ପ୍ରତି ଶିଶୁର ଦୃଷ୍ଟି ଆକର୍ଷଣ କରାଇ ଶିଶୁ ଯେପରି ସେମାନଙ୍କୁ ନମୁନା ବା ଆଦର୍ଶ ରୂପେ ଗ୍ରହଣ କରେ ସେ ଦିଗରେ ଦୃଷ୍ଟିଦେବାକୁ ହେବ । ଏହିପରି ବହୁମୁଖୀ କର୍ମ ଯୋଜନା ହିଁ ଶିଶୁ ବ୍ୟବହାରକୁ ଶୃଙ୍ଖଳିତ ରୂପ ଦେବ ।

## ଶିଶୁର ସହାନୁଭୂତି ଓ ସମାନାନୁଭୂତି

ଶିଶୁ ମଧ୍ୟରେ ସମସ୍ତ ସମ୍ଭାବନା ସୁପ୍ତ ଓ ପ୍ରଚ୍ଛନ୍ନ ଭାବରେ ରହିଥାଏ । ପାରିବାରିକ କ୍ରୂରତା ଏବଂ ବାହ୍ୟପରିବେଶରେ ହିଂସ୍ରତା ଶିଶୁର ବ୍ୟବହାରକୁ ଆକ୍ରମଣାତ୍ମକ ରୂପ ଦେଇପାରେ ।

ସେହିପରି ସୁସ୍ଥ ଓ ଭାବପୂର୍ଣ୍ଣ ପରିବେଶ ଶିଶୁମନରେ ସହାନୁଭୂତି ଓ ସମାନନୁଭୂତିର ଅଙ୍କୁରଣ ଓ ବିକାଶ ଘଟାଇପାରେ । ଅତି ଅଳ୍ପ ବୟସରେ ମଧ୍ୟ ଶିଶୁ ଅନ୍ୟର ଦୁଃଖରେ ଦୁଃଖ ପ୍ରକାଶ କରିବା ଓ ଅନ୍ୟର ସୁଖରେ ଆନନ୍ଦ ପ୍ରକାଶ କରିବା ପରି ସହାନୁଭୂତିଶୀଳ (sympathetic) ବ୍ୟବହାର ଦର୍ଶାଇ ଥାଏ । ବିଶେଷତଃ ନିଜର ସାଙ୍ଗସାଥୀମାନଙ୍କ ପ୍ରତି ସହାନୁଭୂତି ଦର୍ଶାଇବାର ଲକ୍ଷ୍ୟ କରାଯାଏ । ପୁଣି ଶିଶୁର ବ୍ୟବହାର କେବଳ ସହାନୁଭୂତି ମଧ୍ୟରେ ସୀମିତ ନ ରହି ସମାନାନୁଭୂତି (Empathy)ର ରୂପ ନିଏ । ପାହାଚରେ ଉଠୁ ଉଠୁ ପଡ଼ିଯାଇ କାନ୍ଦୁଥିବା ପିଲାଟି ପ୍ରତି ସମବେଦନା ଜଣାଇ ସେ ପିଲାଟିକୁ ଆଉଁଷି ଦିଏ । ନିଜେ ଜଳଖିଆ ଖାଉଥିବା ସମୟରେ ଅନ୍ୟ ଶିଶୁଟି ବିକଳ ଦୃଷ୍ଟିରେ ଚାହିଁଥିଲେ ସେ ନିଜ ଜଳଖିଆର କିଛି ଅଂଶ ଦେଇ ପରାର୍ଥପରତା ପ୍ରକାଶ କରେ । ମୋଟ ଉପରେ କୌଣସି ସ୍ୱାର୍ଥ ବା ପ୍ରତିଦାନର ପ୍ରତ୍ୟାଶା ନ ରଖି ଶିଶୁଟି ଏପରି ବ୍ୟବହାର ଦର୍ଶାଏ । ଅନ୍ୟର ଦୁଃଖ ଆଉ ସୁଖର ସ୍ଥାନକୁ ଓହ୍ଲାଇପଡ଼ି ସେହିପରି ଭାବରେ ଅନୁଭବ କରିବାର ସାମର୍ଥ୍ୟ (ସମାନାନୁଭୂତି) ଶିଶୁ ବ୍ୟକ୍ତିତ୍ୱର ଏକ କମନୀୟ ଦିଗ ।

କେଉଁ କେଉଁ ପରିବେଶରେ ଶିଶୁର ଏପରି ପରାର୍ଥପରତା ବିକଶିତ ହୁଏ, ସେ ସମ୍ପର୍କରେ ଯଥେଷ୍ଟ ଅନୁଶୀଳନ କରାଯାଇଛି । ଏହି ଅନୁଶୀଳନର ଫଳ ସ୍ୱରୂପ କେତୋଟି ଉପାଦେୟ ତଥ୍ୟ ଆମ ଜ୍ଞାନର ପରିସର ମଧ୍ୟକୁ ଆସିଛି । ଶିଶୁର ଏପରି ବ୍ୟବହାର ପରିବାରର ଆର୍ଥିକ ଅବସ୍ଥା ସହିତ ସମ୍ବନ୍ଧିତ ନୁହେଁ । ସ୍ୱଚ୍ଛଳ ଆର୍ଥିକ ଅବସ୍ଥା ସମ୍ପନ୍ନ ପରିବାରର ପିଲାମାନେ ଏପରି ବ୍ୟବହାର ଦର୍ଶାଇବାର ସମ୍ଭାବନା ଯେପରି ରହିଛି, ଦରିଦ୍ର ପରିବାରର ପିଲାମାନଙ୍କ ବ୍ୟବହାରରେ ସେପରି ସମାନାନୁଭୂତି ମଧ୍ୟ ପ୍ରକାଶ ପାଇବାର ସମ୍ଭାବନା ରହିଛି । ବାଳକମାନଙ୍କ ତୁଳନାରେ ବାଳିକାମାନେ ଅଧିକ ପରିମାଣରେ ପରାର୍ଥପରତା ଦର୍ଶାନ୍ତି ବୋଲି କେହି କେହି ମନେକରନ୍ତି । ମାତ୍ର ପ୍ରକୃତରେ ଏପରି ପାର୍ଥକ୍ୟ ପରିଦୃଷ୍ଟ ହୁଏନାହିଁ । ବାଳକମାନଙ୍କ ତୁଳନାରେ ବାଳିକାମାନେ ଅଧିକ ସ୍ନେହଶ୍ରଦ୍ଧାମୁଖୀ ହୋଇଥିବାରୁ ଏପରି ବିଶ୍ୱାସ ଜାତ ହୋଇଥାଏ ।

ପରାର୍ଥପର ଆଚରଣ ବିକାଶ ଶିଶୁର ବୟସ ସହିତ ଜଡ଼ିତ ଥିଲାପରି ଜଣାଯାଏ । ପ୍ରାୟ ଦେଢ଼ବର୍ଷ ବୟସ ସମୟରୁ ଏହାର ସୂଚନା ମିଳିଥାଏ । ଧୀରେ ଧୀରେ ଅନୁକୂଳ ବାତାବରଣ ମଧ୍ୟରେ ଏହା ବିକଶିତ ହୁଏ । ପ୍ରାୟ ବାର ତେର ବର୍ଷ ବେଳକୁ ଏହାର ମଧ୍ୟ ବିକାଶ ଘଟେ ।

## ସହାୟକ ପରାମର୍ଶ

**ସ୍ମିତହସ ଓ ହସ ସମ୍ପର୍କରେ :**

୧. *ଶିଶୁର ସ୍ମିତହସ ଶିଶୁର ସାମାଜିକ ଓ ଆବେଗିକ ବ୍ୟବହାରର ପ୍ରଥମ ପରିପ୍ରକାଶ । ଏହା ଶିଶୁର ଆଦ୍ୟ ଜୀବନରେ ସ୍ୱତଃସ୍ଫୂର୍ତ୍ତ ଭାବରେ ପ୍ରକାଶ ପାଇଲେ ମଧ୍ୟ ପିତାମାତା ଓ ଯତ୍ନକାରୀମାନଙ୍କର ପ୍ରୋତ୍ସାହନ ଏହାର ପୁନରାବୃତ୍ତି ଓ ବିସ୍ତୃତିରେ ସହାୟକ ହୁଏ । ସୁତରାଂ ନିଜର ଅଙ୍ଗଭଙ୍ଗୀ ଓ କଥାବାର୍ତ୍ତା ମାଧ୍ୟମରେ ଏହାର ସମ୍ଭାବନାକୁ ବୃଦ୍ଧି କରନ୍ତୁ ।*

୨. ଶିଶୁର ବୟସର ବୃଦ୍ଧିକୁ ପୃଷ୍ଠରେ ରଖି ହସ ସୃଷ୍ଟି କରିପାରୁଥିବା ବସ୍ତୁ ସବୁର ଉପଯୋଗ କରନ୍ତୁ । ପ୍ରଥମେ ପ୍ରଥମେ ନିଜର ସ୍ପର୍ଶ ମୁଖାକୃତି ଇତ୍ୟାଦି ମାଧ୍ୟମରେ ଶିଶୁକୁ ହସାଇବାକୁ ଉଦ୍ୟମ କରନ୍ତୁ । ପରେ ପରେ ଖେଳ ପରି ଅବସ୍ଥା ସୃଷ୍ଟି କରି ଆପଣ ଓ ଶିଶୁ ଭାଗନେଇ ଏପରି ଅବସ୍ଥା ମାଧ୍ୟମରେ (ଯଥା-ଲୁଚକାଳି) ହସାଇବାର ଚେଷ୍ଟା କରନ୍ତୁ । ପ୍ରାୟ ଏକ ବର୍ଷ ହେଲା ବେଳକୁ ଶିଶୁ ନିଜ ପରିବେଶରେ ପରିବର୍ତ୍ତନ ସୃଷ୍ଟି କରି ନିଜେ ଯେପରି ହସିବ (ଯଥା-ବିଚିତ୍ର ଶବ୍ଦ କରୁଥିବା ବସ୍ତୁଟିକୁ ଚିପିଦେଇ) ତାହାର ସୁଯୋଗ ଦିଅନ୍ତୁ ।

ଅନୁରାଗ ସମ୍ପର୍କରେ :

୩. ଅନୁରାଗ (Attachment) ଶିଶୁର ମନସ୍ତାତ୍ତ୍ୱିକ ବିକାଶ ପାଇଁ ଏକ ନିହାତି ଆବଶ୍ୟକତା । ସ୍ୱାଭାବିକ ଭାବରେ ଶିଶୁ ଜନ୍ମର ପରେ ପରେ ମା'ର ସ୍ପର୍ଶ ଓ ସଂସର୍ଗ ଲାଭ କରି ମା'କୁ ପ୍ରଥମେ ଅନୁରାଗ-ମଣିଷ ହିସାବରେ ଗ୍ରହଣ କଲେ ମଧ୍ୟ ଅନୁରାଗର ବିକାଶକୁ ପରିପୁଷ୍ଟ କରିବା ଉଚିତ ହେବ । ଏ ଦୃଷ୍ଟିରୁ ଶିଶୁକୁ ସଂସର୍ଗ ଓ ସାନ୍ନିଧ୍ୟ ଦିଅନ୍ତୁ । ସ୍ପର୍ଶ, କଥାବାର୍ତ୍ତା ଓ ଶିଶୁ ସହିତ ଖେଳିବା ମାଧ୍ୟମରେ ଶିଶୁପାଇଁ ଆକର୍ଷଣ ସୃଷ୍ଟିକରି ଅନୁରାଗକୁ ଋଦ୍ଧିମନ୍ତ କରନ୍ତୁ ।

୪. ଉପଯୁକ୍ତ ପରିମାଣରେ ଅନୁରାଗର ଉନ୍ମେଷ ଓ ବିକାଶ ଘଟିଥିଲେ ପରବର୍ତ୍ତୀ କାଳରେ ଏପରି ଶିଶୁ ମନରେ ସୁରକ୍ଷା ଭାବ ଦୃଢ଼ଥାଏ । ଏପରି ଶିଶୁ ଆତ୍ମବିଶ୍ୱାସୀ ହୋଇ ଅନ୍ୱେଷଣମୂଳକ ବ୍ୟବହାର ଦର୍ଶାଏ ଏବଂ କୁଶଳତାର ସହିତ ସମସ୍ୟା ସମାଧାନ କରିଥାଏ । ଏ ଦୃଷ୍ଟିରୁ ପିତାମାତା ଓ ଯତ୍ନକାରୀମାନଙ୍କ ବ୍ୟତୀତ ଅନ୍ୟ ବୟସ୍କମାନେ ମଧ୍ୟ ଶିଶୁପାଇଁ ଅନୁରାଗର ବାତାବରଣ ସୃଷ୍ଟି କରିବା ବାଞ୍ଛନୀୟ ।

ଶିଶୁର ଭୟ :

୫. ସ୍ୱାଭାବିକ ଭାବରେ ଭୟ ସୃଷ୍ଟି କରିଥିବା କୌଣସି ବସ୍ତୁ ବା ଘଟଣା (ଯଥା-ଡାକ୍ତରଙ୍କ ଇଞ୍ଜେକସନ ଛୁଞ୍ଚି ଓ ହଠାତ୍ ଚମକି ପଡ଼ିବା ଭଳି ଶବ୍ଦ), ଅନ୍ୟ କୌଣସି ବସ୍ତୁ ଓ ଘଟଣା ସହିତ ଆକସ୍ମିକ ଭାବରେ ସଂଯୋଜିତ ହେବା ଫଳରେ (ଯଥା- ଡାକ୍ତରଙ୍କ ଧଳା ପୋଷାକ ଓ ଉଚ୍ଚ ଶବ୍ଦ ହେଉଥିବା ସମୟରେ କୋଠରୀକୁ ପ୍ରବେଶ କରୁଥିବା କଳା ବିରାଡ଼ି) ସବୁବସ୍ତୁ ମନରେ ଭୟ ସଞ୍ଚାର କରେ । ଭୟ କମାଇବାର ମୂଳ ନୀତିଟି ହେଉଛି ଏହି ସଂଯୋଗଟିକୁ କାଟିବା । ଅର୍ଥାତ୍ ବିଭିନ୍ନ ଅବସ୍ଥାରେ ଧଳା ପୋଷାକର ଅନୁଭବ ଦେବା, ଭୟଶୂନ୍ୟ ଅବସ୍ଥାରେ ଏକାଧିକ ବାର କଳାବିରାଡ଼ିର ସାନ୍ନିଧ୍ୟ ଦେବା ।

୬. ଶିଶୁର ପ୍ରିୟବସ୍ତୁ (ଯଥା-ମା'ର ସାନ୍ନିଧ୍ୟ, ଶିଶୁର ଖେଳ ବା ଖାଦ୍ୟ ଗ୍ରହଣ) ଉପସ୍ଥିତିରେ ଉପର ବର୍ଣ୍ଣିତ ଅନୁଭୂତି ଦେବାକୁ ହେବ । ଏପରି କଲେ ଧଳା ପୋଷାକ ଓ କଳା ବିରାଡ଼ି ପ୍ରତି ଭୟ ଅପସରି ଯିବ ।

**ଶିଶୁର କ୍ରୋଧ ଓ ହିଂସ୍ର ଆଚରଣ**

୭. ପ୍ରାଥମିକ ପର୍ଯ୍ୟାୟରେ ନ ହେଲେ ପରବର୍ତ୍ତୀ ପର୍ଯ୍ୟାୟରେ ଶିଶୁ ନିଜର ଇପ୍ସିତ ବସ୍ତୁ ଲାଭ ପାଇଁ କ୍ରୋଧକୁ ମାଧ୍ୟମ ରୂପେ ପ୍ରୟୋଗ କରେ । ସୁତରାଂ କେବଳ ଉପଯୋଗୀ ମାଧ୍ୟମ ବା ମାର୍ଗରେ ଶିଶୁ ଯେପରି ଅଭିଳଷିତ ଜିନିଷ ପାଏ, ସେ ଦିଗରେ ଦୃଷ୍ଟି ଦିଅନ୍ତୁ ।

୮. ହିଂସ୍ରତାପୂର୍ଣ୍ଣ ଦୂରଦର୍ଶନ ଦୃଶ୍ୟାବଳୀ ଶିଶୁ କ୍ରୋଧର କାରଣ ନ ହୋଇପାରେ । ତଥାପି ଏହା ଶିଶୁର ସୁପ୍ତ କ୍ରୋଧକୁ ଉଦ୍ଦୀପିତ କରେ । ସୁତରାଂ ଦୂରଦର୍ଶନର ଦୃଶ୍ୟାବଳୀର ନିୟନ୍ତ୍ରଣ ଏକାନ୍ତ ବାଞ୍ଛନୀୟ ।

୯. ଶିଶୁର କ୍ରୋଧ ଓ ହିଂସ୍ର ଆଚରଣ କମାଇବାର ଏକ ବିଶିଷ୍ଟ ମାର୍ଗ ହେଉଛି କ୍ରୋଧ-ରହିତ ଶାନ୍ତ ପ୍ରକୃତିର ସାଙ୍ଗ ସାଥୀ ଓ ବ୍ୟକ୍ତିମାନଙ୍କ ପ୍ରତି ଶିଶୁର ଦୃଷ୍ଟି ଆକର୍ଷଣ କରିବା । ଏପରି ପିଲା ଓ ବ୍ୟକ୍ତିମାନେ ଯେପରି ଶିଶୁର ଅନୁକରଣୀୟ ନମୁନା (Role models)ହେବେ, ସେ ଦିଗରେ ଦୃଷ୍ଟି ଦିଅନ୍ତୁ ।

**ଶିଶୁର ସମାନାନୁଭୂତି (Empathy)**

୧୦. ଶିଶୁମନରେ ସମାନାନୁଭୂତିର ଉନ୍ମେଷ ଓ ବିକାଶ କରାଇବା ପାଇଁ ନିଜେ ଅନୁରୂପ ବ୍ୟକ୍ତିତ୍ୱ ଦର୍ଶାନ୍ତୁ । ବକ୍ତୃତା ଅପେକ୍ଷା ଏହା ଅଧିକ ଫଳପ୍ରଦ ହେବ ।

ସମାନାନୁଭୂତି ଓ ପରାର୍ଥପରତା ଦର୍ଶାଉଥିବା ପିଲାମାନଙ୍କୁ ଲକ୍ଷ୍ୟ କରାଯାଇ ଦେଖାଯାଇଛି ଯେ ଏପରି ପିଲାମାନଙ୍କର ବିଚାର ଶକ୍ତି ଉତ୍ତମ । ଏମାନେ ଅପେକ୍ଷାକୃତ ଅଧିକ ସକ୍ରିୟ ଓ ଆତ୍ମବିଶ୍ୱାସୀ । ଏମାନଙ୍କର ସାଙ୍ଗସାଥୀମାନଙ୍କର ସଂଖ୍ୟା ଖୁବ୍ କମ୍ ନୁହେଁ ।

ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ଦିଗଟି ହେଉଛି ଏମାନଙ୍କର ପରିବାର । ପରିବାରରେ ପିତାମାତା ଶିଶୁକୁ ପ୍ରଚୁର ସ୍ନେହମମତା ଦିଅନ୍ତି ଏବଂ ଅବହେଳା କରନ୍ତି ନାହିଁ । ଅନୁରାଗର ନିବିଡ଼ତା ମଧ୍ୟରେ ଏପରି ଶିଶୁମାନେ ଏକପ୍ରକାର ସୁରକ୍ଷା ଭାବ (security) ଅନୁଭବ କରନ୍ତି । ସ୍ନେହ, ଯତ୍ନ ଓ ଆଦରପୂର୍ଣ୍ଣ ପ୍ରତିପାଳନ ମଧ୍ୟରେ ଶିଶୁମାନେ ବଢ଼ନ୍ତି ।

ଶିଶୁମନରେ ପରାର୍ଥପରତା (altruism) ପରି ସାମାଜିକ ଗୁଣର ବିକାଶ କ୍ଷେତ୍ରରେ ପିତାମାତା ବି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରନ୍ତି । ସେମାନେ ନିଜେ ସହାନୁଭୂତିଶୀଳ, ସମ୍ବେଦନଶୀଳ ଏବଂ ସମାନାନୁଭୂତିଶୀଳ ହୋଇଥାନ୍ତି । ଶିଶୁପାଇଁ ନିଜେ ନମୁନା (model) ହେବା ସଙ୍ଗେ ସଙ୍ଗେ ପରିପାର୍ଶ୍ୱରେ ଥିବା ଉଚ୍ଚ ଆଦର୍ଶପୂର୍ଣ୍ଣ ବ୍ୟକ୍ତି ବା ଘଟଣା ପ୍ରତି ଶିଶୁର

ଦୃଷ୍ଟି ଆକର୍ଷଣ କରନ୍ତି । ସେମାନେ ନିଜେ କିପରି ନମୁନା ହୁଅନ୍ତି, ତାହାର ଏକ ଦୃଷ୍ଟାନ୍ତ ଦିଆଯାଇପାରେ । ଧରାଯାଉ ଶିଶୁଟି ଗୋଟିଏ ଦୋକାନରୁ ଜିନିଷଟିଏ ପଇସା ନ ଦେଇ ନେଇଆସିଲା । ଏ କ୍ଷେତ୍ରରେ ପିତାମାତା ଶିଶୁଟିକୁ ଗାଳିଦେଇ ଦଣ୍ଡ ଦେଇ ସାଧୁତା ଉପରେ ବକ୍ତୃତା ଦେବା ହୁଏତ ବେଶୀ କାର୍ଯ୍ୟକାରୀ ନ ହୋଇପାରେ । ମାତ୍ର ଶିଶୁଟିକୁ ଦୋକାନକୁ ନେଇ ସେଠାରେ ଦୁଃଖ ପ୍ରକାଶ କରି ଜିନିଷଟି ଫେରାଇ ଦେଇ ଆସିବା କିମ୍ବା ତାର ଦାମ ପଇଠ କରି ଆସିବା ଶିଶୁର ଦୃଷ୍ଟିକୁ ଅଧିକ ଆକର୍ଷଣ କରିବ । ପଇସା ପାଇ ନଥିଲେ ଲୋକଟିର କିପରି କ୍ଷତି ଓ ମାନସିକ ଅଶାନ୍ତି ହେଇଥାନ୍ତା, ସେ ବିଷୟରେ ଭାବିବାକୁ ଶିଶୁଟିକୁ ପ୍ରୋତ୍ସାହନ ଦେବା ସମୁଚିତ ହେବ । ପିତାମାତାଙ୍କର ଏପରି ବ୍ୟବହାର ଶିଶୁର ମନୋଭାବ ଗଠନର ଯଥେଷ୍ଟ ସହାୟକ ହେବ ।

ଏହା ସମସ୍ତ ଜାଣନ୍ତି ଯେ ବିଶ୍ୱଯୁଦ୍ଧ ସମୟରେ ବିଶେଷତଃ ଜର୍ମାନୀରେ ଇହୁଦୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଯାଇଥିଲା । ଇହୁଦୀମାନଙ୍କର ଏପରି ଦୁଃଖସମୟରେ ସେମାନଙ୍କୁ ସାହାଯ୍ୟ କରିଥିବା ତଥା ଆଶ୍ରୟ ଦେଇଥିବା ୪୦୬ଟି ଅଣଇହୁଦୀ ପରିବାରକୁ ଏବେ ଇଉରୋପରେ ଚିହ୍ନଟ କରାଯାଇଛି । ସେ ସବୁ ପରିବାରରେ ପ୍ରତିପାଳିତ ହୋଇଥିବା ପିଲାମାନଙ୍କର ବ୍ୟବହାର ପର୍ଯ୍ୟବେକ୍ଷଣ କରାଯାଇଛି । ଶରଣାର୍ଥୀଙ୍କୁ ଶରଣ ଦେଉଥିବା ଏସବୁ ପରିବାରର ପିଲାମାନେ ଅନ୍ୟ ପିଲାମାନଙ୍କ ତୁଳନାରେ ଭିନ୍ନ ବୋଲି ଦେଖାଯାଇଛି । ଏପରି ପରିବାରରେ ଲାଳିତ-ପାଳିତ ପିଲାମାନେ ସେମାନଙ୍କ ପରିବାରର ସୀମା ବାହାରେ ଥିବା ଲୋକମାନଙ୍କ ପ୍ରତି ମଧ୍ୟ ସମ୍ବେଦନଶୀଳ । ଏପରି ପିଲାମାନେ ନିଜର ବ୍ୟକ୍ତିଗତ ସ୍ୱାର୍ଥ ଓ ଅର୍ଥ ରୋଜଗାର କରିବାର ବନ୍ଧନୀ ମଧ୍ୟରେ ବନ୍ଦୀ ନୁହନ୍ତି । ସ୍ଥୂଳତଃ ପ୍ରତିକୂଳ ବାହ୍ୟ ପରିବେଶ ସତ୍ତ୍ୱେ ପରିବାରର ଉଚ୍ଚ ଆଦର୍ଶ ଏବଂ ମାନବଧର୍ମୀ ବାତାବରଣ ଶିଶୁପାଇଁ ସମାଜ ହିତକରୀ ଆଚରଣ ସୃଷ୍ଟିରେ ସହାୟକ ହୋଇପାରିବ ବୋଲି ପ୍ରମାଣ ରହିଛି ।

# ଶିଶୁ-ଅବହେଳା ଓ ନିର୍ଯ୍ୟାତନା

ଶିଶୁମାନଙ୍କର ବିକାଶକୁ ପ୍ରତିହତ କରୁଥିବା ଶୋଷଣ ଓ ନିର୍ଯ୍ୟାତନାର ବିଲୋପ ପାଇଁ ସଂଯୁକ୍ତ ରାଷ୍ଟ୍ର ସଂଘ ଶିଶୁ ଅଧିକାରର ଘୋଷଣାନାମା ପ୍ରକାଶ କରିଛି । ଏହି ଆଦର୍ଶକୁ ସମ୍ମାନ ଜଣାଇ ଭାରତ ସମେତ ବିଭିନ୍ନ ରାଷ୍ଟ୍ରମାନେ ମଧ୍ୟ ଅନୁରୂପ ଆଇନ ପ୍ରଣୟନ କରିଛନ୍ତି । ଆମର ରାଜ୍ୟ ସରକାର ଶିଶୁ ଅଧିକାର ଆଇନ ପ୍ରଣୟନରେ ପଛଘୁଞ୍ଚା ଦେଇ ନାହାନ୍ତି । ଏସବୁ ଆଇନଗତ ସୁରକ୍ଷା ବ୍ୟବସ୍ଥା ସତ୍ତ୍ୱେ ଶିଶୁ ଅବହେଳା ଏବଂ ଶିଶୁ ନିର୍ଯ୍ୟାତନାର ମାତ୍ରା ଉଦ୍‌ବେଗଜନକ ସ୍ତରରେ ରହିଛି ।

ଶିଶୁର ଅବହେଳା ଭୌତିକ କିମ୍ବା ଭାବଗତ ସ୍ତରରେ ହୋଇପାରେ । ଶିଶୁକୁ ଉପଯୁକ୍ତ ପରିମାଣର ଖାଦ୍ୟପେୟ, ପୋଷାକ ପରିଚ୍ଛଦ, ବାସଗୃହ, ପରିଚ୍ଛନ୍ନ ପରିବେଶ ଏବଂ ଆବଶ୍ୟକ ଡାକ୍ତରୀ ସୁବିଧା ନ ଯୋଗାଇବା ଭୌତିକ (Physical) ଅବହେଳାର ସୂଚକ । ସେହିପରି ଶିଶୁ ପ୍ରଯୋଜନ କରୁଥିବା ସ୍ପର୍ଶ, ସ୍ନେହଶ୍ରଦ୍ଧା, ଯତ୍ନ ଓ ଆନ୍ତରିକତାର ଅଭାବ ଭାବଗତ ଅବହେଳାର ଦୃଷ୍ଟାନ୍ତ ।

ଶିଶୁ ନିର୍ଯ୍ୟାତନା ତିନୋଟି କ୍ଷେତ୍ରରେ ଦେଖାଦେଇପାରେ । ସେଗୁଡ଼ିକ ହେଉଛି ଶାରୀରିକ, ଯୌନଗତ ଏବଂ ଭାବଗତ । ଶାରୀରିକ ଶାସ୍ତିବିଧାନ ସମେତ ଅନ୍ୟସବୁ ଶାରୀରିକ ଯନ୍ତ୍ରଣାର ଶରବ୍ୟ କରି ଶିଶୁକୁ ନିର୍ଯ୍ୟାତନା ଦିଆଯାଏ । କେତେକ ବ୍ୟକ୍ତି ଶିଶୁର ସରଳତାର ସୁଯୋଗ ନେଇ ଶିଶୁମାନଙ୍କୁ ସେମାନଙ୍କର ଅନିୟନ୍ତ୍ରିତ ଯୌନକାମନାର ଆୟୁଧରୂପେ ବ୍ୟବହାର କରନ୍ତି । ପରିବାରରେ, ବିଦ୍ୟାଳୟରେ ଏବଂ ସମାଜରେ ଶିଶୁ ଏପରି ଅବାଂଛିତ ଯୌନ ନିର୍ଯ୍ୟାତନାର ଶରବ୍ୟ ହୋଇପାରେ । ସେହିପରି ଶିଶୁକୁ ଭାବଗତ ଓ ମାନସିକ ଯନ୍ତ୍ରଣା ଦେବାର ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ଶିଶୁର ଅଧିକାର ଏବଂ ଅନ୍ୟମାନଙ୍କର ଦାୟିତ୍ୱ ସମ୍ପର୍କରେ କ୍ରମଶଃ ସଚେତନଶୀଳତା ବୃଦ୍ଧିପାଉଥିଲେ ମଧ୍ୟ ଶିଶୁ ଅବହେଳା ଓ ନିର୍ଯ୍ୟାତନାର ମାତ୍ରା ବିରଳ ନୁହେଁ ।

ଶିଶୁ ଅବହେଳା ଓ ନିର୍ଯ୍ୟାତନାର କୁପରିଣତି ଖୁବ୍ ବେଶୀ । ଏହା ଶିଶୁର ଶାରୀରିକ, ମାନସିକ ଓ ଭାବଗତ ସ୍ୱାସ୍ଥ୍ୟହାନିର କାରଣ ହୁଏ ଏବଂ ରୋଗର ଆଶଙ୍କା ସୃଷ୍ଟିକରେ । ଅବହେଳା ଓ ନିର୍ଯ୍ୟାତନାର ଶୀକାର ହେଉଥିବା ଶିଶୁମାନେ ସେମାନଙ୍କର ପିତାମାତା, ସାଙ୍ଗସାଥୀ ଏବଂ ବୟସ୍କମାନଙ୍କସହିତ ଉପଯୋଗୀ ସମ୍ପର୍କ ରକ୍ଷାରେ ଅସଫଳ ହୁଅନ୍ତି । ଏମାନେ ଅନ୍ୟମାନଙ୍କ ପ୍ରତି ସହାନୁଭୂତି ଓ ସମାନାନୁଭୂତି (Empathy) ପ୍ରକାଶ କରିବାରେ

ବିଫଳ ହୁଅନ୍ତି । ଅନ୍ୟମାନଙ୍କ ସହିତ ନିବିଡ଼ ସମ୍ପର୍କ ସ୍ଥାପନ ପ୍ରାୟ ଅସମ୍ଭବ ହୋଇପଡ଼େ । ବରଂ ଅବହେଳା ପାଇ ନଥିବା ପିଲାମାନଙ୍କ ତୁଳନାରେ ଏମାନେ ଅଧିକ କ୍ରୋଧୀ ହୁଅନ୍ତି କିମ୍ବା ମାତ୍ରାଧିକ ଚୁପ୍‌ଚାପ୍ ରହି ଅନ୍ୟଠାରୁ ଦୂରେଇ ଯାଆନ୍ତି ।

ଶିଶୁ ଅବହେଳା ଓ ନିର୍ଯ୍ୟାତନାର କେତେକ ଦୀର୍ଘମିଆଦୀ କୁପରିଣତି ରହିଛି । ପ୍ରଥମତଃ ଏମାନଙ୍କର ଆତ୍ମ-ପ୍ରତ୍ୟୟ (Self-concept) ବିପର୍ଯ୍ୟସ୍ତ ହୁଏ । ଗୋଟିଏ ସୁନ୍ଦର, ସମୃଦ୍ଧ ଓ ସୁରକ୍ଷାପୂର୍ଣ୍ଣ ବିଶ୍ୱର କଳ୍ପନା ଏମାନେ କରି ପାରନ୍ତି ନାହିଁ । ଦ୍ୱିତୀୟତଃ ବାଲ୍ୟକାଳରୁ ଏପରି ଦୁଃଖଦ ଅନୁଭବ କୈଶୋର ଓ ଯୌବନ କାଳକୁ ସଂକ୍ରମିତ ହୁଏ । ଭବିଷ୍ୟତରେ ମଧ୍ୟ ସେମାନେ ରୁଗ୍‌ଣ ମାନସିକତାର ଅଧିକାରୀ ହୁଅନ୍ତି । ତୃତୀୟତଃ ବାଲ୍ୟକାଳରେ ଅବହେଳିତ ଓ ନିର୍ଯ୍ୟାତିତ ହୋଇଥିବା ପିଲାମାନେ ବଡ଼ ହୋଇ ପିତାମାତାର ଭୂମିକା ଗ୍ରହଣ କରିବା ପରେ ସେମାନେ ମଧ୍ୟ ନିଜର ପିଲାମାନଙ୍କୁ ଅବହେଳା ଦର୍ଶାନ୍ତି । ଅବଶ୍ୟ ଏହାର ବ୍ୟତିକ୍ରମ ଥାଇପାରେ । ତଥାପି ଅତୀତର ନକରାତ୍ମକ ଅନୁଭବ ସେହିପରି ମନୋବୃତ୍ତି ଗଠନରେ ଅଧିକ ସମ୍ଭାବନା ସୃଷ୍ଟି କରେ ।

ଶିଶୁ ଅବହେଳା ଓ ନିର୍ଯ୍ୟାତନାର ଏକାଧିକ କାରଣ ରହିଛି । କାରଣସବୁ ଶିଶୁକୁ ପରିବୃତ୍ତ କରିଥିବା ବିଭିନ୍ନ ମଣ୍ଡଳରୁ ଆସିଥାଏ । ପୂର୍ବରୁ ସୂଚନା ଦିଆଯାଇଛି ଯେ ଶିଶୁର



ପ୍ରଭାବ ମଣ୍ଡଳ

ପିତାମାତା ନିଜର ବାଲ୍ୟକାଳରେ ଅବହେଳିତ ଓ ନିର୍ଯ୍ୟାତିତ ହେଇଥିଲେ ସେମାନେ ତାଙ୍କର ସନ୍ତାନ ସନ୍ତତି ପ୍ରତି ଅବହେଳା ଦର୍ଶାଇବାର ସମ୍ଭାବନା ଅଧିକ ଥାଏ । ଏତଦ୍‌ବ୍ୟତୀତ ଶିଶୁର ନିକଟସ୍ଥ ମଣ୍ଡଳରେ ଘଟିଯାଉଥିବା କେତେକ ଘଟଣା ଅବହେଳାର କାରଣ ହୋଇପାରେ । ପରିବାରର ଦାରିଦ୍ର୍ୟ, ପିତାମାତାଙ୍କ ବେକାରୀ ଅବସ୍ଥା, ପିତାମାତାଙ୍କ ମଧ୍ୟରେ ପାରିବାରିକ କଳହ, ନିଶାଦ୍ରବ୍ୟ ସେବନ ଏବଂ ପିତାମାତାଙ୍କର ଅନୁପଯୋଗୀ ଶିଶୁପାଳନ ଭଙ୍ଗୀ ଅବହେଳାର କାରଣ ହୋଇପାରେ । ପରିବାରରେ ପିତାମାତା, ଅନ୍ୟ ବୟସ୍କ ବ୍ୟକ୍ତି, ଏବଂ ବଡ଼ ଭାଇ ଭଉଣୀ ମଧ୍ୟ ଜୀବନ-ବ୍ୟର୍ଥତାର ଶରବ୍ୟ ହୋଇ ନିଜର ଅବଦମିତ କ୍ରୋଧକୁ ଶିଶୁଟି ପ୍ରତି କୁପ୍ରେରିତ କରିପାରନ୍ତି । ଆର୍ଥିକ ସଂକଟ, ଆଇନ୍‌ଗତ ସମସ୍ୟା ଏବଂ ମାନସିକ ଓ ଭାବଗତ ଅସୁସ୍ଥତା ପରିବାରରେ ଲାଗି ରହିଲେ ସେସବୁର କୁପ୍ରଭାବର ଶୀକାର ଶିଶୁମାନେ ହୋଇ ପାରନ୍ତି । ବେଳେ ବେଳେ ଶିଶୁର ମାନସିକ ଓ ଶାରୀରିକ ଅକ୍ଷମତା ମଧ୍ୟ ଜଟିଳତା ସୃଷ୍ଟିକରେ । ଏପରି ଶିଶୁମାନଙ୍କର ପରିଚାଳନା ପାଇଁ ଯେଉଁ ପରିମାଣର ଧୈର୍ଯ୍ୟ ଓ କୌଶଳ ଆବଶ୍ୟକ, ତାହା ପରିବାରର ସମସ୍ତଙ୍କର ନଥାଏ । ଫଳରେ ସହନଶୀଳ ମନୋବୃତ୍ତିର ଅଭାବ ଯୋଗୁଁ ସେମାନେ ଶିଶୁଟିକୁ ନିର୍ଯ୍ୟାତନା ଦେଇଥାନ୍ତି ।

ପରିବାରର ବାହାରେ ଥିବା ଅଥଚ ପରିବାର ସହିତ ସମ୍ପୃକ୍ତ ବ୍ୟକ୍ତିମାନେ ମଧ୍ୟ ଶିଶୁ ଅବହେଳାର କାରଣ ହେଇପାରନ୍ତି । ଭାଇଭଉଣୀଙ୍କ ସାଙ୍ଗସାଥୀ ଏବଂ ଦୂରସମ୍ପର୍କୀୟ ବନ୍ଧୁବାନ୍ଧବ ସାମୟିକ ଭାବରେ ପରିବାରକୁ ବୁଲି ଆସନ୍ତି । ଏମାନେ ଶିଶୁର ସରଳତା (ଏବଂ ସ୍ଥଳ ବିଶେଷରେ ଶିଶୁର କିଛିଟା ଅସ୍ୱାଭାବୀ ବ୍ୟବହାର)ର ସୁଯୋଗ ନେଇ କଟୂକ୍ତି ପ୍ରକାଶ କରନ୍ତି । ଯୌନ ନିର୍ଯ୍ୟାତନା ସମେତ ଅନ୍ୟ କେତେକ ଅସଦ୍ ବ୍ୟବହାରର ଶିଶୁ ଶୀକାର ହୋଇପାରେ । ଅନ୍ୟ କେତେକ ସ୍ଥଳରେ ଏମାନଙ୍କ ପ୍ରତିକୂଳ ମନ୍ତବ୍ୟରେ ଭାସିଯାଇ ପିତାମାତା ଏବଂ ପରିବାରର ଅନ୍ୟମାନେ ମଧ୍ୟ ଶିଶୁ ପ୍ରତି ଅବହେଳା ଦର୍ଶାଇ ଥାଆନ୍ତି ।

ପ୍ରଭାବ ମଣ୍ଡଳର ଅଳ୍ପ ଦୂରରେ ଶିଶୁର ନର୍ସରୀ ସ୍କୁଲ ଶିକ୍ଷକ ଶିକ୍ଷୟତ୍ରୀ ଏବଂ ଶିଶୁର ଖେଳଦଳଟି ରହିଥାଏ । ଏ ମଣ୍ଡଳରେ ମଧ୍ୟ ଶିଶୁ କେତେକ କ୍ଷତିକାରକ ବ୍ୟବହାରର ଶୀକାର ହୋଇପାରେ । ନର୍ସରୀ ସ୍କୁଲର କର୍ମଚାରୀ ଏବଂ ଖେଳପଡ଼ିଆର ତତ୍ତ୍ୱାବଧାରକ ଶିଶୁଟି ପ୍ରତି ଅବହେଳା ଓ ନିର୍ଯ୍ୟାତନା ଦର୍ଶାଇ ପାରନ୍ତି ।

ଶିଶୁକୁ ଘେରି ରହିଥିବା ବୃହତ୍ତର ସମାଜ ମଣ୍ଡଳ ଶିଶୁଟିର ବହୁ ଉପକାର କରେ । ତଥାପି ସମାଜର କେତେକ ବିଧିବିଧାନ ଶିଶୁ ଅବହେଳାର କାରଣ ହୋଇପାରେ । ଉଦାହରଣ ସ୍ୱରୂପ କେତେକ ଗୋଷ୍ଠୀରେ ଶିଶୁପ୍ରତି ବଡ଼ ଧରଣର ଶାରୀରିକ ଦଣ୍ଡବିଧାନକୁ ଧର୍ତ୍ତବ୍ୟ ଅପରାଧ ରୂପେ ବିଚାର କରାଯାଏ ନାହିଁ । ଆଫ୍ରିକାର ବହୁ ଗୋଷ୍ଠୀରେ ଯନ୍ତ୍ରଣାତ୍ମକ ପଦ୍ଧତିରେ ଶିଶୁ ଦେହରେ ଚିହ୍ନ ଦିଆଯାଇ ଗୋଷ୍ଠୀ ପରିଚୟକୁ ସ୍ପଷ୍ଟ କରିବାର ବିଧାନ ରହିଛି । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇ ପରେ ଯେ ଗୋଟିଏ ଆଦିମ ଅଧିବାସୀ ସମ୍ପ୍ରଦାୟରେ ଧାତୁ ନିର୍ମିତ ମୁଦ୍ରାକୁ ଖୁବ୍ ଗରମ କରି ଶିଶୁ ଦେହରେ ଚିହ୍ନ ଦେବାର ପ୍ରଥା ରହିଛି । ଏହା ଗୋଷ୍ଠୀ ପରିଚିତିର

ସୂଚକ । ଉଦାରପନ୍ଥୀ ଦେଶମାନଙ୍କରେ ଏହା ନିଶ୍ଚିତ ଭାବରେ ଶିଶୁ ନିର୍ଯ୍ୟାତନାର ଅପରାଧ ରୂପେ ବିଚାର କରାଯିବ ।

ଶିଶୁ ଅବହେଳା ଓ ନିର୍ଯ୍ୟାତନାର ସଂଜ୍ଞା ନିରୂପଣ କ୍ଷେତ୍ରରେ ସାମାଜିକ ସାଂସ୍କୃତିକ ପରିପେକ୍ଷୀକୁ ପୂରାପୂରି ବାଦ ନଦେଲେ ମଧ୍ୟ ମାନବୀୟ ଦୃଷ୍ଟିକୋଣରୁ ବହୁସ୍ଥଳରେ ସହମତି ସମ୍ଭବପର ।

ଶିଶୁ ଅବହେଳା ଓ ନିର୍ଯ୍ୟାତନାର ନିରାକରଣ ଏକ ଜରୁରୀ ଧରଣର ପଦକ୍ଷେପ । ଏପରି ପଦକ୍ଷେପ ଗ୍ରହଣ କରିବା ସମୟରେ ଅବହେଳିତ ଓ ନିର୍ଯ୍ୟାତିତ ହେଉଥିବା ଶିଶୁମାନଙ୍କୁ ଏପରି ଯନ୍ତ୍ରଣା ବଳୟରୁ ମୁକ୍ତ କରିବାକୁ ହେବ । ଯେଉଁ ପିତାମାତା ଓ ଅନ୍ୟ ବ୍ୟକ୍ତିମାନେ ଏପରି ଅବହେଳା ଓ ନିର୍ଯ୍ୟାତନା ଦର୍ଶାଇଛନ୍ତି ସେମାନେ ଏହାର ପୁନରାବୃତ୍ତି ନକରିବାର ପଦକ୍ଷେପ ନେବାକୁ ପଡିବ । ଏହାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ଅବହେଳା ଓ ନିର୍ଯ୍ୟାତନା ଦର୍ଶାଇବାର ସମ୍ଭାବନାଥିବା ବ୍ୟକ୍ତିବିଶେଷଙ୍କୁ ଚିହ୍ନଟ କରି ସେମାନଙ୍କ ଶିକ୍ଷା ଓ ଉପଦେଶନ (Counselling) ମାଧମରେ ପରିବର୍ତ୍ତନ କରିବାର ଯୋଜନା କରିବାକୁ ହେବ ।

ଉପର ଆଲୋଚିତ କାରଣସବୁକୁ ଦୃଷ୍ଟିରେ ରଖି ଅବହେଳା ଦର୍ଶାଉଥିବାର ସମ୍ଭାବନା ଥିବା ବ୍ୟକ୍ତି ଓ ଦଳକୁ ଚିହ୍ନଟ କରିବା ଅସମ୍ଭବ ନୁହେଁ । ଉଦାହରଣ ସ୍ୱରୂପ, ଦାରିଦ୍ର୍ୟ ପ୍ରପୀଡ଼ିତ ଅପରାଧଗ୍ରସ୍ତ ଏବଂ ସମାଜ ପରିତ୍ୟକ୍ତ ବ୍ୟକ୍ତିମାନେ ଭବିଷ୍ୟତରେ ଶିଶୁ ଅବହେଳାରେ ସଂଶ୍ଳିଷ୍ଟ ହୋଇପଡ଼ିବାର ସମ୍ଭାବନା ଖୁବ୍ ବେଶୀ । ଏପରି ସ୍ଥଳେ ଏମାନଙ୍କ ପାଇଁ ଶିକ୍ଷା, ଦୀକ୍ଷା, ଥଇଥାନ ଏବଂ ଉପଦେଶନର କାର୍ଯ୍ୟକ୍ରମ ନିତାନ୍ତ ଆବଶ୍ୟକ । ଅତୀତରେ ଶିଶୁ ଅବହେଳା କରିଥିବା ଏବଂ ବର୍ତ୍ତମାନ ପରିବର୍ତ୍ତିତ ହୋଇ ମନସ୍ତାପ ଭୋଗୁଥିବା ବ୍ୟକ୍ତି ବିଶେଷଙ୍କ ସ୍ୱୀକାରୋକ୍ତି ଅନେକ ସମୟରେ କାମ ଦେଇଥାଏ । ଏପରି ଲୋକମାନଙ୍କର ନାମ ଓ ପରିଚୟ ଗୋପନୀୟ ରଖାଯାଇ ଏମାନଙ୍କର ବକ୍ତବ୍ୟକୁ ପ୍ରକାଶ ଓ ପ୍ରସାର କରାଯାଇପାରେ ।

ସେହିପରି ଆବଶ୍ୟକ ଶିକ୍ଷା ଯୋଜନା ମଧ ଫଳପ୍ରଦ ହୋଇଥାଏ । ଶିଶୁମାନଙ୍କର ମାନବିକ ଅଧିକାର ଏବଂ ଉଲ୍ଲଘନ କରୁଥିବା ବ୍ୟକ୍ତିମାନଙ୍କ ପାଇଁ ଆଇନ୍‌ରେ ଦଣ୍ଡ ବ୍ୟବସ୍ଥା ଏବଂ ଶିଶୁ ବିକାଶର ସୁଫଳ ସମ୍ପର୍କରେ ଶିକ୍ଷା ଓ ବିଜ୍ଞାପନର ଗୁରୁତ୍ୱ ସ୍ୱୀକାର କରିବାକୁ ହେବ ।

# ଶିଶୁ ବିକାଶର ପରିପ୍ରେକ୍ଷୀରେ ଦୂରଦର୍ଶନ

ଦୂରଦର୍ଶନ ଆଧୁନିକ ଜୀବନ ସହିତ ଏପରି ସଂଶ୍ଳିଷ୍ଟ ଯେ ଏହାକୁ ପ୍ରଭାବହୀନ କରିବାର ସକଳ ଚେଷ୍ଟା ଏକପ୍ରକାର ଅର୍ଥହୀନ ପରିଶ୍ରମ ମାତ୍ର । ଦୂରଦର୍ଶନ କୁପ୍ରଭାବ ଏବଂ ସୁପ୍ରଭାବର ଏକ ମିଶ୍ରିତ ଆଧାର । ଏହା ଶିଶୁମାନଙ୍କୁ ସେମାନଙ୍କର ପଠନୀୟ ଓ ଶ୍ରବଣୀୟ ସାମଗ୍ରୀଠାରୁ ଦୂରେଇ ନିଏ । ସକ୍ରିୟ ପାଠକ ପରିବର୍ତ୍ତେ ସେମାନଙ୍କୁ ନିଷ୍କ୍ରିୟ କରେ । ସମାଜର ଗତାନୁଗତିକ ବଦ୍ଧମୂଳ ଧାରଣା (Stereotypes)ର ବଶବର୍ତ୍ତୀ କରାଏ । ଉଗ୍ର ଓ ଆକ୍ରମଣାତ୍ମକ (Aggressive) ଚରିତ୍ରସବୁକୁ ଅନୁକରଣ କରିବାର ପ୍ରବୃତ୍ତି ଜନ୍ମାଏ । ସର୍ବୋପରି ବିଶ୍ୱ ସମ୍ପର୍କରେ ଏକ ଅବାସ୍ତବ ଚିତ୍ର ଉପସ୍ଥାପନ କରେ ।

ଅବଶ୍ୟ ଦୂରଦର୍ଶନର ଭଲ ଦିଗ ମଧ୍ୟ ରହିଛି । କେତେକ ବସ୍ତୁର ଗ୍ରହଣଶୀଳତା ପାଇଁ ଦୂରଦର୍ଶନ ଶକ୍ତିଶାଳୀ ଅଭିପ୍ରେରଣା (Motivation) ସୃଷ୍ଟିକରେ । ଶିଶୁର ନିକଟସ୍ଥ ପରିବେଶର ବାହାରେ ରହିଥିବା ବିଶ୍ୱ ସମ୍ପର୍କରେ ଜ୍ଞାତବ୍ୟ ଧାରଣା ଯୋଗାଏ । ଉପକାରୀ ଏବଂ ସହାୟକ ବ୍ୟକ୍ତିବିଶେଷଙ୍କ ଚରିତ୍ର ଅନୁକରଣ ପାଇଁ ମଧ୍ୟ ଅଭୀପ୍ସା ଜନ୍ମାଏ ।

କୁପ୍ରଭାବ ହେଉ କିମ୍ବା ସୁପ୍ରଭାବ ହେଉ, ଏହା ସ୍ଥିର ନିଶ୍ଚିତ ଯେ ପ୍ରାକ୍‌ବିଦ୍ୟାଳୟ ସ୍ତରରେ ରହିଥିବା ପିଲାମାନେ ଖୁବ୍ ଅଧିକ ପରିମାଣର ସମୟ ଦୂରଦର୍ଶନ କାର୍ଯ୍ୟକ୍ରମ ଦେଖିବାରେ ବ୍ୟୟ କରିଥାନ୍ତି । ବିଶେଷତଃ ସହରାଞ୍ଚଳ ଓ ନଗରାଞ୍ଚଳରେ ଏହାର ମାତ୍ରା ଖୁବ୍ ବେଶୀ । ଆମ ଦେଶରେ ଏ ସମ୍ପର୍କରେ ସୁନିର୍ଦ୍ଦିଷ୍ଟ ପରିସଂଖ୍ୟାନ ନଥିଲେ ମଧ୍ୟ ପାଶ୍ଚାତ୍ୟ ଦେଶର ପରିସଂଖ୍ୟାନରୁ କିଛିଟା ଅନୁମାନ କରିବା ସମ୍ଭବପର । ଯୁକ୍ତରାଷ୍ଟ୍ର ଆମେରିକାରେ ଗୋଟିଏ ପିଲା ହାଇସ୍କୁଲ ଶେଷ କରିବା ସମୟ ବେଳକୁ ତା' ଜୀବନର ୨୦.୦୦୦ ଘଣ୍ଟା ଦୂରଦର୍ଶନ ଦେଖିବାରେ କଟାଇ ଥାଏ । ୧୯୫୦ ମସିହା ବେଳକୁ ଆମେରିକାର ତିନିବର୍ଷର ଶିଶୁ ଦୈନିକ ଏକ ଘଣ୍ଟାରୁ କମ୍ ଏବଂ ପାଞ୍ଚବର୍ଷ ବୟସର ଶିଶୁ ଦୈନିକ ପ୍ରାୟ ଦୁଇଘଣ୍ଟା ଦୂରଦର୍ଶନ ସମ୍ମୁଖରେ ସମୟ କାଟୁଥିଲା । ୧୯୭୦ ମସିହା ବେଳକୁ ପ୍ରାକ୍-ବିଦ୍ୟାଳୟ ସ୍ତରର ଶିଶୁମାନେ ଦୈନିକ ଚାରିଘଣ୍ଟା ଏବଂ ହାଇସ୍କୁଲରେ ପଢୁଥିବା ପିଲାମାନେ ଦୈନିକ ଛ'ଘଣ୍ଟା ଦୂରଦର୍ଶନ ସମ୍ମୁଖରେ ସମୟ କାଟିବାର ପରିସଂଖ୍ୟାନ ରହିଛି । ୧୯୮୦ ମସିହା ପରଠାରୁ ପିଲାମାନେ ଗୋଟିଏ ସପ୍ତାହରେ ୧୧ଘଣ୍ଟାରୁ ୨୮ ଘଣ୍ଟା ପର୍ଯ୍ୟନ୍ତ ଦୂରଦର୍ଶନ କାର୍ଯ୍ୟକ୍ରମ ଦେଖିବାରେ ବ୍ୟୟ କରୁଥିବାର ପ୍ରମାଣ ମିଳୁଛି । କେବଳ ନିଦ୍ରାକୁ ବାଦ୍‌ଦେଲେ ଅନ୍ୟ କୌଣସି ଗୋଟିଏ କାମରେ ପିଲାମାନେ ଏତେ ବେଶୀ ସମୟ ଦେଇ ନଥାନ୍ତି । କହିବା ନିଷ୍ପ୍ରୟୋଜନ ଯେ ପିତାମାତାଙ୍କ ନିକଟରେ ଅତିବାହିତ ହେଉଥିବା ସମୟ ତୁଳନାରେ ଏହି ସମୟର ମାତ୍ରା ଖୁବ୍ ବେଶୀ ।

ଦୂରଦର୍ଶନର ପ୍ରଭାବ ସମ୍ପର୍କରେ ଆମ ଦେଶରେ ଗବେଷଣାର ପରିମାଣ ସୀମିତ ହେଲେ ମଧ୍ୟ ବିକାଶଶୀଳ ଦେଶମାନଙ୍କରେ ପର୍ଯ୍ୟାପ୍ତ ଗବେଷଣା କରାଯାଇଛି । ଏହାର ନକରାତ୍ମକ ଦିଗ ବିଷୟରେ ବହୁ ପ୍ରାମାଣିକ ତଥ୍ୟ ସଂଗୃହୀତ ହୋଇଛି । ଦୂରଦର୍ଶନର ପରଦା ଉପରେ ସବୁ ଘଟଣାର ପ୍ରଦର୍ଶନ ଅଧଘଣ୍ଟାରୁ ଘଣ୍ଟାଏ ମଧ୍ୟରେ ସୀମିତ ଥାଏ । କାହାଣୀ ଆରମ୍ଭ ହୁଏ, ସମସ୍ୟା ଉପୁଜେ । ସମସ୍ୟା ଶୀର୍ଷବିନ୍ଦୁକୁ ଯାଏ ଏବଂ ପରିଶେଷରେ ଏହାର ସମାଧାନ ଘଟେ । ଦିନ ଦିନ ଧରି ଏପରି ଅସଂଖ୍ୟ ଘଟଣାର ପୁନରାବୃତ୍ତି ଓ ପର୍ଯ୍ୟବେକ୍ଷଣ ଫଳରେ ଦର୍ଶକର ଏକ ପ୍ରତାରିତ ମନୋବୃତ୍ତିର ଗଠନ ହୁଏ । ଅବିଳମ୍ବେ ସମସ୍ୟାର ସମାଧାନ ହେବ – ଏପରି ଏକ ଭ୍ରାନ୍ତ ଧାରଣା ଜନ୍ମେ । ଆଶା ଆକାଂକ୍ଷା ବେଗବାନ୍ ହୁଏ ଏବଂ ଧୈର୍ଯ୍ୟ ଶକ୍ତିର ବିଲୋପ ଘଟେ । ପ୍ରଥମ ଶ୍ରେଣୀରେ ପଢୁଥିବା ପ୍ରତି ଦୁଇଜଣ ଛାତ୍ରଙ୍କ ମଧ୍ୟରୁ ଅନ୍ତତଃ ଜଣେ ଛାତ୍ର ବିଶ୍ୱାସ କରେ ଯେ ଦୂରଦର୍ଶନର ପରଦା ଉପରେ ପ୍ରଦର୍ଶିତ ବ୍ୟକ୍ତି ଏବଂ ଦୈନନ୍ଦିନ ଜୀବନରେ କାରବାର କରୁଥିବା ବ୍ୟକ୍ତି ଏକ ଏବଂ ସମାନ । ସମାଜର କେତେକ ଗତାନୁଗତିକ ବଦ୍ଧମୂଳ ଧାରଣା (Stereotypes)ର ଶିଶୁ ବଶବର୍ତ୍ତୀ ହୁଏ ।

ଦୂରଦର୍ଶନ କାର୍ଯ୍ୟକ୍ରମରେ ହିଂସାତ୍ମକ, କାର୍ଯ୍ୟକଳାପର ବହୁଳତା ଏବଂ ହିଂସ୍ର ଚରିତ୍ରର ଆଧିକ୍ୟ ଶିଶୁର ଦୃଷ୍ଟି ଆକର୍ଷଣ କରେ । ଆକ୍ରମଣାତ୍ମକ ବ୍ୟବହାର ଦର୍ଶାଉଥିବା ନାୟକ (Hero) ପରିଶେଷରେ କିପରି ବିଜୟୀ ହେଉଛି ଏବଂ ଅନ୍ୟମାନଙ୍କର ପ୍ରଶଂସା ଲାଭ କରୁଛି , ତାହା ସେ ଲକ୍ଷ୍ୟ କରେ । ଏମାନଙ୍କୁ ନିଜ ଜୀବନର ନାୟକ (Role Models) ହିସାବରେ ଗ୍ରହଣ କରେ । ସୁତରାଂ ଶିଶୁର କଥାବାର୍ତ୍ତା ଏବଂ ଆଚରଣରେ ହିଂସ୍ରତା ପ୍ରକାଶ ପାଇବା ସ୍ୱାଭାବିକ । ଗବେଷଣାରୁ ଦେଖାଦେଇଛି ଯେ ହିଂସାତ୍ମକ ଦୃଶ୍ୟରାଜିରେ ଭରପୂର କାର୍ଟୁନ ଦେଖିଥିବା ଶିଶୁମାନେ ଅନ୍ୟ ଶିଶୁମାନଙ୍କ ତୁଳନାରେ ଅଧିକ କ୍ରୋଧୀ (Aggressive) ହୁଅନ୍ତି । ସେମାନଙ୍କର ଆକ୍ରମଣାତ୍ମକ ହାବଭାବ ପ୍ରକାଶ ପାଏ । ସେମାନେ ଖେଳ ପଡ଼ିଆରେ ଓ ଅନ୍ୟତ୍ର ଶିଶୁମାନଙ୍କୁ ଅଧିକ ମାରନ୍ତି ଓ ଠେଲାପେଲା କରନ୍ତି ।

ପିଲାମାନଙ୍କର ହିଂସାତ୍ମକ ବ୍ୟବହାରର (Aggressive Behavior) କାରଣ ରୂପେ ଦୂରଦର୍ଶନକୁ ଦାୟୀ କରାଯିବ କି ନାହିଁ, ଏ ବିଷୟରେ ଦେଶ ବିଦେଶରେ ଅତୀତରେ ବହୁ ଆଲୋଚନା କରାଯାଇଛି । ଏହାର ଦୁଇଟି ଦିଗ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରଥମତଃ ଦୂରଦର୍ଶନର ପ୍ରଯୋଜକ ଏବଂ ପ୍ରସାରଣକାରୀମାନେ ଦାବୀ କରନ୍ତି ଯେ ଦୂରଦର୍ଶନ ସମାଜର ଏକ ପ୍ରତିଚ୍ଛବି । ସୁତରାଂ ସାମାଜିକ ଘଟଣାର ପ୍ରତିବିମ୍ବ ରୂପେ ଏହା ସତ୍ୟର ପ୍ରଦର୍ଶନ କରୁଛି; ମାତ୍ର କୌଣସି ଅତିରଞ୍ଜିତ କାର୍ଯ୍ୟ କରୁନାହିଁ । ମାତ୍ର ନିକଟ ଅତୀତରେ ମନୋବିଜ୍ଞାନୀମାନେ ଏପରି ଯୁକ୍ତିର ବିରୋଧ କରିଛନ୍ତି । ସମାଜରେ ଘଟୁଥିବା ଅଘଟଣର ସଂଖ୍ୟା ଏବଂ ଦୂରଦର୍ଶନର ପରଦା ଉପରେ ପ୍ରଦର୍ଶିତ ଅଘଟଣ (ହତ୍ୟା, ଅପରାଧ ଓ ଯୌନ ନିର୍ଯ୍ୟାତନା) ମଧ୍ୟରେ ଏକ ପରିସଂଖ୍ୟାନଗତ ତୁଳନାତ୍ମକ ଚିତ୍ର ଉପସ୍ଥାପନ କରିଛନ୍ତି । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୋଇଛି

ଯେ ଦୂରଦର୍ଶନର କାହାଣୀ ଓ ସାମାଜିକ ଘଟଣା ମଧ୍ୟରେ ବ୍ୟବଧାନ ରହିଛି । ସମାଜରେ ଘଟୁଥିବା ଅଘଟଣ ତୁଳନାରେ ଖୁବ୍ ବେଶୀ ଅଘଟଣ ଚିତ୍ରଣ କରାଯାଉଛି । ସମାଜରେ ଯେତିକି ସଂଖ୍ୟାରେ ନରହତ୍ୟା ହୁଏ, ତା'ଠାରୁ ଖୁବ୍ ବେଶୀ ନରହତ୍ୟା ଦୂରଦର୍ଶନର ଧାରାବାହିକରେ ଘଟିଥାଏ । ସମାଜରେ ଧର୍ଷଣ୍ୟ ଅପରାଧର ସଂଖ୍ୟା ତୁଳନାରେ ମାତ୍ରାଧିକ ଅପରାଧର ଦୃଶ୍ୟ ଦୂରଦର୍ଶନରେ ପ୍ରସାରିତ ହୁଏ । ସୁତରାଂ ଦୂରଦର୍ଶନକୁ ସମାଜର ନିଚ୍ଛକ ପ୍ରତିବିମ୍ବ କହିବାର ଯୁକ୍ତି ଅବାନ୍ତର ଓ ଲାଭଖୋର ମନୋବୃତ୍ତି-ପ୍ରଣୋଦିତ ।

ଦ୍ୱିତୀୟତଃ କୌଣସି ସାମାଜିକ ବ୍ୟବହାରର କାରଣ କେବଳ ଗୋଟିଏ ନୁହେଁ, ଏକାଧିକ । ଏ ଦୃଷ୍ଟିରୁ ହିଂସ୍ର ଆଚରଣର କାରଣ ଏକମାତ୍ର ଦୂରଦର୍ଶନ ନ ହେଲେ ମଧ୍ୟ ଦୂରଦର୍ଶନ ଦୋଷମୁକ୍ତ ନୁହେଁ । ଦୂରଦର୍ଶନର କାର୍ଯ୍ୟକ୍ରମ ଅଧିକ ମାତ୍ରାରେ ଦେଖୁଥିବା ଶିଶୁମାନଙ୍କର କ୍ରୋଧପ୍ରବଣତା ବେଶୀ ହେବାର ପ୍ରାମାଣିକ ତଥ୍ୟ ରହିଛି । ସୁତରାଂ ଏ ଦୁଇଟି ମଧ୍ୟରେ ଥିବା ସମ୍ବନ୍ଧ (Correlation)କୁ ଅସ୍ୱୀକାର କରିହେବ ନାହିଁ ।

ପୁଣି ଶିଶୁର ମାନସିକ ବିକାର ଅନ୍ୟ କେତୋଟି ଦିଗକୁ ମଧ୍ୟ ବିଚାର କରାଯାଇପାରେ । ଲକ୍ଷ୍ୟ କରାଯାଇଛି ଯେ ଅଧିକ ପରିମାଣରେ ଦୂରଦର୍ଶନ ଦେଖୁଥିବା ଶିଶୁମାନେ ବିଷୟବସ୍ତୁର କେନ୍ଦ୍ରୀୟ (Centre) ଦିଗକୁ ଠିକ୍ ଭାବେ ବୁଝି ନ ପାରି ତା'ର ପାର୍ଶ୍ୱିକ ଦିଗ (Incidental contents) ଦ୍ୱାରା ଅଧିକ ପ୍ରଭାବିତ ହୁଅନ୍ତି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ଗୋଟିଏ ସାମଗ୍ରୀର ବିକ୍ରୟ ସମ୍ଭାବନାକୁ ବୃଦ୍ଧି କରିବା ପାଇଁ ପ୍ରଦର୍ଶିତ ହୋଇଥିବା ଗୋଟିଏ କାହାଣୀ ବା ଘଟଣାଟିର ଅନ୍ତରାଳରେ ବ୍ୟବସାୟ ବାଣିଜ୍ୟ ରହିଛି, ଏହା ନ ବୁଝି ସେମାନେ ଘଟଣାଟିକୁ ସତ ମନେକରନ୍ତି । ଏହିପରି ଅନେକ ସ୍ଥାନରେ ମୁଖ୍ୟ ବିଷୟ ବସ୍ତୁ ଠିକ୍ ରୂପେ ବୁଝି ପାରନ୍ତି ନାହିଁ ।

ଦୂରଦର୍ଶନର ମାତ୍ରାଧିକ ବ୍ୟବହାର ପିଲାର ସୃଜନଶୀଳତାକୁ ବିପର୍ଯ୍ୟସ୍ତ କରେ । ନୂଆ ଚିନ୍ତା ଓ ନୂତନଧରଣର କଳ୍ପନା-ପ୍ରବଣତା ହ୍ରାସ ପାଏ । ସେହିପରି ଭାଷାଗତ ବିକାଶ ପାଇଁ ଦୃଶ୍ୟପ୍ରଧାନ ଦୂରଦର୍ଶନ ପରିବର୍ତ୍ତେ ଶ୍ରୁତିପ୍ରଧାନ ରେଡ଼ିଓ ଏବଂ ପୁସ୍ତକାଦି ଅଧିକ ଉପଯୋଗୀ ହୋଇଥାଏ ।

ଅବଶ୍ୟ ଦୂରଦର୍ଶନର ସକରାତ୍ମକ ଦିଗ ଯେ ନାହିଁ, ସେକଥା କୁହାଯାଉ ନାହିଁ । ବିଶେଷତଃ ଦୂରଦର୍ଶନ ମାଧ୍ୟମରେ ପ୍ରସାରିତ ହେଉଥିବା ବହୁ ଶିକ୍ଷାମୂଳକ କାର୍ଯ୍ୟକ୍ରମର ଭୂମିକା ବେଶ୍ ଉପଯୋଗୀ । ଲକ୍ଷ୍ୟ କଲେ ଦେଖାଯିବ ଯେ ଏପରି ସବୁ କାର୍ଯ୍ୟକ୍ରମରେ ଧୀରଗତିରେ ବିବରଣୀ ପ୍ରଦାନ କରାଯାଏ । ଭାଷାଗତ ବିକାଶ ପାଇଁ ଦୃଶ୍ୟ ଓ ଶ୍ରାବ୍ୟ ସାମଗ୍ରୀସବୁର ସମନ୍ୱୟ ରକ୍ଷା କରାଯାଏ ।

ଦୂରଦର୍ଶନର ନକରାତ୍ମକ ଦିଗକୁ ହ୍ରାସ କରି ସକରାତ୍ମକ ଦିଗର ଅଭିବୃଦ୍ଧି ଘଟାଇବା ପାଇଁ ପିତାମାତା, ଶିକ୍ଷକ ଶିକ୍ଷୟିତ୍ରୀ ଏବଂ ଅଭିଜ୍ଞ ବ୍ୟକ୍ତିଙ୍କ ପରାମର୍ଶ ଏକାନ୍ତ ଆବଶ୍ୟକ । ସେମାନେ ଶିଶୁର ଦୂରଦର୍ଶନ ବ୍ୟବହାରକୁ ସୀମିତ ରଖିବା ଏବଂ ସମୟ କାଟିବା ପାଇଁ

ତାହାର ବିକଳ୍ପ ପନ୍ଥାମାନ ଆୟୋଜନ କରାଇବେ । ନୂତନ ସ୍ଥାନ ସବୁର ଭ୍ରମଣ ଏବଂ ନୂଆ ଓ ଶିକ୍ଷଣୀୟ ଅନୁଭବର ସୁଯୋଗ ଏ ଧରଣର ପଦକ୍ଷେପ ସ୍ଥଳ ବିଶେଷରେ ପିଲାମାନଙ୍କ ସହିତ ଏକତ୍ର ବସି ଦୂରଦର୍ଶନ ଦେଖିବା ସମୟରେ ଉପଯୋଗୀ ମନ୍ତବ୍ୟ ମଧ୍ୟ ଆବଶ୍ୟକ । ପ୍ରଦର୍ଶିତ କେତେକ ଦୃଶ୍ୟ ଯେ ଅବାସ୍ତବ ଏବଂ କେବଳ ମନୋରଞ୍ଜନ ପାଇଁ ଅଭିପ୍ରେତ, ତାହା ବୁଝାଇବାକୁ ହେବ । ମୋଟ ଉପରେ ଅଭିଜ୍ଞ ବ୍ୟକ୍ତିମାନଙ୍କର ସୁଚିନ୍ତିତ ସମକାଳୀନ ଓ ପରକାଳୀନ ମନ୍ତବ୍ୟ କ୍ଷତିର ମାତ୍ରା କମାଇ ପାରିବ । ଅନ୍ୟ ସ୍ଥଳରେ ଦୂରଦର୍ଶନର ଉପଯୋଗୀ ଭୂମିକାର ସୁଯୋଗକୁ ହାତଛଡ଼ା କରିଦିଆଯିବ ନାହିଁ ।

## ବିଶେଷ ସୂଚନା ଓ ମାର୍ଗଦର୍ଶନ

୧. *ଦୂରଦର୍ଶନର ପ୍ରଯୋଜକ ଏବଂ ପ୍ରସାରଣକାରୀମାନେ ଯୁକ୍ତି କରନ୍ତି ଯେ ଦୂରଦର୍ଶନର କାର୍ଯ୍ୟକ୍ରମ ସାମାଜିକ ଜୀବନ ଓ ଘଟଣାର ନିଚ୍ଛକ ପ୍ରତିବିମ୍ବ । ଏପରି ଯୁକ୍ତି ଗବେଷଣା-ସମର୍ଥିତ ନୁହେଁ । ଏପରି ଯୁକ୍ତିରେ ପ୍ରତାରିତ ହୁଅନ୍ତୁ ନାହିଁ । ମନେରଖନ୍ତୁ ଯେ ସମାଜରେ ଘଟୁଥିବା ଅପରାଧ ଓ ଅଘଟଣ ତୁଳନାରେ ଦୂରଦର୍ଶନରେ ଖୁବ୍ ଅଧିକ ମାତ୍ରାରେ ପ୍ରଦର୍ଶିତ ହୁଏ । ତଦନୁସାରେ ଶିଶୁମାନଙ୍କୁ ପରାମର୍ଶ ଦିଅନ୍ତୁ ।*

୨. *ଦୂରଦର୍ଶନ ସମ୍ମୁଖରେ ସମୟ କାଟିବା ଶିଶୁମାନଙ୍କର ହିଂସାତ୍ମକ ଆଚରଣର ଏକମାତ୍ର କାରଣ ନ ହେଲେ ମଧ୍ୟ ଏହା ସେମାନଙ୍କର ହିଂସ୍ର ଆଚରଣ ସହିତ ସମ୍ବନ୍ଧିତ । ସୁତରାଂ ଦୂରଦର୍ଶନ ଦେଖିବାର ସମୟଟିକୁ ସୀମିତ ରଖନ୍ତୁ ଏବଂ ଶିଶୁମାନଙ୍କୁ ମଧ୍ୟ ଅନୁରୂପ ପରାମର୍ଶ ଦିଅନ୍ତୁ ।*

୩. *ଦୂରଦର୍ଶନ ଶିଶୁମାନଙ୍କର ବାସ୍ତବତା ଅନୁଭବକୁ ବିପର୍ଯ୍ୟସ୍ତ କରୁଥିବାରୁ ସ୍ଥଳ ବିଶେଷରେ ଉପଯୋଗୀ ମନ୍ତବ୍ୟ ଦିଅନ୍ତୁ । ଏକାଠି ବସି କାର୍ଯ୍ୟକ୍ରମ ଦେଖିବା ସମୟରେ କାର୍ଯ୍ୟକ୍ରମର ମୁଖ୍ୟ ଅଂଶ ଓ ପାର୍ଶ୍ୱିକ ଅଂଶ ବିଶେଷରେ ପାର୍ଥକ୍ୟ ବୁଝାଇ ଦିଅନ୍ତୁ । (ଉଦାହରଣ ସ୍ୱରୂପ, କେତେକ କ୍ଷେତ୍ରରେ କେବଳ ବିଜ୍ଞାପନ ଓ ବିକ୍ରୟ ଉଦ୍ଦେଶ୍ୟରେ ଗୋଟିଏ କାହାଣୀର ଅବତାରଣା କରାଯାଇଥାଏ । ଏଠାରେ କାହାଣୀଟି ସତ ବୋଲି ଶିଶୁ ମନେ କରିପାରେ । ମାତ୍ର ମୁଖ୍ୟ ଉଦ୍ଦେଶ୍ୟଟି ବୁଝାଇ ଦିଅନ୍ତୁ) ।*

୪. *ଶିଶୁର ସୃଜନଶୀଳତା ଓ କଳ୍ପନା-ପ୍ରବଣତା ବଢ଼ାଇବା ପାଇଁ ଦୂରଦର୍ଶନର ବିକଳ୍ପମାନ (ଯଥା-ଗପ ଶୁଣାଇବା, ନୂଆ ଜାଗା ବୁଲାଇ ନେବା, ଇତ୍ୟାଦି) ପ୍ରୟୋଗ କରନ୍ତୁ ।*

୫. *ଦୂରଦର୍ଶନ ବ୍ୟବହାର ସମୟରେ ଶିକ୍ଷାମୂଳକ କାର୍ଯ୍ୟକ୍ରମ (Educational Programme) ଦେଖିବା ପାଇଁ ଶିଶୁକୁ ପ୍ରୋତ୍ସାହନ ଦିଅନ୍ତୁ ।*

# କୁପ୍ରଭାବ–ମୁକ୍ତ ଶିଶୁ

ଖରାପ ପରିସ୍ଥିତିର ପ୍ରଭାବ ନିଶ୍ଚିତ ଭାବରେ କୁପରିଣତି ସୃଷ୍ଟି କରିଥାଏ । ବିଶେଷତଃ ଶିଶୁମାନେ ଖରାପ ପରିବେଶ ଦ୍ୱାରା ଅଧିକ କ୍ଷତିଗ୍ରସ୍ତ ହୁଅନ୍ତି । ଦୁଃସ୍ଥ ଓ କୁପରିବେଶରେ ପ୍ରତିପାଳିତ ହେଉଥିବା ଶିଶୁମାନେ ପୁଷ୍ଟିହୀନତା, ଶିକ୍ଷାହୀନତା ଏବଂ ଅପରାଧ–ପ୍ରବଣତାର ଶରବ୍ୟ ହେବାର ଅଧିକ ଆଶଙ୍କା ଥାଏ । ତଥାପି ଅନୁଧ୍ୟାନ କରି ଦେଖାଯାଇଛି ଯେ ପ୍ରାୟ ୩୦ ପ୍ରତିଶତ ଶିଶୁ ଖରାପ ପରିବେଶ ମଧ୍ୟରେ ଲାଳିତପାଳିତ ହେଉଥିଲେ ମଧ୍ୟ ସେମାନେ ନିଜକୁ କୁପ୍ରଭାବରୁ ମୁକ୍ତ ରଖିପାରନ୍ତି । ଏପରିକି କେତେକ ସ୍ଥଳରେ ସେମାନେ ଅନ୍ୟମାନଙ୍କଠାରୁ ଅଧିକ ଉତ୍କର୍ଷ ପ୍ରଦର୍ଶନ କରନ୍ତି । ଖରାପ ପରିବେଶରେ ପ୍ରତିପାଳିତ ହେଉଥିବା ଅଥଚ କୁପ୍ରଭାବରୁ ନିଜକୁ ମୁକ୍ତ ରଖୁଥିବା ଶିଶୁମାନଙ୍କୁ ଅନୁଧ୍ୟାନ କରାଯାଇ କେତୋଟି ବିଶେଷ ଜ୍ଞାନ ଲାଭ କରାଯାଇଛି । କେଉଁ ଦୃଷ୍ଟିରୁ ଏମାନେ ଅନ୍ୟ ଶିଶୁମାନଙ୍କ ଠାରୁ ଭିନ୍ନ, ତାହାର ଗବେଷଣା କରାଯାଇଛି । ଗବେଷଣାରୁ ଦେଖାଯାଇଛି ଯେ ଏମାନଙ୍କ ବ୍ୟକ୍ତିତ୍ୱରେ ତିନୋଟି ଦିଗ ବେଶ୍ ସୁସ୍ପଷ୍ଟ ।

ପ୍ରଥମଟି ହେଉଛି 'ମୋର ଅଛି' ଭାବ, କୁପ୍ରଭାବରୁ ନିଜକୁ ମୁକ୍ତ ରଖୁଥିବା ଶିଶୁମାନେ ଅନୁଭବ କରନ୍ତି ଯେ ସେମାନଙ୍କର ଯଥେଷ୍ଟ ସମ୍ବଳ ରହିଛି । ସେମାନଙ୍କୁ ସାହାଯ୍ୟ କଲାଭଳି ଲୋକ ଅଛନ୍ତି । ସେମାନେ କ'ଣ କରିପାରିବେ ଏବଂ କ'ଣ କରି ନପାରିବେ, ଏପରି ବୁଝାଇ ଦେବାର ଲୋକ ଅଛନ୍ତି । ଆବଶ୍ୟକ ସମୟରେ ଓ ଜଟିଳ ପରିସ୍ଥିତିରେ ପଡ଼ିଲେ ପରାମର୍ଶ ଦେବାପାଇଁ ଲୋକ ଅଛନ୍ତି । ଏପରି ଲୋକମାନଙ୍କ ଉପରେ ନିର୍ଭର କରାଯାଇପାରେ ।

'ମୋର ଏପରି ସବୁ ଅଛି' ବିଶ୍ୱାସଟି ଦୁଇଟି ଦିଗରୁ ତାତ୍ପର୍ଯ୍ୟପୂର୍ଣ୍ଣ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ସମ୍ବଳ ବୋଲି ବିଚାର କରାଯାଉଥିବା ଉପାଦାନ ଗୁଡ଼ିକ ଆର୍ଥିକ ବା ବସ୍ତୁଗତ ନୁହେଁ । ଏସବୁ ଭାବଗତ ଅର୍ଥାତ୍ ଅନ୍ୟମାନଙ୍କ ସ୍ନେହ, ସଦିଚ୍ଛା, ସମର୍ଥନ ଓ ସହାନୁଭୂତିକୁ ଏପରି ଶିଶୁମାନେ ପ୍ରକୃତ ସମ୍ବଳ ବୋଲି ବିଚାର କରନ୍ତି ।

ପୁଣି ଏପରିସବୁ ସମ୍ବଳ ନିଜର ପରିବାର ମଧ୍ୟରେ ଉପଲବ୍ଧ ନହୋଇ ପରିବାର ବାହାରେ ମିଳିପାରେ । କୁପରିବେଶରେ ପ୍ରତିପାଳିତ ହେଉଥିବା ଶିଶୁର ପିତାମାତା ଉଚ୍ଛନ୍ନରର ନହୋଇ ପାରନ୍ତି । ଶିଶୁର ପିତାମାତା ଦୁଶ୍ଚରିତ୍ରସମ୍ପନ୍ନ ହୋଇପାରନ୍ତି । ମାତ୍ର ପରିବାର ସୀମା ବାହାରେ ଶିଶୁର ଜଣେ ବା ଏକାଧିକ ସମ୍ବେଦନଶୀଳ ବ୍ୟକ୍ତିତ୍ୱ ଥାଇ ପାରନ୍ତି । ଏପରି ବ୍ୟକ୍ତି ଶିଶୁକୁ ସହାୟତା ଦିଅନ୍ତି । ଶିଶୁ ନିଜର ଦୁଃଖ ଯେପରି ତାଙ୍କୁ ଜଣାନ୍ତି, ନିଜର ସୁଖର

କଥାରେ ମଧ୍ୟ ସେହିପରି ଅଂଶୀଦାର କରିଥାଏ । ସ୍କୁଲରେ କିଛି କୃତିତ୍ୱ ଦର୍ଶାଇଲେ ଶିଶୁଟି ନିଜର ପିତାମାତାଙ୍କୁ ନଜଣାଇ ପ୍ରଥମେ ନିଜର ସମ୍ବେଦନଶୀଳ ସହାୟକ ବ୍ୟକ୍ତିକୁ ଜଣାଇଥାଏ । ଏପରି ବ୍ୟକ୍ତି ପିଲାଟିର ଶିକ୍ଷକ କିମ୍ବା ବନ୍ଧୁ କିମ୍ବା ଅନ୍ୟ କୌଣସି ବ୍ୟକ୍ତି ହୋଇପାରନ୍ତି । ମୋଟ ଉପରେ ଶିଶୁର ମାନସିକ ଚାହିଦା ସବୁ କୁପ୍ରଭାବଗ୍ରସ୍ତ ପିତାମାତାଙ୍କ ମାଧମରେ ପରିପୂରିତ ନହୋଇ ଅନ୍ୟଏକ ବ୍ୟକ୍ତି ବା ଅନୁଷ୍ଠାନ ମାଧମରେ ପୂରିତ ହୋଇଥାଏ ।

କୁପ୍ରଭାବରୁ ନିଜକୁ ମୁକ୍ତ ରଖିଥିବା ଶିଶୁଟିର 'ମୁଁ ଏପରି' ଭାବ ମଧ୍ୟ ଥାଏ । ଏହା ଆତ୍ମ ବିଶ୍ୱାସର ଭାବ । ଶିଶୁଟି ବିଶ୍ୱାସ କରେ ଯେ ସେ ଦକ୍ଷ । ସେ ନିଜର କାର୍ଯ୍ୟଦ୍ୱାରା ଅନ୍ୟମାନଙ୍କୁ ସନ୍ତୁଷ୍ଟ କରିପାରିବ । ଅନ୍ୟମାନେ ମଧ୍ୟ ତା ଉପରେ ନିର୍ଭର କଲେ ସେ ଅନ୍ୟମାନଙ୍କୁ ହତାଶ କରିବ ନାହିଁ । ସେ ମିଷ୍ଟଭାଷୀ ଏବଂ ପ୍ରୀତିପଦ ସାମାଜିକ ବ୍ୟବହାରର ଅଧିକାରୀ । ନିଜର ସ୍ୱରୂପ ସମ୍ପର୍କରେ ଶିଶୁଟିର ସ୍ପଷ୍ଟ ଧାରଣା ଥାଏ । ନିଜର ପରିସୀମତ୍ୱ (ଲିମିଟେସନ୍) ବିଷୟରେ ମଧ୍ୟ ସେ ସଚେତନ ଥାଏ ।

କୁପ୍ରଭାବରୁ ନିଜକୁ ମୁକ୍ତ ରଖିଥିବା ଶିଶୁଟିର ତୃତୀୟ ବୈଶିଷ୍ଟ୍ୟ ହେଉଛି 'ମୁଁ କରିପାରେ' ଭାବନା । ଏପରି ଶିଶୁ ନିଜର ଓ ଅନ୍ୟମାନଙ୍କର କାର୍ଯ୍ୟକଳାପ ମନନଶୀଳତାର ସହ ଲକ୍ଷ୍ୟ କରେ । ସେ ସମସ୍ୟାର ସମାଧାନ କରିପାରିବ, ଏପରି ଭାବନା ଦୃଢ଼ ଥାଏ । ପୁଣି ସେ ଅନ୍ୟମାନଙ୍କର ପ୍ରତ୍ୟାଶା ପୂରଣ କରିପାରିବ, ଏପରି ବିଶ୍ୱାସ ମଧ୍ୟ ରହିଥାଏ ।

କୁପ୍ରଭାବ ମୁକ୍ତ ଶିଶୁର ତିନୋଟି ବୈଶିଷ୍ଟ୍ୟ ଆଲୋଚନା କରିବା ପ୍ରସଙ୍ଗରେ ତାତ୍ପର୍ଯ୍ୟପର୍ଣ୍ଣ ଦିଗଟି ହେଉଛି ଏହାର ପ୍ରୟୋଗାତ୍ମକ ଦିଗ । ଆମ ଦେଶର ବେଶ୍ ସଂଖ୍ୟକ ଶିଶୁ ଦୁଷ୍ଟ ଓ ଅବହେଳିତ ପରିବେଶରେ କାଳଯାପନ କରନ୍ତି । ଖରାପ ପରିବେଶର ପ୍ରଭାବରେ ଏମାନେ ଖରାପ ଦିଗକୁ ଚାଲିଯିବାର ଆଶଙ୍କା ଥାଏ । ଏପରି ଆଶଙ୍କା କମାଇ ସେମାନଙ୍କ ଜୀବନରେ ସମ୍ଭାବନା ସୃଷ୍ଟି କରିବାକୁ ହେଲେ ଆମ୍ଭମାନଙ୍କୁ କେତୋଟି ଉପାଦାନ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ଏପରି ଶିଶୁମାନଙ୍କ ମନରେ ପୂର୍ବ ଆଲୋଚିତ ତିନୋଟି ଭାବ ଓ ଭାବନାର ଯେପରି ଉନ୍ମେଷ ଓ ବିକାଶ ଘଟିବ, ସେ ଦିଗରେ ଧ୍ୟାନଶୀଳ ହେବାକୁ ପଡ଼ିବ । ବିଶେଷକରି ସେମାନଙ୍କ ଜୀବନ ମରୁଭୂମିରେ ଆମେ ଯେପରି 'ମରୁଦ୍ୟାନ'ର ଭୂମିକା ନିର୍ବାହ କରିପାରିବୁ, ସେଥିପ୍ରତି ଅଭିନିବିଷ୍ଟ ହେବାକୁ ପଡ଼ିବ । କୁପରିବେଶରେ ପ୍ରତିପାଳିତ ହେଉଥିବା ଶିଶୁକୁ ସ୍ନେହ ଶ୍ରଦ୍ଧା ଦେବା, ତା'ର ମାନସିକ ଚାହିଦା ସବୁ ପୂରଣ କରି ଏବଂ ସହାୟତା ପ୍ରଦାନ କରି ଦାୟିତ୍ୱଶୀଳ ବୟସ୍କ ଲୋକମାନେ ଶିଶୁକୁ ସମସ୍ୟାମୁକ୍ତ ରଖିପାରିବେ । ପରିବାର ବାହାରେ ସମ୍ବେଦନଶୀଳ ମନସ୍ତାତ୍ତ୍ୱିକ ପରିବାର ଶିଶୁ ଜୀବନକୁ ଭିନ୍ନ ରୂପ ପ୍ରଦାନ କରି ପାରିବ ।

# ଲକ୍ଷ୍ୟ-ସାଧନାମୁଖୀ ଶିଶୁ

ସଫଳତା ସମସ୍ତେ କାମନା କରନ୍ତି । କିନ୍ତୁ ସମସ୍ତେ ସଫଳ ହୁଅନ୍ତି ନାହିଁ । ସେହିପରି ପ୍ରତ୍ୟେକ ପିତାମାତା ସେମାନଙ୍କର ପୁତ୍ର କନ୍ୟାମାନଙ୍କର ସଫଳତା କାମନା କଲେ ମଧ୍ୟ ସବୁ ସମୟରେ ସେପରି ଆଶା ପୂରଣ ହୋଇନଥାଏ । କେତେକ ଶିଶୁ ସଫଳତାର ଉଚ୍ଚ ଶିଖରକୁ ଯିବା ସ୍ଥଳେ ଅନ୍ୟ ଶିଶୁମାନେ ବ୍ୟର୍ଥତାର ତିକ୍ତତା ଅନୁଭବ କରନ୍ତି । ଶିଶୁମାନଙ୍କ ମଧ୍ୟରେ, କାହିଁକି ଏପରି ତାରତମ୍ୟ ରହିଛି, ତାହା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ।

ଏହାର ଉତ୍ତରରେ କୁହାଯାଇପାରେ ଯେ, ଏପରି ସଫଳକାମୀ ଶିଶୁମାନଙ୍କର ଲକ୍ଷ୍ୟ ସାଧନମୁଖୀ ମନୋଭାବ ଖୁବ୍ ତୀବ୍ର । ଗୋଟିଏ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଖାଦ୍ୟ ଖାଇବାର ଇଚ୍ଛା ଯେପରି ସମସ୍ତଙ୍କର ସମାନ ସ୍ତରରେ ନଥାଏ, ଜୀବନରେ କିଛି ଗୋଟିଏ ହାସଲ କରିବାର ଅଭୀପ୍ସା ମଧ ସମସ୍ତଙ୍କର ସମାନ ପର୍ଯ୍ୟାୟରେ ନଥାଏ । କୌଣସି ଶିଶୁର ଅଭୀପ୍ସା ଦୃଢ଼ ହେବା ସ୍ଥଳେ ଅନ୍ୟ ଶିଶୁର ଏପରି ଇଚ୍ଛା କ୍ଷୀଣ ହୋଇଥାଏ । ଏ ଦୃଷ୍ଟିରୁ ଲକ୍ଷ୍ୟ ସାଧନ କରିବାର ପ୍ରବଣତା ସବୁ ଶିଶୁମାନଙ୍କର ସମାନ ନଥାଏ ।

ପୁଣି ମନରେ ପ୍ରଶ୍ନ ଉଠିପାରେ-ଶିଶୁ ମନରେ ଏପରି ଲକ୍ଷ୍ୟ ସାଧନ ପ୍ରବଣତା ସୃଷ୍ଟି ହୁଏ କିପରି ? ମନସ୍ତାତ୍ତ୍ୱିକ ଗବେଷଣାରୁ ଦେଖାଯାଇଛି ଯେ, ଖୁବ୍ ଅଳ୍ପ ବୟସରେ ଶିଶୁ ପାଳନର ଶୈଳୀ ଏପରି ପ୍ରବଣତାକୁ ରୂପ ଦେଇଥାଏ । ବିଶେଷତଃ ଜନନୀର କେତୋଟି ନିର୍ଦ୍ଦିଷ୍ଟ ଭାବଭଙ୍ଗୀ ଏ ଦିଗରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । ମନୋବିଜ୍ଞାନୀମାନେ ଉକ୍ତ ଧରଣର ଲକ୍ଷ୍ୟ ସାଧନମୁଖୀ ଶିଶୁମାନଙ୍କ ଚିହ୍ନଟ କରି ଏବଂ ସେମାନଙ୍କର ମା'ମାନଙ୍କୁ ଅନୁଧ୍ୟାନ କରି କେତୋଟି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ତିନୋଟି ସିଦ୍ଧାନ୍ତ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ପ୍ରଥମତଃ ଲକ୍ଷ୍ୟ ସାଧନମୁଖୀ ଶିଶୁମାନଙ୍କର ଜନନୀ ସେମାନଙ୍କର ସନ୍ତାନ ସନ୍ତତିମାନଙ୍କୁ ସ୍ୱାଧୀନତାର ତାଲିମ ଦିଅନ୍ତି । ସ୍ୱାଧୀନତା ପାଇଁ ତାଲିମର ପ୍ରକୃତ ତାତ୍ପର୍ଯ୍ୟ ହେଲା ଶିଶୁମାନଙ୍କଠାରୁ କିଛି ପରିମାଣରେ ଉଚ୍ଚ ପ୍ରତ୍ୟାଶା ରଖିବା । ଧରାଯାଉ ଏହିପରି କେତେଗୁଡ଼ିଏ ପ୍ରଶ୍ନ ମା' ମାନଙ୍କୁ ପଚରାଗଲା । ଆପଣ ନିଜ ସନ୍ତାନସନ୍ତତିଙ୍କୁ କେଉଁ ବୟସରେ ସେମାନଙ୍କୁ ଏକା ଏକା ସ୍କୁଲକୁ ପଠାଇବେ ? କେଉଁ ବୟସରେ ଦିଆସିଲି ବ୍ୟବହାର କରିବାର ଅନୁମତି ଦେବେ ? କେଉଁ ବୟସରେ ତା' ହାତରେ କଇଁଚି ଧରିବାର ଅନୁମତି ଦେବେ ? ଆପଣ ନିଜ ସନ୍ତାନ ସନ୍ତତିଙ୍କୁ କେଉଁ ବୟସରେ କାଚ ନିର୍ମିତ ପାତ୍ର ସବୁରେ ଖେଳିବାକୁ ଛାଡ଼ିଦେବେ ? ଦେଖାଯିବ ଯେ ଲକ୍ଷ୍ୟ ସାଧନମୁଖୀ ପିଲାମାନଙ୍କର ଜନନୀମାନେ କମ୍ ବୟସର ସୀମା ସୂଚିତ କରିବା ସ୍ଥଳେ ଅନ୍ୟ ମା'ମାନେ ବେଶୀ ବୟସର ସୀମା ସୂଚିତ କରୁଛନ୍ତି । ଅନ୍ୟ ଭାଷାରେ କହିଲେ, ଲକ୍ଷ୍ୟ ସାଧନମୁଖୀ ଶିଶୁର ଜନନୀ ଶିଶୁକୁ ଅଳ୍ପ ବୟସରେ କେତେକ

କାର୍ଯ୍ୟ କରିବାର ଅନୁମତି ଦିଅନ୍ତି । ଏଭଳି କାର୍ଯ୍ୟରେ କେତେକ କ୍ଷତି (ରିସ୍କ)ର ସଂଭାବନା ଥିଲେ ମଧ୍ୟ ସେମାନେ ଶିଶୁର ଅଳ୍ପ ବୟସରୁ ଶିଶୁକୁ ଏପରି ଅନୁଭବରୁ ସୁଯୋଗ ଦିଅନ୍ତି । ଏହାର ଅର୍ଥ ନୁହେଁ ଯେ, ଲକ୍ଷ୍ୟ ସାଧନମୁଖୀ ଶିଶୁର ମା'ମାନେ ଉଦାସୀନ ହୋଇ ଶିଶୁକୁ ତା' ବାଟରେ ଯିବା ପାଇଁ ପୂରାପୂରି ଛାଡ଼ି ଦିଅନ୍ତି । ଶିଶୁର ଅନୁଭବର ପରିସରକୁ ବ୍ୟାପକ କରିବା ଏପରି ମା'ମାନଙ୍କର ଲକ୍ଷ୍ୟ ରହିଥାଏ । ସୁତରାଂ ଶିଶୁକୁ ସ୍ୱାଧୀନତା ଦେବା ଫଳରେ ଶିଶୁ ନିଜ ପରିବେଶରେ ପରୀକ୍ଷା ନିରୀକ୍ଷା କରି ଅନେକ କଥା ଶିଖେ ।

ଶିଶୁ ପାଇଁ ଦ୍ୱିତୀୟ ଉପଯୋଗୀ ଉପାଦାନଟି ହେଉଛି ମା'ର ସ୍ନେହ ଶ୍ରଦ୍ଧାର ପ୍ରକାଶ୍ୟ ରୂପ । ଅନେକ ପିତାମାତା ବିଶ୍ୱାସ କରନ୍ତି ଯେ, ପୁତ୍ରକନ୍ୟା ପାଇଁ ସ୍ନେହଶ୍ରଦ୍ଧା କେବଳ ହୃଦୟର ଅନ୍ତରାଳରେ ରହିବ ଓ ଏସବୁ ପ୍ରକାଶ କରିବା ଠିକ୍ ହେବନାହିଁ । ମାତ୍ର ଏପରି ବିଚାର ତ୍ରୁଟିପୂର୍ଣ୍ଣ । ପିଲାମାନେ ଛୋଟ ବୟସରେ ଅନ୍ୟମାନଙ୍କର ଆଭ୍ୟନ୍ତରୀଣ ମନୋଭାବ ଅପେକ୍ଷା ପ୍ରକାଶ୍ୟ ବ୍ୟବହାରକୁ ଅଧିକ ଗୁରୁତ୍ୱ ଦିଅନ୍ତି । ସୁତରାଂ ପିଲାଟିର କୃତିତ୍ୱ ସମୟରେ ପିତାମାତା ପ୍ରକାଶ୍ୟ ଭାବରେ ନିଜର ଆନନ୍ଦ ଜ୍ଞାପନ କରିବା ସମୁଚିତ ହେବ । ପିଲାଙ୍କୁ କୋଳେଇ ନେବା, ସ୍ପର୍ଶ କରିବା, ଆଲିଙ୍ଗନ କରିବା ଏବଂ ସେହିପରି ପ୍ରୀତିପୂର୍ଣ୍ଣ ବ୍ୟବହାର ଦର୍ଶାଇବା ବେଶ୍ ଉପଯୋଗୀ ହୋଇଥାଏ । ପିଲାଟିର କୃତିତ୍ୱ ପିତାମାତାଙ୍କୁ ଆନନ୍ଦ ଦେଇଛି, ଏପରି ଭାବନା ଶିଶୁମନରେ ପ୍ରବେଶ କରେ । ଅନୁରୂପ କୃତିତ୍ୱ ସାଧନ ପାଇଁ ପିଲାଟି ପ୍ରେରଣା ଲାଭ କରେ ।

ଲକ୍ଷ୍ୟ ସାଧନମୁଖୀ ଶିଶୁ ନିର୍ମାଣରେ ତୃତୀୟ ଉପାଦନା ହେଉଛି ଲକ୍ଷ୍ୟ ଓ କୃତିତ୍ୱ ସଂପର୍କରେ ଶିଶୁ ମନରେ ସ୍ପଷ୍ଟ ଧାରଣା ଦେବାର ମନୋଭାବ । କେଉଁଟି କରଣୀୟ ଏବଂ କେଉଁଟି ଅକରଣୀୟ, ତାହା ସବୁଶିଶୁ ଠିକ୍ ଭାବେ ବୁଝି ନଥାନ୍ତି । ପୁଣି କେଉଁ ଧରଣର କାର୍ଯ୍ୟ ବା ସଫଳତା ପିତାମାତା ଏବଂ ବୟସ୍କମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିବ, ଏ ବିଷୟରେ ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁମନରେ ସ୍ପଷ୍ଟ ଧାରଣା ନଥାଏ ।

ଗବେଷଣାରୁ ଦେଖାଯାଇଛି ଯେ, ଲକ୍ଷ୍ୟ ସାଧନମୁଖୀ ଶିଶୁମାନଙ୍କର ପିତାମାତା କେଉଁସବୁ କାର୍ଯ୍ୟ କୃତିତ୍ୱ ପଦବାଚ୍ୟ, ସେ ସଂପର୍କରେ ଶିଶୁ ମନରେ ସ୍ପଷ୍ଟ ଧାରଣା ଦେଇଥାନ୍ତି । ନିଜର ପରିବେଶରେ ଉଲ୍ଲେଖଯୋଗ୍ୟ କୃତିତ୍ୱ ହାସଲ କରିଥିବା ଅନ୍ୟ ପିଲା ବା ବ୍ୟକ୍ତିର ଉଦାହରଣ ବା ନମୁନାସବୁ ଦେଲା ବେଳେ ଏକ ସତର୍କତା ଅବଲମ୍ବନ କରିବାକୁ ହେବ । ଉଦାହରଣସବୁ ଉପସ୍ଥାପନା କଲାବେଳେ ଶିଶୁଟି ଯେପରି ନିଜର ଅସାମର୍ଥ୍ୟ ଉପରେ ଗୁରୁତ୍ୱ ନଦେଇ ସାମର୍ଥ୍ୟ ଉପରେ ପ୍ରାଧାନ୍ୟ ଦିଏ, ସେ ଦିଗରେ ଦୃଷ୍ଟି ଦେବାକୁ ହେବ । ଅନ୍ୟ ଭାଷାରେ କହିଲେ, ପିଲାଟି ଅନୁକରଣୀୟ ଶିଶୁ ଏବଂ ନିଜ ମଧ୍ୟରେ ଥିବା ବିଭେଦ ନଦେଖି ଯେପରି ସମତା ଦେଖେ, ସେ ଦିଗରେ ଦୃଷ୍ଟି ଦେବାକୁ ହେବ । ଏତଦ୍‌ବ୍ୟତୀତ ପୁରାଣ କଥା, କାହାଣୀ ଏବଂ ବୀରତ୍ୱବ୍ୟଞ୍ଜକ ଘଟଣାବଳୀର ବର୍ଣ୍ଣନା ମାଧ୍ୟମରେ ଶିଶୁ ମନରେ ସାଧନାର ବୀଜ ବପନ କରାଯାଇଥାଏ । ଶିବାଜୀଙ୍କ ମା' ପୌରାଣିକ ଗଳ୍ପ ମାଧ୍ୟମରେ ଶିବାଜୀଙ୍କ ମନରେ ସାଧନାର ବୀଜ ବୁଣିଥିଲେ । ଆଧୁନିକ କାଳରେ ଭାରତର ଶିଳ୍ପ ସାମ୍ରାଜ୍ୟର ଜଣେ ଅପ୍ରତିଦ୍ୱନ୍ଦ୍ୱୀ ନେତା ଋଷି ମୋଦୀ ନିଜ ଜୀବନରେ ନିଜ ମା'ଙ୍କର ଭୂମିକା ସ୍ୱୀକାର କରିଛନ୍ତି । ସଫଳତାର ସମ୍ଭାବନାକୁ ବିସ୍ତୃତ କରିବା ପାଇଁ ଲକ୍ଷ୍ୟ ସାଧନ ମୁଖୀ ଶିଶୁ ଗଠନରେ ଏପରି ଯୋଜନାବଦ୍ଧ ପ୍ରୟାସ ଆବଶ୍ୟକ ।

# ସୃଜନଶୀଳ ଶିଶୁ

ଶିଶୁ ବହୁ ସମ୍ଭାବନାରେ ପରିପୂର୍ଣ୍ଣ । ଉପଯୁକ୍ତ ପରିବେଶ ଓ ପ୍ରୋତ୍ସାହନ ଲାଭ କଲେ ଶିଶୁ ତା' ମଧ୍ୟରେ ଥିବା ପ୍ରଚ୍ଛନ୍ନ ସମ୍ଭାବନା ଗୁଡ଼ିକର ବିକାଶ ଘଟାଇ ଥାଏ । ଅନେକ ସମୟରେ ଉପଯୋଗୀ ବାତାବରଣ ଅଭାବରେ ଶିଶୁର ପ୍ରଚ୍ଛନ୍ନ ପ୍ରତିଭା ବିକଶିତ ହୋଇପାରେ ନାହିଁ । ଏ ଦୃଷ୍ଟିରୁ ପିତାମାତା, ଶିକ୍ଷକ ଶିକ୍ଷୟିତ୍ରୀ ଓ ଅଭିଭାବକମାନେ ଶିଶୁର ପ୍ରତିଭାକୁ ଚିହ୍ନଟ କରିବା ଉଚିତ ଏବଂ ଏସବୁର ପ୍ରକଟନ ପାଇଁ ପଦକ୍ଷେପ ନେବା ଉଚିତ । ଅନେକ ମନେକରନ୍ତି ଯେ ସୃଜନଶୀଳ ହେବା ପାଇଁ ବୁଦ୍ଧିମତ୍ତା (Intelligence) ଖୁବ୍ ବେଶୀ ହେବା ଆବଶ୍ୟକ । ମାତ୍ର ଏପରି ଧାରଣା ଠିକ୍ ନୁହେଁ । ସୃଜନଶୀଳ ଶିଶୁ ଯେ ବୁଦ୍ଧିହୀନ, ଏକଥା କୁହାଯାଉ ନାହିଁ । ମାତ୍ର ସାଧାରଣ ପିଲାଠାରୁ ଅଳ୍ପବେଶୀ ବୁଦ୍ଧିଥିବା ପିଲାମାନେ ନିଜର ସୃଜନାତ୍ମକ କ୍ରିୟା ଦ୍ୱାରା ଅନ୍ୟକୁ ମୁଗ୍ଧ କରିପାରନ୍ତି । ଏପରିକି ସାଧାରଣ ବୁଦ୍ଧି ଥିବା ପିଲା ମଧ୍ୟ ସୃଜନଶୀଳତାର ଅଧିକାରୀ ହୋଇପାରନ୍ତି । ସୃଜନଶୀଳତା କହିଲେ କ'ଣ ବୁଝାଯାଏ, ତାହା ପ୍ରଥମେ ବୁଝିବାକୁ ହେବ । ନୂଆ କରି ସୁନ୍ଦର ବସ୍ତୁଟିଏ ତିଆରି କରିବାକୁ ସହଜ ଭାଷାରେ ସୃଜନଶୀଳତା କୁହାଯାଇପାରେ । କଳା, ସାହିତ୍ୟ, ଚିତ୍ରାଙ୍କନ ଏବଂ ବୈଜ୍ଞାନିକ କାର୍ଯ୍ୟକଳାପରେ ଏପରି ସୃଜନଶୀଳତା ପ୍ରକଟିତ ହୋଇଥାଏ ।

ସୃଜନଶୀଳତାରେ ତିନୋଟି ଉପାଦାନ ରହିଥାଏ । ସେଗୁଡ଼ିକ ହେଉଛି କ୍ଷିପ୍ରତା, ସଚଳତା ଓ ମୌଳିକତା । ପ୍ରଥମଟି ହେଉଛି କ୍ଷିପ୍ରତା (Fluency) । ଧରାଯାଉ ଗୋଟିଏ ପିଲାକୁ ପଚରାଗଲା–'ଇଟାକୁ ନେଇ କି କି କାର୍ଯ୍ୟ କରାଯାଇପାରେ ?' ଗୋଟିଏ ପିଲା ହୁଏତ ଉତ୍ତର ଦେଲା ଯେ ଇଟାକୁ ବ୍ୟବହାର କରି ଘର ତିଆରି କରାଯାଇ ପାରିବ, ଅଥଚ ଅନ୍ୟ ଗୋଟିଏ ପିଲା ଉତ୍ତର ଦେଲା ଯେ ଇଟାକୁ ବ୍ୟବହାର କରି ଘର ନିର୍ମାଣ, ସ୍କୁଲ ନିର୍ମାଣ, ଅଫିସ ନିର୍ମାଣ, ଗୋଦାମଘର ନିର୍ମାଣ ଏବଂ ଗୁହାଳ ନିର୍ମାଣ କରାଯାଇ ପାରିବ । ଲକ୍ଷ୍ୟ କରିବାର କଥା ଯେ ପ୍ରଥମ ପିଲାଟି କେବଳ ଗୋଟିଏ ଉତ୍ତର (ଧାରଣା) ଦେଇଥିବା ସ୍ଥଳେ ଦ୍ୱିତୀୟ ପିଲାଟି ପାଞ୍ଚୋଟି ଧାରଣା ଦେଇ ପାରୁଛି । ସୁତରାଂ ଦ୍ୱିତୀୟ ପିଲାଟିର ଉତ୍ତରରେ କ୍ଷିପ୍ରତା ରହିଛି, ଏହି ବିଚାର କରାଯିବ ।

ସୃଜନଶୀଳତାର ଦ୍ୱିତୀୟ ଉପାଦାନଟି ହେଉଛି ସଚଳତା (Flexibility) । ସୃଜନାତ୍ମକ କାର୍ଯ୍ୟରେ ସଚଳତା ପ୍ରକାଶ ପାଏ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇପାରେ ଯେ ସମାନ ପ୍ରଶ୍ନର (ଇଟା କି କି ପ୍ରକାରେ ବ୍ୟବହାର କରାଯାଇପାରେ ?) ଉତ୍ତର ଦେବାକୁ ଯାଇ ଆଉ ଗୋଟିଏ ପିଲା ଅନ୍ୟ ପ୍ରକାର ଉତ୍ତର ଦେଇପାରେ । ସେ ହୁଏତ କହିବ ଯେ ଇଟାକୁ ବ୍ୟବହାର କରି ଘର ନିର୍ମାଣ ହୋଇପାରେ, ଇଟାକୁ ବ୍ୟବହାର କରି କାନ୍ଥରେ କିଛି ଲେଖାଯାଇ

ପାରେ, ଇଟା ସାହାଯ୍ୟରେ ଉଡ଼ିଯାଉଥିବା କାଗଜ ଉପରେ ରଖି କାଗଜକୁ ଅଟକାଇ ରଖାଯାଇପାରେ, ଇଟା ସାହାଯ୍ୟରେ ବିରାଡ଼ିକୁ ଘଉଡ଼ାଇ ଦିଆଯାଇପାରେ ଏବଂ ଇଟାକୁ ବ୍ୟବହାର କରି ପବନରେ ବନ୍ଦ ହୋଇଯାଉଥିବା କବାଟକୁ ଅଟକାଇ ରଖାଯାଇପାରେ । ଏପରି ଉତ୍ତରରେ ପାଞ୍ଚୋଟି ଧାରଣା ପ୍ରକାଶ ପାଇଛି ଏବଂ ପ୍ରତିଟି ଧାରଣା ଅନ୍ୟ ଧାରଣାଠାରୁ ଭିନ୍ନ । ଦ୍ୱିତୀୟ ପିଲାଟି ସ୍କୁଲ ତିଆରି, ଘର ତିଆରି ଇତାଦିରେ ଉତ୍ତର ଦେଇ ପାଞ୍ଚୋଟି ଉତ୍ତର ଦେଇଥିଲେ ମଧ୍ୟ ସବୁଗୁଡ଼ିକ ଉତ୍ତର କେବଳ ଗୋଟିଏ ଧରଣର – କିଛି ତିଆରି କରିବା ।

ଏ ଦୃଷ୍ଟିରୁ ଦ୍ୱିତୀୟ ପିଲାଟି ଉତ୍ତରରେ ଗୋଟିଏ ପ୍ରକାର ଭାବନା ପ୍ରକାଶ ପାଇଥିବା ସ୍ଥଳେ ତୃତୀୟ ପିଲାର ଉତ୍ତରରେ ପୃଥକ୍ ପୃଥକ୍ ପାଞ୍ଚୋଟି ଶ୍ରେଣୀର ଭାବନା ପ୍ରକାଶ ପାଇଛି । ଏ ଦୃଷ୍ଟିରୁ ସଚଳତା (Flexibility) ବା (Thought category) ନେଇ ଦ୍ୱିତୀୟ ପିଲାଟିକୁ ଏକ ନମ୍ବର ଦେବାସ୍ଥଳେ ତୃତୀୟ ପିଲାଟିକୁ ପାଞ୍ଚନମ୍ବର ଦେବାକୁ ହେବ ।

ତୃତୀୟ ଉପାଦାନଟି ହେଉଛି ମୌଳିକତା (Originality) । ଯେଉଁ ସବୁ ଉତ୍ତର ବା କାର୍ଯ୍ୟ ଅନ୍ୟମାନଙ୍କଠାରୁ ଆଶା କରା ନଯାଏ, ସେପରି କାର୍ଯ୍ୟ ଓ ଉତ୍ତରକୁ ମୌଳିକ କୁହାଯିବ । ମାତ୍ର ଏହାର ଅର୍ଥ ନୁହେଁ ଯେ କୌଣସି ପିଲାର ଅସଭ୍ୟ ଶବ୍ଦ ବା ବାକ୍ୟକୁ ମୌଳିକ କୁହାଯିବ । ଅନ୍ୟମାନଙ୍କ ମୁହଁରେ ଏପରି ଶୁଣାଯାଉନଥିବା କଥା ସଂଖ୍ୟା ଦୃଷ୍ଟିରୁ କମ୍ ହେଲେ ମଧ୍ୟ ଏହାଦ୍ୱାରା ଅନ୍ୟମାନଙ୍କର ବା ସମାଜର କୌଣସି ଉପକାର ହୋଇନଥାଏ, ବରଂ କ୍ଷତି ହୋଇଥାଏ । ସେ ଦୃଷ୍ଟିରୁ ଅନନ୍ୟ ହୋଇଥିବ ଅଥଚ ଅନ୍ୟମାନଙ୍କର ଉପକାରରେ ଲାଗି ପାରୁଥିବା ଉତ୍ତର ଓ କାର୍ଯ୍ୟକୁ ମୌଳିକତାର ସମ୍ମାନ ଦିଆଯିବ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇପାରେ ଯେ ତୃତୀୟ ପିଲାଟିର ଉତ୍ତର ତୁଳନାତ୍ମକଭାବରେ ବିଚାର କଲାବେଳେ ସମବୟସୀ ବହୁ ସଂଖ୍ୟକ ପିଲାମାନଙ୍କ ତୁଳନାରେ ଏହି ପିଲାଟିର ଉତ୍ତର ଅସାଧାରଣ ହୋଇଥିବାରୁ ସେ ଉତ୍ତରଟି ମୌଳିକ ବୋଲି ଗ୍ରହଣ କରାଯିବ ।

ସୂକ୍ତତଃ, କାର୍ଯ୍ୟ ବା ଉତ୍ତରର କ୍ଷିପ୍ରତା, ସଚଳତା ଓ ମୌଳିକତାକୁ ନେଇ ସୃଜନଶୀଳତାର ପରିମାପ କରାଯାଏ । ସୃଜନଶୀଳତା ଶିଶୁ ଜୀବନରେ ଯେଉଁ ବିଭାଗ (ସାହିତ୍ୟ, ଚିତ୍ରକଳା, ଖେଳକୁଦ) ପ୍ରକାଶ ପାଉନା କାହିଁକି, ପିଲାଟିର ବହୁମୁଖୀ ଚିନ୍ତାଧାରା (Divergent thinking) ଏଥିପାଇଁ ଆବଶ୍ୟକ ହୋଇଥାଏ । ବିଭିନ୍ନ ଦିଗ ସମ୍ପର୍କରେ ଚିନ୍ତା କରିବା, ବିଭିନ୍ନ ସମ୍ଭାବନାସବୁକୁ କଳ୍ପନାର ପରିସର ମଧ୍ୟକୁ ଆଣିବା ଏବଂ ଗତାନୁଗତିକ ଚିନ୍ତାଧାରାର ଊର୍ଦ୍ଧ୍ୱକୁ ଯିବା ଏ ଧରଣର ମାନସିକ ଶୈଳୀ ।

ଶିଶୁଟି ଯେପରି ବିଭିନ୍ନ ଦିଗ ବା ସମ୍ଭାବନା ସମ୍ପର୍କରେ ଚିନ୍ତା କରିପାରିବ, ସେ ଦିଗରେ ପିତାମାତା ଓ ଶିକ୍ଷକ ଶିକ୍ଷୟତ୍ରୀ ଅନେକ ସମୟରେ ଧ୍ୟାନ ଦେଇ ନଥାନ୍ତି । ଶିଶୁଟି ଗତାନୁଗତିକ ଉତ୍ତରରୁ ସାମାନ୍ୟ ଭିନ୍ନ ଉତ୍ତରଟିଏ ଦେଲେ ଶିଶୁ ଉପହାସିତ ହୁଏ । ଏପରି ଦୃଷ୍ଟିଭଙ୍ଗୀ ସୃଜନଶୀଳତାର ବିରୋଧୀ । ପିତାମାତା ଶିଶୁକୁ ପ୍ରଶ୍ନ ପଚାରିବାକୁ ଉତ୍ସାହ ଦେବେ । ଶିଶୁର ଉତ୍ତରଟି ହସରେ ଉଡ଼ାଇ ନଦେଇ ତା ମଧ୍ୟରେ ଉପଯୋଗୀ ବସ୍ତୁଟି ଚିହ୍ନଟ କରିବେ ଏବଂ ଶିଶୁର ମତାମତକୁ ସମ୍ମାନ ଦେବା ଫଳରେ ଏକ ସୃଜନମୁଖୀ ପରିବେଶର ଉନ୍ମେଷ ଓ ବିକାଶ ଘଟେ ।

# ଶିଶୁ ପାଳନର ଶୈଳୀ

ବିକାଶ ଏକ ନିରବଚ୍ଛିନ୍ନ ପ୍ରକ୍ରିୟା । ଭ୍ରୁଣ ସଞ୍ଚାରଠାରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ଜୀବନର ଧାରା ନିରବଚ୍ଛିନ୍ନ ଭାବରେ ଗତିଶୀଳ ଥାଏ । କେବଳ ଅନୁଶୀଳନର ସୁବିଧା ପାଇଁ ବିକାଶକୁ ଶୈଶବ, ବାଲ୍ୟ, କୈଶୋର, ଯୁବାବସ୍ଥା ଓ ବାର୍ଦ୍ଧକ୍ୟ ସୋପନର ନାମକରଣ କରାଯାଇ ନାହିଁ । ପ୍ରତିଟି ପର୍ଯ୍ୟାୟରେ କିଛି ସ୍ୱାତନ୍ତ୍ର୍ୟ ମଧ୍ୟ ରହିଛି ।

ଶିଶୁମାନଙ୍କର ସଫଳ ବିକାଶ ପାଇଁ ସେମାନଙ୍କର ବୃଦ୍ଧି, ପରିବେଶ, ଶିକ୍ଷା, ସାମାଜିକ ବ୍ୟବହାର ଓ ଭାବାବେଗ ସମ୍ପର୍କରେ ଆଲୋଚନା କରାଯାଇଛି । ଶିଶୁର ସଫଳ ବିକାଶ ପାଇଁ ଆଲୋଚିତ ପ୍ରତିଟି ଅଂଶ ଉପଯୋଗୀ । ତଥାପି କେତୋଟି ମନ୍ତବ୍ୟର ଆବଶ୍ୟକତା ଥିବା ଦୃଷ୍ଟିରୁ ଏଠାରେ ଶିଶୁପାଳନ ଶୈଳୀ ଓ ସାମାଜିକ ପରିପ୍ରେକ୍ଷୀ ସମ୍ପର୍କରେ ଦିଗ୍‌ଦର୍ଶନ ଦେବା ଯୁକ୍ତିଯୁକ୍ତ ବୋଲି ବିଚାର କରାଯାଉଛି ।

## ଶିଶୁ ବ୍ୟବହାର ପରିବର୍ତ୍ତନରେ ପ୍ରୋତ୍ସାହନ ଓ ଶାସ୍ତି ବିଧାନ

ନିଜର ଅଭିଳାଷ ଅନୁଯାୟୀ ଶିଶୁ ବ୍ୟବହାରକୁ ବାଞ୍ଛନୀୟ ରୂପ ଦେବାପାଇଁ ଏବଂ ଅବାଞ୍ଛନୀୟ ବ୍ୟବହାରର ବିଲୋପ ପାଇଁ ପ୍ରତ୍ୟେକ ପିତାମାତା ଆଗ୍ରହୀ । କିନ୍ତୁ ବ୍ୟବହାର ଗଠନ ଓ ବ୍ୟବହାର ପରିବର୍ତ୍ତନ ପାଇଁ ଆବଶ୍ୟକ ଉପଯୋଗୀ କୌଶଳର ଯଥାଯଥ ପ୍ରୟୋଗ ଅଭାବରୁ ପରିଣତି ସବୁବେଳେ ମନୋମତ ହୋଇ ନଥାଏ । ଅବଶ୍ୟ ନିଜର ଚାହିଦା ଅନୁସାରେ ବିଳାସବ୍ୟସନ-ପୂର୍ଣ୍ଣ ଯାନ୍ତ୍ରିକ ବସ୍ତୁ ନିର୍ମାଣ କରିବା ଅପେକ୍ଷାକୃତ ସହଜ । ନିଜସ୍ୱ ଭାବନା ଓ କଳ୍ପନା ଅନୁଯାୟୀ ଶିଶୁର ମାନସିକତା ଗଠନ କରିବା କଷ୍ଟକର । ତଥାପି ବ୍ୟବହାର ବିଜ୍ଞାନର କେତୋଟି ମୌଳିକ ତଥ୍ୟକୁ ଆଧାର କରି ଏପରି ସମ୍ଭାବନାକୁ ବୃଦ୍ଧି କରାଯାଇପାରେ ।

ପ୍ରଥମତଃ ମନେରଖିବାକୁ ହେବ ଯେ ଶିଶୁ ହେଉ ବା ବୟସ୍କ ହୁଅନ୍ତୁ, ବହୁ ବ୍ୟବହାର ଆମର ଅଜ୍ଞାତସାରରେ ମଧ୍ୟ ଗଠିତ ହୁଏ । ଏ ଗୁଡ଼ିକର ଉତ୍ପତ୍ତି ଓ ବିକାଶ ମୂଳରେ ପୁରସ୍କାର ବା ପ୍ରୋତ୍ସାହନ (Reinforcement) ମୁଖ୍ୟ ଭୂମିକା ଗ୍ରହଣ କରେ । ବାହ୍ୟଜଗତରୁ ଆମେ ବହୁଧରଣର ଭୌତିକ ତଥା ସାମାଜିକ ପ୍ରୋତ୍ସାହନ ପାଉ । ଶିଶୁଟି ମଧ୍ୟ ତା'ର ବାହ୍ୟଜଗତର ବହୁ ଧରଣର ସାମାଜିକ ପ୍ରୋତ୍ସାହନ ଲାଭ କରେ । ଶିଶୁଟିକୁ ଚାହିଁ ସ୍ମିତହସ ପ୍ରକାଶ କରିବା, ତାକୁ କୋଳେଇନେବା, ଦେହକୁ ଆଉଁଷିଦେବା, କାଖେଇବା ଏବଂ ଚୁମାଦେବା ମାଧ୍ୟମରେ ଆମେ ଆମର ପ୍ରୋତ୍ସାହନ ଦେଇଥାଉ । ସେହିପରି ଲଜେନ୍ସ ଓ ବିସ୍କୁଟ ପରି ଲୋଭନୀୟ ଖାଦ୍ୟ ପଦାର୍ଥ ଦେବା ମାଧମରେ ଶିଶୁଟି ପ୍ରୋତ୍ସାହିତ ହୋଇଥାଏ । ଶିଶୁଟିକୁ ଆନନ୍ଦ ଦେଉଥିବା ବ୍ୟବହାର ଓ ବସ୍ତୁ ଶିଶୁଟି ପାଇଁ ପ୍ରୋତ୍ସାହକର କାର୍ଯ୍ୟ କରେ ।

ଗବେଷଣାରୁ ସ୍ପଷ୍ଟ ଦେଖାଯାଇଛି ଯେ ଶାସ୍ତିବିଧାନ ଅପେକ୍ଷା ପ୍ରୋତ୍ସାହନ ଅଧିକ ସଫଳତାର ସହିତ ଲକ୍ଷ୍ୟ ପୂରଣ କରେ । ଶିଶୁର ବାଞ୍ଛନୀୟ ବ୍ୟବହାରର ଠିକ୍ ପରେ ପ୍ରୋତ୍ସାହନଟି ଦିଆଯିବା ଉଚିତ ଏବଂ ପ୍ରୋତ୍ସାହନଟି ଶିଶୁର ଆନନ୍ଦବର୍ଦ୍ଧନରେ ସହାୟକ ହୋଇଥିବା ବିଧେୟ । ବିଧିବଦ୍ଧ ଭାବରେ ପ୍ରୋତ୍ସାହନର ପ୍ରୟୋଗ କରୁଥିବା ପିତାମାତାମାନେ ସେମାନଙ୍କ ସନ୍ତାନ ସନ୍ତତିର ବ୍ୟବହାରରେ ଆଶାନୁରୂପ ଉନ୍ନତି ଲକ୍ଷ୍ୟ କରନ୍ତି ।

ଅନେକ ସମୟରେ ଶିଶୁର ଅବାଞ୍ଛନୀୟ ବ୍ୟବହାର ବିଲୋପରେ ଶାସ୍ତିବିଧାନ ପଦ୍ଧତି ଫଳବତୀ ହୋଇ ନଥାଏ । ଜଣେ ମହିଳା ହୁଏତ ଅଭିଯୋଗ କରିପାରନ୍ତି "ମୁଁ ମୋର ପୁଅକୁ ବେଶ୍ ଶାସ୍ତି ଦେଉଛି, ହେଲେ ତା'ର ଦୁଷ୍ଟାମି ଦିନକୁ ଦିନ ବଢ଼ିବାରେ ଲାଗିଛି ।" ଏଠାରେ ଅନୁଶୀଳନ କଲେ ଦେଖାଯିବ ଯେ ଏପରି ମା' ହୁଏତ ଶିଶୁର କୌଣସି ଭଲଗୁଣ ବା କୃତିତ୍ୱ ପ୍ରତି ନଜର ଦିଅନ୍ତି ନାହିଁ । ଶିଶୁଟି ଦୁଷ୍ଟାମି କଲାମାତ୍ରେ ତାକୁ ମାରନ୍ତି । ଫଳତଃ ଶିଶୁଟି ମା'ର ଓ ଅନ୍ୟ ବୟସ୍କମାନଙ୍କର ଦୃଷ୍ଟି ଆକର୍ଷଣ କରିବା ପାଇଁ ଦୁଷ୍ଟାମି କରେ ଏବଂ ଶାସ୍ତି ପାଏ । ଅଧିକାଂଶ ଶିଶୁ ଅନ୍ୟର ଅନୁମୋଦନ (Approval) ମାଧ୍ୟମରେ ଅନ୍ୟର ଦୃଷ୍ଟି ଆକର୍ଷଣ କରିବାକୁ ଚାହାଁନ୍ତି, ମାତ୍ର ଧୀରେ ଧୀରେ ଏପରି ସମ୍ଭାବନା ଲୋପ ପାଇଲେ ସେମାନେ ଅନ୍ୟର ନିନ୍ଦା (Disapproval) ଓ ଶାସ୍ତି ମାଧ୍ୟମରେ ଦୃଷ୍ଟି ଆକର୍ଷଣର ପ୍ରୟାସ କରନ୍ତି ।

ଏ ଦୃଷ୍ଟିରୁ ଶିଶୁର ଅବାଞ୍ଛନୀୟ ବ୍ୟବହାର ମାତ୍ରାଧିକ ରୂପ ନେବା ପୂର୍ବରୁ ତା'ର ବାଞ୍ଛନୀୟ ବ୍ୟବହାରଟି ପ୍ରତି ଧ୍ୟାନଶୀଳ ହେବାକୁ ପଡ଼ିବ । ଧରାଯାଉ ଶିଶୁଟି ଅଧିକାଂଶ ସମୟରେ ଅସ୍ଥିର । ତଥାପି ଯେଉଁ ଅଳ୍ପକିଛି ସମୟ ସ୍ଥିରଭାବ ଦର୍ଶାଉଛି, ସେହି ସମୟ ପ୍ରତି ଧ୍ୟାନଶୀଳ ହୋଇ ଶିଶୁଟିକୁ ପ୍ରୋତ୍ସାହନ ଦେବାକୁ ପଡ଼ିବ । କ୍ରମାଗତ ଭାବରେ ଏବଂ ଧାରାବାହିକ ଭାବରେ ଏପରି କରାଗଲେ ଶିଶୁର ଅସ୍ଥିରତା ସମୟ କ୍ରମଶଃ ହ୍ରାସ ପାଇବ ଏବଂ ସ୍ଥିରତାପୂର୍ଣ୍ଣ ସମୟ ବୃଦ୍ଧି ପାଇବାର ସମ୍ଭାବନା ରହିବ ।

ଅଳ୍ପ କେତେକ ସ୍ଥଳରେ ଶାସ୍ତିବିଧାନ ଆବଶ୍ୟକ ହୋଇପାରେ । ଯାନବାହାନ ଯାତାୟତ କରୁଥିବା ରାସ୍ତାକୁ ଦୌଡ଼ି ନ ଯିବା ପାଇଁ ଏବଂ ଅନ୍ୟ ଶିଶୁକୁ ଏକ ଭାରୀ ବସ୍ତୁଦ୍ୱାରା ଆଘାତ୍ ନ କରିବା ପାଇଁ ପ୍ରୋତ୍ସାହନ କୌଶଳଟି ବିଫଳ ହେଲେ ଅଳ୍ପପରିମାଣରେ ଶାସ୍ତିବିଧାନ ପ୍ରୟୋଜନ ହୋଇପାରେ । କିନ୍ତୁ ଶାସ୍ତିବିଧାନର କୌଶଳ ପ୍ରୟୋଗ ବେଳେ କେତୋଟି ସତର୍କତା ଅବଲମ୍ବନ କରିବାକୁ ପଡ଼ିବ ।

ପ୍ରଥମତଃ ଅବାଞ୍ଛନୀୟ ବ୍ୟବହାରର ଠିକ୍ ପରେ ପରେ ଶାସ୍ତି ଦିଆଯିବା ଉଚିତ । ବ୍ୟବହାର ଓ ଶାସ୍ତି ବିଧାନ ମଧ୍ୟରେ ମାତ୍ରାଧିକ ସମୟ ବ୍ୟବଧାନ କାର୍ଯ୍ୟକାରୀତାକୁ ହ୍ରାସ କରେ । "ବାପା ଆସିଲେ ତୋ କଥା ବୁଝିବେ" ଉକ୍ତିଟି ଉପଯୋଗୀ ଶାସ୍ତିବିଧାନର କାର୍ଯ୍ୟ ନ କରିପାରେ । ଦ୍ୱିତୀୟତଃ ଶାସ୍ତିବିଧାନର ପରେ ପରେ ଶିଶୁ ବୁଝିପାରିଲା ପରି ତାଙ୍କୁ ଶାସ୍ତିର କାରଣ ସୂଚାଇବା ଆବଶ୍ୟକ । ଶିଶୁର ଅବାଞ୍ଛନୀୟ ବ୍ୟବହାର କିପରି କ୍ଷତି ସୃଷ୍ଟି କରୁଛି ବା କରିବ, ତାହା ସ୍ପଷ୍ଟ ଭାବରେ କୁହାଯିବା ଉଚିତ । ତୃତୀୟତଃ ଶାସ୍ତିବିଧାନରେ ସ୍ଥିରତା (Consistent) ରହିଥିବା ଉଚିତ । ଶିଶୁ ଯେଉଁ ବ୍ୟବହାର ପାଇଁ ବର୍ତ୍ତମାନ ଦଣ୍ଡିତ,

ସେପରି ବ୍ୟବହାର ଅନ୍ୟ ସମୟରେ ମଧ୍ୟ ଦଣ୍ଡନୀୟ । ଚତୁର୍ଥତଃ ଶିଶୁକୁ ସ୍ନେହଶ୍ରଦ୍ଧା ଦର୍ଶାଉଥିବା ପ୍ରିୟଜନ ଦଣ୍ଡବିଧାନ କଲେ ଏହା ଶକ୍ତିଶାଳୀ ହୁଏ । ଶିଶୁ ଦଣ୍ଡ ପାଏ ଏବଂ ପ୍ରିୟଜନର ଅନୁରାଗ ହରାଏ । ସୁତରାଂ ଅଳ୍ପ ପରିମାଣର ଦଣ୍ଡ ତୀବ୍ର ଶାସ୍ତିର କାର୍ଯ୍ୟକରେ ।

ଏସବୁ ସତ୍ତ୍ୱେ ମନେରଖିବାକୁ ହେବ ଯେ ଶାସ୍ତିବିଧାନର ସଫଳତା କେବଳ ଅଳ୍ପସ୍ଥାୟୀ । ଦୀର୍ଘସ୍ଥାୟୀ ପରିବର୍ତ୍ତନ ପାଇଁ ପ୍ରୋତ୍ସାହନ ଅଧିକ ଉପଯୋଗୀ । ଏହା ବ୍ୟତୀତ ଦଣ୍ଡିତ ହୋଇଥିବା ଶିଶୁ ପିତାମାତାଙ୍କଠାରୁ ଛାଡ଼ ଛାଡ଼ ଭାବ ଦର୍ଶାଇପାରେ । ପିତାମାତାଙ୍କର କ୍ରୋଧଭାବକୁ ଅନୁଭବ କରି ଅନ୍ୟ ପ୍ରତି ହିଂସ୍ରଭାବ ଦର୍ଶାଇପାରେ ଏବଂ ଦଣ୍ଡବିଧାନରୁ ନିଷ୍କୃତି ନ ମିଳୁଥିଲେ ପୂରାପୂରି ନିଷ୍କ୍ରିୟଭାବ ଦର୍ଶାଇ ପାରେ ।

## ଉପଯୋଗୀ ଶୈଳୀ

ପ୍ରତି ବ୍ୟକ୍ତିର ବ୍ୟକ୍ତିତ୍ୱ ଭିନ୍ନ । ପ୍ରତି ଲେଖକର ଲେଖା ଶୈଳୀ ଭିନ୍ନ । ସେହିପରି ପ୍ରତି ପିତାମାତା ସେମାନଙ୍କର ସନ୍ତାନର ଲାଳନ ପାଳନ କ୍ଷେତ୍ରରେ ପୃଥକ୍ ପୃଥକ୍ ଶୈଳୀର ବ୍ୟବହାର କରନ୍ତି । ପୁଣି ବାଳକ ବାଳିକା ଭେଦରେ ଏବଂ ପିଲାମାନଙ୍କର ବିକାଶର ଭିନ୍ନ ଭିନ୍ନ ପର୍ଯ୍ୟାୟରେ ଅନୁସୃତ ହେଉଥିବା ଶୈଳୀ ପୃଥକ୍ ପୃଥକ୍ ହୋଇଥାଏ । ଏ ଦୃଷ୍ଟିରୁ ଶୈଳୀସବୁର ଭିନ୍ନତାକୁ ବିଚାର କରି ସେଗୁଡ଼ିକୁ ଅଳ୍ପ କେତୋଟି ଶ୍ରେଣୀରେ ବିଭକ୍ତ କରିବା କଷ୍ଟକର ବ୍ୟାପାର । ତଥାପି ଶିଶୁମାନଙ୍କର ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ ପ୍ରାକ୍-ବିଦ୍ୟାଳୟ ସ୍ତରରେ ପିତାମାତାମାନେ ଉପଯୋଗ କରୁଥିବା ଶିଶୁ ପାଳନର କେତୋଟି ମୁଖ୍ୟ ଧାରା ଲକ୍ଷ୍ୟ କରାଯାଇଛି । ଏହି ଧାରା ସହିତ ଶିଶୁମାନଙ୍କର ବିକଶିତ ଦିଗ ମଧ୍ୟ ଚିହ୍ନଟ କରାଯାଇଛି ।

ଶିଶୁ ପାଳନ ପାଳନ ଶୈଳୀର ତିନୋଟି ମୁଖ୍ୟ ପରିପ୍ରକାଶ ରହିଛି । ସେଗୁଡ଼ିକ ହେଉଛି ପ୍ରଭୁତ୍ୱମୁଖୀ ଶୈଳୀ, ଗୁରୁତ୍ୱମୁଖୀ ଶୈଳୀ ଏବଂ ସର୍ବଅନୁମୋଦନ ଶୈଳୀ । ପ୍ରାକ୍-ବିଦ୍ୟାଳୟର ବାଳକ ବାଳିକାମାନଙ୍କୁ ଲାଳନ ପାଳନ କରୁଥିବା ପିତାମାତାଙ୍କୁ ସେମାନଙ୍କ ନିଜ ଗୃହର ପରିସର ମଧ୍ୟରେ ପର୍ଯ୍ୟବେକ୍ଷଣ କରି, ସେମାନଙ୍କ ସହିତ ସାକ୍ଷାତକାରର ବ୍ୟବସ୍ଥା କରି ଏବଂ ସେମାନଙ୍କୁ କେତେକ ପରୀକ୍ଷା ନିରୀକ୍ଷା କରି ଏପରି ସିଦ୍ଧାନ୍ତ ଗ୍ରହଣ କରାଯାଇଛି ।

ପ୍ରଭୁତ୍ୱମୁଖୀ ପିତାମାତାମାନେ ନିଜର ନିୟନ୍ତ୍ରଣ ଓ ପିଲାର ଆଜ୍ଞାଧୀନତା ଉପରେ ପୃଥକ୍ ଗୁରୁତ୍ୱ ଆରୋପ କରନ୍ତି । ଏମାନେ "କର" ଓ "କର ନାହିଁ" ଶବ୍ଦଦ୍ୱୟର ବହୁଳ ବ୍ୟବହାର କରନ୍ତି । ଶିଶୁ ଗୋଟିଏ କାର୍ଯ୍ୟ କାହିଁକି କରିବ ବା କରିବ ନାହିଁ, ଏ ବିଷୟରେ ପ୍ରଶ୍ନ ପଚାରିବାର ଅଧିକାର ଶିଶୁର ନ ଥାଏ । ନୀତିନିୟମସବୁ ମାନିବା ପାଇଁ ଶିଶୁକୁ ଏକପ୍ରକାର ବାଧ୍ୟ କରାଯାଏ ଏବଂ ସାମାନ୍ୟତମ ବିଚ୍ୟୁତି ସହ୍ୟ କରା ନ ଯାଇ ଶିଶୁକୁ ଦଣ୍ଡିତ କରାଯାଏ । ଏପରି ପିତାମାତା ସାଧାରଣତଃ ଅନାସକ୍ତ ଏବଂ ନିଜର ସ୍ନେହମମତା ପ୍ରକାଶ୍ୟ ଭାବରେ ବ୍ୟକ୍ତ କରନ୍ତି ନାହିଁ । ଏପରି ପରିପାଳନ ଶୈଳୀ ମଧ୍ୟଦେଇ ଗତି କରୁଥିବା ଶିଶୁମାନେ ଅନ୍ୟମାନଙ୍କ ପାଖରୁ ନିଜକୁ ଦୂରେଇ ନିଅନ୍ତି କିମ୍ବା କ୍ରୋଧୀ ହୁଅନ୍ତି । ଅନ୍ୟକୁ ସହଜରେ ବିଶ୍ୱାସ କରିବା କିମ୍ବା ନିଜର ଆନନ୍ଦଭାବ ପ୍ରକାଶ କରିବାରେ ଏମାନଙ୍କର ଅସୁବିଧା ହୁଏ ।

ସର୍ବଅନୁମୋଦନ ମୁଖୀ ପିତାମାତାମାନେ ଶିଶୁ କ'ଣ କରୁଛି ନ କରୁଛି, ସେ ଦିଗରେ ବିଶେଷ ଧ୍ୟାନ ଦିଅନ୍ତି ନାହିଁ । ଶିଶୁ ଯେପରି ନିଜେ ନିଜର କାର୍ଯ୍ୟ ସ୍ଥିର କରିବ ଏବଂ ନିଜର ମାନଦଣ୍ଡ ନିର୍ମାଣ କରିବ, ସେ ଦିଗରେ ପୂରା ସ୍ୱାଧୀନତା ଦିଅନ୍ତି । ପରିବାରରେ ଅନୁସୃତ ହେଉଥିବା ଅଳ୍ପ କେତୋଟି ନୀତିନିୟମର ଯୁକ୍ତିଯୁକ୍ତତା ଶିଶୁକୁ ବୁଝାନ୍ତି । ଶିଶୁଠାରୁ ଏମାନେ କ'ଣ ପ୍ରତ୍ୟାଶା କରୁଛନ୍ତି, ସେ ବିଷୟରେ କୌଣସି ସୂଚନା ଦିଅନ୍ତି ନାହିଁ । ଶିଶୁଟି ନିଜର ଭାବାବେଗକୁ କିପରି ନିୟନ୍ତ୍ରଣ କରିବ, ତାହା ଦୃଢ଼ ଭାବରେ ଶିକ୍ଷା ଦିଅନ୍ତି ନାହିଁ । ଶିଶୁଟି ଦୋଷ କଲେ ମଧ୍ୟ ଦଣ୍ଡ ଦିଅନ୍ତି ନାହିଁ । ଫଳରେ କେଉଁ ବ୍ୟବହାରଟି ଶିଶୁର ପ୍ରୋତ୍ସାହିତ (Reinforced) ହେଉଛି ଏବଂ କେଉଁଟି ନିରୁତ୍ସାହିତ କରାଯାଉଛି, ସେ ବିଷୟରେ ଶିଶୁର ସ୍ପଷ୍ଟ ଧାରଣା ଜନ୍ମେ ନାହିଁ । ଏପରି ପରିବେଶ ମଧ୍ୟରେ ପ୍ରତିପାଳିତ ହେଉଥିବା ଶିଶୁମାନଙ୍କର ଆତ୍ମସଂଯମ, ଅନ୍ବେଷଣଭାବ ଏବଂ ପରିପକ୍ୱତାର ଅଭାବ ଘଟେ ।

ତୃତୀୟ ଶୈଳୀଟିକୁ ଗୁରୁତ୍ୱମୁଖୀ ଶୈଳୀ କୁହାଯାଇପାରେ । ଏ କ୍ଷେତ୍ରରେ ପିତାମାତା ଶିଶୁର ବ୍ୟକ୍ତିତ୍ୱକୁ ସ୍ୱୀକାର କରନ୍ତି ସତ୍ୟ, ମାତ୍ର ସବୁ ବିଷୟରେ ଶିଶୁଟିକୁ ବେପରୁଆ ଭାବରେ ଛାଡ଼ି ନ ଦେଇ ଗୁରୁତ୍ୱପୂର୍ଣ୍ଣ ଦିଗ ଉପରେ ନିୟନ୍ତ୍ରଣ ରଖନ୍ତି । ଏପରି ପିତାମାତା ପ୍ରଥମ ଶୈଳୀ (ପ୍ରଭୁତ୍ୱମୁଖୀ) ଓ ଦ୍ୱିତୀୟ ଶୈଳୀ (ସର୍ବଅନୁମୋଦନମୁଖୀ) ମଧ୍ୟରେ ଏକ ସମନ୍ୱୟ ରଖନ୍ତି । ସବୁ ନୀତିନିୟମକୁ କଡ଼ାକଡ଼ି ଭାବରେ ଲଦି ନ ଦେଇ କେଉଁ ମାନଦଣ୍ଡଟି ଶିଶୁର ବିକାଶ ପାଇଁ ଗୁରୁତ୍ୱପୂର୍ଣ୍ଣ, ସେ ଦିଗରେ ଚିନ୍ତାକରି ନିଷ୍ପତ୍ତି ନିଅନ୍ତି । ଏପରି ନିଷ୍ପତ୍ତିଟି ନେଲାପରେ ସ୍ପଷ୍ଟ ଓ ସ୍ଥିର ଭାବରେ ଶିଶୁକୁ ନିଜର ମାନଦଣ୍ଡଟି ଜଣାଇ ଦିଅନ୍ତି । ପିତାମାତା ନିଜର ବ୍ୟବହାର ମାଧ୍ୟମରେ ଆବଶ୍ୟକ ସ୍ଥଳରେ ଶିଶୁଟିକୁ ପ୍ରୋତ୍ସାହନ (ସ୍ମିତହାସ, ସ୍ନେହ, ଆଦର ଇତ୍ୟାଦି) ଦେଇ ଏବଂ ଦରକାର ପଡ଼ିଲେ ଅଳ୍ପ ପରିମାଣରେ ଶାସ୍ତି ବିଧାନ କରି ଶିଶୁଟିକୁ ନିଜର ମାନଦଣ୍ଡ ଜଣାଇ ଦିଅନ୍ତି । ସେମାନେ ଶିଶୁଠାରୁ କ'ଣ ଚାହୁଁଛନ୍ତି, ତାହା ଧୀରେ ଧୀରେ ଶିଶୁ ମନରେ ସ୍ପଷ୍ଟ ହୁଏ । ପରିସ୍ଥିତିକୁ ଚାହିଁ ସ୍ନେହମମତା ଦର୍ଶାନ୍ତି । ପୁଣି ଗୁରୁତ୍ୱପୂର୍ଣ୍ଣ ବିଷୟରେ ଶିଶୁ ବିଚ୍ୟୁତି ଦର୍ଶାଇଲେ ଦୃଢ଼ତା ମଧ୍ୟ ଦର୍ଶାନ୍ତି । ଏପରି ପରିବେଶରେ ପ୍ରତିପାଳିତ ଶିଶୁମାନେ ଆତ୍ମବିଶ୍ୱାସୀ ଓ ଆତ୍ମନିର୍ଭରଶୀଳ ହୁଅନ୍ତି । ସେମାନଙ୍କର ଆତ୍ମସଂଯମ, ଆତ୍ମସାମର୍ଥ୍ୟବୋଧ ଏବଂ ଅନ୍ବେଷଣ ଇଚ୍ଛା ମଧ୍ୟ ବିକଶିତ ହୁଏ ।

ଗୁରୁତ୍ୱମୁଖୀ ଶିଶୁପାଳନ ଶୈଳୀ ସହିତ ଉନ୍ନତ ଶିଶୁ ବିକାଶର ସମ୍ବନ୍ଧ ସୂଚାଇବା ପରିପ୍ରେକ୍ଷୀରେ ଅନ୍ୟ ଦୁଇ ତିନୋଟି ଜିନିଷ ସ୍ପଷ୍ଟ କରିବା ଉଚିତ ହେବ । ପ୍ରଥମତଃ ଶୈଳୀକୁ ସଦାସର୍ବଦା କାରଣ ଓ ଶିଶୁର ବିକାଶକୁ ସଦାସର୍ବଦା ଫଳାଫଳ କହିବା ଯୁକ୍ତିଯୁକ୍ତ ନୁହେଁ । କାରଣ ଶିଶୁ ମଧ୍ୟ ପିତାମାତାଙ୍କର ଲାଳନପାଳନ ଶୈଳୀରେ ପରିବର୍ତ୍ତନ ଆଣିପାରେ । ଅପେକ୍ଷାକୃତ ଭଲ ଶିଶୁଟିଏ ପିତାମାତାଙ୍କୁ ଗୁରୁତ୍ୱମୁଖୀ କରିବା ସ୍ଥଳେ ଜିଦିଆ ଓ ଦୁଷ୍ଟ ଶିଶୁଟି ପିତାମାତାଙ୍କୁ ପ୍ରଭୁତ୍ୱମୁଖୀ କରିପାରେ । ଦ୍ୱିତୀୟତଃ ଶିଶୁର ପ୍ରାକ୍‌ବିଦ୍ୟାଳୟ ଜୀବନ ପୂର୍ବରୁ ମଧ୍ୟ ସେ ମାତୃଗର୍ଭରୁ କେତେକ ସମ୍ଭାବନା ନେଇ ବଢୁଥାଏ ଏବଂ ପ୍ରାକ୍-ବିଦ୍ୟାଳୟ ଜୀବନ ପରେ ମଧ୍ୟ ଅନ୍ୟସବୁ ପ୍ରଭାବ ଜୀବନକୁ ଭିନ୍ନ ମୋଡ଼ ଦେଇପାରେ । ତଥାପି ସ୍ୱୀକାର

କରିବାକୁ ହେବ ଯେ ଗୁରୁତ୍ୱମୁଖୀ ଶୈଳୀ ପିତାମାତାଙ୍କର ବିଚାରଶୀଳ ମାନଦଣ୍ଡ ଓ ସ୍ପଷ୍ଟ ପ୍ରକାଶିତ ପ୍ରତ୍ୟାଶା ସବୁର ଉପଯୋଗ ମାଧ୍ୟମରେ ଶିଶୁ ବିକାଶକୁ ତ୍ୱରାନ୍ୱିତ କରେ ।

## ଶିଶୁ ପାଳନର ସାମାଜିକ ସାଂସ୍କୃତିକ ଦିଗ

ପୂର୍ବରୁ ଉପଯୋଗୀ ଶିଶୁ ପାଳନର ଶୈଳୀ ସମ୍ପର୍କରେ ସୂଚନା ଦିଆଯାଇଛି । ଏହାର କାର୍ଯ୍ୟକାରୀତା ବିଚାର କଲାବେଳେ ଏହାକୁ ଏକ ରନ୍ଧନ ପ୍ରଣାଳୀର ସ୍ଥାନ ଦେବା ଉଚିତ ହେବନାହିଁ । ଏହା କହିବାର ତାତ୍ପର୍ଯ୍ୟ ହେଉଛି ଯେ ପିତାମାତା କେବଳ ଯନ୍ତ୍ରବତ୍ କେତୋଟି ନିୟମ ପାଳନ କରିଗଲେ ଆଦର୍ଶ ଶିଶୁ ନିର୍ମାଣ ସମ୍ଭବ ହେବ ନାହିଁ । ଶିଶୁ ପାଳନର ନିର୍ଦ୍ଦିଷ୍ଟ ବ୍ୟବସ୍ଥା ଅପେକ୍ଷା ପିତାମାତଙ୍କର ସ୍ନେହମମତା ଓ ପରିପକ୍ୱତା ଅଧିକ ଉପଯୋଗୀ । ସ୍ଥାନକାଳପାତ୍ର ବିଚାରରେ ପିତାମାତା ବ୍ୟବସ୍ଥା ସବୁରେ କିଛିଟା ପରିବର୍ତ୍ତନ କରିପାରିବେ ।

ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି "ଭଲ ଶିଶୁ"ର ସଂଜ୍ଞା । ଏହା ସତ୍ୟ ଯେ ନିର୍ଦ୍ଦିଷ୍ଟ ସାମାଜିକ-ସାଂସ୍କୃତିକ ପରିପ୍ରେକ୍ଷୀରେ "ଉତ୍ତମଶିଶୁ"ର ସୁନିର୍ଦ୍ଦିଷ୍ଟ ସଂଜ୍ଞା ଥାଏ । ପିତାମାତାମାନେ ଏହି ବିଶ୍ୱାସ ଓ ମୂଲ୍ୟବୋଧର ଅନୁଗତ ହୋଇ ଉତ୍ତମ ଶିଶୁ ଓ ମନ୍ଦ ଶିଶୁ ମଧ୍ୟରେ ପାର୍ଥକ୍ୟ ଦେଖନ୍ତି । ଫଳରେ ଶିଶୁପାଳନର ଲକ୍ଷ୍ୟବିନ୍ଦୁ ମଧ୍ୟ ଭିନ୍ନ ଭିନ୍ନ ହୋଇଯାଏ ।

ଦକ୍ଷିଣ ଆମେରିକାର ଗଉତମେଲାର ଗ୍ରାମାଞ୍ଚଳରେ ଜନ୍ମ ନେଉଥିବା ଶିଶୁ ଦଶ ଏଗାରମାସ ପର୍ଯ୍ୟନ୍ତ ଏକ ଅନ୍ଧାର କୋଠରୀ ମଧ୍ୟରେ ରହେ ଏବଂ ଖେଳନା ଦେଖେ ନାହିଁ, "ଇସ୍ରାଏଲ୍"ର ଶିଶୁମାନେ ବହୁସଂଖ୍ୟକ ଶିଶୁମାନଙ୍କ ସହିତ ଏକ ପାଳନକର୍ତ୍ତାଙ୍କ କିବୁଜ୍ ବା ସମବାୟ ଗୃହରେ ବଢ଼ନ୍ତି । ଭାରତୀୟ ପିତାମାତାମାନେ ଶିଶୁମାନଙ୍କୁ ସ୍ଥିରତା ଓ ଆଜ୍ଞାଧୀନତା ଶିକ୍ଷାଦେବା ସ୍ଥଳେ ଆମେରିକାର ପିତାମାତାମାନେ ଶିଶୁମାନଙ୍କୁ ଚଞ୍ଚଳତା ଓ ଆତ୍ମନିର୍ଭରଶୀଳତା ଶିକ୍ଷା ଦିଅନ୍ତି ।

ଲକ୍ଷ୍ୟ କରିବାର କଥା ଯେ ବିଭିନ୍ନ ସମାଜ ଓ ସଂସ୍କୃତିରେ ନବଜାତ ଶିଶୁର ସ୍ୱାଭାବିକ ପ୍ରକୃତି ସମ୍ପର୍କରେ ଏକ ନିର୍ଦ୍ଦିଷ୍ଟ ଧାରଣା ଥାଏ ଏବଂ ଏହି ବିଶ୍ୱାସକୁ ଭିତ୍ତିକରି ସେମାନେ "ଉତ୍ତମ ଶିଶୁ" ପାଇଁ ଆବଶ୍ୟକ ଲକ୍ଷ୍ୟବିନ୍ଦୁ ସ୍ଥିର କରନ୍ତି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ଜାପାନୀ ଓ ଭାରତୀୟ ପିତାମାତା ବିଶ୍ୱାସ କରନ୍ତି ଯେ ଶିଶୁ ସ୍ୱାଭାବତଃ ଚଞ୍ଚଳ, ସୁତରାଂ ଶିଶୁମାନଙ୍କୁ ସ୍ଥିରପ୍ରକୃତିର କରିବା ପାଇଁ ଉଦ୍ୟମ ଆବଶ୍ୟକ । ଅନ୍ୟ ପକ୍ଷରେ ଆମେରିକାର ପିତାମାତା ବିଶ୍ୱାସ କରନ୍ତି ଯେ ଶିଶୁ ସ୍ୱଭାବତଃ ନିଷ୍କ୍ରିୟ, ସୁତରାଂ ଶିଶୁମାନଙ୍କୁ ସକ୍ରିୟ କରିବାର ଉଦ୍ୟମ କରି ସେମାନଙ୍କର ତତ୍ପରତା ବୃଦ୍ଧି କରିବା ପ୍ରୟୋଜନ ।

ଏହି ଦୁଇ ପୃଥକ୍ ବିଶ୍ୱାସର ଅନୁଗତ ହୋଇ ଭାରତୀୟ ଓ ଜାପାନୀ ବାପା ମା'ମାନେ ଏକ ପ୍ରକାର ଲାଳନ ପାଳନ ବ୍ୟବସ୍ଥା ଗ୍ରହଣ କରିବା ସ୍ଥଳେ ଆମେରିକାର ପିତାମାତା ପୃଥକ୍ ବ୍ୟବସ୍ଥା ଗ୍ରହଣ କରନ୍ତି । ଜାପାନୀ ଓ ଭାରତୀୟ ମା'ମାନେ ଅଳ୍ପବୟସର ଶିଶୁ ପାଖରେ ଶୁଅନ୍ତି ଏବଂ ଶିଶୁଟି କାନ୍ଦିଲା ମାତ୍ରେ ତାକୁ ଶାନ୍ତ କରିବାର ଚେଷ୍ଟା କରନ୍ତି । ଅନ୍ୟପକ୍ଷରେ ଯୁକ୍ତରାଷ୍ଟ୍ର ଆମେରିକାରେ ଶିଶୁ ପିତାମାତାଙ୍କ ଠାରୁ ଭିନ୍ନ ଏକ କୋଠରୀରେ ଶୁଏ । ଶିଶୁଟି କାନ୍ଦିଲା ମାତ୍ରେ ପିତାମାତା ସହାୟତା ଦେଇ ନଥାନ୍ତି । କେବଳ ଅଥୟ ହୋଇ କାନ୍ଦିଲେ ଶାନ୍ତ କରିବାର ଚେଷ୍ଟା କରନ୍ତି ।

## ସହାୟକ ପରାମର୍ଶ

୧. ଶିଶୁ ବ୍ୟବହାର ପରିବର୍ତ୍ତନ କଲାବେଳେ ପ୍ରୋତ୍ସାହନର ବ୍ୟବସ୍ଥା, ପ୍ରୋତ୍ସାହନର ଅପସାରଣ ଓ ଶାନ୍ତିବିଧାନର ପୃଥକ୍ ପୃଥକ୍ ଭୂମିକା ବୁଝିବାକୁ ଚେଷ୍ଟା କରନ୍ତୁ ଏବଂ ପ୍ରତ୍ୟେକଟିର ବିଚାରଶୀଳ ଭାବରେ ପ୍ରୟୋଗ କରନ୍ତୁ ।

୨. ଶିଶୁର ଉପଯୋଗୀ (ଯଥା–ସ୍ମିତହସ) ବ୍ୟବହାର ଗଠନ ସମୟରେ ପୁରସ୍କାର ବା ପ୍ରୋତ୍ସାହନର ଅଧିକ ବ୍ୟବହାର କରନ୍ତୁ ।

୩. ଅବାଞ୍ଛନୀୟ ବ୍ୟବହାର ପରିବର୍ତ୍ତନ ସମୟରେ ପ୍ରୋତ୍ସାହନ ଅପସାରଣ (Withdrawal of reward) ପ୍ରୟୋଗ କରନ୍ତୁ । ଶିଶୁକୁ କେତେକ ସୁବିଧା ସୁଯୋଗରୁ ବଞ୍ଚିତ କରି (ଯଥା–ମା କହିବେ "ହାତ ନ ଧୋଇ ଖାଇ ବସିଲେ ମୋ ସହିତ ଖାଇବୁ ନାହିଁ") ଶିଶୁ ବ୍ୟବହାରର ପରିବର୍ତ୍ତନ ସମ୍ଭବ ।

୪. କେବଳ ସ୍ଥଳ ବିଶେଷରେ ଶାସ୍ତିବିଧାନ କରାଯାଇପାରେ । ମାତ୍ର ଏ କ୍ଷେତ୍ରରେ ବର୍ଣ୍ଣନାରେ ଦିଆଯାଇଥିବା ସର୍ତ୍ତକତାସବୁ ଅବଲମ୍ବନ କରିବାକୁ ହେବ ।

୫. ଶିଶୁ ବିକାଶ ପାଇଁ ଉପଯୋଗୀ ଶୈଳୀର ପ୍ରୟୋଗ କଲାବେଳେ ମନେରଖିବାକୁ ହେବ ଯେ ପ୍ରଭୁତ୍ୱମୁଖୀ ଶୈଳୀରେ ଶିଶୁକୁ ଆଦୌ ସ୍ୱାଧୀନତା ନ ଦେଇ ସବୁବେଳେ କଠୋରଭାବରେ ନିୟନ୍ତ୍ରଣ କରିବା ଯେପରି କ୍ଷତିକାରକ, ସର୍ବଅନୁମୋଦନ ଶୈଳୀରେ ଶିଶୁକୁ ପୂରାପୂରି ଛାଡ଼ିଦେବା ମଧ୍ୟ ସେପରି କ୍ଷତିକାରକ ।

୬. ସମନ୍ୱୟ ରକ୍ଷାକରି ଶିଶୁକୁ ସ୍ୱାଧୀନତା ଦିଅନ୍ତୁ ଓ ସ୍ଥଳ ବିଶେଷରେ ନିୟନ୍ତ୍ରଣ କରି ଶିଶୁର ପରିସୀମତ୍ୱ (Limitation) ଜାଣିବାକୁ ସୁଯୋଗ ଦିଅନ୍ତୁ । ଏପରି ଗୁରୁତ୍ୱମୁଖୀ ଶୈଳୀ ଖୁବ୍ ଉପଯୋଗୀ ।

୭. କିପରି ବିକାଶ ପ୍ରକୃତରେ ଭଲ, ତାହା ସମୟ ଓ ସାମାଜିକ ସାଂସ୍କୃତିକ ପରିପ୍ରେକ୍ଷୀ ଉପରେ ନିର୍ଭର କରେ । ଉଦାହାରଣ ସ୍ୱରୂପ କୁହାଯାଇପାରେ ଯେ ଅତୀତରେ ଗୋଟିଏ ଶିଶୁକୁ ସେ ଭବିଷ୍ୟତରେ "ଭଲ ପୁରୁଷ" ବା "ଭଲ ନାରୀ"ଟି ହେବା ଭଳି ତାଲିମ ଦିଆଯାଉଥିବା ସ୍ଥଳେ ବର୍ତ୍ତମାନ ସେ ଯେପରି ଭବିଷ୍ୟତରେ ଜଣେ "ଭଲ ବ୍ୟକ୍ତି" ହୋଇପାରିବ, ତାହା ଉପରେ ଗୁରୁତ୍ୱ ଦିଆଯାଉଛି । ସେହିପରି ଅନ୍ୟ ସଂସ୍କୃତିରେ "ଚଞ୍ଚଳ" ପ୍ରକୃତିର ଶିଶୁ ଉତ୍ତମ ଶିଶୁରୂପେ ବିବେଚିତ ହେଲେ ମଧ୍ୟ ଆମ ଦେଶରେ ଏହା ଗ୍ରହଣୀୟ ନୁହେଁ । ସୁତରାଂ ଉତ୍ତମ ବିକାଶ ପାଇଁ ସମୟ ଓ ସଂସ୍କୃତିକୁ ବିଚାରକୁ ନେବାକୁ ପଡ଼ିବ ।

ଅବଶ୍ୟ ଏପରି ସାମାଜିକ ସାଂସ୍କୃତିକ ଭିନ୍ନତା ସତ୍ତ୍ୱେ ଶିଶୁର ବିକାଶରେ ସମାନ ସମାନ ଅଭିବୃଦ୍ଧି ଦେଖାଯାଏ । ଅନ୍ୟ ଭାଷାରେ କହିଲେ ଏପରି ପୃଥକ୍ ପାଳନ ବ୍ୟବସ୍ଥା

ଫଳରେ ହୁଏତ ଭାରତୀୟ ଓ ଜାପାନୀ ଶିଶୁ ଅଧିକ ସ୍ଥିର ଓ ଅଜ୍ଞାଧୀନ ହେବାସ୍ଥଳେ ଆମେରିକାର ଶିଶୁ ଚଞ୍ଚଳ ପ୍ରକୃତିର ହୋଇଥାଏ । କିନ୍ତୁ ଅନ୍ୟ ସବୁ ଉପାଦାନ ସମାନ ଥିଲେ ଭାରତୀୟ, ଜାପାନୀ ଓ ଆମେରିକାର ଶିଶୁମାନଙ୍କର ଭାଷାଗତ ବିକାଶ, ଯୁକ୍ତିଯୁକ୍ତ ବିଚାର ଧାରାର ଉନ୍ମେଷ ଓ ବିକାଶ ସମପରିମାଣରେ ଘଟିଥାଏ ।

ନିର୍ଦ୍ଦିଷ୍ଟ ଦେଶ ବା ଗୋଷ୍ଠୀର ଯେପରି ନିଜସ୍ୱ ବିଚାର ରହିଛି, ସମୟର ମଧ୍ୟ ସେପରି ଏକ ଭୂମିକା ରହିଛି । ବିଶେଷତଃ ପ୍ରଗତିଶୀଳ କୁହାଯାଉଥିବା ପାଶ୍ଚାତ୍ୟ ଦେଶମାନଙ୍କରେ ଶିଶୁପାଳନ ସମ୍ପର୍କୀୟ ବିଚାରଧାରା ପରିବର୍ତ୍ତିତ ହୋଇଛି ।

ଯୁକ୍ତରାଷ୍ଟ୍ର ଆମେରିକା କଥା ବିଚାର କରାଯାଉ । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଉପଯୋଗୀ ଶିଶୁ ପାଳନ ପାଇଁ ମା'ମାନଙ୍କୁ ଦିଆଯାଉଥିବା ମାର୍ଗଦର୍ଶନକାରୀ ପୁସ୍ତିକାରେ ସ୍ପଷ୍ଟଭାବେ ଉଲ୍ଲେଖ କରାଯାଇଥିଲା ଯେ ଶିଶୁମାନଙ୍କର ସ୍ନାୟୁମଣ୍ଡଳ ଅତି ସୂକ୍ଷ୍ମ ଓ କୋମଳ ହୋଇଥିବାରୁ ଶିଶୁମାନଙ୍କୁ ଉଚ୍ଚକିତ (stimulate) କରିବା ଅନୁଚିତ । ୧୯୭୯ ମସିହାରେ ଏହି ସରକାରୀ ନୀତିର ପରିବର୍ତ୍ତନ କରାଯାଇ ଶିଶୁମାନଙ୍କୁ ଉଚ୍ଚକିତ କରିବା ପାଇଁ ପରାମର୍ଶ ଦିଆଗଲା । ପୁଣି ସେହି ବିଶ୍ୱଯୁଦ୍ଧ ସମୟରେ ମା'ମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ଯେ ଶିଶୁଟି କାନ୍ଦିବା ମାତ୍ରେ ତା'କୁ ସ୍ପର୍ଶକରିବା ଏବଂ ଖାଇବାକୁ ଦେବା ଠିକ୍ ହେବ ନାହିଁ । ଏହାଦ୍ୱାରା ଶିଶୁର ନିର୍ଭରଶୀଳତା ବୃଦ୍ଧି ପାଇବ । ତାହାର କିଛି ବର୍ଷ ପରେ ପୁନଶ୍ଚ ପରିବର୍ତ୍ତନ କରାଯାଇ ଶିଶୁମନରେ ସୁରକ୍ଷା ଭାବର ସଞ୍ଚାର ଓ ବିକାଶ ପାଇଁ ଶିଶୁଟି କାନ୍ଦିଲେ ତାକୁ ସ୍ପର୍ଶ କରିବା ଏବଂ ଏପରିକି ଶିଶୁ ପାଖରେ ଶୋଇବା ଉଚିତ ହେବ ବୋଲି କୁହାଗଲା । ବିଶ୍ୱଯୁଦ୍ଧ ସମୟରେ ଏବଂ ତାହାର ପୂର୍ବରୁ ଆମେରିକାର ବାପା ମା'ମାନେ ଶିଶୁଟିକୁ ଏକ ବର୍ଷ ବୟସ ନ ହେବା ପୂର୍ବରୁ ଶୌଚାଗାରର ବ୍ୟବହାର ଶିକ୍ଷା ଦେଉଥିଲେ । ମାତ୍ର ଏହାର ଅର୍ଦ୍ଧଶତାବ୍ଦୀ ପରେ ପରାମର୍ଶ ଦିଆଗଲା ଯେ ଶିଶୁଟିକୁ ଦେଢ଼ ବର୍ଷ ନ ହେବା ପୂର୍ବରୁ ଏପରି ବଳପୂର୍ବକ ଶିକ୍ଷା ଶିଶୁଟି ପାଇଁ ଅହିତକର ହେବ ଏବଂ ଶିଶୁର ଆବେଗିକ ବିକାଶରେ ବାଧା ସୃଷ୍ଟିକରିବ । ସେହିପରି "ବୃଦ୍ଧଆଙ୍ଗୁଳିଟି ଚୁଷିବା" ବାଧା ଦିଆଯାଉଥିଲା ମାତ୍ର ପରେ ଶିଶୁଟି ଏପରି କଲେ କ୍ଷତି ନାହିଁ ବୋଲି କୁହାଗଲା ।

ସ୍ଥୂଳତଃ ଦେଶ ଓ କାଳ ଭେଦରେ ଶିଶୁପାଳନର କିଛିଟା ଆଭିମୁଖ୍ୟ ପରିବର୍ତ୍ତିତ ହୋଇଛି ଏବଂ ହେଉଛି । ତଥାପି ଏସବୁ ମଧ୍ୟରେ ମୁଖ୍ୟ ଧାରା ଓ ତାହାର ଫଳାଫଳ ଜାଣିବା ସମ୍ଭବ ହୋଇଛି ।

# ଦ୍ୱିତୀୟ ଭାଗ

## ଶାରୀରିକ ପରିବର୍ତ୍ତନ

ବିଦ୍ୟାଳୟର ଦୈନିକ କାର୍ଯ୍ୟଶେଷରେ ଘଣ୍ଟା ବାଜିବା ସମୟରେ ଜଣେ ଦର୍ଶକ ଫାଟକ ପାଖରେ ଠିଆହୋଇ ପିଲାମାନଙ୍କର ବାହାରି ଆସିବାକୁ ଲକ୍ଷ୍ୟ କରିପାରେ । ଦେଖାଯିବ ଯେ କେତେକ ବାଳକ ବାଳିକା କ୍ଷୀଣକାୟ ହେବା ସ୍ଥଳେ ଅନ୍ୟମାନେ ସାଧାରଣ ସ୍ୱାସ୍ଥ୍ୟର ଅଧିକାରୀ । କେହି କେହି ପୁଣି ବେଶ୍ ପୃଥୁଳକାୟ । କେତେକ ପିଲା ଖର୍ବକାୟ ହେବା ସ୍ଥଳେ ଅନ୍ୟମାନେ ଦୀର୍ଘକାୟ । କେତେକ ପିଲାଙ୍କର ଗତି ମନ୍ଥର ହେବା ସ୍ଥଳେ ଅନ୍ୟମାନଙ୍କର ଗତି ପ୍ରଖର । ପୁଣି କେତେକ ଛାତ୍ରଛାତ୍ରୀ ନିଜ ନିଜର ଘରକୁ ଯାଇ ଅଳ୍ପ ସମୟ ମଧ୍ୟରେ ବାହାରି ଆସନ୍ତି । ଖେଳ, ଦୌଡ଼ାଦୌଡ଼ି ଏବଂ କସରତ୍ କରି ଅପରାହ୍ନଟି କଟାଇ ଦିଅନ୍ତି । ଅନ୍ୟ ପକ୍ଷରେ ଆଉ କେତେକ ଛାତ୍ରଛାତ୍ରୀ କ୍ଳାନ୍ତ ଅନୁଭବ କରି ଘରେ ରହିଯାଆନ୍ତି ଏବଂ ଦୂରଦର୍ଶନର କାର୍ଯ୍ୟକ୍ରମ ଦେଖି ସମୟ ଅତିବାହିତ କରନ୍ତି । ଛ' ବର୍ଷରୁ ବାର ବର୍ଷ ବୟସର ଏହି ବାଳକ ବାଳିକାମାନଙ୍କର ବହୁ ବିଭିନ୍ନତା ସତ୍ତ୍ୱେ ସେମାନଙ୍କର ଶାରୀରିକ ପରିବର୍ତ୍ତନର କେତୋଟି ବୈଶିଷ୍ଟ୍ୟ ଦୃଷ୍ଟିଗୋଚର ହୁଏ । ମାନସିକ ଓ ଶାରୀରିକ ବିକାଶ ମଧ୍ୟରେ ନିବିଡ଼ ସମ୍ପର୍କ ଥିବାରୁ ଦୈହିକ ପରିବର୍ତ୍ତନର ଗତି ଓ ପ୍ରକୃତିକୁ ଅନୁଧ୍ୟାନ କରିବାକୁ ହୁଏ ।

ବାଳକ ବାଳିକାମାନଙ୍କର ଶରୀରର ଦ୍ରୁତ ପରିବର୍ତ୍ତନ ଘଟେ । ପ୍ରତି ବର୍ଷ ସେମାନଙ୍କର ଓଜନ ପ୍ରାୟ ୨ରୁ ୩ କିଲୋଗ୍ରାମ ପର୍ଯ୍ୟନ୍ତ ବୃଦ୍ଧି ପାଇବାକୁ ଲାଗେ । ଉଚ୍ଚତା ମଧ୍ୟ ପ୍ରତିବର୍ଷ ପ୍ରାୟ ପାଞ୍ଚ ସାତ ସେଣ୍ଟିମିଟର ବଢ଼ିଥାଏ । ଏପରି ବୃଦ୍ଧି ବାଳିକାମାନଙ୍କର ପ୍ରାୟ ଦଶବର୍ଷ ବୟସ ପର୍ଯ୍ୟନ୍ତ ଚାଲିଥାଏ । ଏହି ବୟସରେ ସେମାନେ ବାଳକମାନଙ୍କ ତୁଳନାରେ କିଛି ଅଧିକ ଡେଙ୍ଗା ଓ ଭାରୀ ହେବାର ଲକ୍ଷ୍ୟ କରାଯାଏ । ଦଶବର୍ଷ ପରେ ବାଳିକାମାନଙ୍କର ଶାରୀରିକ ଅଭିବୃଦ୍ଧି ବାଳକମାନଙ୍କ ତୁଳନାରେ କିଛି କମିଯାଏ । ଫଳରେ ବାର ତେର ବର୍ଷର ବୟସ ବେଳକୁ ବାଳକମାନେ ବାଳିକାମାନଙ୍କଠାରୁ ଅଧିକ ଭାରୀ ଓ ଡେଙ୍ଗା ହେବାର ଲକ୍ଷ୍ୟ କରାଯାଏ ।

ସଂସ୍କୃତି ଭେଦରେ ଖର୍ବାକୃତି ଦୀର୍ଘାକୃତି ଶରୀରର ତାରତମ୍ୟ ଲକ୍ଷ୍ୟ କରାଯାଇଛି । ବିଭିନ୍ନ ଦେଶର ଆଠବର୍ଷ ବୟସର ବାଳକ ବାଳିକାମାନଙ୍କର. ଉଚ୍ଚତାର ମାପ ନିଆଯାଇ ସବୁଠାରୁ କମ୍ ଏବଂ ସବୁଠାରୁ ବେଶୀ ଉଚ୍ଚତା ମଧ୍ୟରେ ପ୍ରାୟ ବାଇଶି.ତେଇଶି ସେଣ୍ଟିମିଟରର ତାରତମ୍ୟ ସୂଚିତ ହୋଇଛି । ଦକ୍ଷିଣପୂର୍ବ ଏସିଆ (ଚୀନା, ଜାପାନ, କୋରିଆ ଇତ୍ୟାଦି) ଏବଂ ଲାଟିନ୍ ଆମେରିକାର ପିଲାମାନେ ସାଧାରଣତଃ ଖର୍ବକାୟ । ଅନ୍ୟ ପକ୍ଷରେ ଇଉରୋପୀୟ ଏବଂ ଆମେରିକାର ଶିଶୁମାନେ ଦୀର୍ଘକାୟ ।

ପୁଷ୍ଟିକର ଖାଦ୍ୟ ଶାରୀରିକ ବିକାଶକୁ ପ୍ରଭାବିତ କରୁଥିବାରୁ ଏ ସମ୍ପର୍କରେ ସୂଚନା ଦେବା ଆବଶ୍ୟକ ମନେହୁଏ । ସ୍କୁଲକାର୍ଯ୍ୟ ଆରମ୍ଭ କରିଥିବା ଛାତ୍ରଛାତ୍ରୀମାନେ ଶକ୍ତି ଓ ସକ୍ରିୟତାର ଅଧିକାରୀହେବା ନିତାନ୍ତ ପ୍ରୟୋଜନ । ଏମାନେ ପ୍ରାୟ ୨୪୦୦ କ୍ୟାଲୋରୀ ଶକ୍ତି ଏବଂ ୩୪ ଗ୍ରାମର ପ୍ରୋଟିନ୍ ଆବଶ୍ୟକ କରନ୍ତି । ଆଳୁ ଏବଂ ଶସ୍ୟରେ ଥିବା ଜଟିଳ କାର୍ବୋହାଇଡ୍ରେଟ ଏମାନଙ୍କ ପାଇଁ ପ୍ରୟୋଜନ । ଅଧିକ ପରିମାଣର ମିଠାଠାରୁ ଦୂରେଇ ରହିବା ଭଲ କଥା ।

ପୁଷ୍ଟିସାର ଖାଦ୍ୟର ଅଭାବ ହେଲେ ଶାରୀରିକ ବିକାଶ ମନ୍ଥର ହୁଏ । ସାମାଜିକ ବ୍ୟବହାର କ୍ଷେତ୍ରରେ ମଧ୍ୟ ଏହାର କୁପ୍ରଭାବ ରହିଛି । ଦକ୍ଷିଣ ଆମେରିକାର ଗଉତମେଲା ଦେଶର ଛ'ବର୍ଷରୁ ଆଠ ବର୍ଷ ବୟସର ବାଳକ ବାଳିକାମାନଙ୍କୁ ନେଇ ଏକ ବଡ଼ ଧରଣର ଗବେଷଣା କରାଯାଇଥିଲା । ଏହି ପିଲାମାନଙ୍କ ମଧ୍ୟରୁ ଅର୍ଦ୍ଧେକ ପିଲାଙ୍କ ଖାଦ୍ୟଭାବ ପୂରଣ କରିବାପାଇଁ କିଛି ଅଧିକା କ୍ୟାଲୋରୀ ଏବଂ ଭିଟାମିନ୍ ଦିଆଗଲା । ଅନ୍ୟ ପିଲାମାନଙ୍କୁ ଏପରି କ୍ୟାଲୋରୀ ଏବଂ ଭିଟାମିନ୍ ବ୍ୟତୀତ ପ୍ରୋଟିନ୍ ମଧ୍ୟ ଦିଆଗଲା । ଦେଖାଗଲା, ଯେ ପ୍ରୋଟିନ୍‌ର ସୁଯୋଗ ପାଇ ନ ଥିବା ପିଲାମାନେ ନିଷ୍କ୍ରିୟତା, ଉଦ୍‌ବେଗ ଓ ନିର୍ଭରଶୀଳତା ଦର୍ଶାଉଛନ୍ତି । ଅନ୍ୟ ପକ୍ଷରେ ପ୍ରୋଟିନ୍ ଗ୍ରହଣ କରିଥିା ପିଲାମାନେ ସକ୍ରିୟତା, ଆନନ୍ଦ ଓ ପ୍ରୀତିପ୍ରଦ ସାମାଜିକ ବ୍ୟବହାର ଦର୍ଶାଉଛନ୍ତି । ବିଭିନ୍ନ ବିକାଶମୁଖୀ ରାଷ୍ଟ୍ରରେ ପୁଷ୍ଟିହୀନତା ଏବଂ ବୁଦ୍ଧିମତ୍ତାର ସମ୍ପର୍କ ବିଷୟରେ ଅନୁଧ୍ୟାନ କରାଯାଇଛି । ବୁଦ୍ଧିମତ୍ତାର ବିକାଶ କିପରି ଭାବରେ ପୁଷ୍ଟିହୀନତା ଫଳରେ ବିପର୍ଯ୍ୟସ୍ତ ହୁଏ, ତାହାର ପ୍ରାମାଣିକ ତଥ୍ୟ ସଂଗୃହୀତ ହୋଇଛି ।

ଛ'ବର୍ଷରୁ ବାର ବର୍ଷ ବୟସ ସୀମା ମଧ୍ୟରେ କେତେକ ଛୋଟ ଛୋଟ ସମସ୍ୟା ପିଲାମାନଙ୍କର ସାଧାରଣ ସ୍ୱାସ୍ଥ୍ୟହାନିର କାରଣ ହୁଏ । ଏଗୁଡ଼ିକ ପ୍ରତି ସତର୍କ ଓ ସଚେତନଶୀଳ ଦୃଷ୍ଟିଭଙ୍ଗୀ ଅନେକ ସମୟରେ ସମସ୍ୟା ସମାଧାନର ସହାୟକ ହୁଏ । ଏହି ବୟସରେ ଥଣ୍ଡା କାଶଜନିତ ଅସ୍ୱସ୍ତି ଏକ ସାଧାରଣ ସମସ୍ୟା । ପିଲାମାନେ ସ୍କୁଲ ଯାଉଥିବାରୁ ଏବଂ ଥଣ୍ଡା କାଶରେ ପୀଡ଼ିତ ସାଙ୍ଗସାଥୀମାନଙ୍କ ସହିତ ମୁକ୍ତ ଭାବରେ ମିଶାମିଶି ହେଉଥିବାରୁ ନିଃଶ୍ୱାସ ପ୍ରଶ୍ୱାସଜନିତ ଅସ୍ୱସ୍ତିର ଶରବ୍ୟ ହୁଅନ୍ତି ।ଅନେକ ସମୟରେ ବିନା ଔଷଧ ସେବନରେ ଏହା ଗୋଟିଏ ସପ୍ତାହରେ ଭଲ ହୋଇଥାଏ ।

ପୃଥୁଳତା ଅନ୍ୟ ଏକ ସମସ୍ୟା । ମାତ୍ରାଧିକ ମୋଟା ହୋଇଯିବା ଫଳରେ ପିଲାଟି ଉଦ୍‌ବେଗ ଅନୁଭବ କରେ । ସହଜରେ ଅନ୍ୟ ସହିତ ମିଶିପାରେ ନାହିଁ । ଅନ୍ୟମାନେ ମଧ୍ୟ ବନ୍ଧୁ ଓ ଖେଳସାଥୀ ରୂପେ ଗ୍ରହଣ କରିବାକୁ କୁଣ୍ଠାବୋଧ କରନ୍ତି । ବଂଶାନୁକ୍ରମିକତାର ପ୍ରଭାବ, ବ୍ୟାୟାମର ଅଭାବ ଏବଂ ତେଲ ଓ ଶର୍କରା ଜାତୀୟ ଖାଦ୍ୟ ଜଟିଳତା ସୃଷ୍ଟିକରେ । ଅନେକ ସମୟରେ ପିଲାମାନଙ୍କୁ ଉପଯୋଗୀ ତାଲିମ ଦେଇ ମେଦବୃଦ୍ଧି କମାଇବାର ଯୋଜନା ସଫଳ ହୋଇଥାଏ । କେଉଁ ସବୁ ଖାଦ୍ୟ ତା'ପାଇଁ ଅନୁପଯୋଗୀ, ସେ ବିଷୟରେ ପିଲାଙ୍କୁ କିଛି ଧାରଣା ଦିଆଯିବା ଆବଶ୍ୟକ । ମୋଟାମୋଟି ଭାବରେ ଶରୀରର ମେଦ ବହୁଳତାର ପରିମାଣ ମାପ କରିବାର କୌଶଳ ପିଲାଟି ଜାଣିବା ଉଚିତ । ସର୍ବୋପରି ଧୂମପାନ ଓ

ଏଣୁତେଣୁ ଅନିୟନ୍ତ୍ରିତ ଖାଦ୍ୟ ଖାଇବାର ବଦଭ୍ୟାସ ତ୍ୟାଗ କରିବାର ଦୃଢ଼ ମନୋବୃତ୍ତି ଗଠିତ ହେବା ପ୍ରୟୋଜନ । ଅତି ବେଶୀ ଆବଶ୍ୟକ ହେଲେ ଚିକିତ୍ସକଙ୍କ ପରାମର୍ଶ ମଧ୍ୟ ଗ୍ରହଣ କରାଯାଇପାରେ ।

ସାଧାରଣ ସ୍ୱାସ୍ଥ୍ୟରକ୍ଷାର ଅନ୍ୟତମ ପଦକ୍ଷେପ ସ୍ୱରୂପ ଦାନ୍ତ, ଚକ୍ଷୁ ଓ କର୍ଣ୍ଣର ଯତ୍ନନେବା ଆବଶ୍ୟକ ହୋଇଥାଏ । ପାନୀୟ ଜଳରେ ଫ୍ଲୋରାଇଡ଼ ଏବଂ ସ୍ଥଳ ବିଶେଷରେ ଫ୍ଲୋରାଇଡ୍ ବଟିକା ଦନ୍ତକ୍ଷୟର ନିୟନ୍ତ୍ରଣ କରେ । ବିଦ୍ୟାଳୟକୁ ଯିବା ଆରମ୍ଭ କରିବା ସମୟରେ ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କର ଚକ୍ଷୁ ପରୀକ୍ଷା କରାଯାଇ ବିହିତ ପଦକ୍ଷେପ ନିଆଯିବା ବିଜ୍ଞତାର କାର୍ଯ୍ୟହେବ । ସେହିପରି ପିଲାଙ୍କ ଶ୍ରବଣ ସାମର୍ଥ୍ୟର ଆକଳନ କରାଯାଇ ଆବଶ୍ୟକ ସ୍ଥଳେ ବିହିତ ପ୍ରତିକାର କରାଯିବ ।

## ସାଧାରଣ ସ୍ୱାସ୍ଥ୍ୟରକ୍ଷାର ବିଶେଷ ପରାମର୍ଶ

୧. *ଛ'ବର୍ଷରୁ ବାର ବର୍ଷ ବୟସ ମଧ୍ୟରେ ପିଲାମାନେ ଘରେ ଓ ବିଦ୍ୟାଳୟରେ ଯଥେଷ୍ଟ ସକ୍ରିୟତା ଦର୍ଶାନ୍ତି । ସେମାନଙ୍କୁ ସୁସ୍ଥ ଓ ରୋଗମୁକ୍ତ ରଖିବା ପାଇଁ ପୁଷ୍ଟିକର ଖାଦ୍ୟର ବନ୍ଦୋବସ୍ତ ଆବଶ୍ୟକ । ଏ ସ୍ତରରେ ଶିଶୁ ୨୪୦୦ କ୍ୟାଲୋରୀ ଶକ୍ତି, ୩୪ ଗ୍ରାମର ପ୍ରୋଟିନ୍ ଏବଂ ଆଳୁ ଓ ଅନ୍ୟାନ୍ୟ ଶସ୍ୟରେ ଥିବା ଜଟିଳ କାର୍ବୋହାଇଡ୍ରେଟ ଦରକାର କରେ । ମିଠାଜାତୀୟ ଖାଦ୍ୟର ପରିମାଣ ଯେତେ କମ୍ ହେବ, ସେତେ ଭଲ ।*

୨. *ମେଦବୃଦ୍ଧି (ପୃଥୁଳତା)ର ଶରବ୍ୟ ହେଉଥିବା ପିଲାମାନଙ୍କୁ ମେଦହ୍ରାସ ପାଇଁ ଉପଯୋଗୀ ତାଲିମ ଦିଅନ୍ତୁ । କେଉଁ ଖାଦ୍ୟ ତା ପାଇଁ ଉପଯୋଗୀ ଏବଂ କେଉଁ ଖାଦ୍ୟ ତାପାଇଁ ଅନୁପଯୋଗୀ, ତାହା ଚିହ୍ନଟ କରିବାର ବାଟ ବତାଇ ଦିଅନ୍ତୁ । ମୋଟା ମୋଟି ଭାବରେ ମେଦର ପରିମାଣ କଳନା କରିବାର ଉପାୟ ଜଣାଇ ଦିଅନ୍ତୁ । ଧୂମପାନ ଓ ମେଦବୃଦ୍ଧିକାରୀ ଅନାବନା ଖାଦ୍ୟ ଖାଇବାର ବଦଭ୍ୟାସ ଦୂରକରିବାର ମନୋବୃତ୍ତି ତା' ମଧ୍ୟରେ ଗଠନ କରନ୍ତୁ ।*

୩. *ବିଦ୍ୟାଳୟକୁ ଯିବା ଆରମ୍ଭ କରିବା ମାତ୍ରେ ପିଲାଟିର ଦାନ୍ତର ଅବସ୍ଥା, ଚକ୍ଷୁ ଓ ଶ୍ରବଣ ଶକ୍ତିର ସାମର୍ଥ୍ୟ ପରୀକ୍ଷା କରାନ୍ତୁ । ଆବଶ୍ୟକ ସ୍ଥଳେ ବିଶେଷଜ୍ଞଙ୍କ ପରାମର୍ଶ ଅନୁଯାୟୀ ବିହିତ ପଦକ୍ଷେପ ଗ୍ରହଣ କରନ୍ତୁ ।*

# ଶାରୀରିକ କୌଶଳର ପ୍ରୟୋଗ

ପ୍ରାକ୍-ବିଦ୍ୟାଳୟ ସ୍ତର ଅତିକ୍ରମ କରି ଶିଶୁ ସ୍କୁଲରେ ପ୍ରବେଶ କରିବା ସମୟରେ ଶାରୀରିକ ବିକାଶ ଏକ ନୂଆ ମୋଡ଼ ନିଏ । ଛ' ବର୍ଷରୁ ବାରବର୍ଷ ବୟସ ମଧ୍ୟରେ କେତେକ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟେ । ଅସ୍ଥିଖଣ୍ଡା ଓ ମାଂସପେଶୀର ବିକାଶ ଘଟେ । ପୂର୍ବ ତୁଳନାରେ ହାତଗୋଡ଼ କାରକ ଅଙ୍ଗସବୁ (Motor Organs) ଅଧିକ ସକ୍ରିୟତା ଓ ସମନ୍ୱୟ (Coordination) ଦର୍ଶାନ୍ତି । ତିନିବର୍ଷ ବୟସ ସୀମାରେ ରହିଥିବା ଶିଶୁମାନଙ୍କ ମଧ୍ୟରୁ ୧୦୦୦ରୁ ଜଣେ ମାତ୍ର ଶିଶୁ ଟେନିସ୍ ବଲ୍‌ଟିକୁ ନେଟ୍‌କୁ ପକାଇପାରେ । ମାତ୍ର ଦଶ ଏଗାର ବର୍ଷ ବୟସ ବେଳକୁ ଅଧିକାଂଶ ପିଲା ଏ କାର୍ଯ୍ୟ କରିପାରନ୍ତି । ଦୌଡ଼ିବା,ଡେଇଁବା ଏବଂ ସାଇକେଲ୍ ଚଳାଇବା ପରି କାର୍ଯ୍ୟସବୁ ଅକ୍ଳେଶରେ କରିପାରନ୍ତି ।

ଅବଶ୍ୟ ଶାରୀରିକ କୌଶଳ କ୍ଷେତ୍ରରେ ବାଳକ ବାଳିକମାନଙ୍କ ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ସାତବର୍ଷରୁ ବାରବର୍ଷ ବୟସ ସୀମାରେଖା ମଧ୍ୟରେ ବାଳକମାନେ ବାଳିକାମାନଙ୍କ ତୁଳନାରେ ଅଧିକ ବେଗରେ ଦୌଡ଼ିପାରନ୍ତି, ଅଧିକ ଉଚ୍ଚକୁ ଡ଼େଇଁ ପାରନ୍ତି ଏବଂ ଅଧିକ ଶକ୍ତିପ୍ରୟୋଗ କରି ବେଶୀ ଦୂରକୁ ଫୋପାଡ଼ି ପାରନ୍ତି । ତେରବର୍ଷ ବୟସ ବେଳକୁ ବାଳକ ବାଳିକା ମଧ୍ୟରେ ବ୍ୟବଧାନ ବୃଦ୍ଧିପାଏ । ବାଳକମାନେ ଅଧିକ ବେଗରେ ଶାରୀରିକ ବିକାଶ ଦର୍ଶାନ୍ତ । ବାଳିକାମାନଙ୍କର ଶାରୀରିକ କୌଶଳ ସେହି ସ୍ତରରେ ରହିଥାଏ କିମ୍ବା କମିବାକୁ ଲାଗେ ।

ବାଳକ ବାଳିକା ମଧ୍ୟରେ ବ୍ୟବଧାନ ବୃଦ୍ଧି ପାଇବାର ମୁଖ୍ୟ କାରଣ ହେଉଛି, ସାମାଜିକ ପ୍ରତ୍ୟାଶା ଏବଂ ଶାରୀରିକ କ୍ରୀଡ଼ାରେ ଅଂଶଗ୍ରହଣ କରିବାର ଭିନ୍ନ ଭିନ୍ନ ଅବସ୍ଥା । ସାଧାରଣତଃ ବାଳକମାନଙ୍କୁ କଠିନ ଓ ଶକ୍ତ ଖେଳସବୁର ସୁଯୋଗ ଦିଆଯିବା ସ୍ଥଳେ ବାଳିକାମାନଙ୍କୁ ସୌଖୀନ ଖେଳସବୁର ସୁଯୋଗ ଦିଆଯାଏ । ଗୋଟିଏ ସର୍ବେକ୍ଷଣରୁ ବାଳକ ଓ ବାଳିକାମାନଙ୍କୁ ଏକ ବର୍ଷଧରି ସମାନ ପ୍ରକାର ଖେଳ କସରତ ତାଲିମ ଦିଆଗଲା । ଗୋଟିଏ ବର୍ଷ ପରେ ସେମାନଙ୍କର ସାମର୍ଥ୍ୟର ଆକଳନ କରାଗଲା । ଦେଖାଗଲା ଯେ ଦୌଡ଼ିବା, ବସ୍‌ଉଠ୍ ଏବଂ ଏହିସବୁ ପ୍ରତିଯୋଗିତାରେ ସେମାନେ ପ୍ରାୟତଃ ସମାନସ୍ତରର ଦକ୍ଷତା ଦର୍ଶାଇଛନ୍ତି । ଏ ଦୃଷ୍ଟିରୁ କୈଶୋର ଅବସ୍ଥା ନ ଆସିବା ପର୍ଯ୍ୟନ୍ତ ବାଳକ ବାଳିକାମାନଙ୍କୁ ଏକତ୍ର ଖେଳାଖେଳିର ସୁଯୋଗ ଦେବାର ବିଶେଷ ବାଧା ନାହିଁ ବୋଲି ବିଶେଷଜ୍ଞମାନେ ମତବ୍ୟକ୍ତ କରନ୍ତି । ମାତ୍ର କୈଶୋର ଅବସ୍ଥା ଆସିବା ପରେ ବାଳକମାନେ ଅପେକ୍ଷାକୃତ ଅଧିକ ଭାରୀ ଓ ତୀବ୍ର ହୋଇଥିବାରୁ ଏକତ୍ର ଖେଳାଖେଳିରେ ବାଳିକାମାନେ ଆଘାତପ୍ରାପ୍ତ ହେବାର ଆଶଙ୍କା ରହିଥାଏ । ଏ ଦୃଷ୍ଟିରୁ ଖେଳସବୁର ପୃଥକୀକୃତ ବ୍ୟବସ୍ଥା ଗ୍ରହଣୀୟ ମନେହୁଏ ।

ସ୍କୁଲ ଜୀବନର ଆଦ୍ୟ ସୋପାନରେ ରହିଥିବା ପିଲାମାନେ ସକ୍ରିୟ, ମାତ୍ର ଧୈର୍ଯ୍ୟର ପରିମାଣ ଖୁବ୍ ବେଶୀ ନୁହେଁ । ଦୀର୍ଘ ସମୟ ଧରି ଗୋଟିଏ ସ୍ଥାନରେ ବସିରହିବା ଫଳରେ ସେମାନେ କ୍ଳାନ୍ତି ଅନୁଭବ କରନ୍ତି । ଦୌଡ଼ିବା, ଡେ଼ଇଁବା ଏବଂ ସାଇକେଲ ଚଳାଇବାରେ ଅଧିକ ଆନନ୍ଦ ଅନୁଭବ କରନ୍ତି । ସୁତରାଂ ସକ୍ରିୟତାହୀନ କାମ ସବୁ ନଦେଇ ସକ୍ରିୟତା ଭରପୂର କାମସବୁ ସେମାନଙ୍କ ଉପରେ ନ୍ୟସ୍ତକରିବା ବିଜ୍ଞତା ହେବ ।

ଏ ସମୟରେ ମସ୍ତିଷ୍କର କେନ୍ଦ୍ରୀୟ ସ୍ନାୟୁମଣ୍ଡଳର କେତେକ ପରିବର୍ତ୍ତନ ସେମାନଙ୍କ ଅଙ୍ଗପ୍ରତ୍ୟଙ୍ଗକୁ ଚଞ୍ଚଳ କରେ । ବିଶେଷତଃ ହାତ ଦୁଇଟି ପ୍ରଖର ଓ ସଚଳ ହୁଏ । ଛ'ବର୍ଷର ପିଲାଟି ହାତୁଡ଼ି ଧରି ଏହାର ବ୍ୟବହାର କରିପାରେ । କାଗଜକୁ ଠିକ୍‌ଭାବେ କାଟି ଅନ୍ୟସ୍ଥାନରେ ଅଠାଦେଇ ଲଗାଇ ପାରନ୍ତି । ଜୋତାର ଫିତା ବାନ୍ଧିପାରନ୍ତି । ହାତରେ ଅନେକଗୁଡ଼ିଏ କାର୍ଯ୍ୟ କୁଶଳତାର ସହିତ କରିପାରନ୍ତି । ସାତବର୍ଷ ବୟସ ବେଳକୁ ହାତର ଗତି ଅଧିକ ସମନ୍ୱିତ ହୁଏ । ଠିକ୍‌ରୂପେ ପେନ୍‌ସିଲ୍ ବ୍ୟବହାର କରନ୍ତି । ଆଠବର୍ଷରୁ ଦଶବର୍ଷ ବୟସ ବେଳକୁ ହାତର ଗତି ଉପରେ ଅଧିକ ନିୟନ୍ତ୍ରଣ ଆସେ । ଲେଖା ଅକ୍ଷରର ଆକାର ଛୋଟ ହୁଏ । ଦଶବାର ବର୍ଷ ବେଳକୁ ସୂକ୍ଷ୍ମ ଧରଣର ହସ୍ତକର୍ମ ସମ୍ଭବ ହୁଏ । ଏପରି ଦକ୍ଷତା ଯୁବକ ଯୁବତୀମାନ୍‌ମାଙ୍କର ଦକ୍ଷତା ସହିତ ପ୍ରାୟ ସମପର୍ଯ୍ୟାୟଭୁକ୍ତ । ସୂକ୍ଷ୍ମ ହସ୍ତକର୍ମରେ ବାଳିକାମାନେ ବାଳକମାନଙ୍କ ଅପେକ୍ଷା ଅଧିକ କୁଶଳତା ପ୍ରଦର୍ଶନ କରନ୍ତି ।

ସ୍କୁଲଜୀବନର ଆଦ୍ୟ ଭାଗରେ ଖେଳକୁଦ ପାଇଁ ଯେଉଁ ଆଗ୍ରହ ଜନ୍ମେ, ତାହାର ମନସ୍ତାତ୍ତ୍ୱିକ ପ୍ରଭାବ ସୁଦୂରପ୍ରସାରୀ । ପ୍ରଥମତଃ ଏପରି ଶାରୀରିକି ବିକାଶ ପିଲାମନରେ ଲକ୍ଷ୍ୟସାଧନମୁଖୀ ମନୋଭାବ (Achievement Orientation) ଗଠନ କରେ । ଅନେକ ସ୍ଥଳରେ ସେ କାର୍ଯ୍ୟକୁଶଳତାର ମାନ (Standard) ସମ୍ପର୍କରେ ପରିଚିତ ହୁଏ । ଫୁଟବଲ୍ ଖେଳିବା ସମୟରେ ଗୋଲ୍ ଦେବାର ଲକ୍ଷ୍ୟ ତା ମନରେ "ଲକ୍ଷ୍ୟ" ସମ୍ପର୍କରେ ଏକ ସ୍ପଷ୍ଟ ଧାରଣା ଦିଏ । ଦୌଡ଼ିବା ସମୟରେ ସେ କେତେଦୂର ଦୌଡ଼ିପାରୁଛି ଏବଂ କେତେ ସମୟରେ ଦୌଡ଼ିପାରୁଛି, ତାହାର ପରିମାଣ ଦେଖି ନିଜ ସଫଳତାର ମାପ (Standard)ଜାଣେ । ଏହାକୁ ନିଜର ଅତୀତର ସଫଳତାର ମାନ, ନିଜ ସାଙ୍ଗସାଥୀମାଂନଙ୍କର ସଫଳତାର ସ୍ତର ଏବଂ ବିଭିନ୍ନ ପ୍ରତିଯୋଗିତାରେ ସଫଳ ହୋଇଥିବା ପ୍ରତିଯୋଗୀମାନଙ୍କର "ମାନ" ସହିତ ତୁଳନା କରେ । ଏପରି ତୁଳନା ତା ମନରେ ଠିକ୍ ନିର୍ଦ୍ଦିଷ୍ଟ ଧାରଣା ସୃଷ୍ଟିକରେ । ଅଧିକ ସଫଳ ହେବା ପାଇଁ ତା' ମନରେ ଅଭିପ୍ରେରଣା (Motivation) ଆସେ ।

ଅନେକଗୁଡ଼ିଏ ଖେଳ କସରତ୍ ଦଳଗତ ହୋଇଥିବାରୁ ସେ ଦଳଗତ ସହଯୋଗ ସମ୍ପର୍କରେ ମଧ୍ୟ ଧାରଣା ଗଠନ କରେ । ଅନ୍ୟମାନଙ୍କ ସହିତ କିପରି ସହଯୋଗ କରିବାକୁ ହୁଏ, ତାହା ଶିକ୍ଷାକରେ । ଅବଶ୍ୟ ଏ କ୍ଷେତ୍ରରେ କିଛିଟା ଜଟିଳତା ମଧ୍ୟ ରହିଛି । ଦଳଗତ କ୍ରୀଡ଼ାର ବିଜୟ ଲାଭ କରିବାର ସୁଯୋଗ ପାଇଲେ ତାହାର ସହଯୋଗୀ ମନୋଭାବ ଦୃଢ଼ ହୁଏ. । ମାତ୍ର ବିଫଳତାର ସମ୍ମୁଖୀନ ହେଲେ ଅଧିକାଂଶ ପିଲାଙ୍କର ପରିପକ୍ୱତା ଆସି ନଥିବାରୁ ସେମାନେ କେତେକ ଅନୁପଯୋଗୀ ମନୋବୃତ୍ତିର ଶରବ୍ୟ ହୁଅନ୍ତି । କେତେକ ପିଲା

ସେମାନଙ୍କର ଦୃଢ଼ ପ୍ରତିଯୋଗୀ ମନୋଭାବକୁ ଜଳାଞ୍ଜଳି ଦେଇ ପରବର୍ତ୍ତୀ ପର୍ଯ୍ୟାୟରେ କେବଳ ଖାମ୍‌ଖେୟାଲୀ ଭାବରେ ଖେଳାଖେଳି କରନ୍ତି । ନିଜ ପାଖରେ ଯୁକ୍ତି କରନ୍ତି ଯେ, ସେମାନେ ଜିତିବା ପାଇଁ ଖେଳୁ ନାହାନ୍ତି କେବଳ ଖେଳରୁ ଆନନ୍ଦ ପାଇବା ପାଇଁ ଖେଳୁଛନ୍ତି । ଅନ୍ୟ କେତେକ ପିଲା ପରାଜୟ ପାଇଁ ଅନ୍ୟମାନଙ୍କୁ ଦୋଷାରୋପ କରନ୍ତି । ଅନ୍ୟର ଦୋଷଦେଖିବା ଏମାନଙ୍କର ଏକ ଚିରାଚରିତ ଅଭ୍ୟାସର ରୂପ ନେଇପାରେ । ପୁଣି ଅନ୍ୟ କେତେକ ପିଲା ପ୍ରତିଦ୍ୱନ୍ଦ୍ୱିତାପୂର୍ଣ୍ଣ ଖେଳକୁଦ ଛାଡ଼ିଦେଇ ଅନ୍ୟସବୁ ସକ୍ରିୟତାହୀନ ଖେଳ ଆବୋରି ନିଅନ୍ତି । ମୋଟ ଉପରେ ପିଲାଟି ଖେଳିବା ସମୟରେ ହାରଜିତ୍‌କୁ ଯେପରି ଉପଯୋଗୀ ଦୃଷ୍ଟିକୋଣରୁ ଗ୍ରହଣ କରେ, ସେହିପରି ପିତାମାତା ଓ ଶିକ୍ଷକ ଶିକ୍ଷୟତ୍ରୀ ଯତ୍ନନେବା ଉଚିତ ହେବ ।

## ସ୍କୁଲ ଜୀବନର ଆଦ୍ୟଭାଗରେ ଶରୀର-କୌଶଳର ସଂକେତ ସ୍ତମ୍ଭ

| ବୟସ | ଶାରୀରିକ କୌଶଳ |
|---|---|
| ଛ'ବର୍ଷ | ବାଳିକାମାନେ ଗତିରେ ଅପେକ୍ଷାକୃତ ଅଧିକ ନିର୍ଭୁଲ, ବାଳକମାନେ ଅପେକ୍ଷାକୃତ ଅଧିକ ଶକ୍ତି ଦର୍ଶାନ୍ତି । ପିଲାମାନେ ଉପଯୁକ୍ତ ଓଜନର ଜିନିଷ ପକାଇପାରନ୍ତି, ନିର୍ଭୁଲଭାବେ ପାହାଚ ଚଢ଼ିପାରନ୍ତି ଓ ଓହ୍ଲେଇପାରନ୍ତି । |
| ସାତ ବର୍ଷ | ଗୋଟିଏ ଗୋଡ଼ରେ ଠିଆହୋଇ ପାରନ୍ତି, ପାଞ୍ଚ ସେଣ୍ଟିମିଟର ଚଉଡ଼ା ଲୁହା ଦଣ୍ଡ ଉପରେ ଚାଲିପାରନ୍ତି, ପାଖାପାଖି ଥିବା ଗୋଟିଏ ବର୍ଗକ୍ଷେତ୍ରରୁ ଅନ୍ୟ ବର୍ଗକ୍ଷେତ୍ରକୁ ଡ଼େଇଁ ପାରନ୍ତି । |
| ଆଠ ବର୍ଷ | ଛ' କିଲୋଗ୍ରାମ ଓଜନର ଜିନିଷ ଉଠାଇ ପାରନ୍ତି । ଗୋଟିଏ ବଲ୍‌କୁ ୧୨ ମିଟର ଦୂରକୁ ପକାଇ ପାରନ୍ତି । |
| ନ' ବର୍ଷ | ବାଳିକାମାନେ ଉପରକୁ ୨୦/୨୧ ସେମି ଡ଼େଇଁ ପାରନ୍ତି । ବାଳକମାନେ ୨୫/୨୬ ସେମି ଉପରକୁ ଡ଼େଇଁ ପାରନ୍ତି । ବାଳକମାନେ ସେକେଣ୍ଡରେ ୫ ମିଟର ଦୌଡ଼ି ପାରନ୍ତି । ବାଳିକାମାନେ ଛୋଟ ବଲ୍‌କୁ ୨୦ ମିଟର ଦୂରକୁ ପକାଇ ପାରନ୍ତି । |
| ଦଶ ବର୍ଷ | ପିଲାମାନେ କିଛି ଦୂରରୁ ପକାଯାଉଥିବା ବଲ୍‌ଟିକୁ ଲକ୍ଷ୍ୟକରି ଗୋଡ଼ରେ ଧରନ୍ତି । |
| ଏଗାର ବର୍ଷ | ବାଳକମାନେ ପ୍ରାୟ ୧ ୧/୨ ମିଟର ଉଚ୍ଚତାକୁ ଡେଇଁ ପାରନ୍ତି । ବାଳିକାମାନେ ପ୍ରାୟ ୧ ୧/୨ ମିଟର ଦୂରକୁ ଡ଼େଇଁ ପାରନ୍ତି । |

# ମାନସିକ ଚାପ, ବିଷାଦ ଓ ସମନ୍ୱୟ କୌଶଳ

ବିଷାଦ ଏବଂ ମାନସିକ ଚାପ (Stress) କେବଳ କିଶୋର ଓ କିଶୋରୀଙ୍କ ପରବର୍ତ୍ତୀ ଜୀବନକୁ ଭାରାକ୍ରାନ୍ତ କରେନାହିଁ । ସ୍କୁଲ ଜୀବନ ଆରମ୍ଭ କରିଥିବା ପିଲାମାନଙ୍କ ଜୀବନରେ ମଧ୍ୟ ଏଗୁଡ଼ିକର ଆବିର୍ଭାବ ସମସ୍ୟା ସୃଷ୍ଟିକରିଥାଏ । ପିଲାମାନେ ଏସବୁର କିପରି ମୁକାବିଲା କରନ୍ତି ଏବଂ ସେମାନଙ୍କର ସମନ୍ୱୟ କୌଶଳ (Coping)କୁ କିପରି ଅଧିକ ଉପଯୋଗୀ କରାଯାଇ ପାରିବ, ତାହାର ଆଲୋଚନା ପୂର୍ବରୁ ମାନସିକ ଚାପ ଓ ବିଷାଦର ପ୍ରକୃତି ଏବଂ କାରଣସବୁର ବର୍ଣ୍ଣନା ଆବଶ୍ୟକ ।

### ମାନସିକ ଚାପ

ମାନସିକ (Stress) କଥାଟି ପଦାର୍ଥ ବିଜ୍ଞାନରୁ ଆହରଣ କରାଯାଇଛି । ଗୋଟିଏ ବସ୍ତୁ ଅନ୍ୟ ବସ୍ତୁ ଉପରେ ଚାପ ଦେଇଥାଏ । ଟେବୁଲ ଉପରେ ବହିଟିଏ ରଖାଗଲେ ବହିଟି ଟେବୁଲ ଉପରେ କିଛି ଚାପଦିଏ । ମାତ୍ର ଟେବୁଲଟି ଅଧିକ ଶକ୍ତ ହୋଇଥିବାରୁ ବିଶେଷ ଅସୁବିଧା ହୁଏ ନାହିଁ । ଅନ୍ୟ ପକ୍ଷରେ ଟେବୁଲ ଉପରେ ଏକ କୁଇଣ୍ଟାଲର ଗୋଟିଏ ଲୁହାଖଣ୍ଡ ରଖିଲେ ଟେବୁଲ ଭାଙ୍ଗିଯିବ । ଏତେ ପରିମାଣର ଚାପକୁ ଟେବୁଲ ସହ୍ୟ କରିପାରିବ ନାହିଁ ।

ଠିକ୍ ସେହିପରି ବାହ୍ୟ ଅବସ୍ଥା ଆମ ଉପରେ କିଛି ଚାପ ପ୍ରଦାନ କରେ ଏବଂ ଆମ୍ଭେମାନେ ପ୍ରତିକ୍ରିୟା ପ୍ରକାଶ କରୁ । ଅତ୍ୟଧିକ ଗରମ ହେଲେ ଆମେ ଅଶ୍ୱସ୍ତି ଅନୁଭବ କରୁ । ମାତ୍ରାଧିକ ଶୀତଳତାରେ ମଧ୍ୟ ଅଶ୍ୱସ୍ତି ପକ୍ରାଶ କରୁ । ବାହ୍ୟଜଗତରେ ଏପରି ସବୁ ଆହ୍ୱାନ ପ୍ରତି ଆମେ ଯେଉଁସବୁ ପ୍ରତିକ୍ରିୟା ଦର୍ଶାଇ ଥାଉ ତାହା ହିଁ ଚାପ । ଆମର ସମନ୍ୱୟ (Coping) ପ୍ରତି ବିପଦ ସୃଷ୍ଟି କରୁଥିବା ଅବସ୍ଥାସବୁ ପ୍ରତି ପ୍ରତିକ୍ରିୟା ହିଁ ଚାପ ।

ମାନସିକ ଚାପକୁ ଅଧିକ ସ୍ପଷ୍ଟରୂପେ ବୁଝିବା ପାଇଁ ଅନ୍ୟ ଦୁଇଟି ପରିଭାଷାର ସାହାଯ୍ୟ ନିଆଯାଇ ପାରେ । ସେ ଦୁଇଟି ହେଉଛି ଦାବି (Demands) ଏବଂ ସମ୍ବଳ (Resources) । ବାହ୍ୟଜଗତ ପ୍ରତ୍ୟେକ ବ୍ୟକ୍ତିପାଇଁ କିଛିନା କିଛି ଦାବି (Demands) ସୃଷ୍ଟିକରେ । ଏସବୁ ଦାବି ଭୌତିକ, ବ୍ୟକ୍ତିଗତ କିମ୍ବା ସାମାଜିକ ହୋଇପାରେ । ନିମ୍ନରେ ସୂଚିତ କରାଯାଇଥିବା ପରି ଗୋଟିଏ ପିଲା ଅତ୍ୟଧିକ ଗରମ, ଅତ୍ୟଧିକ ଶୀତଳତା କିମ୍ବା ଅମ୍ଳଯାନର ଅଭାବ ପରି ଭୌତିକ ଦାବିର ସମ୍ମୁଖୀନ ହୋଇପାରେ । ସେହିପରି ବ୍ୟକ୍ତିଗତ ସ୍ତରରେ ପିଲାଟିର ଘରକୁ ଦିଆଯାଇଥିବା ସ୍କୁଲର ପଢ଼ାକାର୍ଯ୍ୟ, ପରୀକ୍ଷା

| ପ୍ରକାରତା | ଦାବି | ସମ୍ବଳ |
|---|---|---|
| ଭୌତିକ (Phycical) | ଅତ୍ୟଧିକ ଗରମ | ଭଲ ସ୍ୱାସ୍ଥ୍ୟ; ଗରମ |
| | ଅତ୍ୟଧିକ ଶୀତଳତା | କମାଇବା ଓ ଥଣ୍ଡା କମାଇବା |
| | ଅସ୍ଥାୟୀନର ଅଭାବ | ପାଇଁ ବୈଦ୍ୟୁତିକ ବ୍ୟବସ୍ଥା । |
| ବ୍ୟକ୍ତିଗତ (Personal) | ସ୍କୁଲ ପରୀକ୍ଷା | ପାଠପଢ଼ାର ଦକ୍ଷତା |
| | ଘରକୁ ପଢ଼ା କାର୍ଯ୍ୟ | ଆତ୍ମ ବିଶ୍ୱାସ |
| | କ୍ରୀଡ଼ା ପ୍ରତିଯୋଗିତା | ଶାରୀରିକ କୌଶଳ |
| ସାମାଜିକ ((Social) | ସାନ ଭାଇଭଉଣୀର ଯତ୍ନ | ପରିବାର, |
| | ବନ୍ଧୁଙ୍କୁ ସାହାଯ୍ୟ | ବନ୍ଧୁବର୍ଗ ଓ |
| | ଅନ୍ୟ ସହିତ ମିଳାମିଶା | ଶିକ୍ଷକ ଓ ଶିକ୍ଷୟିତ୍ରୀଙ୍କ |
| | | ସାହାଯ୍ୟ ସହଯୋଗ । |

ଏବଂ କ୍ରୀଡ଼ା ପ୍ରତିଯୋଗିତା ପରି ଅନ୍ୟସବୁ ପ୍ରତିଯୋଗିତା ଦାବିର ଆହ୍ୱାନ ଦିଏ । ଛୋଟ ଭାଇଭଉଣୀଙ୍କ ଦାୟିତ୍ୱ ନେବା, ଶିଶୁକୁ ସାହାଯ୍ୟ କରିବା, ଅନ୍ୟ ସହିତ ମିଳାମିଶା କରିବା ପରି ସାମାଜିକ ଦାୟିତ୍ୱ ସାମାଜିକ ଦାବିର ରୂପ ନିଏ ।

ନିକିତିର ଅନ୍ୟ ପାଖରେ ସମ୍ବଳମାନ (Resources) ରହିଥାଏ । ଭଲ ସ୍ୱାସ୍ଥ୍ୟ ଓ ଅତ୍ୟଧିକ ଥଣ୍ଡା ଗରମର ମୁକାବିଲା କରିବା ପାଇଁ ଘରେ ପଙ୍ଖା ଓ ଅନ୍ୟସବୁ ବ୍ୟବସ୍ଥା ପରି ଭୌତିକ ସମ୍ବଳ ଥାଇପାରେ । ପୁଣି ବ୍ୟକ୍ତିଗତ ସମ୍ବଳରୂପେ ପିଲାଟିର ଶିକ୍ଷାଗତ ଦକ୍ଷତା, ଆତ୍ମବିଶ୍ୱାସ ଏବଂ ଶାରୀରିକ କୌଶଳ ରହଥାଏ । ସାମାଜିକ ସ୍ତରରେ ପରିବାରରେ ପିତାମାତା ଓ ଅନ୍ୟସବୁ ବ୍ୟକ୍ତିବିଶେଷଙ୍କ ସହଯୋଗ, ବନ୍ଧୁମାନଙ୍କ ସହଯୋଗ ଏବଂ ଶିକ୍ଷକ ଶିକ୍ଷୟିତ୍ରୀ ସହଯୋଗ ରହିପାରେ । ଗୁରୁତ୍ୱପୂର୍ଣ୍ଣ ଦିଗଟି ହେଉଛି ଯେ, (Demands)ଦାବି ଏବଂ ସମ୍ବଳର (Resources) ତୁଳନାତ୍ମକ ବିଚାର ଉପରେ ମାନସିକ ଚାପ ନିର୍ଭର କରେ । କୌଣସି ଏକ ପରିସ୍ଥିତିରେ ପିଲାଟି ଦାବିର ପରିମାଣକୁ ସମ୍ବଳଠାରୁ ଅଧିକ ବୋଲି ବିଚାର କଲେ ତା'ର ମାନସିକ ଚାପ ଅନୁଭୂତ ହୁଏ । ଅନ୍ୟ ପକ୍ଷରେ ଦାବି ତୁଳନାରେ ସମ୍ବଳର ପରିମାଣ ବେଶି ବୋଲି ବିଚାର କଲେ ମାନସିକ ଚାପ ଦୂରେଇ ଯାଏ । ଉଦାହରଣ ସ୍ୱରୂପ ସ୍କୁଲ ପରୀକ୍ଷା ସମୟର କଥା ବିଚାର କରାଯାଉ । ପରୀକ୍ଷା ନିର୍ଘଣ୍ଟ ଘୋଷଣା ନିଶ୍ଚିତ ଭାବରେ କିଛିବା ଦାବି (Demands) ଉପସ୍ଥାପନ କରବ । ଏପରି ସ୍ଥଳେ ପିଲାଟି ପରୀକ୍ଷାପାଇଁ ପ୍ରସ୍ତୁତ ଅଛି, ତାର ସାମର୍ଥ୍ୟ ଓ ଆତ୍ମବିଶ୍ୱାସ ରହିଛି ଏବଂ ସେ ଠିକ୍‌ଭାବେ ଶ୍ରେଣୀରେ ଯୋଗଦେଉଛି– ଏପରି ବିଚାର କଲେ ସମ୍ବଳର ମାତ୍ରା ଅଧିକ ବୋଲି ହୃଦ୍‌ବୋଧ ହେବ । ସୁତରାଂ ସେ ଚାପର ଶରବ୍ୟ ହେବ ନାହିଁ । ଅନ୍ୟ ପକ୍ଷରେ ସେ ପ୍ରସ୍ତୁତ ନୁହେଁ । ଠିକ୍ ପୂର୍ବରୁ ଠିକ୍ ଭାବରେ ପଢ଼ାପଢ଼ି କରି ନାହିଁ ବୋଲି ଭାବିଲେ ସମ୍ବଳ (Resources)ର ମାତ୍ରା କମ୍ ବୋଲି ମନକୁ ବିଚାର ଆସିବ । ଏପରି ସ୍ଥଳେ ମାନସିକ ଚାପ ନିଶ୍ଚିତ ଅନୁଭବ କରିବ ।

ସୁତରାଂ ଦାବି ଅପେକ୍ଷାକୃତ ଅଧିକ ପରିମାଣ ଚାପ ସୃଷ୍ଟି କରୁଥିବା ବେଳେ ସମ୍ବଳର ବେଶୀ ପରିମାଣ ଚାପକୁ ନିର୍ବାସିତ କରେ ।

ଉପର ଆଲୋଚନାରୁ ସ୍ପଷ୍ଟ ଯେ, ପିଲାଟିର ମୂଲ୍ୟାୟନ (Appraisal) ହିଁ ଗୁରୁତ୍ୱପୂର୍ଣ୍ଣ । ପିଲାଟି ଏହି ମୂଲ୍ୟାୟନର ଦୁଇଟି ସୋପାନ ଦେଇ ଗତିକରେ । ପ୍ରଥମଟି ମୌଳିକ ମୂଲ୍ୟାୟନ (Primary Appraisal) ଏବଂ ଦ୍ୱିତୀୟଟି ଯୌଗିକ ମୂଲ୍ୟାୟନ (Secondary Appraisal) । ମୌଳିକ ମୂଲ୍ୟାୟନ ସମୟରେ ସେ ମୁଖ୍ୟତଃ ଦାବିର (Demands) ପରିମାଣ ମାନସିକ ସ୍ତରରେ ଆକଳନ କରିଥାଏ । ଯେଉଁ କ୍ଷତି (Harm) ହୋଇଯାଇଛି ଏବଂ ଯେଉଁ କ୍ଷତିର ଭୟ (Threat) ରହିଛି, ତାହାର ଆକଳନ କରେ । ପିଲାଟି ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇ ସାରିଥିଲେ କ୍ଷତି ହୋଇସାରିଛି । ମାତ୍ର ସେ ଅକୃତକାର୍ଯ୍ୟ ହୋଇଥିବାରୁ ଭବିଷ୍ୟତରେ ପିତାମାତା ଏବଂ ଶିକ୍ଷକ ଶିକ୍ଷୟତ୍ରୀଙ୍କର ସ୍ନେହ ଶ୍ରଦ୍ଧା ହରାଇବ ଏପରି ଭୟ ମଧ୍ୟ ଚାପ ସୃଷ୍ଟି କରେ ।

ମୂଲ୍ୟାୟନର ଦ୍ୱିତୀୟ ସୋପାନରେ ସେ ନିଜର ସମ୍ବଳ (Resources) ସବୁର ଆକଳନ କରେ । ତା' ପାଖରେ କି କି ସାମର୍ଥ୍ୟ ରହିଛି, ତାହାର ମାନସିକ ମୂଲ୍ୟାୟନ କରି ସେ ମାନସିକ ଚାପ କମାଇବାର ଚେଷ୍ଟାକରେ । ଲକ୍ଷ୍ୟ କଲେ ସ୍ପଷ୍ଟ ଦେଖାଯିବ ଯେ ମନ-ନିକିତିର ଗୋଟିଏ ପଲାରେ ଦାବିସବୁ ରହିବା ସ୍ଥଳେ ଅନ୍ୟ ପଲାଟିରେ ସମ୍ବଳ ରହିଥାଏ । ଦାବି ପଲାଟି ଅଧିକ ଭାରୀ ହେଲେ ମାନସିକ ଚାପ ଉପୁଜିଥାଏ । ସମ୍ବଳ ପଲଟା ଭାରୀ ହେଲେ ଚାପ ରହେ ନାହିଁ । ଏ ଦୃଷ୍ଟିରୁ ପିଲାଟିର ମୂଲ୍ୟାୟନ ହିଁ ପରିଣତି ସୃଷ୍ଟିପରେ ।

ମାନସିକ ଚାପର କାରଣ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ଦିଆଯାଇପାରେ । ପୂର୍ବ ଆଲୋଚନା ଅନୁଯାୟୀ ମାନସିକ ଚାପର ପ୍ରଥମ କାରଣଟି ହେଉଛି ଚିନ୍ତନ ପ୍ରକ୍ରିୟା (Cognitive Factors) । ସମାନ ଧରଣର ପରିସ୍ଥିତିରେ ଗୋଟିଏ ପିଲା ମାନସିକ ଚାପ ନେଇ ଅସ୍ଥିରତା ଅନୁଭବ କରିବା ବେଳେ ଅନ୍ୟ ପିଲାଟି ସ୍ଥିର ରହିପାରେ । ଦାବି ବା ଆହ୍ୱାନ ସବୁକୁ ଅଧିକ ମନେକରୁଥିବା ପିଲା ଚାପ ଅନୁଭବ କରେ । ସମ୍ବଳକୁ ବେଶୀ ମନେ ହେଉଥିବା ପିଲା ଚାପର ନିୟନ୍ତ୍ରଣ କରେ । ଏହାର ତାତ୍ପର୍ଯ୍ୟ ହେଉଛି ଯେ ପିଲାଟିର ସମ୍ବଳ ଯେ ପର୍ଯ୍ୟାପ୍ତ ଓ ଅଧିକ ପରିମାଣର, ଏପରି ବିଶ୍ୱାସ ଓ ମୂଲ୍ୟାୟନ ସୃଷ୍ଟି କରିବାକୁ ହେବ ।

ମାନସିକ ଚାପର ଦ୍ୱିତୀୟ କାରଣ ହେଉଛି ଦୈନନ୍ଦିନ ଜୀବନର ଅଘଟଣ ଏବଂ ପୁନଃ ପୁନଃ ଘଟୁଥିବା ଛୋଟ ଛୋଟ ବିରକ୍ତିକର ଘଟଣାସମୂହ । ପିତାମାତାକୁ ହରାଇବା, ରୋଗଗ୍ରସ୍ତ ଦେହ, ସ୍ୱାସ୍ଥ୍ୟହାନୀ, ଭାଇଭଉଣୀଙ୍କ ସହିତ ହିଂସାଦ୍ୱେଷ, ସ୍କୁଲ୍ ପରୀକ୍ଷା, ପିତାମାତାଙ୍କ ଠାରୁ କୋଣସି କାରଣରୁ ଅଲଗା ହୋଇ ରହିବା ଏବଂ ଦୁର୍ଘଟଣାର ଶରବ୍ୟ ହେବା ଭଳି ଅଘଟଣସବୁ ମାନସିକ ଚାପ ସୃଷ୍ଟି କରେ । ଏହାଛଡ଼ା କେତେକ ବିରକ୍ତିକର ଘଟଣା ଛୋଟ ହୋଇଥିଲେ ମଧ୍ୟ ସେଗୁଡ଼ିକର ଦୈନନ୍ଦିକ ପୁନରାବୃତି ମାନସିକ ଚାପ ସୃଷ୍ଟି କରେ । ପ୍ରତିଦିନ ପ୍ରତ୍ୟୁଷରୁ ବିଛଣା ଛାଡ଼ି ସ୍କୁଲକୁ ଯିବା, ବଡ଼ ବଡ଼ ସହରରେ ଦୀର୍ଘ ସମୟ ଧରି ବସ୍‌ରେ ବସି

ସ୍କୁଲରେ ପହଞ୍ଚିବା, ଗୃହରେ ଦାରିଦ୍ର୍ୟର ନିପୀଡ଼ନ, ପିତାମାତାଙ୍କ ମଧ୍ୟରେ କଳହ ଏବଂ ପରିବେଶରେ ମାତ୍ରାଧିକ ଶବ୍ଦ ବା ଗନ୍ଧ ମଧ୍ୟ ମାନସିକ ଚାପ ସୃଷ୍ଟି କରିଥାଏ ।

ମାନସିକ ଚାପର ତୃତୀୟ ଧରଣର କାରଣସବୁ ସାମାଜିକ ସାଂସ୍କୃତିକ ପରିବେଶରେ ଜନ୍ମ ନେଇଥାଏ । ପରିବେଶରେ କେତେକ ଘନ ଘନ ପରିବର୍ତ୍ତନ ସହିତ ଶିଶୁ ସମନ୍ୱୟ ରକ୍ଷା କରି ପାରେ ନାହିଁ । ହଠାତ୍ ରାସ୍ତାଘାଟ ନିର୍ମାଣ ହୋଇ ଅତିବେଶୀ ଟ୍ରାଫିକ ନିୟମ ଲାଗୁହେଲେ ପିଲାଟିର ସ୍ୱଚ୍ଛନ୍ଦ ଗତିରେ ବାଧା ସୃଷ୍ଟି ହୁଏ । ସେହିପରି ସମାଜରେ ଜାତିଆଣ ଭାବ, ଧର୍ମଗତ ବିଭେଦ ଏବଂ ସାମ୍ପ୍ରଦାୟିକ ବିଦ୍ୱେଷ ପିଲା ପାଇଁ ମଧ୍ୟ ଚାପ ସୃଷ୍ଟି କରେ । ଦାରିଦ୍ର୍ୟର କୁପ୍ରଭାବ ସହଜରେ ଅନୁମେୟ । ଦାରିଦ୍ର୍ୟ ଫଳରେ ପିଲାମାନରେ ଆତ୍ମମର୍ଯ୍ୟାଦାର ହାନି, ମାନସିକ ବିଷର୍ଣ୍ଣତା ଏବଂ ଅପରାଧ ପ୍ରବଣତା ପରି କୁ-ପରିଣତି ଅସମ୍ଭବ ନୁହେଁ ।

ମାନସିକ ଚାପର ଅନ୍ୟ ଗୋଟିଏ କାରଣ ହେଉଛି ବ୍ୟକ୍ତିତ୍ୱର ଏକ ନିର୍ଦ୍ଦିଷ୍ଟ ଦିଗ । ପ୍ରଥମେ ଦୁଇଜଣ ହୃଦ୍‌ରୋଗ ବିଶେଷଜ୍ଞ ମନୁଷ୍ୟର ବ୍ୟକ୍ତିତ୍ୱର ଏକ ଦିଗ ଏବଂ ହୃଦ୍‌ରୋଗ ମଧ୍ୟରେ ଏକ ସମ୍ବନ୍ଧର ପର୍ଯ୍ୟବେକ୍ଷଣ କଲେ । ସେମାନେ ଲକ୍ଷ୍ୟ କଲେ ଯେ ଗୋଟିଏ ପ୍ରକାରର ବ୍ୟକ୍ତିତ୍ୱର ଲୋକମାନେ ବେଶୀ ପରିମାଣରେ ହୃଦ୍‌ରୋଗର ଶୀକାର ହେଉଛନ୍ତି । ସେମାନେ ଏପରି ବ୍ୟକ୍ତିତ୍ୱକୁ 'କ' ବ୍ୟକ୍ତିତ୍ୱ ଆଖ୍ୟା ଦେଲେ । ଅନ୍ୟ ପ୍ରତି ବୈରଭାବ(Hostility) ଏବଂ ଅବଦମିତ କ୍ରୋଧ ଏହାର ମୁଖ୍ୟ ଲକ୍ଷଣ । ପରବର୍ତ୍ତୀ କାଳରେ ପିଲାମାନଙ୍କ ମଧ୍ୟରେ ଏପରି ବ୍ୟକ୍ତିତ୍ୱ ଲକ୍ଷ୍ୟ କରାଗଲା । ଦେଖାଗଲା ଯେ କ-ବ୍ୟକ୍ତିତ୍ୱ ବା ''କ-ବ୍ୟବହାର ଭଙ୍ଗୀ'' ଦର୍ଶାଉଥିବା ପିଲାମାନେ ଅଧିକ ମାତ୍ରାରେ ମାନସିକ ଚାପର ଶରବ୍ୟ ହେଉଛନ୍ତି । ଏମାନେ ଅଧିକ ପରିମାଣରେ ଶ୍ୱାସକ୍ରିୟା ଜନିତ ଜଟିଳତା, ଅସୁସ୍ଥତା, ମାଂସପେଶୀଗତ ଜଟିଳତା ଏବଂ ନିଦ୍ରାଜନିତ ସମସ୍ୟା ଦର୍ଶାଉଛନ୍ତି । ଅନ୍ୟ ପକ୍ଷରେ ''ଖ-ବ୍ୟକ୍ତିତ୍ୱ'' (Personality-B) କିମ୍ବା ଖ-ବ୍ୟବହାର ଭଙ୍ଗୀ (Type B Behaviour Pattern) ଦର୍ଶାଉଥିବା ପିଲାମାନେ ଏପରି ଜଟିଳତା ଦର୍ଶାଉ ନାହାନ୍ତି । ମୋଟ ଉପରେ କ-ବ୍ୟବହାର ଭଙ୍ଗୀ (ଅନ୍ୟପ୍ରତି ବୈରତା ଏବଂ ଅବଦମିତ କ୍ରୋଧ) ମାନସିକ ଚାପର କାରଣ ହେଉଛି ।

ମାନସିକ ଚାପର ପରିପ୍ରକାଶ ମଧ୍ୟରେ ମାନସିକ ବିଷାଦ (Depression) ଏକ ମୁଖ୍ୟ ଲକ୍ଷଣ ହୋଇଥିବାରୁ ବିଷାଦର କାରଣ ସମ୍ପର୍କରେ ପୃଥକ୍ ଆଲୋଚନା ଆବଶ୍ୟକ ମନେହୁଏ ।

## ପିଲାମାନଙ୍କ ବିଷାଦ

ପିଲାମାନଙ୍କ ବିଷାଦର ତାତ୍ତ୍ୱିକ ଆଲୋଚନା ପ୍ରସଙ୍ଗରେ ତିନୋଟି ବିଚାରକୁ ମନସ୍ତାତ୍ତ୍ୱିକ ସ୍ୱୀକୃତି ଦିଆଯାଇଛି । ବିଶିଷ୍ଟ ବ୍ରିଟିଶ ମନୋବିଜ୍ଞାନୀ ବଲ୍‌ବୀ ଶିଶୁର ବିକାଶକାଳୀନ ବିଚ୍ୟୁତିକୁ ମୁଖ୍ୟତଃ ଦାୟୀ କରିଥାନ୍ତି । ତାଙ୍କ ମତରେ ଶିଶୁର ଜନ୍ମ ପରେ ପରେ ଏବଂ ପ୍ରାରମ୍ଭିକ ପର୍ଯ୍ୟାୟରେ ଶିଶୁ ଏକ ଦୃଢ଼ ଅନ୍ତରଙ୍ଗତା (Attachment) ଆବଶ୍ୟକ କରେ । ଅଧିକାଂଶ ସ୍ଥଳରେ ଜନନୀ ଏପରି ନିବିଡ଼ ଅନୁରାଗ ଯୋଗାଇଥାଏ । ଏହା ସମ୍ଭବ ନ ହେଲେ ଅନ୍ୟ

କେହି ବ୍ୟକ୍ତି (ଯଥା-ପିତା, ମାଉସୀ, ପିଉସୀ ଇତ୍ୟାଦି) ଏପରି ମାନସିକ ଚାହିଦା ପୂରଣ କରିପାରନ୍ତି । ଶିଶୁ ଅନୁରାଗ-ପ୍ରାପ୍ତି ମାଧ୍ୟମରେ ଏକ ସୁରକ୍ଷା-ବଳୟର ଅନୁଭବ ପାଏ । ମାତ୍ର କୌଣସି କାରଣରୁ ଏପରି ଅନୁଭବର ବିପର୍ଯ୍ୟୟ ଘଟିଲେ ଧୀରେ ଧୀରେ ଶିଶୁ ବିଷାଦର ବଳୟ ମଧ୍ୟରେ ପ୍ରବେଶ କରେ ।

ଦ୍ୱିତୀୟ ଦୃଷ୍ଟି ଭଙ୍ଗୀଟି ଜ୍ଞାନଗତ (Cogritive) କିମ୍ବା ପ୍ରତ୍ୟୟମୂଳକ ବିକାଶ-ବିଚ୍ୟୁତି ଉପରେ ପ୍ରତିଷ୍ଠିତ । ମାନସିକ ବିଷାଦର ବିଶ୍ଳେଷଣ କ୍ଷେତ୍ରରେ ବହୁ ସ୍ୱୀକୃତି ଲାଭ କରିଥିବା ବେକ୍‌ଙ୍କ ମତରେ କେତେକ କାରଣରୁ ଶିଶୁମନର ତ୍ରୁଟିପୂର୍ଣ୍ଣ ବିଶ୍ଳେଷଣ ଭଙ୍ଗୀ ସ୍ଥାନପାଏ । ଏପରି ବିଶ୍ଳେଷଣ ଭଙ୍ଗୀ ଫଳରେ ଶିଶୁ ମାତ୍ରାଧିକ ପରିମାଣରେ ନକରାତ୍ମକ (Negative) ଭାବନାର ଶରବ୍ୟ ହୁଏ । ନିଜ ପରିସ୍ଥିତିର ଦୁଃଖଦ ଓ ନକରାତ୍ମକ ଦିଗଟି ତାକୁ ବେଶୀ ଦେଖାଯାଏ । ପିତାମାତାଙ୍କର ବିଷାଦ କିମ୍ବା ସେହିପରି କିଛି ପରିବେଶଗତ ଅସ୍ୱାଭାବିକତା ଶିଶୁମନରେ ଏପରି ସବୁ ନକରାତ୍ମକ ଧାରଣା ଆଣେ । ଫଳରେ ଛୋଟ ଛୋଟ ଦୁଃଖଦ ଘଟଣାକୁ ସେ ବଡ଼ କରି ଦେଖେ । ସମାନ୍ୟ ଘଟଣାରକୁ ଭିତ୍ତି କିର ସେ ନିଜର ଅକ୍ଷମତା କଥା ଭାବିବସେ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇ ପାରେ ଯେ, ଗୋଟିଏ ଛୋଟିଆ କାମରେ ବିଫଳ ହୋଇ ସେ ଭାବିଥାଏ- "ମୋ ଦ୍ୱାରା କିଛି ହୋଇପାରିବ ନାହିଁ ।"

ବିଷାଦର ତୃତୀୟ ଦିଗଟି ହେଉଛି ଶିଶୁର ଅସହାୟତାବୋଧ (Helplessnss)। ଗୋଟିଏ ଶିଶୁ ପ୍ରାରମ୍ଭିକ ପର୍ଯ୍ୟାୟରେ ବାରମ୍ବାର ଅଘଟଣ ଏବଂ ବିଫଳତାର ଶରବ୍ୟ ହେଲେ ତା' ମନରେ ଅସହାୟତା ସୃଷ୍ଟି ହୁଏ । ଘଟଣାସବୁ ତା'ର ନିୟନ୍ତ୍ରଣ ବାହାରେ-ଏପରି ବିଶ୍ୱାସ ଦୃଢ଼ୀଭୂତ ହୁଏ । ଅନ୍ୟ ପକ୍ଷରେ ପ୍ରଥମେ ପ୍ରଥମେ ଅଧିକ ପରିମାଣରେ ସଫଳତାର ସମ୍ମୁଖୀନ ହେଲେ ଆତ୍ମବିଶ୍ୱାସ ପ୍ରତିଷ୍ଠିତ ହୁଏ ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ବିଫଳତା ସହିତ ସେ ସହଜରେ ମୁକାବିଲା କରିପାରେ । ମୂଳରୁ ଖରାପ ଘଟଣାସବୁର କ୍ରମାଗତ ପୁନରାବୃତ୍ତି ଶିଶୁମନରେ ଅସହାୟତା ଓ ବିଷାଦ ସୃଷ୍ଟିକରେ ।

ତିନୋଟି ଦୃଷ୍ଟିଭଙ୍ଗୀକୁ ବିଚାରକୁ ନେଇ ଶିଶୁର ବିଷାଦର ନିୟନ୍ତ୍ରଣ ଦିଗରେ କୌଣସି ପରାମର୍ଶ ଦିଆଯାଇ ପାରେ । ପ୍ରଥମତଃ ଜୀବନର ଆଦ୍ୟ ଭାଗରେ ସୁରକ୍ଷାପୂର୍ଣ୍ଣ ଅନୁରାଗ (Secured attachment) ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଏହାର ନିଶ୍ଚିତତା ଦିଗରେ ଉଦ୍ୟମ ଆବଶ୍ୟକ । ଶିଶୁର ମାତୃ ବିୟୋଗ ଘଟିଲେ କିମ୍ବା କୌଣସି କାରଣରୁ ସେ ମା'ଠାରୁ ଦୂରେଇ ଯାଇଥିଲେ ତା' ପାଇଁ ଏକ ଅନୁରାଗପୂର୍ଣ୍ଣ ବିକଳ୍ପର ବ୍ୟବସ୍ଥା ନିତାନ୍ତ ପ୍ରୟୋଜନ । ଦ୍ୱିତୀୟତଃ ପ୍ରତି ପରିବେଶରେ, ସକରାତ୍ମକ ଦିଗ ଏବଂ ନକରାତ୍ମକ ଦିଗ ରହିଛି । ଶିଶୁ ଯେପରି କେବଳ ନକରାତ୍ମକ ଦିଗ ବା ଉପାଦାନ ମଧ୍ୟରେ ବନ୍ଦୀ ନ ହୁଏ, ତାହା ଦେଖିବାକୁ ହେବ । ଏ ଦୃଷ୍ଟିରୁ ପିତାମାତା ବିଷାଦମୁକ୍ତ ହେବା ବାଞ୍ଛନୀୟ । ଶିଶୁଆଗରେ ବିଷାଦପୂର୍ଣ୍ଣ ଆଲୋଚନା ଶିଶୁକୁ ବିଷାଦଗ୍ରସ୍ତ କରିଥାଏ । ପିତାମାତାଙ୍କ ବ୍ୟତୀତ ଅନ୍ୟସବୁ ବୟସ୍କବ୍ୟକ୍ତି ଏବଂ ଶିକ୍ଷକ ଶିକ୍ଷୟିତ୍ରୀ ଏ ଦିଗରେ ବେଶ୍ କିଛି କରି ପାରିବେ । ତୃତୀୟତଃ ଜୀବନର

ଆଦ୍ୟଭାଗରେ କ୍ରମାଗତ ବିଫଳତାକୁ ଏଡାଇବାକୁ ହେବ । ଏହାର ଅର୍ଥ ନୁହେଁ ଯେ ୧୦୦ ପ୍ରତିଶତ ସଫଳତାର ପିତାମାତା ସମ୍ଭାବନା ଥିବା ଅତି ସହଜ କାମଗୁଡ଼ିକୁ ପିଲାମାନଙ୍କୁ ନ୍ୟସ୍ତ କରିବେ, ଏପରି ପଦକ୍ଷେପ ସୁଚିନ୍ତିତ ନୁହେଁ । ସବୁ ସମୟରେ ସଫଳତାର ସ୍ୱାଦ ପାଉଥିବା ପିଲାମାନେ ବୁଝିପାରିବେ ନାହିଁ ଯେ ବ୍ୟର୍ଥତାର ଅନୁଭବ ମଧ୍ୟ ଜୀବନର ଏକ ଅଂଶ ବିଶେଷ । ଏପରି ପିଲାମାନେ ଭବିଷ୍ୟତରେ ବ୍ୟର୍ଥତାର ସମ୍ମୁଖୀନ ହେଲେ ସେମାନେ ଭାଙ୍ଗିପଡ଼ିବେ । ମାତ୍ର ଶିଶୁମାନେ ଆଦ୍ୟଭାଗରେ ପ୍ରତିଶତ ୭୦/୮୦ ସଫଳତା ପାଇବା ଉପଯୋଗୀ ହେବ । ଏପରି ଉଚ୍ଚମାତ୍ରର ସଫଳତା ପାଉଥିଲେ ପିଲାମାନଙ୍କର ଆତ୍ମବିଶ୍ୱାସ ଦୃଢ଼ ହେବ । ପରବର୍ତ୍ତୀ ପର୍ଯ୍ୟାୟରେ ବିଫଳତା ସେମାନଙ୍କୁ କାବୁ କରିଦେବ ନାହିଁ । ସୁତରାଂ ପିତାମାତା ଏବଂ ଶିକ୍ଷକ ଶିକ୍ଷୟତ୍ରୀ ଏହି ବିଚାରକୁ ଆଖିଆଗରେ ରଖି ପିଲାଟିକୁ ବିଭିନ୍ନ ଦାୟିତ୍ୱ ଦେବେ ।

ମାନସିକ ଚାପ ଓ ବିଷାଦ ସହିତ ସମନ୍ୱୟ ରକ୍ଷା କରିବା କ୍ଷେତ୍ରର ପିଲାମାନେ କି କି କୌଶଳ ଅବଲମ୍ବନ କରନ୍ତି ଏବଂ କିପରି କୌଶଳ ଶିକ୍ଷା ଦିଆଯାଇପାରିବ, ତାହାର ଆଲୋଚନା ବେଶ୍ ଫଳପ୍ରଦ ।

**ସମନ୍ୱୟ କୌଶଳ**

ମାନସିକ ଚାପ ଓ ବିଷାଦ ସହିତ ନିଜକୁ ଖାପ୍ ଖୁଆଇବା ସମୟରେ ପିଲାମାନେ କେତେକ କୌଶଳର ପ୍ରୟୋଗ କରିଥାନ୍ତି । ବେଳେବେଳେ ସେମାନେ ସମନ୍ୱୟ କରୁଛନ୍ତି, ଏପରି ସଚେତନତା ନ ଥାଇ ମଧ୍ୟ ସେମାନେ ଖାପଖୁଆଇଥାନ୍ତି । ପ୍ରିୟ ଖେଳସାଥୀ ଏବଂ ବଡଭାଇ ବୋର୍ଡିଂ ସ୍କୁଲକୁ ଚାଲିଯିବା ସମୟରେ ମାନସିକ ବ୍ୟଥା ଅନୁଭବ କରୁଥିବା ଛୋଟ ଭଉଣୀ ସମନ୍ୱୟ ରକ୍ଷାକରେ । ଏ କ୍ଷେତ୍ରରେ ସେ ହୁଏତ ନିଜେ ବୁଝିଥାଏ ଯେ, ସେ ସମନ୍ୱୟ କୌଶଳର ଉପଯୋଗ କରୁଛି ।

ପିଲାମାନେ ଯେଉଁ ସମନ୍ୱୟ କୌଶଳସବୁ ପ୍ରୟୋଗ କରନ୍ତି ତାହା ମୁଖ୍ୟତଃ ଦୁଇ ଶ୍ରେଣୀର । ସେଗୁଡ଼ିକ ହେଉଛି ଭାବପ୍ରଧାନ ଏବଂ ଭାବନା ପ୍ରଧାନ ।

ଭାବପ୍ରଧାନ କୌଶଳ ମୁଖ୍ୟତଃ ଆବେଗଧର୍ମୀ, (Emotion-Focussed) । ଏଗୁଡ଼ିକ ମଧ ପରୋକ୍ଷ (Indirect) ସମନ୍ୱୟ-ଶୈଳୀ । ନିଜ ପାଖରେ ଅସ୍ୱୀକାର କରିବା, ରଗାରଗି କରିବା ଏବଂ ଅନ୍ୟମାନଙ୍କଠାରୁ ନିଜକୁ ଦୂରେଇ ନେବା ଏ ଧରଣର ସମନ୍ୱୟ କୌଶଳ । ଖେଳୁଖେଳୁ ପଡ଼ିଆରେ ପଡ଼ିଯାଇ ଲଜ୍ଜା ଅନୁଭବ କରୁଥିବା ପିଲାଟି ଅନ୍ୟମାନଙ୍କୁ ଶୁଣାଇ ଶୁଣାଇ କହେ ଯେ ''କିଛି ହୋଇ ନାହିଁ ।'' ସବଳ ଓ ବଳବାନ ପିଲାଟି ଉପରେ ରାଗିଯାଇ ନିଜର ରାଗ ନ ଦେଖାଇ ଘରେ ଆସି ସାମାନ୍ୟ କାରଣରୁ ରଗାରଗି କରେ । ସେହିପରି ହୁଏତ ଅପମାନିତ ହୋଇ ସମନ୍ୱୟ ରକ୍ଷା କରିବାକୁ ନିଭୃତରେ ଲୁଚି ରହି ସମୟ କାଟିଦିଏ । ଏପରି ଆବେଗଧର୍ମୀ ସମନ୍ୱୟ କୌଶଳ ସାମୟିକ ଭାବରେ ମାନସିକ ଚାପ ଲାଘବ କଲେ ମଧ ଏହାର ଫଳାଫଳ ଦୀର୍ଘତର ସମୟ ପାଇଁ ସୁଫଳ ଆଣିନଥାଏ ।

ଅନ୍ୟ ପକ୍ଷରେ କେତେକ ଭାବନା ପ୍ରଧାନ (Problem-Focussed) ସମନ୍ୱୟ କୌଶଳ ଅଧିକ ଉପଯୋଗୀ ହୋଇଥାଏ । ସମସ୍ୟା-ସମାଧାନ ପାଇଁ ପ୍ରଯତ୍ନ , ରୂପାନ୍ତର ହାସ୍ୟରସିକତା ଏବଂ ନିଃସ୍ୱାର୍ଥପର ଉପକାର ଏ ଧରଣର କୌଶଳ । ଶିଶୁ ପରୀକ୍ଷାରେ ଅକୃତକାର୍ଯ୍ୟ ହେବାପରେ ସମସ୍ୟା-ମୁଖୀ ସମାଧାନର ଶୈଳୀ ନେଇ ଯେ ଶିକ୍ଷକଙ୍କୁ ବିନୀତ ଭାବରେ ନିଜ ବିଫଳତାର କାରଣ ପଚାରିପାରେ । କେଉଁଥି ପାଇଁ ସେ କମ୍ ନମ୍ବର ପାଇଛି, ତାହା ପଚାରିପାରେ । ରୂପାନ୍ତର (Siblimation) ଏକ ଉନ୍ନତ ସମନ୍ୱୟ ଶୈଳୀ । ମନରେ ରାଗ ଥିବା ସମୟରେ ବଗିଚାକୁ ଯାଇ ମାଟି ହାଣିବା କିମ୍ବା ଜୋର୍‌ରେ ଜୋର୍‌ରେ କସରତ୍ କରିବାର ପନ୍ଥା ଏ ଧରଣର । ମନଦୁଃଖ ସମୟରେ ପାଠପଢ଼ାରେ ମନଢ଼ାଳିଦେବା ମଧ୍ୟ ରୂପାନ୍ତର ସମନ୍ୱୟ କୌଶଳ । ବ୍ୟର୍ଥ ମନୋଭାବକୁ ଏଡ଼ାଇବା ପାଇଁ ମାନସିକ ଶକ୍ତିକୁ ଏକ ଭଲ କାମରେ ଲଗାଇବାର ଯୋଜନା ଏ ଧରଣର । ସେହିପରି କେତେକ ପିଲା ମାନସିକ ଚାପ ସମୟରେ ନିଃସ୍ୱାର୍ଥପର ଭାବରେ ଅନ୍ୟର ଉପକାରରେ ଲାଗି ଥାଆନ୍ତି । ଥଟାମଜା ଏବଂ ହାସ୍ୟରସ ସୃଷ୍ଟିକରି ମାନସିକ ଭାରଟିକୁ ଲାଘବ କରନ୍ତି । ବିମଳ ହାସ୍ୟରସ ସୃଷ୍ଟି କରିବାର ସାମର୍ଥ୍ୟ ଏକ ବିଶେଷ ଧରଣର ସମନ୍ୱୟ କୌଶଳ ।

ପୂର୍ବରୁ ସୂଚନା ଦିଆଯାଇଛି ଯେ ମାନସିକ ଚାପର ତୀବ୍ରତା ଏବଂ ସମନ୍ୱୟର ବିଫଳତା କୁପରିଣତି ସୃଷ୍ଟି କରିଥାଏ । ଶାରୀରିକ ଓ ମାନସିକ ଅସୁସ୍ଥତା ଏସବୁର ମୁଖ୍ୟ କୁପରିଣତି । କିନ୍ତୁ କୌତୂହଳର ବିଷୟ ଯେ ମାନସିକ ଚାପର ତୀବ୍ରତା ସତ୍ତ୍ୱେ କିଛି ସଂଖ୍ୟକ ପିଲା ଏ ସମସ୍ତ ପ୍ରତିକୂଳ ଅବସ୍ଥାର କୁପରିଣତି ଏଡ଼ାଇ ଉଚ୍ଚ ସଫଳତାର ଅଧିକାରୀ ହୁଅନ୍ତି । ଦୁଃସ୍ଥ ପରିବେଶ ଏମାନଙ୍କର କ୍ଷତି କରିପାରେ ନାହିଁ । ଏ ଧରଣର ପିଲାମାନଙ୍କୁ ଅଭେଦ୍ୟ ଶିଶୁ (Resilient Children) କୁହାଯାଇପାରେ ।

## ଅଭେଦ୍ୟ ଶିଶୁ

ପ୍ରତିକୂଳ ପରିବେଶ ସତ୍ତ୍ୱେ ସୁବିକଶିତ ହେଉଥିବା ଅଭେଦ୍ୟ ଶିଶୁମାନଙ୍କର (Resilient Children) କିଛି ସ୍ୱତନ୍ତ୍ରତା ରହିଛି । ସାଧରଣ ଭାବରେ ଦେଖିଲେ ପ୍ରତିକୂଳ ପରିବେଶ କୁପରିଣତି ସୃଷ୍ଟି କରିବା ସ୍ୱାଭାବିକ । ଦୁଃସ୍ଥ ପରିବେଶ (ସ୍ଲମ୍) ମଧ୍ୟରେ ବଢୁଥିବା ପିଲାମାନେ ଅପେକ୍ଷାକୃତ ଅଧିକ ପରିମାଣରେ ଅପରାଧ ପ୍ରବଣତା, ଆଚରଣଗତ ସମସ୍ୟା ଏବଂ ଶିକ୍ଷାଗତ ଅକ୍ଷମତା ଦର୍ଶାଇବା ସାଧାରଣ କଥା । ମାତ୍ର କିଛି ସଂଖ୍ୟକ ପିଲା ଏହାର ବ୍ୟତିକ୍ରମ । ଏମାନଙ୍କର ସମନ୍ୱୟ କୌଶଳ ଲକ୍ଷ୍ୟ କଲେ ତିନୋଟି ଉପାଦାନ ତଥ୍ୟ ଆମର ହସ୍ତଗତ ହୋଇଥାଏ ।

ପ୍ରଥମତଃ ଏପରି ପିଲାମାନଙ୍କର ଭାବନା ଶୈଳୀ ଉନ୍ନତ । ଏମାନେ ନିଷ୍କ୍ରିୟ ନୁହଁନ୍ତି । ଅନ୍ୟମାନଙ୍କ ପ୍ରତି କ୍ରିୟାଶୀଳତା (Responsibility) ଦର୍ଶାନ୍ତି । ପରିବେଶର ବିଭିନ୍ନ ଦିଗପ୍ରତି ଏମାନେ ଅଭିନିବିଷ୍ଟ (Attentive) ଏବଂ କ୍ରିୟାଶୀଳ ।

ଦ୍ୱିତୀୟତଃ ପିରବାରରେ ଦାରିଦ୍ର୍ୟ ଥିଲେ ମଧ୍ୟ ସଂହତି ଏବଂ ଅନୁରାଗ ଥାଏ । ପରିବାର ମଧ୍ୟରେ ସ୍ନେହ ଶ୍ରଦ୍ଧା ଥାଏ । ସ୍ଥଳବିଶେଷରେ ପିତାମାତା ଏପରି ସୁରକ୍ଷାପୂର୍ଣ୍ଣ ଅନୁରାଗ

ଯୋଗାଉ ନଥିଲେ ମଧ୍ୟ ଅନ୍ୟ କେହି ଯତ୍ନକାରୀ (ଅଜା, ଆଈ କିମ୍ବା ମାଉସୀ/ପିଉସୀ) ଏହା ଯୋଗାଇଥାଆନ୍ତି ।

ତୃତୀୟରେ ଏପରି ପିଲାମାନଙ୍କ ଜୀବନରେ ନିଶ୍ଚିତ ଭାବରେ ଏକ ଭାବର ମରୁଦ୍ୟାନ (Emotional Oasis) ଥାଏ । ପରିପାର୍ଶ୍ୱରେ ଏପରି ଜଣେ ବ୍ୟକ୍ତି ବା ଅନୁଷ୍ଠାନ ଥାଆନ୍ତି ଏବଂ ଏହି ବ୍ୟକ୍ତି ବା ଅନୁଷ୍ଠାନ ଭାବଗତ ଚାହିଦା ପୂରଣ କରନ୍ତି । ଏପରି ବ୍ୟକ୍ତି ଶିଶୁର କୌଣସି ବନ୍ଧୁ, ଶିକ୍ଷକ କିମ୍ବା କେହି ଆତ୍ମୀୟ ସ୍ୱଜନ କିମ୍ବା ପ୍ରତିବେଶୀ ହୋଇପାରନ୍ତି । ବ୍ୟକ୍ତିଙ୍କ ଛଡ଼ା ଗୋଟିଏ ଅନୁଷ୍ଠାନ (ମନ୍ଦିର ବା ପୂଜକ, ସ୍କୁଲ ବା ପାଠାଗାରର ପରିଚାଳକ) ମଧ୍ୟ ହୋଇପାରେ । ଶିଶୁଟି କୌଣସି ପୁରସ୍କାର ପାଇଲେ ପ୍ରଥମେ ନିଜର ବାପା ମା'ଙ୍କୁ ନଜଣାଇ ଏପରି ବ୍ୟକ୍ତିଙ୍କୁ ଜଣାଏ । ମାନସିକ ବ୍ୟଥା ମଧ୍ୟ ଏଠାରେ ପ୍ରକାଶ କରେ । ସ୍ଥୂଳତଃ ଶିଶୁ ଜୀବନର ଏକ ଭାବଗତ ନାୟକ (Emotional Role Model) ଶିଶୁର କେବଳ ସମନ୍ୱୟ କୌଶଳକୁ ଦୃଢ଼ କରନ୍ତି ନାହିଁ, ତାହାର ଉତ୍ତରୋତ୍ତର ଉନ୍ନତିକୁ ତ୍ୱରାନ୍ୱିତ କରନ୍ତି ।

## ପିଲାମାନଙ୍କର ମାନସିକ ଚାପ ଓ ବିଷାଦ କମାଇବେ କିପରି ?

## ସମନ୍ୱୟ-କୌଶଳ ବୃଦ୍ଧି କରିବେ କିପରି ?

୧. *ସମ୍ବଳର ବିକାଶ : ମାନସିକ ଚାପ ମୁଖ୍ୟତଃ କମ୍ ସମ୍ବଳ ଏବଂ ଅଧିକ ଦାବି ବା ଆହ୍ୱାନ (Demands / challenges) ର ପରିଣତି ହୋଇଥିବାରୁ ପିଲାଙ୍କର ମାନସିକ ସମ୍ବଳ ବୃଦ୍ଧି କରନ୍ତୁ । ନିଜେ ଶିଶୁର ବନ୍ଧୁ ହୁଅନ୍ତୁ ଏବଂ ଶିଶୁର ପ୍ରିୟ ବନ୍ଧୁଙ୍କ ସଂଖ୍ୟା ବୃଦ୍ଧିକରିବାରେ ସହାୟତା କରନ୍ତୁ ।*

୨. *ସମସ୍ୟା ସମାଧାନ : ଶିଶୁ ଏକାଧିକ ସମସ୍ୟାର ଘେର ମଧ୍ୟରେ ରହିଥିବା ସମୟରେ ଅନ୍ତତଃ ଗୋଟିଏ ସମସ୍ୟା ଆପଣ ନିଜେ ସମାଧାନ କରାଇ ଦିଅନ୍ତୁ । ଅନେକ ସମୟରେ ଗୋଟିଏର ସମାଧାନ ଅନ୍ୟ ପାଇଁ ବାଟ ଖୋଲେ ।*

୩. *ସମନ୍ୱୟ କୌଶଳର ଶିକ୍ଷା : ଶିଶୁକୁ ସମନ୍ୱୟ କୌଶଳ ଶିକ୍ଷା ଦିଅନ୍ତୁ । ବିଶେଷତଃ ରୂପାନ୍ତର ପଦ୍ଧତି (Sublimation) ଶିକ୍ଷା ଦିଅନ୍ତୁ । ରାଗ ସମୟରେ ବଗିଚା କାମ କରି କିମ୍ବା ଖେଳାଖେଳି ସମନ୍ୱୟ ଅଣାଯାଇ ପାରିବ । ଦୁଃଖ ସମୟରେ ଭଲ ବହିଟିଏ ପଢ଼ି ଖାପଖୁଆଇ ହେବ । ଏପରି ସମ୍ଭାବନା ଶିଶୁ ଶିଖାନ୍ତୁ ।*

୪. *ଶିଶୁର ଅଳ୍ପବୟସରେ ଏକ ସୁରକ୍ଷାପୂର୍ଣ୍ଣ ଅନୁରାଗର (Secured Attachment) ଅନୁଭବ ଦିଅନ୍ତୁ । ପିତାମାତା କିମ୍ବା ଅନ୍ୟ କେହି ଯତ୍ନକାରୀ ଏପରି ଭୂମିକା ନିର୍ବାହ କରିପାରନ୍ତି ।*

୫. *ନିଜେ ବିଷାଦ ଏବଂ ନକରାତ୍ମକ ବିଶ୍ଳେଷଣ (Pessimistic Explanation) ଶିଶୁ ସମ୍ମୁଖରେ କରନ୍ତୁ ନାହିଁ ।*

୬. ଅନ୍ତତଃ ପ୍ରାରମ୍ଭିକ ପର୍ଯ୍ୟାୟରେ ଶିଶୁକୁ ଏପରି ସବୁ କାର୍ଯ୍ୟ ଦିଅନ୍ତୁ ଯେଉଁଥିରେ ସେ ପ୍ରତିଶତ ୮୦/୯୦ ସଫଳତା ହାସଲ କରିବ । ଏହା ଶିଶୁର ଅସହାୟତା ଭାବ ଦୂର କରିବ ଏବଂ ଆତ୍ମବିଶ୍ୱାସ ଦୃଢ଼ କରିବ ।

୭. ପ୍ରତିକୂଳ ପରିବେଶର ସଫଳ ମୁକାବିଲା ପାଇଁ ଶିଶୁମନରେ ନିମ୍ନଲିଖିତ ତିନୋଟି ଭାବନାର ବିକାଶ ଦିଗରେ ଯତ୍ପରୋନାସ୍ତି ଉଦ୍ୟମ କରନ୍ତୁ ।

(କ) "ମୁଁ ଏପରି"–ମୁଁ ଦକ୍ଷ, ଆତ୍ମ–ବିଶ୍ୱାସରେ ପୂର୍ଣ୍ଣ ଏବଂ ବୁଦ୍ଧିମାନ ।

(ଖ) "ମୁଁ କରିପାରେ"– ମୁଁ ଅନ୍ୟକୁ ସନ୍ତୁଷ୍ଟ କରିପାରେ । ମୁଁ ଅନ୍ୟକୁ ସାହାଯ୍ୟ କରିବାରେ, ମୁଁ ଦୁଃଖ କିଛି ସହ୍ୟ କରିପାରେ ।

(ଗ) "ମୋର ଅଛି"–ମୋର ଏପରି ଲୋକ ଅଛନ୍ତି ଯେଉଁମାନେ ମୋତେ ଦରକାର ବେଳେ ସାହାଯ୍ୟ କରିପାରିବେ ।

# ଶିକ୍ଷାଗତ ଅକ୍ଷମତା

ଅକ୍ଷମତାର ପରିପ୍ରକାଶ ବିଭିନ୍ନ ସ୍ତରରେ ଘଟିଥାଏ । କାର୍ଯ୍ୟ ଅକ୍ଷମତା, ଶାରୀରିକ ଅକ୍ଷମତା ଓ ସାମାଜିକ ବ୍ୟବହାରରେ ଅକ୍ଷମତା ଇତ୍ୟାଦି ଅକ୍ଷମତାର ପରିସର ପୃଥକ୍ ପୃଥକ୍ । ଆକ୍ଷରିକ ଅର୍ଥରେ ଶିକ୍ଷାଗତ ଅକ୍ଷମତାର ସଂଜ୍ଞା ଖୁବ୍ ବ୍ୟାପକ ମନେ ହୋଇପାରେ । ମାତ୍ର ମନସ୍ତାତ୍ତ୍ୱିକ ଗବେଷଣା ଓ ପର୍ଯ୍ୟାଲୋଚନା ଦୃଷ୍ଟିଟି ଶିକ୍ଷାଗତ ଅକ୍ଷମତାର ଏକ ନିର୍ଦ୍ଦିଷ୍ଟ ଓ ସ୍ପଷ୍ଟ ରୂପରେଖ ରହିଛି । ଆମେ ସମସ୍ତେ ଜାଣୁ ଯେ ଗୋଟିଏ ପିଲା ଶିକ୍ଷା ନ କରିପାରିବାର ଅନେକଗୁଡ଼ିଏ କାରଣ ଥାଇପାରେ । ପିଲାଟିର ମସ୍ତିଷ୍କରେ କୌଣସି କାରଣରୁ ଆଘାତ ଲାଗି କ୍ଷତ ସୃଷ୍ଟି ହେଲେ ପିଲାର ଶିକ୍ଷାଲାଭ ବ୍ୟାହତ ହୁଏ । ଶରୀରର କୌଣସି ବିଶେଷ ଅକ୍ଷମତା (ଯଥା : କାନକୁ ଶୁଣା ନଯିବା କିମ୍ବା ଆଖିକୁ ଦେଖା ନଯିବା) ଥିଲେ ଶିକ୍ଷାଲାଭରେ ବାଧା ସୃଷ୍ଟି ହୁଏ । ପିଲାଟିର ବୁଦ୍ଧି ଅତି ବେଶି କମ୍ ହେଲେ ସେ ଶ୍ରେଣୀଗୃହରେ ଦିଆଯାଇଥିବା ଶିକ୍ଷାଦାନରୁ ଉପକାର ପାଏ ନାହିଁ । ସେହିପରି ପାରିବାରିକ ଓ ସାମାଜିକ ପୀଡ଼ନ ମଧ୍ୟରେ ବିଫଳତା ଆସିପାରେ । ଶ୍ରେଣୀଗୃହର ଶିକ୍ଷାରୁ ଉପଯୁକ୍ତ ଫଳ ନ ମିଳିବାର ଏହିପରି ଅନେକଗୁଡ଼ିଏ କାରଣ ଥାଇପାରେ । ଉପରୋକ୍ତ କାରଣଗୁଡ଼ିକଯୋଗୁଁ ସୃଷ୍ଟି ହେଉଥିବା ଶିକ୍ଷାଗତ ବିଫଳତାର ଅନୁଶୀଳନ କରାଯାଇ ଥିଲେ ହେଁ, ଏହାକୁ ଶିକ୍ଷାଗତ ଅକ୍ଷମତା ସଂଜ୍ଞା ଦିଆଯାଇ ନାହିଁ ।

ଗୋଟିଏ ପିଲାର ସାଧାରଣ ପରିମାଣ ବା ତା'ଠାରୁ ଅଧିକ ବୁଦ୍ଧିଥାଇ, ସାଧାରଣ ସ୍ୱାସ୍ଥ୍ୟ ଥାଇ ଏବଂ ପଢ଼ିବାର ସୁଯୋଗ ସୁବିଧା ଥାଇ ମଧ୍ୟ ଯଦି ସେ ଶ୍ରେଣୀଗୃହର ଶିକ୍ଷାରେ ବିଫଳତା ଦେଖାଏ, ତେବେ ପିଲାଟି ଶିକ୍ଷାଗତ ଅକ୍ଷମତା ଦର୍ଶାଉଛି ବୋଲି କୁହାଯାଏ । ବୌଦ୍ଧିକ, ଶାରୀରିକ ଓ ଆର୍ଥିକ ଦକ୍ଷତାର ସାଧାରଣ ଅବସ୍ଥା ସତ୍ତ୍ୱେ ଯେଉଁ ଶିକ୍ଷାଗତ ଅକ୍ଷମତା ଦେଖାଯାଏ, ତାକୁ ମନୋବିଜ୍ଞାନୀମାନେ ଶିକ୍ଷାଗତ ଅକ୍ଷମତା ସଂଜ୍ଞା ଦେଇଛନ୍ତି । ଇଉରୋପ ଓ ଆମେରିକା ପରି ସମୃଦ୍ଧିଶାଳୀ ମହାଦେଶରେ ଛାତ୍ରସଂଖ୍ୟାର ପ୍ରାୟ ଏକ ଦଶମାଂସ ଏହି ଶିକ୍ଷାଗତ ଅକ୍ଷମତାର ଶରବ୍ୟ ବୋଲି ହିସାବ କରାଯାଇଛି । ଆମ ଦେଶରେ ଏହାର ପରିସଂଖ୍ୟାନ ରୂପ ଯାହା ହେଉନା କାହିଁକି, ଏହା ଯେ ଏକ ଜାତୀୟ ସମସ୍ୟା ଓ ଏହାର ଅନୁଶୀଳନ ଏକ ଗୋଷ୍ଠୀଗତ ଉଦ୍‌ବେଗ, ଏଥିରେ ସନ୍ଦେହ ନାହିଁ ।

ଶିକ୍ଷାଗତ ଅକ୍ଷମତାକୁ ବୁଝିବା ପାଇଁ ଯେଉଁ ସମସ୍ତ ଉଦ୍ୟମ ହୋଇଛି, ତାହାର ମୁଖ୍ୟତଃ ଦୁଇଟି ଧାରା ରହିଛି । ପ୍ରଥମଟିର ବିଚାରରେ ଶିକ୍ଷାଗତ ଅକ୍ଷମତାର କେନ୍ଦ୍ରବିନ୍ଦୁ ହେଉଛି ଭାଷାଜ୍ଞାନର ଅକ୍ଷମତା । ଦ୍ୱିତୀୟଟି ବିଚାରରେ ଶିକ୍ଷାଗତ ଅକ୍ଷମତାର ମୌଳିକ କାରଣ ହେଉଛି ପିଲାଟି ପାଉଥିବା ତଥ୍ୟସମୂହକୁ ଗ୍ରହଣ, ସଜ୍ଜୀକରଣ ଓ ପୁନର୍ବିନିଯୋଗ କରିବାରେ ଅସାମର୍ଥ୍ୟ । ଏ ଦୁଇଟି ବିଚାରଧାରାର ବର୍ଣ୍ଣନା ଦ୍ୱାରା ଅଧିକ ସ୍ପଷ୍ଟ ଚିତ୍ର ଦିଆଯାଇପାରେ ।

**ଭାଷାଗତ ଅକ୍ଷମତା**

ଅନେକ ମନୋବିଜ୍ଞାନୀମାନଙ୍କ ମତରେ ଶିକ୍ଷାଗତ ଅକ୍ଷମତା ସୃଷ୍ଟି ହୁଏ ଭାଷାଗତ ଅକ୍ଷମତାରୁ । ସାଧାରଣ ପିଲାମାନଙ୍କ ପକ୍ଷେ ବୋଧଗମ୍ୟ ହେଉଥିବା ପୁସ୍ତକର ବିଷୟବସ୍ତୁ ଓ ଶ୍ରେଣୀରେ ଆଲୋଚିତ ବିୟବସ୍ତୁ କୌଣସି ଏକ ପିଲା ବୁଝି ନ ପାରିଲେ ତାହାର ଶିକ୍ଷାଗତ ଅକ୍ଷମତା ସୃଷ୍ଟି ହେବା ସ୍ୱାଭାବିକ । ଗୋଟିଏ ପିଲା ବା ବ୍ୟକ୍ତିର ଓଡ଼ିଆ ଭାଷା ସହିତ କୌଣସି ସମ୍ପର୍କ ନ ଥିବା ସ୍ଥଳେ ତାକୁ ଯଦି ଓଡ଼ିଆରେ ପାଠ୍ୟପୁସ୍ତକ ଓ ଓଡ଼ିଆ ଭାଷାରେ ଆଲୋଚନା ଶୁଣିବାର ହଠାତ୍ ସୁଯୋଗ ଦିଆଯାଏ ତେବେ ସେ ନବୁଝି ପାରିବାର କୌଣସି ବିଚିତ୍ରତା ନାହିଁ । ଏହାକୁ ଭାଷାଗତ ଅକ୍ଷମତାଜନିତ ଶିକ୍ଷାଗତ  ଅକ୍ଷମତା କୁହାଯାଇ ନଥାଏ । ମାତ୍ର ପିଲାଟି ଓଡ଼ିଶାରେ ରହି ଓଡ଼ିଆକଥା ଶୁଣିବାର ସୁଯୋଗ ପାଇବା ସତ୍ତ୍ୱେ ଯଦି ତା' ବୟସର ପିଲାଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକ ଭଲଭାବେ ପଢ଼ିନପାରେ ଏବଂ ବୁଝିନପାରେ, ତେବେ ତାକୁ ଶିକ୍ଷାଗତ  ଅକ୍ଷମ ପିଲା ବୋଲି ଧରାଯିବ । ସେହିପରି ପିଲାଟି  ଶ୍ରେଣୀଗୃହରେ ଆଲୋଚିତ ବିଷୟ ନ ବୁଝିପାରିଲେ ତା'ର ଶିକ୍ଷାଗତ ଅକ୍ଷମତା ଅଛି ବୋଲି କୁହାଯିବ ।

ଭାଷାଗତ ଅକ୍ଷମତାର ମୁଖ୍ୟତଃ ତିନୋଟି ଦିଗ ଅଛି । ପ୍ରଥମଟି ହେଉଛି ବର୍ଣ୍ଣ ପରିଚୟ (Orthography) ଜନିତ ଅକ୍ଷମତା । ପିଲାଟି 'କ' କୁ 'କ' ବୋଲି ଚିହ୍ନି ପାରୁ ନଥିଲେ ଏବଂ 'ଚ' କୁ 'ଚ' ବୋଲି ଚିହ୍ନିପାରୁ ନଥିଲେ ବର୍ଣ୍ଣ ପରିଚୟଜନିତ ଅକ୍ଷମତା ରହିଥାଏ । ବର୍ଣ୍ଣମାଳାର ପ୍ରତି ଅକ୍ଷର ସହିତ ପରିଚୟ ଭାଷାଜ୍ଞାନର ଏକ ମୌଳିକ ବିଭାବ । ଦ୍ୱିତୀୟଟି ହେଉଛି ଉଚ୍ଚାରଣଗତ (Phonology) ଦିଗ ।  ଏକ ବା ଏକାଧିକ ଶବ୍ଦକୁ କିପରି ଶୁଦ୍ଧଭାବେ ଉଚ୍ଚାରଣ କରାଯିବ, ତାହା ଭାଷାଜ୍ଞାନର ଏକ ବିଶିଷ୍ଟ ଦିଗ । 'ବୃକ୍ଷ' ଶବ୍ଦଟିକୁ ଓଡ଼ିଆମାନେ 'ବୃକ୍ଷ' ରୂପେ ଉଚ୍ଚାରଣ କଲାବେଳେ ବଙ୍ଗବାସୀମାନେ 'ବ୍ରିକ୍ଷ' ବୋଲି ଉଚ୍ଚାରଣ କରିଥାନ୍ତି । ସେହିପରି ଓଡ଼ିଆ ଶବ୍ଦ 'ଖୋଦିତ'କୁ ବଙ୍ଗବାସୀମାନେ କ୍ଷୋଦିତ ରୂପେ ଉଚ୍ଚାରଣ କରନ୍ତି । Cutକୁ 'କଟ୍' ରୂପେ ଉଚ୍ଚାରଣ କରିବା ସ୍ଥଳେ Put ଶବ୍ଦଟି 'ପୁଟ୍' ବୋଲି ଉଚ୍ଚାରଣ କରାଯିବା କଥା ବୋଲି କେତେକ ଶିଶୁ ଜାଣି ନଥାନ୍ତି । ସୁତରାଂ ବିଭିନ୍ନ  ଶବ୍ଦର ଉଚ୍ଚାରଣଗତ ବୈଶିଷ୍ଟ୍ୟ ଭାଷାଜ୍ଞାନର ଏକ ବିଶିଷ୍ଟ ଦିଗ । ଏହାର ଅଭାବରେ ଭାଷାଗତ ଅକ୍ଷମତା ବୃଦ୍ଧି ପାଇବା ସ୍ୱାଭାବିକ ।

ଭାଷାଗତ ଅକ୍ଷମତା ତୃତୀୟ ଦିଗ ହେଉଛି ଶବ୍ଦାର୍ଥବୋଧ । ଶିକ୍ଷାର ବିଭିନ୍ନ ଶବ୍ଦ ଭିନ୍ନ ଭିନ୍ନ ଅର୍ଥରେ ପ୍ରୟୋଗ କରାଯାଏ । ପୁଣି ପ୍ରସଙ୍ଗକ୍ରମେ ଗୋଟିଏ ଶବ୍ଦ ଭିନ୍ନ ଭିନ୍ନ ଅର୍ଥ ଗ୍ରହଣ କରିଥାଏ । ଶବ୍ଦାର୍ଥ ଜ୍ଞାନ ନଥିବା ପିଲା ଶବ୍ଦଗୁଡ଼ିକ ଠିକ୍‌ଭାବେ ବୁଝି ନ ପାରିବାରୁ କୌଣସି ପାଠ୍ୟ ବିଷୟକୁ ବୁଝିବା ଓ ହୃଦୟଙ୍ଗମ କରିବାରେ ବ୍ୟର୍ଥ ହୁଏ । କେବଳ ଶବ୍ଦର ସ୍ୱତନ୍ତ୍ର ଅର୍ଥ ନୁହେଁ, କୌଣସି ବାକ୍ୟ ବା ପରିଚ୍ଛେଦର ଅର୍ଥ ବୁଝିବା କଷ୍ଟକର । ସୁତରାଂ ଅର୍ଥବୋଧର ଅଭାବରେ ଭାଷାଜ୍ଞାନ ବହୁ ଅଂଶରେ ବ୍ୟାହତ ହୁଏ ।

ଆଲୋଚିତ ତିନୋଟି ମୌଳିକ ଆବଶ୍ୟକତା ବ୍ୟତୀତ ଅନ୍ୟ ଗୋଟିଏ ଦକ୍ଷତା ମଧ୍ୟ ଦରକାର । ଏହାକୁ ଗବେଷକମାନେ ଭାଷାତୀତ ଦକ୍ଷତା କହନ୍ତି । କୌଣସି କଥିତ ବା

ପଠିତ ବିଷୟରେ ପ୍ରକୃତ ତାତ୍ପର୍ଯ୍ୟ ବୁଝିବା ପାଇଁ କିଛି ପରିମାଣରେ ଭାଷାତୀତ ଦକ୍ଷତାର ଦରକାର । ବିଶେଷତଃ ବିଭିନ୍ନ ଶବ୍ଦ ପ୍ରୟୋଗ କରି ଯେଉଁ ହାସ୍ୟରସ ସୃଷ୍ଟି କରାଯାଏ, ତାକୁ ଠିକ୍‌ଭାବେ ବୁଝିବା ପାଇଁ ଭାଷାତୀତ ଦକ୍ଷତା ପ୍ରୟୋଜନ । ଗୋଟିଏ ଉଦାହରଣ ଦେଇ ଏହାକୁ ପ୍ରାଞ୍ଜଳ କରାଯାଇପାରେ । ଜଣେ ବ୍ୟକ୍ତିଙ୍କୁ ତାଙ୍କର ବାସସ୍ଥାନ କେଉଁଠି ବୋଲି ପଚାରି ଯିବାରୁ ସେ କହିଲେ, "ମୋ ଘର ଅଲାଣ୍ଡରେ ।" ଅଲାଣ୍ଡ କେଉଁଠାରେ ? ବ୍ୟକ୍ତିଜଣକ ମଜା କରିବାକୁ କହିଲେ, "ଆପଣ ଜାଣିନାହାନ୍ତି । ଇଂଲଣ୍ଡ, ଆର୍ୟାଲାଣ୍ଡ, ସ୍କଟଲ୍ୟାଣ୍ଡ ପରି ଅଲାଣ୍ଡ ଏକ ବିଶିଷ୍ଟ ସ୍ଥାନ ।" ଏଠାରେ ଲକ୍ଷ୍ୟ କରିବାର କଥା ଯେ ସାଧାରଣ ଭାଷାଜ୍ଞାନର ଊର୍ଦ୍ଧ୍ୱକୁ ଯାଇ ଏହାକୁ ବୁଝିଲେ ମଜା ଲାଗିବ । ପ୍ରତ୍ୟେକ ହାସ୍ୟରସ ସ୍ଥାନକାଳ ଓ ପରିପ୍ରେକ୍ଷୀ ସହିତ ଏପରି ଭାବରେ ଜଡ଼ିତ ଯେ ହାସ୍ୟରସ ବୁଝିବାକୁ ସାଧାରଣ ଭାଷାଜ୍ଞାନଠାରୁ ଅଧିକ କିଛି ଜ୍ଞାନ ପ୍ରୟୋଜନ । କେବଳ ହାସ୍ୟରସ କ୍ଷେତ୍ରରେ ନୁହେଁ, ବହୁସ୍ଥଳରେ ଆମର ଭାଷାତୀତ ସଚେତନତା ଆମର ଯୋଗାଯୋଗ ଏବଂ ବୋଧଜ୍ଞାନକୁ ସମୃଦ୍ଧ କରେ ।

ଭାଷାଗତ ଜ୍ଞାନକୁ ଶିକ୍ଷାଗତ ଅକ୍ଷମତାର କେନ୍ଦ୍ରବିନ୍ଦୁ ରୂପେ ବିଚାର କରୁଥିବା ମନୋବିଜ୍ଞାନୀମାନେ ଶିକ୍ଷାଗତ ଅକ୍ଷମ ଶିଶୁର ଭାଷାଗତ ଅକ୍ଷମତା ଓ ତା'ର ସ୍ୱରୂପ ଜାଣିପାଇଁ ପାଇଁ ପ୍ରଥମେ ଉଦ୍ୟମ କରନ୍ତି । ବିଭିନ୍ନ ପରୀକ୍ଷା ଓ ମୂଲ୍ୟାୟନ ମାଧ୍ୟମରେ ସେମାନେ ଅକ୍ଷମତାର ସ୍ୱରୂପ ସ୍ଥିର କରନ୍ତି । ତାପରେ ସେମାନଙ୍କର ଉଦ୍ୟମ ଆରମ୍ଭ ହୁଏ ଶିଶୁର ଭାଷାଗତ ଅକ୍ଷମତା ଦୂରକରି ତାର ଭାଷାଗତ ଦକ୍ଷତା ସୃଷ୍ଟିକରିବା ଦିଗରେ ।

ଅନ୍ୟ କେତେକ ମନୋବିଜ୍ଞାନୀମାନଙ୍କ ମତରେ ଶିକ୍ଷାଗତ ଅକ୍ଷମତାର ମୂଳ କାରଣ ହେଉଛି ବିଭିନ୍ନ ସୂଚନା ଗ୍ରହଣ ଓ ସେ ସବୁର ସଜ୍ଜୀକରଣରେ ଦକ୍ଷତାର ଅଭାବ । ଗୋଟିଏ ପିଲାର ଭାଷାଗତ ଦକ୍ଷତା ଥାଇପାରେ । ମାତ୍ର ସେ ନିଜ ପରିବେଶରୁ ଯେଉଁ ସମସ୍ତ ସୂଚନା (Information) ପାଉଛି, ସେ ସବୁକୁ ସଙ୍ଗଠିତ କରିବାରେ ତା'ର ଦକ୍ଷତା ନ ଥାଇପାରେ । ସୂଚନାଗୁଡ଼ିକୁ ଠିକ୍ ଭାବରେ ସଜାଇ ତାକୁ କାରବାର କରି ନ ପାରିଲେ ତା'ର ଶିକ୍ଷାଗତ ଅକ୍ଷମତା ସୃଷ୍ଟିହେବ । ଗବେଷଣାରୁ ଦେଖାଯାଇଛି ଯେ, ଅନେକ ପିଲା ଅଛନ୍ତି ଯେଉଁମାନେ ସୂଚନାଗୁଡ଼ିକ ଗୋଟି ଗୋଟି ହୋଇ କ୍ରମାନ୍ୱୟରେ ଆସିଲେ ସେମାନେ ତାକୁ ଠିକ୍ ରୂପେ ଗ୍ରହଣ କରି ସେଥିରୁ ପ୍ରକୃତ ଅର୍ଥ ଗ୍ରହଣ କରିପାରନ୍ତି । ଭବିଷ୍ୟତରେ ସେସବୁ ତଥ୍ୟ ବ୍ୟବହାର କରିପାରନ୍ତି । ମାତ୍ର ବହୁତ ସୂଚନା ଯଦି ଏକ ସମୟରେ ଆସେ, ତେବେ ସେପରି ପିଲାମାନେ ସେସବୁ ତଥ୍ୟଗୁଡ଼ିକ ଠିକ୍‌ରୂପେ ଗ୍ରହଣ କରି ସେଥିରୁ ପ୍ରକୃତ ଅର୍ଥ ବାହାର କରିପାରନ୍ତି ନାହିଁ । ପରୋକ୍ଷରେ ଅନ୍ୟ ପ୍ରକାରର ପିଲା ଏକ ସମୟରେ ଆସୁଥିବା ସୂଚନାଗୁଡ଼ିକୁ ଠିକ୍‌ଭାବେ ସଜାଇ, ତାକୁ ବ୍ୟବହାର ଉପଯୋଗୀ କରନ୍ତି, ମାତ୍ର ଗୋଟିଏ ପରେ ଗୋଟିଏ ଆସୁଥିବା ସୂଚନାମାନଙ୍କୁ ଠିକ୍‌ଭାବେ ଗ୍ରହଣ କରି ସଙ୍ଗଠନ କରିପାରନ୍ତି ନାହିଁ ।

ସୂଚନା ଗ୍ରହଣ ଓ ସଜ୍ଜୀକରଣ ଉପରେ ଗୁରୁତ୍ୱ ଆରୋପ କରୁଥିବା ମନୋବିଜ୍ଞାନୀମାନେ ଶିଶୁକୁ ବିଭିନ୍ନ ପରୀକ୍ଷା ନିରୀକ୍ଷା କରି ବାହାର କରନ୍ତି ଶିଶୁଟି ସମସ୍ୟା ସମାଧାନ କଲାବେଳେ

କିପରି ପନ୍ଥା ଅବଲମ୍ବନ କରୁଛି । ଗୋଟିଏ ପିଲାର ଠିକ୍ କିମ୍ବା ଭୁଲ୍ ଉତ୍ତର ଉପରେ ଗୁରୁତ୍ୱ ନ ଦେଇ ସେମାନେ ଦେଖନ୍ତି ଶିଶୁଟି କିପରି ଆଭିମୁଖୀ (Approach) ଗ୍ରହଣ କରୁଛି । ତା'କୁ କେନ୍ଦ୍ରକରି ଶିଶୁଟିର ସୂଚନା ଗ୍ରହଣ ଓ ସଙ୍ଗୀକରଣ ପ୍ରକରତା ନିରୂପଣ କରନ୍ତି । ଶିଶୁର ପଦ୍ଧତି ତ୍ରୁଟିପୂର୍ଣ୍ଣ ଜାଣିଲା ପରେ ତାର ତ୍ରୁଟି ନିରାକରଣ ପାଇଁ ଉଦ୍ୟମ ହୁଏ ।

ଗତ କୋଡ଼ିଏ ବର୍ଷ ମଧ୍ୟରେ ପିଲାମାନଙ୍କ ଶିକ୍ଷାଗତ ଅକ୍ଷମତାକୁ ବିଜ୍ଞାନସମ୍ମତ ପଦ୍ଧତିରେ ବୁଝିବା ପାଇଁ ବହୁ ସଫଳ ଉଦ୍ୟମ ହୋଇଛି । ଆଲୋଚିତ ଦୁଇଟି ମତବାଦ ପରସ୍ପର ବିରୋଧୀ ନୁହେଁ । ଶିଶୁର ଶିକ୍ଷାଗତ ଅକ୍ଷମତା ଦୂର କରିବାକୁ ଦୁଇଟି ଆଭିମୁଖ୍ୟର ସାହାଯ୍ୟ ନିଆଯାଇ ପାରେ । ଶିଶୁର ଭାଷାଗତ ଅକ୍ଷମତା ଦୂର କିରବାକୁ ଶିକ୍ଷକ, ପିତାମାତା, ଶିକ୍ଷାବିତ୍ ଓ ଉପଦେଷ୍ଟା ବହୁ କାର୍ଯ୍ୟ କରିପାରନ୍ତି । ବର୍ଣ୍ଣ ପରିଚୟ ସମୃଦ୍ଧ କରିବାକୁ ପାଠ୍ୟ ପୁସ୍ତକ ଓ ଅନ୍ୟାନ୍ୟ ବର୍ଣ୍ଣ ପରିଚୟ ପୁସ୍ତକର ପରିପ୍ରାଟୀକୁ ଆକର୍ଷଣୀୟ କରାଯାଉଛି । ଉଚ୍ଚାରଣଗତ ଦକ୍ଷତାର ବୃଦ୍ଧିପାଇଁ ଉଚ୍ଚାରଣ ସହାୟକ ଯନ୍ତ୍ରପାତିର ସାହାଯ୍ୟ ନିଆଯାଉଛି । ଶବ୍ଦାର୍ଥବୋଧ ଓ ପ୍ରୟୋଗାତ୍ମକ ଜ୍ଞାନର ଅଭିବୃଦ୍ଧି ପାଇଁ ନୂତନ ପଦ୍ଧତିରେ ଭାଷାଜ୍ଞାନ ଦିଆଯାଉଛି । ଶିକ୍ଷାୟତନର ଆନୁଷ୍ଠାନିକ ପ୍ରଚେଷ୍ଟା ଛଡ଼ା ଅଣଆନୁଷ୍ଠାନିକ ଉଦ୍ୟମର ଯଥେଷ୍ଟ ତାତ୍ପର୍ଯ୍ୟ ରହିଛି । ଜଣେ ମନୋବିଜ୍ଞାନୀ ଦୃଢ଼ ମତବ୍ୟକ୍ତ କରି କହିଛନ୍ତି ଯେ, ଗୋଟିଏ ଶିଶୁକୁ ତା'ର ବାପ ମା' ଯଦି ପ୍ରତ୍ୟହ ନିଶ୍ଚିତ ଭାବରେ ଗୋଟିଏ ଗପ କହନ୍ତି ଏବଂ ରାତିରେ ପିଲାଟିକୁ ଗପ ବିଷୟରେ ପ୍ରଶ୍ନ ପଚାରି ଉତ୍ତର ନିଅନ୍ତି, ତେବେ ସେ ପିଲାର ଭାଷାଦକ୍ଷତା ବୃଦ୍ଧିପାଇବ ଏବଂ ଶିକ୍ଷାଗତ ଅକ୍ଷମତାର ସମ୍ଭାବନା ଦୂର ହେବ ।

ସେହିପରି ଗବେଷକ, ଉପଦେଷ୍ଟା ଓ ଶିକ୍ଷାବିତ୍‌ମାନେ ପିଲାମାନଙ୍କର ବ୍ୟକ୍ତିଗତ ତଥ୍ୟଗ୍ରହଣ ପନ୍ଥାର ବିଶ୍ଳେଷଣ କରି ତାକୁ ତ୍ରୁଟିହୀନ କରିବାରେ ଉଦ୍ୟମ କରିପାରିବେ । ଏ ଦିଗରେ ସୂଚନା ସଙ୍ଗୀକରଣ ଉପରେ ଗୁରୁତ୍ୱ ଆରୋପ କରୁଥିବା ମନୋବିଜ୍ଞାନୀମାନଙ୍କ ଗବେଷଣାଲବ୍ଧ ତଥ୍ୟ ମୂଲ୍ୟବାନ୍ ହେବ । ଶିକ୍ଷାଗତ ଅକ୍ଷମତାର ଅନୁଶୀଳନ ଓ ଦୂରୀକରଣ ଜାତୀୟ ଯୋଜନାର ଏକ ବିଶିଷ୍ଟ ଅଙ୍ଗ ହେବାର ଯଥାର୍ଥ୍ୟ ରହିଛି ।

# ବିକାଶର ଅନ୍ୟ ଏକ ବିଚ୍ୟୁତି : ଅତିଚଞ୍ଚଳତା

ସକ୍ରିୟତା ଶିଶୁର ସ୍ୱାଭାବିକ ଗୁଣ । ସକ୍ରିୟ ଶିଶୁ ପରିବେଶ ସମ୍ପର୍କରେ କୌତୁହଳ ଦର୍ଶାଏ । ଅଧିକ ଜାଣିବା ପାଇଁ ଅନ୍ୱେଷଣମୁଖୀ (Exploratory) ବ୍ୟବହାର କରେ ।ସକ୍ରିୟତା ଫଳରେ ତାର ଶିକ୍ଷଣ ପ୍ରକ୍ରିୟା ପ୍ରସାରିତ ହୁଏ । ମାତ୍ର ସକ୍ରିୟତାର ପୂର୍ଣ୍ଣ ଉପଯୋଗ ପାଇଁ ଶିଶୁର ନିୟନ୍ତ୍ରଣାବୋଧ ମଧ୍ୟ ଆବଶ୍ୟକ । ନିର୍ଦ୍ଦିଷ୍ଟ ଲକ୍ଷ୍ୟକୁ ଆଖି ରଖି କାର୍ଯ୍ୟଟିଏ ଆରମ୍ଭ କରିବା, ଲକ୍ଷ୍ୟସାଧନ ପର୍ଯ୍ୟନ୍ତ ଏହାକୁ ଚାଲୁ ରଖିବା ଏବଂ ଲକ୍ଷ୍ୟପୂରଣ ପରେ ଏହାର ପରିସମାପ୍ତି ଘଟାଇ ଅନ୍ୟ କାର୍ଯ୍ୟରେ ମନୋନିବେଶ କରିବା ଏକ ବୁଦ୍ଧିମତ୍ତାର କାର୍ଯ୍ୟ । ମାତ୍ର କେତେକ ଶିଶୁ ଏ କ୍ଷେତ୍ରରେ ବିଫଳତା ଦର୍ଶାନ୍ତି । ସେମାନଙ୍କର ଅଭିନିବେଶ (Attention) ଏତେ ବିକ୍ଷିପ୍ତ ଏବଂ ସେମାନଙ୍କର କାର୍ଯ୍ୟକଳାପରେ ଶୃଙ୍ଖଳା ନଥାଏ । ଅତିସକ୍ରିୟତା (Hyperactivity) ଦର୍ଶାଇ ସେମାନେ ନିଜ ପାଇଁ ଏବଂ ଅନ୍ୟ ପାଇଁ ସମସ୍ୟା ସୃଷ୍ଟି କରନ୍ତି ।

ସ୍କୁଲକୁ ଯିବା ଆରମ୍ଭ କରିବା ପୂର୍ବରୁ ଏପରି ଅତିଚଞ୍ଚଳତା ଭାବ କେତେକ ଶିଶୁଙ୍କଠାରେ ରହିଥିଲେ ମଧ୍ୟ ସ୍କୁଲ ବୟସରେ ଏହା ଅଧିକ ସ୍ପଷ୍ଟରୂପେ ପ୍ରକାଶ ପାଇଥାଏ । ଶିକ୍ଷକ ଶିକ୍ଷୟତ୍ରୀ ଲକ୍ଷ୍ୟ କରନ୍ତି ଯେ ପିଲାଟି ନିଜ ଆସନରେ ବେଶୀ ସମୟ ବସୁନାହିଁ । ବହିପତ୍ର ଏଣେତେଣେ ପକାଇ ଦେଉଛି । କଲମ କିମ୍ବା ପେନ୍‌ସିଲ ଧରି ଦୀର୍ଘସମୟ ଲେଖିବାର ମନୋଭାବ ନାହିଁ । ଉଚ୍ଚସ୍ୱରରେ ଚିତ୍କାର କରିବା ଏବଂ ସ୍କୁଲର ଆସବାବପତ୍ରକୁ ଏପଟ ସେପଟ କରିବାର ଲକ୍ଷଣ ପ୍ରକାଶ ପାଉଛି । ମୋଟ ଉପରେ ପ୍ରତି ମୁହୂର୍ତ୍ତରେ ମୁଖ୍ୟ କାମ ବ୍ୟତୀତ ଅନ୍ୟସବୁ ଦୃଶ୍ୟ ବା ଶବ୍ଦଦ୍ୱାରା ପୁନଃ ପୁନଃ ଆକର୍ଷିତ ହେବା (Distractibility), କୌଣସି ବିଷୟରେ ଅଧିକ ସମୟ ମନଯୋଗ ଦେଇ ନପାରିବା (Limited Span of Attention) ଅସ୍ଥିରତା ବା (Hyperactivity) ଅତିଚଞ୍ଚଳତାର ମୁଖ୍ୟ ଲକ୍ଷଣ । କହିବା ନିଷ୍ପ୍ରୟୋଜନ ଯେ ଏପରି ପିଲାମାନେ ଲିଖନ ପଠନ ଏବଂ ଗଣିତ ପରି ଶିକ୍ଷାଗତ କାର୍ଯ୍ୟକ୍ରମରେ ପଛୁଆ ରୁହନ୍ତି । ଏମାନଙ୍କ ଶାରୀରିକ କ୍ରିୟାକଳାପ ଅନିୟନ୍ତ୍ରିତ ହୋଇଥିବାରୁ ସାଙ୍ଗସାଥି ପାଇବାରେ ଅସୁବିଧାର ସମ୍ମୁଖୀନ ହୁଅନ୍ତି । ପ୍ରକୃତରେ ସମସ୍ୟା ସୃଷ୍ଟି କରିବା ପିଲାମାନଙ୍କର ସଂଖ୍ୟା ୧୦ରୁ ୧୫ ପ୍ରତିଶତ ହେବାର ଅନୁମାନ କରାଯାଏ । ଅବଶ୍ୟ ମନୋବିଜ୍ଞାନୀମାନେ ଏପରି ପରିସଂଖ୍ୟାନ ଯୋଗାଇବା ସ୍ଥଳେ ଶିକ୍ଷକ ଶିକ୍ଷୟତ୍ରୀମାନେ ଏହାଠାରୁ ଅଧିକ ସଂଖ୍ୟକ ଏ ଧରଣର ପିଲା ଶ୍ରେଣୀକୁ ଆସୁଥିବାର ସୂଚନା ଦଅନ୍ତି । ସେହିପରି ପିତାମାତାଙ୍କ ଆକଳନ ଅନୁଯାୟୀ ଏମାନଙ୍କର ସଂଖ୍ୟା ଶିକ୍ଷକ ଶିକ୍ଷୟତ୍ରୀମାନଙ୍କ ବିବରଣୀ ତୁଳନାର ଅଧିକ ହୋଇଥାଏ ।

ଗୋଟିଏ ଅତିଚଞ୍ଚଳ ପିଲାକୁ ବିଶେଷଜ୍ଞଙ୍କ ପରାମର୍ଶ ପାଇଁ ନେବା ପୂର୍ବରୁ କେତୋଟି ଦିଗପ୍ରତି ଧ୍ୟାନ ଦେବାକୁ ହେବ । ପିଲାଟି ଯେ ପ୍ରକୃତ ସମସ୍ୟା ସୃଷ୍ଟି କରୁଛି, ସେ ବିଷୟରେ ସ୍ଥିର ନିଶ୍ଚିତ ହେବାକୁ ପଡ଼ିବ । ନିମ୍ନଲିଖିତ ପାଞ୍ଚୋଟି ଅବସ୍ଥାକୁ ଭିତ୍ତିକରି ବିଶେଷଜ୍ଞଙ୍କ ପରାମର୍ଶ ନିଆଯାଇପାରେ ।

୧. ପୂରାପୂରି ଅନୁଚିତ ବିଚାର କରାଯାଉଥିବା ସ୍ଥାନ ଓ ପରିପ୍ରେକ୍ଷୀରେ ପିଲାଟି ଏହି ବ୍ୟବହାର ଦର୍ଶାଉଛି (ଯଥା- ସମସ୍ତଙ୍କ ମେଳରେ ବସି, ଖାଇବା ସମୟରେ)

୨. ଅତିଚଞ୍ଚଳତାକୁ ନିୟନ୍ତ୍ରଣ କିରବାକୁ ପିତାମାତା ଏବଂ ଶିକ୍ଷକ ନିର୍ଦ୍ଦେଶ ଦେବା ସତ୍ତ୍ୱେ ପିଲାଟି ଏହାକୁ ଚାଲୁରଖିଛି ।

୩. ଧୀର ଗତିରେ କାମ କରିବାକୁ ଚେଷ୍ଟା କରୁଥିବା ସମୟରେ ମଧ୍ୟ ନିୟନ୍ତ୍ରଣ ହରାଇ ବିଶୃଙ୍ଖଳିତ ଏବଂ ବେଗବାନ୍ ଢଙ୍ଗର କାମ କରୁଛି । ଉଦାହରଣସ୍ୱରୂପ, ଚିତ୍ରଟିଏ ଆଙ୍କିବା ସମୟରେ ଧୀର ଗତିରେ ପେନ୍‌ସିଲ ଚଳାଇବା ଆବଶ୍ୟକ ବୋଲି ପିଲାଟି ଜାଣେ । ଅଥଚ ଅତିଚଞ୍ଚଳତାର ଅସ୍ୱଭାବୀ ବ୍ୟବହାର ଦର୍ଶାଉଥିବା ପିଲା ଏପରି ଆତ୍ମସଂଯମ ରକ୍ଷା କରିପାରେ ନାହିଁ ।

୪. ଗୋଟିଏ ନିର୍ଦ୍ଦିଷ୍ଟ କାମ କରୁଥିବା ସମୟରେ ମଧ୍ୟ ବାହାରର ଦୃଶ୍ୟ ବା ଶବ୍ଦ ଦ୍ୱାରା ଆକର୍ଷିତ ହୁଏ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇପାରେ ଯେ ଗପଟିଏ ଶୁଣୁଥିବା ସମୟରେ ମଧ୍ୟ ଅନ୍ୟ କେହି ସେହି ପଥ ଦେଇ ଚାଲିଗଲେ ସେ ନିଜର ଦୃଷ୍ଟି ଓ ଅଭିନିବେଶ (Attention) ଗପରୁ ଫେରାଇ ନେଇ ଚାଲିଯାଉଥିବା ଲୋକ ଆଡ଼କୁ ଚାହେଁ ।

୫. ସ୍କୁଲରେ ଶିକ୍ଷା ଦିଆଯାଉଥିବା ବିଭିନ୍ନ ବିଷୟରେ କ୍ରମାଗତ ଭାବରେ ବିଫଳତା ଦର୍ଶାଏ ।

ଅତି ଚଞ୍ଚଳତାର କାରଣ ସମ୍ପର୍କରେ ଯେଉଁ ସମସ୍ତ ଗବେଷଣା କରାଯାଇଛି, ସେଥିରୁ କେତୋଟି ଜ୍ଞାତବ୍ୟ ତଥ୍ୟ ସଂଗୃହୀତ ହୋଇଛି । କୌଣସି ଗୋଟିଏ ମୂଳ କାରଣକୁ ଅତି ଚଞ୍ଚଳତାର ଏକମାତ୍ର କାରଣ ରୂପେ ବିଚାର କରାଯାଇ ପାରିବ ନାହିଁ । କେଉଁ ପିଲା କ୍ଷେତ୍ରରେ କେଉଁ ଉପାଦାନଟିର ଭୂମିକା ଗୁରୁତ୍ୱପୂର୍ଣ୍ଣ ତାହା ଜାଣିବା କଷ୍ଟକର । କେତେକ କ୍ଷେତ୍ରରେ ବଂଶାନୁକ୍ରମିକତା (Heredity)ର ଭୂମିକା ରହିଥାଏ । ପିତାମାତା କିମ୍ବା ପିତୃପୁରୁଷଙ୍କ ଅତିଚଞ୍ଚଳତା ପିଲାର ବ୍ୟବହାରକୁ ପ୍ରଭାବିତ କରିଥାଏ ।

ଶିଶୁର ଜନ୍ମପୂର୍ବରୁ ଶିଶୁ-ଭ୍ରୁଣ ଅବସ୍ଥାରେ ଥିବା ସମୟର କେତୋଟି ଘଟଣା ଅତି ଚଞ୍ଚଳତାର କାରଣ ହୋଇପାରେ । ଗର୍ଭାଶୟରେ ଥିବା ସମୟରେ ଜନ୍ମପୂର୍ବ ପରିବେଶ କ୍ଷତିଗ୍ରସ୍ତ ହେଲେ ଅତିଚଞ୍ଚଳତାର ଆଶଙ୍କା ରହିଥାଏ । କନ୍ୟା ସନ୍ତାନ ତୁଳନାରେ ଚାରିଗୁଣ ବାଳକ ଅତିଚଞ୍ଚଳତାର ଲକ୍ଷଣ ଦର୍ଶାଉଥିବାରୁ ପିଲାର ଲିଙ୍ଗନିର୍ଣ୍ଣୟକ କ୍ରୋମଜୋମ୍‌ରେ ଅଥବା ଜିନ୍‌ରେ କିଛି ତ୍ରୁଟି ବିଚ୍ୟୁତି ରହିଥିବାର ବିଚାର କାରାଯାଏ । ସନ୍ତାନ-ସମ୍ଭବା ମହିଳା ଅଧିକ ପରିମାଣରେ ମଦ୍ୟପାନ କିରବା କିମ୍ବା ଧୂମପାନ କରିବା ମଧ୍ୟ କ୍ଷତିକାରକ ।

ଜନ୍ମସମୟରେ ଅମ୍ଳଜାନର ଅଭାବ କିମ୍ୱା ମସ୍ତିଷ୍କରେ ଆଘାତ ପରବର୍ତ୍ତୀ ସମସ୍ୟା ସୃଷ୍ଟିକରିପାରେ । ସେହିପରି ଅନ୍ୟ କୌଣସି ପୁରୁଣା ଘର ରଙ୍ଗ ହେଉଥିବା ସମୟରେ କିମ୍ୱା ଅନ୍ୟ କୌଣସି ସ୍ଥାନରେ ବିଷାକ୍ତ ପଦାର୍ଥର ସଂସର୍ଗରେ ଆସି ଶିଶୁ ଏପରି ବିପର୍ଯ୍ୟୟର ଶୀକାର ହୋଇପାରେ । ଖାଦ୍ୟର ମଧ୍ୟ ଭୂମିକା ରହିଛି । ଖାଦ୍ୟ ପଦାର୍ଥକୁ ଅଧିକ ଦିନ ସଂରକ୍ଷିତ ରଖିବା ପାଇଁ ବ୍ୟବହୃତ ହୋଉଥିବା ରାସାୟନିକ ପଦାର୍ଥ ଶିଶୁ ପାଇଁ ଜଟିଳତା ସୃଷ୍ଟିକରେ । ଭିଟାମିନ୍‌ର ମାତ୍ରାଧିକ ଅଭାବ ବିଶେଷ କରି ଭିଟାମିନ୍ 'ଖ'ର ଅଭାବ ଅସୁବିଧା ସୃଷ୍ଟିକରେ । ମାତ୍ରାଧିକ କାଫିନ୍ ଏବଂ ମିଠାଜାତୀୟ ଏ କ୍ଷେତ୍ରରେ ପ୍ରତିକୂଳ ଅବସ୍ଥା ଆଣିପାରେ । ଆଲୋଚିତ ଶରୀର-ଭିତ୍ତିକ କାରଣସବୁ କୁ-ପରିଣତି ସୃଷ୍ଟି କରିବାର ସମ୍ଭାବନା ଥିଲେ ମଧ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ପିଲା କ୍ଷେତ୍ରର କେଉଁଟି କ୍ଷତି ସାଧନ କରିଛି, ତାହା ସଠିକଭାବେ କହିବା କଷ୍ଟକର ।

ଜୈବିକ କାରଣରୁ (Biological roots) ଯେଉଁ ଆଶଙ୍କା ଥାଏ, ପିତାମାତା ଏବଂ ଶିକ୍ଷକ ଶିକ୍ଷୟତ୍ରୀଙ୍କ କେତେକ ବ୍ୟବହାର ଏହି କ୍ଷତିକୁ ପ୍ରକାଶ୍ୟରୂପ ଦେଇପାରେ ଏବଂ ବଢ଼ାଇ ଦେଇପାରେ । ଉଦାହାରଣ ସ୍ୱରୂପ, ଅଳ୍ପ ବୟସରେ ଗୋଟିଏ ଆସନରେ ଦୀର୍ଘ ସମୟ ଧରି ବସି ରହିବାକୁ ବାଧ୍ୟ କରାଗଲେ ଶିଶୁର ଅସ୍ଥିରତା ବୃଦ୍ଧିପାଇବା ସ୍ୱାଭାବିକ । ଏ ଦୃଷ୍ଟିରୁ ପିତାମାତା ଏବଂ ଶିକ୍ଷକ ଶିକ୍ଷୟତ୍ରୀ ଅନମନୀୟ (Rigid) ନହୋଇ ନମନୀୟ (Flexible) ହେବା ବାଞ୍ଛନୀୟ ।

ପୂର୍ବରୁ ସୂଚନା ଦିଆଯାଇଛି ଯେ, କେବଳ ସମସ୍ୟାଯୁକ୍ତ ଅତିଚଞ୍ଚଳତା ଦର୍ଶାଉଥିବା ପିଲାମାନଙ୍କ ପାଇଁ ବିଶେଷଜ୍ଞ ପରାମର୍ଶ ଆବଶ୍ୟକ । ସାମାନ୍ୟ ଅସ୍ଥିରତାକୁ କିଛିମାତ୍ରାରେ ସହ୍ୟ କରିବାକୁ ହେବ ଏବଂ ପିତାମାତା ଓ ଶିକ୍ଷକ ଶିକ୍ଷୟତ୍ରୀ ଉପଦେଶନ ମାଧ୍ୟମରେ ଉପଯୋଗୀ ପରିବର୍ତ୍ତନ ଆଣିପାରିବେ ।

ଶିଶୁର ଅତିଚଞ୍ଚଳତା ସମସ୍ୟାଯୁକ୍ତ ହୋଇଥିଲେ ଲକ୍ଷଣସବୁର ନିୟନ୍ତ୍ରଣ ପାଇଁ ଔଷଧ ପତ୍ରର ସାହାଯ୍ୟ ନିଆଯାଏ । ଏ କ୍ଷେତ୍ରରେ ରିଟାଲିନ୍ (Ritalin) ଭଲ କାମକରେ । ବିଶେଷଜ୍ଞଙ୍କ ପରାମର୍ଶ ନେଇ ଏହା ପ୍ରୟୋଗ କଲେ ଜଟିଳତା ପ୍ରାୟ ନଥାଏ । ଏହା ଶିଶୁକୁ ଶାନ୍ତ କରାଏ । ଅଯଥା ପାଟିତୁଣ୍ଡ କରିବା, ଯୁକ୍ତିକରିବା ଏବଂ କ୍ଷତିକାରକ ବ୍ୟବହାରର ମାତ୍ରା ବେଶ୍ କମିଯାଏ ।

ଶିଶୁର ବ୍ୟବହାରଗତ ପରିବର୍ତ୍ତନ ପାଇଁ ପିତାମାତା ଏବଂ ଶିକ୍ଷକ ଶିକ୍ଷୟତ୍ରୀ ମଧ୍ୟ କେତେକ ଉପଯୋଗୀ କୌଶଳ (Behavioural Modification Techniques) ବ୍ୟବହାର କରିପାରିବେ । ଉଦାହାରଣ ସ୍ୱରୂପ, ଶିକ୍ଷକ ଶିକ୍ଷୟତ୍ରୀ ଶ୍ରେଣୀରେ ଭଲ ପଢୁଥିବା ପିଲାଟିକୁ କିଛି ଲେଖିବାକୁ କିମ୍ୱା ପଢ଼ିବାକୁ ଦେବେ । ଏହି ସମୟରେ ଅତିଚଞ୍ଚଳ ପିଲାଟିକୁ ଏହି ଭଲପିଲାକୁ ଅନୁକରଣ କରିବା ପାଇଁ ନିର୍ଦ୍ଦେଶ ଦେବେ । ପ୍ରାଥମିକ ଅବସ୍ଥାରେ ପୂର୍ଣ୍ଣ ଏବଂ ବାଞ୍ଛନୀୟ ଅନୁକରଣ ସମ୍ଭବ ନହୋଇପାରେ । ତଥାପି ମଝିରେ ମଝିରେ ଶିକ୍ଷକ ବା ଶିକ୍ଷୟତ୍ରୀ ପିଲାଟିକୁ ପ୍ରଶଂସାସୂଚକ ମନ୍ତବ୍ୟ (ପ୍ରୋତ୍ସାହନ : "ବାଃ ! ଖୁବ୍ ଭଲ") ଦେବେ । ଯୋଜନାବଦ୍ଧ ପ୍ରୋତ୍ସାହନ-ଦାନ ଶିଶୁଟିର ବ୍ୟବହାର ପରିବର୍ତ୍ତନର ସହାୟକ ହେବ ।

ଅନ୍ୟ କେତେକ ସ୍ଥଳରେ ଖେଳର ପ୍ରୟୋଗ କରାଯାଇପାରେ । ସାଙ୍ଗସାଥୀ କିମ୍ବା ଭାଇଭଉଣୀମାନଙ୍କ ସହିତ ଖେଳିବାର ସୁଯୋଗ ହେଇ ପିଲାମାନଙ୍କର ଆବେଗ (Emotion)କୁ ନିୟନ୍ତ୍ରିତ ମାର୍ଗରେ ପ୍ରକାଶ କରିବାର ସୁଯୋଗଦେବା ଉଚିତ । ପିତାମାତା ଏବଂ ଶିକ୍ଷକ ଶିକ୍ଷୟତ୍ରୀଙ୍କ ସୁପରିଚାଳନାରେ ଏପରି କରାଯାଇ ପାରିଲେ ପିଲାର ଅତିଚଞ୍ଚଳତାର ମାତ୍ରା କମିବାର ସମ୍ଭାବନା ବେଶୀ ।

ଅତିଚଞ୍ଚଳତାର ପରିବର୍ତ୍ତନ ପାଇଁ ପିତାମାତା ଏବଂ ଶିକ୍ଷକ ଶିକ୍ଷୟତ୍ରୀମାନଙ୍କୁ ମଧ୍ୟ କେତୋଟି ନୀତି ଅବଲମ୍ବନ କରିବାକୁ ହେବ । ପ୍ରଥମତଃ ଗୃହ ଏବଂ ଶ୍ରେଣୀର ଅଧିକାଂଶ କାର୍ଯ୍ୟକ୍ରମରେ ସ୍ଥିରତା ଏବଂ ପୂର୍ବାନୁମାନତା ରହିବା ବିଧେୟ । ଗୃହରେ ଖାଇବା ସମୟ, ଖେଳିବା ସମୟ, ଏବଂ ଶୋଇବା ସମୟରେ ନିର୍ଦ୍ଦିଷ୍ଟତା ରହିବାର କଥା । ସେହିପରି ଶ୍ରେଣୀରେ ମଧ୍ୟ କ'ଣ ସବୁ ଘଟିବାକୁ ଯାଉଛି, ସେ ବିଷୟରେ ଶିଶୁ ପୂର୍ବାନୁମାନ କରିପାରୁଥିବାର ସମ୍ଭାବନା ଥିବା ଆବଶ୍ୟକ । ପିତାମାତା ଓ ଶିକ୍ଷକ ଶିକ୍ଷୟତ୍ରୀ ଅନୁଶାସନ (ଶୃଙ୍ଖଳା ରକ୍ଷା) ପାଇଁ ଯେଉଁସବୁ ନିୟମ ଉପଯୋଗ କରୁଛନ୍ତି, ସେଥିରେ ସ୍ପଷ୍ଟତା (Clarity) ପ୍ରୟୋଜନ । କୌଣସି ଆଚରଣକୁ କାହିଁକି ବିଶୃଙ୍ଖଳିତ ବ୍ୟବହାର ବୋଲି ବିଚାର କରାଯିବ, ଶିଶୁକୁ ବୁଝାଇ ଦିଆଯିବ । ପୁଣି ଅନୁଶାସନ ପ୍ରୟୋଗରେ ସ୍ଥିରତା (Consistency) ବାଞ୍ଛନୀୟ । ଶିକ୍ଷକ କି ପିତାମାତା ଆଜି ଗୋଟିଏ ବ୍ୟବହାରକୁ ନିରୁତ୍ସାହିତ କରୁଛନ୍ତି, ଅଥଚ କାଲି କାମରେ ବ୍ୟସ୍ତରହି ଶିଶୁର ଏପରି କାର୍ଯ୍ୟଟି ପ୍ରତି ଦୃଷ୍ଟି ଦେଉନାହାନ୍ତି । ଏପରି ପ୍ରୟୋଗ ସ୍ଥିରତା ନୀତିର ବିରୁଦ୍ଧାଚରଣ କରେ । ସୁତରାଂ ସବୁଦିନ ସବୁ ପିଲାଙ୍କ ପାଇଁ ଏକାପ୍ରକାର ଶୃଙ୍ଖଳା ନୀତି ପ୍ରୋୟଗ ହେବା ଉଚିତ । ମୂଳତଃ ଜୈବିକ କାରଣରୁ ଯେଉଁ ସମ୍ଭାବନା ନେଇ ପିଲାଟି ଆସି ଥାଉନା କାହିଁକି, ଆମର ଉପଯୋଗୀ ବ୍ୟବହାର ମାଧ୍ୟମରେ ପିଲାର ଅତିଚଞ୍ଚଳତା ପରି ଅସ୍ୱଭାବୀ ବ୍ୟବହାରକୁ ନିୟନ୍ତ୍ରଣ କରିବା ଅସମ୍ଭବ ନୁହେଁ ।

## ସହାୟକ ପରାମର୍ଶ

୧. *ସନ୍ତାନ ସମ୍ଭବା ଜନନୀ ମଦ୍ୟପାନ ଓ ନିଶାଦ୍ରବ୍ୟ ସେବନ ପରି କୁଅଭ୍ୟାସ ପରିତ୍ୟାଗ କରିବେ ଏବଂ ଭ୍ରୂଣଶିଶୁ ଜରାୟୁରେ ଥିବା ଅବସ୍ଥାରେ ଆଘାତ ପାଇବାର ଘଟଣା ସବୁକୁ ଏଡ଼ାଇବା ପାଇଁ ଯତ୍ପରୋନାସ୍ତି ଉଦ୍ୟମ କରିବେ ।*

୨. *ଶିଶୁର ଜନ୍ମ ସମୟରେ ମସ୍ତିଷ୍କଗତ ଆଘାତ ଏଡ଼ାଇବା ଖୁବ୍ ପ୍ରୟୋଜନ । ଜନ୍ମପରେ ଶିଶୁପାଇଁ ଭିଟାମିନ୍ ବା ଖାଦ୍ୟସାର (ବିଶେଷତଃ ଭିଟାମିନ୍ 'ଖ') ର ଅଭାବ ଦୂର କରାଯିବ । ଖାଦ୍ୟ ପଦାର୍ଥକୁ ଅଧିକ ଦିନ ରଖିବା ପାଇଁ ବ୍ୟବହାର କରାଯାଉଥିବା ରାସାୟନିକ ଦ୍ରବ୍ୟ ଶିଶୁ ବ୍ୟବହାର ନକଲେ ଭଲ । ବିଷାକ୍ତ ଦ୍ରବ୍ୟଠାରୁ ମଧ୍ୟ ଶିଶୁକୁ ଦୂରେଇ ରଖିବାକୁ ହେବ ।*

୩. ଶିଶୁର କିଛିଟା ଚଞ୍ଚଳତା ସହ୍ୟ କରିବା ଉଚିତ । ଅସହିଷ୍ଣୁ ହେଲେ ଶିଶୁର ଚଞ୍ଚଳଭାବ ବୃଦ୍ଧିପାଇବାର ଆଶଙ୍କା ଅଛି । ସେହିପରି ପିତାମାତା ଏବଂ ଶିକ୍ଷକ ଶିକ୍ଷୟତ୍ରୀମାନେ ଅନମନୀୟ (Rigid) ବ୍ୟବହାର ପରିତ୍ୟାଗ କରିବେ । (ଉଦାହାରଣ-ଗୋଟିଏ ଆସନରେ ଦୀର୍ଘ ସମୟ ଧରି ବସି ରହିବାର ନିର୍ଦ୍ଦେଶ ଏ ଧରଣର ଅନମନୀୟତା)

୪. କେବଳ ଅତିଚଞ୍ଚଳତାର ମାତ୍ରା ସମସ୍ୟାଯୁକ୍ତ ହେଲେ ବିଶେଷଜ୍ଞ (ମନୋଚିକିତ୍ସକ)ଙ୍କ ପରାମର୍ଶ ଆବଶ୍ୟକ । ସ୍ଥଳବିଶେଷରେ ବିଶେଷଜ୍ଞଙ୍କ ପରାମର୍ଶ ନେଇ ଔଷଧ ପ୍ରୟୋଗ କରାଯାଏ । (କେତେ ମାତ୍ରାର ଚଞ୍ଚଳତା ସମସ୍ୟାଯୁକ୍ତ, ତାହାର ପାଞ୍ଚୋଟି ସୂଚକ ପ୍ରବନ୍ଧରେ ଦିଆଯାଇଛି) ।

୫. ଅନୁଶାସନ (ଶୃଙ୍ଖଳା ରକ୍ଷା) ନିୟମ ଲାଗୁ କଲାବେଳେ ନିମ୍ନ ଦିଗ ପ୍ରତି ଦୃଷ୍ଟି ଦିଅନ୍ତୁ ।

(କ) ସ୍ପଷ୍ଟତା- ବ୍ୟବହାରଟି କାହିଁକି ଅବାଞ୍ଛନୀୟ, ତାହା ଶିଶୁକୁ ବୁଝାଇ ଦିଅନ୍ତୁ ।

(ଖ) ସ୍ଥିରତା- ସବୁପିଲାଙ୍କ ପାଇଁ ଏବଂ ସବୁ ସମୟରେ ନିୟମର ନିର୍ଦ୍ଦିଷ୍ଟତା ରକ୍ଷା କରନ୍ତୁ ।

(ଗ) ପୂର୍ବାନୁମାନତା (Predictability)- ଗୃହ ଓ ଶ୍ରେଣୀର କାର୍ଯ୍ୟକ୍ରମରେ ନିୟମିତତା ରକ୍ଷା କରନ୍ତୁ ।

# ସ୍ମରଣ ସାମର୍ଥ୍ୟର ବିକାଶ

ସ୍ମରଣ ସାମର୍ଥ୍ୟ ଏକ ବିଶେଷ ଧରଣର ସମ୍ବଳ । ବୁଦ୍ଧିମତ୍ତା କେବଳ ସ୍ମରଣ ମଧ୍ୟରେ ସୀମିତ ନହେଲେ ମଧ୍ୟ ସ୍ମରଣ ସାମର୍ଥ୍ୟକୁ ବୁଦ୍ଧିମାନ୍ ବ୍ୟବହାରର ଏକ ଉପାଦାନ ରୂପେ ସ୍ୱୀକାର କରିବାକୁ ହେବ । ବୁଦ୍ଧିମାନ ବ୍ୟବହାର ପ୍ରକାଶ ସମୟରେ ଅତୀତର ଅନୁଭୂତି ଏବଂ ଅଭିଜ୍ଞତା ଉପଯୋଗ କରାଯାଏ । ଏ ଦୃଷ୍ଟିରୁ ସ୍ମରଣ ସାମର୍ଥ୍ୟର ଅଭାବ ହେଲେ ବୁଦ୍ଧିଦୀପ୍ତ ବ୍ୟବହାରର ପରିପ୍ରକାଶ ଅସମ୍ଭବ ହୋଇଉଠେ ।

ସ୍ମରଣ ସାମର୍ଥ୍ୟର ବିକାଶ ବହୁପୂର୍ବରୁ ଆରମ୍ଭ ହୋଇଥାଏ । ଏପରିକି ଜରାୟୁକାଳୀନ ଭ୍ରୂଣ–ଶିଶୁର କେତେକ ଅନୁଭବ ଶୈଶବ ଅବସ୍ଥାରେ (ଜନ୍ମରୁ ଦୁଇବର୍ଷ ମଧ୍ୟରେ) ପିଲାଟି ପୁନଃସ୍ମରଣ କରିବାର ପ୍ରାମାଣିକ ତଥ୍ୟ ରହିଛି । ଏପରିକି ସନ୍ତାନ–ସମ୍ଭବା ଜନନୀ ବହୁ ସମୟରେ ଗାଇଥିବା ଗୀତଟିର ସ୍ୱର ସହିତ ଶିଶୁ ପରିଚିତ ବୋଲି ପ୍ରମାଣିତ ମିଳୁଛି । ଆଧୁନିକ ଯନ୍ତ୍ରପାତି ଏବଂ ଗବେଷଣା ପଦ୍ଧତିର ଉନ୍ନତି ପୂର୍ବର ବହୁ ଅନାବିଷ୍କୃତ ଦିଗକୁ ଉନ୍ମୋଚନ କରିପାରିଛି ।

ବୟସର ବୃଦ୍ଧି ସହିତ ବାଲ୍ୟକାଳରେ ଶିଶୁର ସ୍ମରଣ ସାମର୍ଥ୍ୟ ଅଧିକ ବିକଶିତ ହୁଏ । ବିଶେଷତଃ ଶିଶୁ ସ୍କୁଲକୁ ଯିବା ଆରମ୍ଭ କରିବା ପରେ ଏହି ସାମର୍ଥ୍ୟ ଅଧିକ ପ୍ରସାରିତ ହୁଏ । ଏପରି ସମୃଦ୍ଧି ମୂଳରେ ଦୁଇଟି କାରଣ ରହିଛି । ପ୍ରଥମତଃ ଶିଶୁର ସ୍ମରଣ ଶକ୍ତି ବୃଦ୍ଧିପାଏ ଏବଂ ସେ ସ୍ମରଣ – ସହାୟକ ପଦ୍ଧତିସବୁର ଅଧିକ ଉପଯୋଗ କରେ । ଦ୍ୱିତୀୟତଃ ସ୍ମରଣ ପ୍ରକ୍ରିୟା କିପରି କାର୍ଯ୍ୟକରେ, ଏ ବିଷୟରେ ପିଲାଟିର ମୋଟାମୋଟି ଧାରଣା ଜନ୍ମେ । ସ୍ମୃତି ସମ୍ପର୍କରେ ଏପରି ଜ୍ଞାନ ତା'ର ସ୍ମରଣ କୌଶଳ ଓ ସାମର୍ଥ୍ୟକୁ ବୃଦ୍ଧିକରେ ।

### ସ୍ମରଣ ପ୍ରକ୍ରିୟାର ସ୍ୱରୂପ

ସ୍କୁଲକୁ ଯାଉଥିବା ପିଲାମାନଙ୍କର ସ୍ମରଣ ସାମର୍ଥ୍ୟ ଆଲୋଚନା କରିବା ପୂର୍ବରୁ ସ୍ମରଣ ପ୍ରକ୍ରିୟା (Memory Process) ସମ୍ପର୍କରେ ଦୁଇ ତିନୋଟି ମୌଳିକ ତଥ୍ୟ ଜାଣିବାକୁ ହେବ । ପ୍ରଥମେ ମନେରଖିବାକୁ ହେବ ଯେ ଆମ ଜୀବନରେ ଆମେ ମୁଖ୍ୟତଃ ଦୁଇପ୍ରକାର ସ୍ମୃତିର ସମ୍ମୁଖୀନ ହେଉ । ଗୋଟିଏ ହେଉଛି କ୍ଷଣସ୍ମୃତି ବା ସ୍ୱଳ୍ପମିଆଦି ସ୍ମୃତି (Short Term Memory ବା STM) । ଗୋଟିଏ ଝଲକରେ ଦେଖିଦେଇ କିମ୍ବା ଥରଟିଏ ଶୁଣିନେଇ କିଛି ମନେରଖିବା ଏବଂ ତା'ର ଉପଯୋଗ କରିବା ଏ ଧରଣର ସ୍ମୃତି । ଧରାଯାଉ ପିଲାଟି ଡିରେକ୍ଟରୀରୁ ଗୋଟିଏ ଟେଲିଫୋନ ନମ୍ବର ଦେଖିଲା । ଥରଟିଏ ଦେଖିବାପରେ ମନେରଖି ଡାକ୍ତରକୁ ଫୋନ୍ କରିବାକୁ ଚେଷ୍ଟା କଲା । ଏ କ୍ଷେତ୍ରରେ ପିଲାଟି କ୍ଷଣସ୍ମୃତି ଓ ସ୍ୱଳ୍ପ

ମିଆଦୀ ସ୍ମୃତି (STM)ର ବ୍ୟବହାର କରିଛି ବୋଲି କହିବାକୁ ହେବ । କହିବା ଅନାବଶ୍ୟକ ଯେ ନମ୍ବରଟିକୁ ଏକାଧିକ ବାର ପୁନରାବୃତ୍ତି ନକଲେ ଏହା କିଛି ସମୟ ପରେ ବିସ୍ମୃତ ହୋଇଥାଏ ।




ଅନ୍ୟ ପକ୍ଷରେ ଦ୍ୱିତୀୟଟି ହେଉଛି ଦୀର୍ଘ ସ୍ମୃତି ବା ଦୀର୍ଘମିଆଦୀ ସ୍ମୃତି (Long Term Memory ବା (LTM) । ଗୋଟିଏ ଜିନିଷକୁ ଦେଖି ବା ଶୁଣି ତା'ର ଏକାଧିକବାର ଅଭ୍ୟାସ (Rehearsal) କରାଯାଇଥାଏ । ଏ କ୍ଷେତ୍ରରେ ଏହା ଦୀର୍ଘସ୍ମୃତିର ରୂପ ନିଏ । ଧରାଯାଉ ପିଲାଟି ଟେଲିଫୋନ ନମ୍ବର ଦେଖିସାରି ଡାକ୍ତରଙ୍କୁ ଫୋନ କଲା ଏବଂ ଭବିଷ୍ୟତରେ ଏହା ଦରକାର ହେବ ବୋଲି ମନରେ ସାଇତି ରଖିବାର ଉଦ୍ୟମ କଲା । ଏପରି ସ୍ଥଳରେ ପିଲାଟି ସେହି ନମ୍ବରକୁ ବାରମ୍ବାର ଦେଖିବ କିମ୍ବା ଅନୁଚ୍ଚ ସ୍ୱରରେ ଉଚ୍ଚାରଣ କରିବ । ଏପରି ଅଭ୍ୟାସ ବା ପୁନରାବୃତ୍ତି (Rehearsal) ଫଳରେ ସ୍ମୃତି ସାମଗ୍ରୀ (ଏ କ୍ଷେତ୍ରରେ ଟେଲିଫୋନ ନମ୍ବର) କ୍ଷଣସ୍ମୃତି ପର୍ଯ୍ୟାୟରୁ ଦୀର୍ଘସ୍ମୃତି ପର୍ଯ୍ୟାୟକୁ ଗତିକରିବ ।

ସ୍ମରଣ ପ୍ରକ୍ରିୟା ସମ୍ପର୍କରେ ଦ୍ୱିତୀୟ ବିଶେଷତ୍ୱ ହେଉଛି ଯେ, ଏହି ପ୍ରକ୍ରିୟା କାର୍ଯ୍ୟକାରୀ ହେବା ସମୟରେ ତିନୋଟି କ୍ରିୟାର ସମାବେଶ ଘଟିଥାଏ । ସ୍ମରଣ ପ୍ରକ୍ରିୟାରେ ମସ୍ତିଷ୍କର ଭୂମିକା ଜଟିଳ ଏବଂ ବିଭିନ୍ନ ପ୍ରକାର ସ୍ମରଣ କ୍ଷେତ୍ରରେ ମସ୍ତିଷ୍କର ଭିନ୍ନ ଭିନ୍ନ ଅଂଶ ସଂଶ୍ଳିଷ୍ଟ ଥାଏ । ଏହାର ଆଲୋଚନା ଜଟିଳ ହୋଇଥିବାରୁ ତାହା ଏଠାରେ କରାଯାଉନାହିଁ । ତେବେ ସରଳ ଭାଷାରେ କୁହାଯିବ ଯେ, ସ୍ମରଣ କାର୍ଯ୍ୟ ସମୟରେ ତିନୋଟି ପ୍ରକ୍ରିୟା ସମାହିତ ହୁଏ । ସ୍ମରଣ ସାମଗ୍ରୀକୁ ଦେଖିବା, ଶୁଣିବା କିମ୍ବା ସ୍ପର୍ଶ କରିବା ପରି ଅନୁଭବ ସମୟରେ ପ୍ରଥମେ ଏହି ସାମଗ୍ରୀସବୁର ସଂକେତ କରଣ (Encoding) ହୁଏ । କମ୍ପ୍ୟୁଟର ଆମ ଭାଷାକୁ

(Machine ଯାନ୍ତ୍ରିକ ଭାଷା)ରେ ରୂପାନ୍ତର କରି ଗ୍ରହଣ କରେ । ମସ୍ତିଷ୍କ ମଧ୍ୟ ସ୍ମରଣ ସାମଗ୍ରୀ ସବୁକୁ ସ୍ନାୟୁ ସଂକେତ ରୂପେ ଗ୍ରହଣ କରିଥାଏ । ଏହା ହେଉଛି ଗ୍ରହଣର ସୋପାନ ବା ସଂକେତ କରଣର ସୋପାନ ।

ଦ୍ୱିତୀୟ ସୋପାନରେ ମସ୍ତିଷ୍କ ଏହି ସଂଗୃହୀତ ସ୍ମରଣ ସାମଗ୍ରୀକୁ ସ୍ମୃତି ଭଣ୍ଡାରରେ ସ୍ଥାନ ଦିଏ । ଏହା ସଂରକ୍ଷଣ (Storage) ପ୍ରକ୍ରିୟା । ପରବର୍ତ୍ତୀ ସୋପାନରେ ବ୍ୟକ୍ତି (କିମ୍ବା ଶିଶୁ) ଦରକାର ବେଳେ ଏହି ସ୍ମରଣ ସାମଗ୍ରୀର ପୁନଃସ୍ମରଣ (Retrieval) କରି କାମଚଳାଏ । ଏହା ତୃତୀୟ ସୋପାନ ।

ଲକ୍ଷ୍ୟ କରିବାର କଥା ଯେ ସ୍ମରଣ ସଫଳତା ବା ବିଫଳତାର କାରଣ ଯେ କୌଣସି ଗୋଟିଏ ସୋପାନରେ କିମ୍ବା ଏକାଧିକ ସୋପାନରେ ଘଟିପାରେ । ଉଦାହରଣ ସ୍ୱରୂପ, ଶିଶୁ ଆମର ଭାଷା ବୁଝିପାରୁନଥିଲେ ତା'ର ସଂକେତ କରଣରେ (Encoding) ଅସୁବିଧା ହେବ । ସୁତରାଂ ତା'ର ସମ୍ମୁଖରେ କହୁଥିବା କଥା ପବନରେ ଶବ୍ଦ ସୃଷ୍ଟିକଲେ ମଧ୍ୟ ଶିଶୁ ପାଇଁ ତାହା ଅବୋଧ୍ୟ ରହିବ ଏବଂ ମସ୍ତିଷ୍କ ଗ୍ରହଣ କରିବ ନାହିଁ । ଅନ୍ୟ ପକ୍ଷରେ ଶିକ୍ଷୟତ୍ରୀ ନଦୀଟିର କଥା କହୁଥିବା ସମୟରେ ନିଜ ହାତର ଭଙ୍ଗୀଦ୍ୱାରା ନଦୀର ମାନସିକ ଛବିଟି ଆଙ୍କିବାକୁ ଚେଷ୍ଟା କରି ପାରନ୍ତି । ଏପରି ସ୍ଥଳେ ପିଲାଟି ଦୃଶ୍ୟ ଓ ଶ୍ରାବ୍ୟ ସଂକେତ ପାଉଥିବାରୁ ତା' ପାଇଁ ସଂକେତକରଣ ଅପେକ୍ଷାକୃତ ସହଜ ହେବ । ସେହିପରି ମସ୍ତିଷ୍କର ଆଘାତ କିମ୍ବା ଗୋଟିଏ ସମୟରେ ମାତ୍ରାଧିକ ସ୍ମରଣ ସାମଗ୍ରୀର ଆହରଣ ସଂରକ୍ଷଣ (Storage) ପାଇଁ ସମସ୍ୟା ସୃଷ୍ଟି କରିପାରେ । କେତେକ ଅନୁକୂଳ ଅବସ୍ଥା (ଯଥା-ଅଧିକ ଅଭିପ୍ରେରଣା ବା Motivation) ପୁନଃ ସ୍ମରଣ ପର୍ଯ୍ୟାୟରେ ସଫଳତା-ସହାୟକ ହୁଏ । ମାତ୍ର ଶିଶୁର ଅସୁସ୍ଥତା ଏବଂ ମାନସିକ ଉଦ୍‌ବେଗ ଓ ଭୟ ପରି ପ୍ରତିକୂଳ ଅବସ୍ଥା ପୁନଃ ସ୍ମରଣ ପାଇଁ ବାଧା ସୃଷ୍ଟିକରେ । ମୋଟ ଉପରେ ସଫଳତା ବିଫଳତାର କାରଣ ଯେ କୌଣସି ପର୍ଯ୍ୟାୟରେ ସୃଷ୍ଟି ହୋଇପାରେ ।

ସ୍ମରଣ ପ୍ରକ୍ରିୟାର ତୃତୀୟ ବିଶେଷତ୍ୱ ହେଉଛି ଯେ ସଫଳତା ବିଫଳତା ମାପିବା ପାଇଁ ଏକାଧିକ ପଦ୍ଧତି ରହିଛି । ଧରାଯାଉ ଗୋଟିଏ ପିଲାକୁ ତା' ଶ୍ରେଣୀରେ ପଢୁଥିବା ପିଲାମାନଙ୍କର ନାମ କହିବାକୁ ନିର୍ଦ୍ଦେଶ ଦିଆଯାଉଛି । ଏ କ୍ଷେତ୍ରରେ ତା'ର ସ୍ମୃତି ଭଣ୍ଡାରରେ ଥିବା ସବୁ ସହପାଠୀଙ୍କ ନାମର ପୁନଃସ୍ମରଣ (Recall)ର କାର୍ଯ୍ୟ ଦିଆଯାଇଛି । ତା'ର ଶ୍ରେଣୀର ଚାଳିଶଜଣ ପିଲା ପଢୁଥିଲେ ଏବଂ ପିଲାଟି କୋଡ଼ିଏ ଜଣଙ୍କର ନାମ ସଫଳତାର ସହିତ କରିପାରିଲେ ତା'ର ସ୍ମରଣ ସାମର୍ଥ୍ୟ ୫୦ ପ୍ରତିଶତ କୁହାଯାଇପାରେ । ମାତ୍ର ମନେ ରଖିବାକୁ ହେବ ଯେ ଏପରି ସାଫଲ୍ୟର ମାତ୍ରାଟି ମୁକ୍ତ ପୁନଃସ୍ମରଣ (Free Recall) ପଦ୍ଧତିରେ କରାଯାଇଛି ।

ଅନ୍ୟ ଗୋଟିଏ ପରିସ୍ଥିତିରେ ପିଲାଟିକୁ ଅନେକ ଗୁଡ଼ିଏ ଫଟୋ ଦିଆଯାଇ ତନ୍ମଧ୍ୟରୁ ସହପାଠୀମାନଙ୍କ ଫଟୋ ବାଛିବାର କାମ ଦିଆଯାଇପାରେ । ଏ ମଧ୍ୟ ଗୋଟିଏ ଧରଣର ସ୍ମୃତି ପରୀକ୍ଷା । ଏହା ହେଉଛି ଚିହ୍ନଟ (Recognition) ପଦ୍ଧତି । ସହଜରେ ଜାଣିହେବ ଯେ ଚିହ୍ନଟ ପଦ୍ଧତିଟି ମୁକ୍ତ ପୁନଃସ୍ମରଣ ପଦ୍ଧତି ତୁଳନାରେ ଅଧିକ ସହଜ । ଏ କ୍ଷେତ୍ରରେ ପିଲାଟି ଚାଳିଶ ସହପାଠୀଙ୍କ ମଧ୍ୟରୁ ସହଜରେ ତିରିଶଟି ଚିହ୍ନଟ କରିପାରେ । ସ୍ମରଣ ସଫଳତା ୭୫ ପ୍ରତିଶତ ହୋଇପାରେ ।

ଅନ୍ୟ କେତେକ କ୍ଷେତ୍ରରେ ପିଲାଟି ଦେଖିଥିବା ବା ଶୁଣିଥିବା ବସ୍ତୁସବୁକୁ ମୂଳ କ୍ରମରେ ରଖିବା ପାଇଁ ଚେଷ୍ଟା କରେ । କେତେକ ସ୍ଥାନରେ କ୍ରମାନ୍ୱୟତା ଗୁରୁତ୍ୱପୂର୍ଣ୍ଣ । କାରଣ ଟେଲିଫୋନର ନମ୍ବରଟି ମନେରଖିବା ସମୟରେ ଅଙ୍କଗୁଡ଼ିକ ନିର୍ଦ୍ଦିଷ୍ଟ ସ୍ଥାନରେ ନରହିଲେ ନମ୍ବରଟି ଭୁଲ ହୋଇଯିବ । ଏ ଧରଣର ସ୍ମରଣ କ୍ରିୟା ମାପିବା ସମୟରେ ପୁନଃ କ୍ରମକରଣ ପଦ୍ଧତିର ଉପଯୋଗ କରାଯାଏ । ସେହିପରି ଅନ୍ୟ ଗୋଟିଏ ପଦ୍ଧତି ମାଧ୍ୟମରେ ସ୍ମରଣ ସାଫଲ୍ୟ ବିଚାର କରାଯାଏ । ତାହା ହେଉଛି ସଞ୍ଚୟ ପଦ୍ଧତି । ଧରାଯାଉ ଗୋଟିଏ ପିଲା ଏକ ନିର୍ଦ୍ଦିଷ୍ଟ ପଦ୍ୟ ମୁଖସ୍ଥ କରିବା ପାଇଁ ଅତୀତରେ ତିନିଘଣ୍ଟା ସମୟ ନେଉଥିଲା । ଦୁଇ ସପ୍ତାହ ପରେ ସେ ପଦ୍ୟଟିକୁ ନିର୍ଭୁଲ ଭାବେ ଆବୃତ୍ତି କରିପାରୁ ନଥିଲା । ବର୍ତ୍ତମାନ ପୁଣିଥରେ ଅଭ୍ୟାସ ଆରମ୍ଭ କରିବା ପରେ ଦୁଇ ଘଣ୍ଟା ମଧ୍ୟରେ ପୁରାପୁରି ମୁଖସ୍ଥ ହେଲା । ଏ କ୍ଷେତ୍ରରେ ପିଲାଟି ପୂରାପୂରି ଭୁଲି ଯାଇଥିଲା, ଏହା କହିବା ଯୁକ୍ତିଯୁକ୍ତ କି ? ନାଃ ! ଏ କ୍ଷେତ୍ରରେ ମଧ୍ୟ ସ୍ମରଣ ସାଫଲ୍ୟ ରହିଛି। କାରଣ ପୂର୍ବର ତିନିଘଣ୍ଟା ସ୍ଥାନରେ ପିଲାଟି ଦୁଇଘଣ୍ଟା ମଧ୍ୟରେ ପଦ୍ୟଟିକୁ ଆୟତ୍ତ କରିଛି । ସୁତରାଂ ସେ କେତେ ପରିମାଣରେ ସମୟ (ପୂର୍ବ ତୁଳନାରେ) ସଞ୍ଚୟ କରିପାରିଛି, ତାହା ତା'ର ସଫଳତାର ମାପକ ।

ମୋଟ ଉପରେ ସ୍ମରଣ ସାଫଲ୍ୟକୁ ଜାଣିବା ପାଇଁ ଏକାଧିକ ପଦ୍ଧତି ରହିଛି । ଆମର ଦୈନନ୍ଦିନ ଜୀବନରେ ଭିନ୍ନ ଭିନ୍ନ ପରିପ୍ରେକ୍ଷୀର ପୃଥକ୍ ପୃଥକ୍ ପଦ୍ଧତିର ପ୍ରୟୋଗ ହୁଏ । କେତେକ ପଦ୍ଧତି ଅଧିକ ସଫଳତା ଦେବା ସ୍ଥଳେ ଅନ୍ୟ କେତେକ ସଂକୁଚିତ ସାଫଲ୍ୟ ଦେଇଥାଏ ।

ବର୍ତ୍ତମାନ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନଟି ହେଉଛି–କେଉଁସବୁ କୌଶଳ ସ୍ମରଣ–ସାଫଲ୍ୟର ସହାୟକ ? ଏଗୁଡ଼ିକ କେତେ ପରିମାଣରେ ପିଲାମାନଙ୍କୁ ଶିକ୍ଷା ଦେଇହେବ ?

## ସ୍ମରଣ–ସହାୟକ କୌଶଳ

ପୂର୍ବରୁ ସୂଚନା ଦିଆଯାଇଛି ଯେ ଅଳ୍ପବୟସର ପିଲାମାନଙ୍କ ତୁଳନାରେ ସ୍କୁଲର ଛାତ୍ରଛାତ୍ରୀମାନେ ଅଧିକ ସ୍ମରଣ ସାମର୍ଥ୍ୟ ପ୍ରଦର୍ଶନ କରନ୍ତି । ସେମାନେ ସ୍ମରଣ–ସହାୟକ କୌଶଳ ସବୁର ସଫଳ ପ୍ରୟୋଗ କରନ୍ତି । ସ୍ମରଣ–ସାମର୍ଥ୍ୟକୁ ବୃଦ୍ଧି କରିବାର ଅନେକ କୌଶଳ ରହିଥିଲେ ମଧ୍ୟ ପାଞ୍ଚୋଟି ମୁଖ୍ୟ କୌଶଳ ସମ୍ପର୍କରେ ଆଲୋଚନା କରାଯିବ ।

**୧. ବହୁସୂତ୍ରଭିତ୍ତିକ ସାମଗ୍ରୀ :** ପୂର୍ବରୁ କୁହାଯାଇଛି ଯେ ଦେଖିବା କିମ୍ବା ଶୁଣିବା କିମ୍ବା ଅନ୍ୟ ପ୍ରକାର ଅନୁଭବ ସମୟରେ ପିଲାଟି ସ୍ମରଣ ସାମଗ୍ରୀର ସଂକେତ କରଣ (Encoding) କରେ । ଦର୍ଶନର ସୂତ୍ର ବା ଖିଅ (Visual Cues) କିମ୍ବା ଶ୍ରବଣର ସୂତ୍ରଗୁଡ଼ିକୁ (Auditory Cues) ସ୍ନାୟୁ ସଂକେତ ରୂପରେ ମସ୍ତିଷ୍କକୁ ପ୍ରେରଣ କରେ । ଏପରି ସଂକେତ କରଣ ସମୟରେ ଅନୁଭବର ପ୍ରକାରତା ଯେତେ ବେଶୀ ହେବ ସେତେ ଭଲ । କେବଳ ଶୁଣୁଥିବା କଥା ଅପେକ୍ଷା ଶୁଣୁଥିବା ଏବଂ ଦେଖୁଥିବା ସାମଗ୍ରୀ ଅଧିକ ସଫଳତାର ସହିତ ଆହରଣ କରାଯିବ । ଏ ଦୃଷ୍ଟିରୁ ଶିକ୍ଷୟିତ୍ରୀ ନଦୀ ସମ୍ପର୍କରେ କବିତା ପଢୁଥିବା ସମୟରେ ନିଜର ଅଙ୍ଗଭଙ୍ଗୀ ଦ୍ୱାରା ନଦୀର ଗତିଶୀଳତାକୁ ସୂଚାଇବା ଦ୍ୱାରା ସେ ଛାତ୍ରଛାତ୍ରୀମାନଙ୍କୁ ସ୍ମରଣ

କ୍ରିୟାରେ ଅଧିକ ସାହାଯ୍ୟ କରନ୍ତି । ସେହିପରି ପିଲାମାନେ କିଛି ପଢୁଥିବା ସମୟରେ ସ୍ଥଳ ବିଶେଷର ସାମଗ୍ରୀ ସବୁର ଛବି ମାନସିକ ସ୍ତରର କଳ୍ପନା କରିବା ସ୍ମରଣ କାର୍ଯ୍ୟର ସହାୟକ । ସ୍କୁଲ ଯାଉଥିବା ପିଲାମାନଙ୍କୁ ଏପରି କୌଶଳ ପ୍ରୟୋଗ ପାଇଁ ତାଲିମ ଦିଆଯାଇ ପାରିବ ।

**୨. ପୁନରାବୃତ୍ତିର ଅଭ୍ୟାସ :** ପଠିତ ବିଷୟ ବା ସ୍ମରଣ ସାମଗ୍ରୀକୁ ଯେତେ ବେଶୀ ଅଭ୍ୟାସ କରାଯିବ, ତାହା ସେତେ ଅଧିକ ମନେ ରହିବ । ଏହା ଏକ ସାଧାରଣ ଅନୁଭୂତି । ସ୍କୁଲଯିବା ଆରମ୍ଭ କରିବା ପରେ (ଛ'ବର୍ଷ ବୟସ ପରେ) ପିଲାମାନେ ପୁନରାବୃତ୍ତି ଅଭ୍ୟାସ (Rehearsal)ର ଉପକାରିତା ବୁଝିଥାଆନ୍ତି । ଗୋଟିଏ ପରୀକ୍ଷାରେ ପ୍ରଥମ ଶ୍ରେଣୀର ପିଲାମାନଙ୍କୁ କିଛି ଛବି ଦେଖାଗଲା । ଛବିଗୁଡ଼ିକ ଦେଖିସାରିବା ପରେ ସେମାନେ ଏସବୁ ଛବି ମନେପକାଇ କହିବେ ବୋଲି ନିର୍ଦ୍ଦେଶ ଦିଆଗଲା । ତୃତୀୟ, ଚତୁର୍ଥ ଏବଂ ପଞ୍ଚମ ଶ୍ରେଣୀର ପିଲାମାନଙ୍କୁ ମଧ୍ୟ ଅନୁରୂପ ନିର୍ଦ୍ଦେଶ ଦିଆଗଲା । ଦେଖାଗଲା ଯେ ତୃତୀୟ, ଚତୁର୍ଥ ଏବଂ ପଞ୍ଚମ ଶ୍ରେଣୀର ପିଲାମାନଙ୍କୁ ଛବି ଦେଖାଇବା ସମୟରେ ସେମାନେ ଅନୁଚ୍ଚ ସ୍ୱରରେ ଛବିର ବିଷୟବସ୍ତୁ କହୁଛନ୍ତି । ଏପରି ଅଭ୍ୟାସ କରିବା ଫଳରେ ସେମାନେ ପରବର୍ତ୍ତୀ ସମୟରେ ଛବିଗୁଡ଼ିକ ସଠିକ ଭାବରେ ମନେ ପକାଇ ପାରିବେ, ସମ୍ଭବତଃ ଏପରି ସଚେତନତା ରହିଛି ।

ଆଉ ଗୋଟିଏ ପରୀକ୍ଷାରେ ପ୍ରଥମ ଶ୍ରେଣୀର ପିଲାମାନଙ୍କୁ ଏହିପରି କାର୍ଯ୍ୟ ଦିଆଗଲା । ମାତ୍ର ଛବି ଦେଖୁଥିବା ସମୟରେ ବଡ଼ ପାଟିର ଛବିରେ କ'ଣ ରହିଛି, ତାହା କହିବାକୁ ପରାମର୍ଶ ଦିଆଗଲା । କହିବା ଅନାବଶ୍ୟକ ଯେ, ଏହା ମଧ୍ୟ ଏକ ଧରଣର ପୁନରାବୃତ୍ତି ଅଭ୍ୟାସ । ପରେ ସେମାନଙ୍କର ଛବି ସ୍ମରଣ ସାମର୍ଥ୍ୟ ପରୀକ୍ଷା କରିବାକୁ ବଡ଼ପାଟିରେ ଉଚ୍ଚାରଣ କରିନଥିବା ପିଲାଙ୍କ ତୁଳନାରେ ସେମାନେ ଅଧିକ ସଫଳତା ଦର୍ଶାଇଲେ । ଅବଶ୍ୟ ପ୍ରଥମ ଶ୍ରେଣୀରେ ଏହି ପିଲାମାନଙ୍କୁ ଆଉ ଗୋଟିଏ ସ୍ଥାନରେ ଆଉ ଗୋଟିଏ ଏକାପରି ପରୀକ୍ଷା ଦିଆଗଲେ ସେମାନେ ନିଜଆଡୁ ପୁନରାବୃତ୍ତିର ଅଭ୍ୟାସ ପ୍ରୟୋଗ କରିବାର ଦୃଷ୍ଟାନ୍ତ ଦେଖାଗଲା ନାହିଁ । ସୁତରାଂ ପୁନରାବୃତ୍ତି ଅଭ୍ୟାସ ଦ୍ୱାରା ସ୍ମରଣ ସଫଳତା ବୃଦ୍ଧି କରିବାର ସ୍ୱତଃସ୍ଫୂର୍ତ୍ତ ବିକାଶ ସ୍କୁଲଯିବା ବୟସରେ ଆରମ୍ଭ ହେବାର ଦେଖାଯାଏ । ଅଳ୍ପ କିଛି ପିଲା ନିମ୍ନ ବୟସରେ ଏପରି କୌଶଳ ଦେଖାଇ ପାରନ୍ତି ।

**୩. ସଂଗଠନ (ବିଭାଗୀକରଣ) :** ସ୍ମରଣ ସାମଗ୍ରୀସବୁକୁ ଗ୍ରହଣ କରିବା ସମୟରେ ଏବଂ ସ୍ମୃତି ଭଣ୍ଡାରରେ ସ୍ଥାନ ଦେବା ସମୟରେ ସଂଗଠନ ବା ବିଭାଗୀକରଣ (Organisation ବା Grouping) ସ୍ମରଣ ସାଫଲ୍ୟରେ ସହାୟକ ହୁଏ । ବିଭିନ୍ନ ଉପାୟରେ ବିଷୟ ବସ୍ତୁକୁ ସଂଗଠିତ କରାଯାଇପାରେ । ମନେକରାଯାଉ ଗୋଟିଏ ପିଲା ଆଠଅଙ୍କ ବିଶିଷ୍ଟ ଗୋଟିଏ ଟେଲିଫୋନ୍ ନମ୍ବର (୧୯୪୭୧୯୫୦) ମନେ ରଖିବାକୁ ଉଦ୍ୟମ କରୁଛି । ଏ କ୍ଷେତ୍ରରେ ପିଲାଟି ପକ୍ଷରେ ପ୍ରଥମ ଚାରୋଟି ଏକାଠି ହୋଇ ଦେଶ ସ୍ୱାଧୀନତା ପାଇବାର ବର୍ଷ ଏବଂ ଶେଷ ଚାରୋଟି ଅଙ୍କ ମିଳିତ ହୋଇ ଦେଶ ଜନରାଜ୍ୟ ଘୋଷିତ ହେବାର ମସିହା ବୋଲି ମନେରଖିବା ସହଜ ହେବ । ସେହିପରି ଗୋଟିଏ ପିଲାକୁ କ୍ରମାନ୍ୱୟରେ କମଳା, ସେଉ,

ଅଙ୍ଗୁର, ରିକ୍ସା, କୋଇଲି, ସ୍କୁଟର, ଆତ ଏବଂ ପାରାର ଛବି ଦେଖାଯାଇପାରେ । ପରବର୍ତ୍ତୀ ପର୍ଯ୍ୟାୟରେ ଦେଖିଥିବା ଛବିଗୁଡ଼ିକର ସ୍ମରଣ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇପାରେ । ଦେଖାଯିବ ଯେ ବୁଦ୍ଧିମାନ ପିଲାମାନେ ଏସବୁର ପୁନଃସ୍ମରଣ ଦର୍ଶାଇବା ସମୟରେ ସଂଗଠନ ବା ବିଭାଗୀକରଣର ନୀତି ଅବଲମ୍ବନ କରିଛନ୍ତି । କାଉ, କୋଇଲି ଏବଂ ପାରା ପରି ପକ୍ଷୀମାନଙ୍କର ନାମ ଏକତ୍ର କହୁଛନ୍ତି ଏବଂ ଅଙ୍ଗୁର, କମଳା ଓ ଆତ ପରି ଫଳ ନାମସବୁ ଏକାଠି କହୁଛନ୍ତି । କେବଳ ବୁଦ୍ଧିମାନ ପିଲାମାନେ ଏପରି କରିନଥାନ୍ତି । ଏପରି ବିଭାଗୀ କରଣ କରିବା ଫଳରେ ସ୍ମରଣ ଭଣ୍ଡାରରେ ସଞ୍ଚୀକରଣ ସହଜ ହୁଏ ଏବଂ ସ୍ମରଣ ସଫଳତା ବୃଦ୍ଧିପାଏ ।

୪. ଭାବ ସଂପ୍ରସାରଣ (Elaboration) ସ୍ମରଣ ସାମଗ୍ରୀକୁ ଗ୍ରହଣ କରିବା ସମୟରେ ସେସବୁ ବସ୍ତୁକୁ ଦୃଶ୍ୟମାନ ଛବି କିମ୍ବା କୌଣସି ଘଟଣା (ବା କାହାଣୀ) ସହିତ ସଂଯୁକ୍ତ କରାଯାଇପାରିବ । ପିଲାମାନେ ଏପରି କରିପାରିଲେ ସ୍ମରଣସଫଳତା ଅଧିକ ହୁଏ । ଅଳ୍ପବୟସର ପିଲାମାନଙ୍କ ତୁଳନାରେ ସ୍କୁଲ ବୟସର ପିଲାମାନେ ଏହାର ବହୁଳ ଉପଯୋଗ କରନ୍ତି । ମନେ କରାଯାଉ କୌଣସି ଏକ ଅବସ୍ଥାରେ ଶିଶୁଟି ବ୍ରସ୍, କଦଳୀ, ବାଇଗଣ, ଚା ଓ ମନ୍ଦିର ଶବ୍ଦଗୁଡ଼ିକ ମନେରଖିବାର ପ୍ରଯତ୍ନ କରୁଛି । ଏପରି ସ୍ଥଳେ ପିଲାଟି ଏହିପରି ଚିନ୍ତାକରିପାରେ– ''ମା' ସକାଳୁ ଉଠି ଦାନ୍ତ ବ୍ରସ୍ କରନ୍ତି, ତାପରେ ଜଳଖିଆ ସମୟରେ କଦଳୀ ଖାଆନ୍ତି । ଖରାବେଳ ଭୋଜନରେ ବାଇଗଣ ବ୍ୟବହାର ହୁଏ ଏବଂ ଅପରାହ୍ନରେ ଚା' ପିଇ ମା' ସନ୍ଧ୍ୟାବେଳେ ମନ୍ଦିର ଯାଆନ୍ତି ।'' ଏକାଧିକ ଶବ୍ଦକୁ ଘଟଣା ବା କାହାଣୀର ସୂତାରେ ଗୁନ୍ଥିବା ଫଳରେ ପୁନଃସ୍ମରଣ ସହଜ ହୁଏ ।

୫. ବାହ୍ୟ ସହାୟକ ବସ୍ତୁ (External Aids)–ବୟସ୍କ ବ୍ୟକ୍ତିମାନେ ନିର୍ଭୁଲ ପୁନଃସ୍ମରଣ ପାଇଁ କେତେକ ବାହ୍ୟ ସହାୟତାର ଉପଯୋଗ କରନ୍ତି । ଦିନଲିପିରେ ଟିପି ରଖିବା, ଘଣ୍ଟାରେ ସମୟ ସଂକେତ ଧ୍ୱନିର ବ୍ୟବହାର କରିବା, ନିଜର ହାତଘଣ୍ଟା ପାଖରେ କିମ୍ବା ଦ୍ୱାର ବନ୍ଧ ପାଖରେ ବସ୍ତୁଟିଏ ରଖିଦେବା ଭଳି ଚିହ୍ନସବୁ ବ୍ୟବହାର କରନ୍ତି । ମନେପକାଇଦେବା ପାଇଁ ଅନ୍ୟ ବ୍ୟକ୍ତିଙ୍କୁ ମଧ୍ୟ ପୂର୍ବରୁ ଅନୁରୋଧ କରାଯାଇଥାଏ । ବଡ଼ ପିଲାମାନେ ମଧ୍ୟ ଏଧରଣର କିଛି କିଛି ବାହ୍ୟ ସହାୟକର ଉପଯୋଗ କରନ୍ତି । ସ୍କୁଲ ବ୍ୟାଗର ଫିତାରେ ଗୋଟିଏ ଗଣ୍ଠିପକେଇବା, ମନେ ପକାଇଦେବା ପାଇଁ ସାଙ୍ଗ କିମ୍ବା ପିତାମାତାଙ୍କୁ ଅନୁରୋଧ କରିବା ଏବଂ ଘରେ କଳାପଟା ଥିଲେ ସେଥିରେ ଲେଖି ରଖିବାର ଅଭ୍ୟାସ ଏ ଧରଣର ।

ଏହା ସ୍ପଷ୍ଟ ଯେ ଶୈଶବ ଏବଂ ପ୍ରାକ୍-ବିଦ୍ୟାଳୟ ସ୍ତରରେ ଏପରି ସାମର୍ଥ୍ୟ ସୀମିତ ଥାଏ । ସ୍କୁଲକୁ ଯିବା ଆରମ୍ଭ କରିବା ପରେ ସ୍ମରଣ ସହାୟକ କୌଶଳର ବିକାଶ ଘଟେ । ଛଅଙ୍କ ବିଶିଷ୍ଟ ଏକ ସଂଖ୍ୟା (ଯଥା : ୯୭୪୩୮୨) କୁ ମନେରଖି ଏହାକୁ ବିପରୀତ କ୍ରମରେ (ଯଥା–୨୮୩୪୭୯) କହିବାର ସାମର୍ଥ୍ୟ ଶୀଘ୍ର ଆସିଥାଏ । ପାଞ୍ଚ ଛ'ବର୍ଷରୁ କମ୍ ବୟସର ପିଲାମାନେ ମାତ୍ର ଦୁଇଟି ଅଙ୍କ କହିପାରନ୍ତି । କିନ୍ତୁ କୈଶୋର ଅବସ୍ଥା ବେଳକୁ ଏହା ଛ'ଅଙ୍କରେ ପହଞ୍ଚି ଥାଏ ।

ସ୍କୁଲକାଳୀନ ବିକାଶର ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଦିଗ ହେଉଛି ପିଲାମାନଙ୍କର ସ୍ମରଣ ସମ୍ପର୍କରେ ପିଲାମାନଙ୍କର ନିଜସ୍ୱ ଜ୍ଞାନ (Metamemory) । ପ୍ରଥମ ଶ୍ରେଣୀରେ ଏବଂ ତା'ଠାରୁ ନିମ୍ନ ଶ୍ରେଣୀରେ ଥିବା ପିଲା ଅଳ୍ପ କିଛି ଜାଣିଥାଆନ୍ତି । ସେମାନେ ଜାଣନ୍ତି ଯେ ବେଶୀ ସମୟ ପଢ଼ିଲେ ବା ଅଭ୍ୟାସ କଲେ ଅଧିକ ମନେରହେ । ବାରମ୍ବାର ପୁନରାବୃତ୍ତିର ଅଭ୍ୟାସ ଖୁବ୍ କାମଦିଏ । କିଛି ଦିନପରେ ଲୋକମାନେ ଭୁଲି ଯାଆନ୍ତି । ପୂର୍ବରୁ ପଢ଼ା ହୋଇଥିବା ବିଷୟ ଆଉଥରେ ପଢ଼ିବା ସମୟରେ ସହଜ ହୁଏ । ଅନ୍ୟ କେହି ମନେ ପକାଇଲେ ମନେ ପଡ଼େ । ଅଳ୍ପ ବୟସର ପିଲା ଏସବୁ ଜାଣିଥିଲେ ମଧ୍ୟ ତୃତୀୟ ଶ୍ରେଣୀ ବେଳକୁ ସ୍ମରଣ କ୍ରିୟା ସମ୍ପର୍କରେ ପିଲାମାନଙ୍କ ଜ୍ଞାନ ବୃଦ୍ଧି ହୁଏ । କେତେକ ବ୍ୟକ୍ତିଙ୍କର ସ୍ମରଣ ସାମର୍ଥ୍ୟ ଅନ୍ୟମାନଙ୍କଠାରୁ ଅଧିକ ଏବଂ କେତେକ ସ୍ମରଣ ସାମଗ୍ରୀ ଅପେକ୍ଷାକୃତ ସହଜ ଭାବରେ ମନେରଖା ଯାଇପାରେ, ଏପରି ସଚେତନତା ସୃଷ୍ଟିହୁଏ । ସ୍ମୂଳତଃ ସ୍ମରଣ ସହାୟକ କୌଶଳ ସମ୍ପର୍କରେ ଜ୍ଞାନ ସଫଳତାର ସମ୍ଭାବନାକୁ ଯଥେଷ୍ଟ ବୃଦ୍ଧିକରେ ।

### *ପିଲାଙ୍କର ସ୍ମରଣ-ସଫଳତା ବଢ଼ାଇବା କିପରି ?*

*୧. ଶିକ୍ଷାଦେବା (ସ୍ମରଣ ସାମଗ୍ରୀର ଉପସ୍ଥାପନ) ସମୟରେ ଯଥାସମ୍ଭବ ଅଧିକ ଅନୁଭୂତିଗତ ବିବିଧତା (ଯଥା-ଶୁଣିବା, ଦେଖିବା, ସ୍ପର୍ଶ କରିବା ଇତ୍ୟାଦି) ପ୍ରଦାନ କରନ୍ତୁ । ପଦ୍ୟଟିଏ ଆବୃତି କରିବା ସମୟରେ ଶିକ୍ଷକଙ୍କ ଅଙ୍ଗଭଙ୍ଗୀର ପ୍ରଦର୍ଶନ ଛାତ୍ରଛାତ୍ରୀଙ୍କ ସ୍ମରଣ ସଫଳତାର ସହାୟକ ହୋଇଥାଏ ।*

*୨. ପୁନରାବୃତ୍ତିର ଅଭ୍ୟାସ ମସ୍ତିଷ୍କରେ ସଂକେତ-କରଣ କରେ ଏବଂ ସାଇତି ରଖିବା କ୍ରିୟାକୁ ବଳବତ୍ତର କରେ । ଏକାଧିକବାର ଅଭ୍ୟାସ କରିବାର ପ୍ରୋତ୍ସାହନ ଦିଅନ୍ତୁ ।*

*୩. ଉପସ୍ଥାପନ କରାଯାଉଥିବା ବସ୍ତୁ ବା କଥା ମଧ୍ୟରେ କିଛି ସମ୍ପର୍କ ରହିଛି, ତାହାର ସୂଚନା ଦିଅନ୍ତୁ । ଜିନିଷସବୁକୁ ଏକାଠି କରିପାରିଲେ (Chunking) ସ୍ମରଣ ସହଜ ହୁଏ । ମସ୍ତିଷ୍କରେ ବିଷୟବସ୍ତୁର ସଜାକରଣ ଭଲ ହୋଇଥାଏ । ଏପରି ସଂଗଠନ (ବର୍ଗଭୁକ୍ତ କରିବା)ର କୌଶଳ ଶିକ୍ଷା ଦିଅନ୍ତି ।*

*୪. ଅଲଗା ଅଲଗା ବସ୍ତୁକୁ ଏକାଠି ଗୁନ୍ଥି ରଖିବାର କୌଶଳ ଶିକ୍ଷା ଦିଅନ୍ତୁ । ପୃଥକ୍ ପୃଥକ୍ ଶବ୍ଦ ବା ସ୍ମରଣ ସାମଗ୍ରୀକୁ ଗୋଟିଏ ଘଟଣାକ୍ରମରେ ବା ଗଳ୍ପମାଧ୍ୟମରେ ଏକତ୍ର ରଖି ଭାବସଂପ୍ରସାରଣ କରାଯାଇପାରେ । ଏହା ମନେରଖିବାର ସହାୟକ ହୁଏ ।*

*୫. ଦିନଲିପି ବ୍ୟବହାର କରିବା, ପରେ କଳାକଟା ଓ ଧଳାପଟା ବ୍ୟବହାର କରି କାର୍ଯ୍ୟସବୁ ଲେଖି ରଖିବା ପରି ବାହ୍ୟ ସହାୟକର ବ୍ୟବହାର ଶିକ୍ଷା ଦିଅନ୍ତୁ । ସାଙ୍ଗମାନେ ମଧ୍ୟ ମନେ ପକାଇ ଦିଅନ୍ତି, ଏହା ଜଣାନ୍ତୁ ।*

# ଜାଁ ପିଆଜେଙ୍କ ଦୃଷ୍ଟିରେ ବୌଦ୍ଧିକ ବିକାଶ

ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁମାନଙ୍କର ବୌଦ୍ଧିକ ବିକାଶ ଚର୍ଚ୍ଚା କରିବା ପ୍ରସଙ୍ଗରେ ବିଶ୍ୱର ଅଦ୍ୱିତୀୟ ମନୋବିଜ୍ଞାନୀ ଜାଁ ପିଆଜେ (Jean Piaget)ଙ୍କ ତଥ୍ୟ ପୂର୍ବରୁ ଆଲୋଚିତ ହୋଇଛି । ତଥାପି ସ୍କୁଲ ବୟସର ପିଲାମାନଙ୍କର ବୌଦ୍ଧିକ ବିକାଶ କ୍ଷେତ୍ରରେ ଜାଁ ପିଆଜଙ୍କ ଦୃଷ୍ଟିଭଙ୍ଗୀ ଆଲୋଚନା କଲାବେଳେ ତାଙ୍କର ଦୁଇଟି ମୁଖ୍ୟ ସିଦ୍ଧାନ୍ତକୁ ଦୋହରାଇବା ଆବଶ୍ୟକ ମନେହୁଏ । ପ୍ରଥମତଃ ତାଙ୍କ ମତରେ ବୌଦ୍ଧିକ ବା ଜ୍ଞାନଗତ ବିକାଶର ଏକ ନିର୍ଦ୍ଦିଷ୍ଟ ଧାରା ରହିଛି ଏବଂ କ୍ରମାନ୍ୱୟତା ରକ୍ଷାକରି ପିଲାମାନେ ନିମ୍ନ ସୋପାନରୁ ଉଚ୍ଚ ସୋପାନକୁ ଗତି କରିଥାନ୍ତି । କ୍ରମାନ୍ୱୟରେ ଏହି ସୋପାନଗୁଡ଼ିକ ହେଉଛି ଇନ୍ଦ୍ରିୟ-କାରକ (Sensori Motor) ସୋପାନ (ଜନ୍ମରୁ ଦୁଇବର୍ଷ ବୟସ ପର୍ଯ୍ୟନ୍ତ), ପ୍ରାକ୍-କ୍ରିୟାତ୍ମକ (Pre-Operational) ସୋପାନ (୨ରୁ ୫ ବର୍ଷ), ବସ୍ତୁଗତ କ୍ରିୟାତ୍ମକ (Concrete Operational) ସୋପାନ (ଛ'ବର୍ଷରୁ ୧୧ବର୍ଷ) ଏବଂ ଭାବନାଗତ କ୍ରିୟାତ୍ମକ (Formal Operation) ସୋପାନ (ବାରବର୍ଷରୁ ଉର୍ଦ୍ଧ୍ୱ) । ପିଆଜେଙ୍କ ଦ୍ୱିତୀୟ ସିଦ୍ଧାନ୍ତଟି ହେଉଛି ଯେ ପ୍ରତି ସୋପାନର ମଧ୍ୟ କିଛି ଉପସୋପାନ ରହିଛି ଏବଂ ଏଗୁଡ଼ିକ କ୍ରମାନ୍ୱୟରେ ଆସିଥାଏ । ଅବଶ୍ୟ ପ୍ରତିଟି ସୋପାନ ପାଇଁ ପିଆଜେ ଯେଉଁ ବୟସ ସୀମାର ସୂଚନା ଦେଇଛନ୍ତି, ସମାଜ-ସଂସ୍କୃତି ଭେଦରେ ତାହାର ସାମାନ୍ୟ ପରିବର୍ତ୍ତନ ଘଟିପାରେ । ଉଦାହରଣ ସ୍ୱରୂପ, ବସ୍ତୁଗତ କ୍ରିୟାତ୍ମକ ସୋପାନଟି ତାଙ୍କ ଦେଶରେ (ସୁଇଜର୍‌ଲାଣ୍ଡରେ) ଛ'ବର୍ଷ ବୟସରୁ ଆରମ୍ଭ ହେଉଥିଲେ ମଧ୍ୟ କେତେକ ଦେଶରେ ପାଞ୍ଚବର୍ଷ ବୟସରୁ ଆରମ୍ଭ ହେବା ସ୍ଥଳେ ଅନ୍ୟ କେତେକ ଗୋଷ୍ଠୀରେ ସାତବର୍ଷ ବୟସରେ ଆରମ୍ଭ ହୋଇପାରେ । ମାତ୍ର ସୋପାନଗୁଡ଼ିକର କ୍ରମାନ୍ୱୟତା ଅପରିବର୍ତ୍ତିତ । ପିଆଜେଙ୍କ ମୁଖ୍ୟ ସିଦ୍ଧାନ୍ତମାନ ବହୁ ସ୍ୱୀକୃତି ଲାଭ କରିଛି ।

ପୂର୍ବରୁ ଆଲୋଚିତ ହୋଇଛି ଯେ ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁର ଯେଉଁ ବୌଦ୍ଧିକ ବିକାଶ ଘଟିଥାଏ, ସେଥିରେ ଶିଶୁ ନିଜକୁ କେନ୍ଦ୍ରବିନ୍ଦୁରେ ରଖି ବାହାର ଜଗତର ପ୍ରତ୍ୟକ୍ଷଣ କରିବାର ମାନସିକତା (Egocentrism) ସୁସ୍ପଷ୍ଟ । ସେହିପରି ଶିଶୁ ବସ୍ତୁଟିର ଏକାଧିକ ଦିଗ (ଯଥା-ରଙ୍ଗ, ଆକାର, ସଂଖ୍ୟା ଇତ୍ୟାଦି) ଥିଲେ ମଧ୍ୟ ଶିଶୁ କେବଳ ଗୋଟିଏ ଦିଗପ୍ରତି ଅଭିନିବିଷ୍ଟ (Attentive) ରହିବାର କେନ୍ଦ୍ରିକତା ଦର୍ଶାଏ । ପୁଣି ଏ ସ୍ତରରେ ଶିଶୁ ପୂର୍ବଅବସ୍ଥାନ୍ତର (Reversibility) କଥା ଚିନ୍ତା କରିପାରେ ନାହିଁ । ଗୋଟିଏ ଲମ୍ୱା ସୂତାକୁ ତା' ଆଖି ସାମନାରେ ବୃତ୍ତାକାର କରି ଟେବୁଲ ଉପରେ ରଖିଲେ ମଧ୍ୟ ସେ ଧାରଣା କରିପାରେ ନାହିଁ

ଯେ ଏହା ପୂର୍ବର ଲମ୍ବା ସୂତା । ଦୁଇଟିଯାକ ଅବସ୍ଥା ଗୋଟିଏ ସୂତାର ଦୁଇରୂପ ଏବଂ ବୃତ୍ତାକାରକୁ ପୁଣି ଲମ୍ବାକୃତି ଦିଆଯାଇପାରେ । ଅବଶ୍ୟ ପ୍ରାକ୍-ବିଦ୍ୟାଳୟ ସ୍ତରରେ (ପ୍ରାକ୍ କ୍ରିୟାତ୍ମକ ସୋପାନ) ଶିଶୁ ଭାଷାର ବ୍ୟବହାର ଏବଂ ମିଛିମିଛିକା ଖେଳ ମାଧ୍ୟମରେ ପ୍ରତୀକ ସବୁ (Symbols)ର ବ୍ୟବହାର ଦର୍ଶାଏ । ଏସବୁ ମାନସିକ କ୍ରିୟାକଳାପର ସୂଚକ । ତଥାପି ତା'ର କାରବାର ସବୁ ମୁଖ୍ୟତଃ ଭୌତିକ (Physical) ପରିବେଶ ସହିତ ସମ୍ପୃକ୍ତ ଥାଏ ।

ସ୍କୁଲଯିବା ଆରମ୍ଭ (ଛ' ବର୍ଷ ବୟସ)ର କାଳାବେଳେ ଆଉ ଏକ ବୌଦ୍ଧିକ ବିକାଶର ସୋପାନ ଆରମ୍ଭ ହୁଏ । ଏଠାରେ ତାର ସ୍ୱକେନ୍ଦ୍ରିକତାର ବିଲୟ ଘଟେ ଏବଂ ଅନ୍ୟସବୁ ସାମର୍ଥ୍ୟର ବିକାଶ ଘଟେ ।

ପ୍ରଥମେ ହୁଏତ ମନରେ ପ୍ରଶ୍ନ ଆସିବ-ଏହି ପର୍ଯ୍ୟାୟଟିକୁ ବସ୍ତୁଗତ କ୍ରିୟାତ୍ମକ ସୋପାନ କହିବାର କି ତାତ୍ପର୍ଯ୍ୟ ରହିଛି ? ପିଆଜେଙ୍କ ମତରେ ଏହି ସୋପାନରେ ଶିଶୁ ବାହ୍ୟଜଗତର ଉପସ୍ଥିତଥିବା ବସ୍ତୁମାନଙ୍କ ସମ୍ପର୍କରେ ପରୀକ୍ଷା ନିରୀକ୍ଷା କରେ । ଏସବୁ କ୍ରିୟା ମାନସିକ ସ୍ତରରେ ସଂଘଟିତ ହେଲେ ମଧ୍ୟ ଭାବନାର କେନ୍ଦ୍ରବିନ୍ଦୁ ବସ୍ତୁଜଗତ ହିଁ ରହିଥାଏ । ପୂରାପୂରି ଭାବରେ ଅମୂର୍ତ୍ତ (Abstract) ଭାବକୁ ନେଇ ମାନସିକ ସ୍ତରରେ ସମସ୍ୟା ସମାଧାନ କରିବାର ସାମର୍ଥ୍ୟ ଆସି ନଥାଏ ।

ପୂର୍ବରୁ ନିଜକୁ କେନ୍ଦ୍ରରେ ରଖି ସେ ଯେପରି ପ୍ରତ୍ୟକ୍ଷଣ କରୁଥିଲା, ବର୍ତ୍ତମାନ ସେଥିରେ ପରିବର୍ତ୍ତନ ଆସିଥାଏ । ଅନ୍ୟମାନଙ୍କର ଦୃଷ୍ଟିକୋଣ ବିଚାର କରିପାରେ । ମନେକରାଯାଉ ସେ ଗୋଟିଏ ଘର ସାମନରେ ଠିଆ ହୋଇଛି ଏବଂ ଘରକୁ ଦେଖୁଛି । ଘରର ପାର୍ଶ୍ୱରେ ଠିଆ ହୋଇଥିବା ବ୍ୟକ୍ତିମାନଙ୍କୁ ଘରଟି କିପରି ଦେଖାଯିବ, ତାହାର ସଠିକ ଉତ୍ତର ତା'କୁ ପୂର୍ବରୁ ଜଣାନଥିଲା । ନିଜକୁ ଯେପରି ଦେଖାଯାଉଛି, ଅନ୍ୟମାନଙ୍କୁ ମଧ୍ୟ ସେପରି ଦେଖାଯାଉଥିବ ବୋଲି ଭାବୁଥିଲା । ମାତ୍ର ବସ୍ତୁଗତ କ୍ରିୟାତ୍ମକ ସେପାନରେ ଏହାର ପରିବର୍ତ୍ତନ ଘଟେ । ଅନ୍ୟମାନଙ୍କୁ ଘରଟି କିପରି ଦେଖାଯାଉଥିବ, ତାହା ସେ କଳ୍ପନା କରିପାରେ । ସ୍ୱକେନ୍ଦ୍ରିକତା ବଦଳରେ ବିକେନ୍ଦ୍ରିକତାର ଉନ୍ମେଷ ଘଟେ ।

ପୂର୍ବରୁ ସେ ପୂର୍ବଅବସ୍ଥାନ୍ତର ବୁଝି ପାରୁନଥିଲା । ଧରାଯାଉ ନଳ ଆକୃତିର ଗୋଟିଏ ପାଣିପାତ୍ରରୁ ଚଟକା ପାତ୍ରଟିକୁ ପାଣି ଢ଼ାଳି ଦିଆଯାଇପାରେ । ଶିଶୁଟି ଏପରି କାର୍ଯ୍ୟ ନିଜ ଆଖିସାମନାରେ ଘଟୁଥିବାର ଦେଖୁଥିଲେ ମଧ୍ୟ ଚଟକା ପାତ୍ରରେ କମ୍ ପାଣି ଅଛି ବୋଲି କହିବ । ଏପରି ଭ୍ରମାତ୍ମକ ଧାରଣାର ଏକାଧିକ କାରଣ ମଧ୍ୟରୁ ଗୋଟିଏ ମୁଖ୍ୟ କାରଣ ହେଉଛି ପୂର୍ବଅବସ୍ଥାନ୍ତର (Reversibility) ଧାରଣାର ଅଭାବ । ଚଟକା ପାତ୍ରରୁ ପୁନଶ୍ଚ ପାଣି ପୂର୍ବ ପାତ୍ରଟିକୁ ଢ଼ାଳିଦେଲେ ତାହା ଲମ୍ବ ଆକୃତିରେ ନଳପରି ପାତ୍ରଟିରେ ପାଣି ରହିବ । ପୂର୍ବରୁ ଯେଉଁ ଅବସ୍ଥାରେ ପାଣି ରହିଥିଲା, ସେହି ଅବସ୍ଥାକୁ ଫେରାଇ ଦିଆଯାଇପାରେ ବୋଲି ସେ ଚିନ୍ତା କିରପାରିବ ମଧ୍ୟ । ଅନ୍ୟ ପକ୍ଷରେ ବସ୍ତୁଗତ କ୍ରିୟାତ୍ମକ ସୋପାନରେ ଶିଶୁର ଏପରି ବିଚାର ଶକ୍ତି ଆସେ ।

ସ୍କୁଲ ବୟସର ଅନ୍ୟ ଗୋଟିଏ ପରିବର୍ତ୍ତନ ହେଉଛି ବିଭାଗୀକରଣର ସାମର୍ଥ୍ୟ । ପୂର୍ବରୁ ଶିଶୁ ଯେଉଁ ବସ୍ତୁଟି ପ୍ରତି ଅଭିନିବିଷ୍ଟ (Attentive) ହେଉଥିଲା, ତାହାର କେବଳ ଗୋଟିଏ ଦିଗ ପ୍ରତି ଅଭିନିବିଷ୍ଟ ରହୁଥିଲା । ଧରାଯାଉ ପ୍ରାକ୍-ବିଦ୍ୟାଳୟ ସ୍ତରର ଗୋଟିଏ ଶିଶୁ କଳା ଧଳା ରଙ୍ଗର ପଥର ସହିତ ଖେଳୁଛି । ପ୍ରତ୍ୟେକଟି ରଙ୍ଗର ପଥର ମଧ୍ୟରୁ କେତୋଟି ଗୋଲକ ଏବଂ ଅନ୍ୟ କେତୋଟି ଘନାକୃତି(Cubes)' । ଏ କ୍ଷେତ୍ରରେ ଶିଶୁ ସେସବୁ ବସ୍ତୁକୁ ଧଳା-କଳା ବସ୍ତୁରୂପେ ବିଭାଜନ କରିବ କିମ୍ବା ଗୋଲକ-ଘନାକୃତି ଆକାରର ପଥର ରୂପେ ବିଭାଜନ କରିବ । ଆକୃତି କିମ୍ବା ରଙ୍ଗ ମଧ୍ୟରୁ ଗୋଟିଏ ଦିଗ ପ୍ରତି ସେ ସଚେତନ ରହିବ । ଗୋଟିଏ ବସ୍ତୁ ଯେ ଘନାକୃତି ଓ କଳାରଙ୍ଗର ହୋଇପାରେ ସେ ଧାରଣା କରିପାରିବ ନାହିଁ । ଜଣେ ବ୍ୟକ୍ତି ଯେ ଶିକ୍ଷକ ଏବଂ ପିତା ହୋଇପାରନ୍ତି, ଏପରି ଭାବନା ଧରି ରଖି ପାରିବ ନାହିଁ । ଅନ୍ୟ ପକ୍ଷରେ ସ୍କୁଲ ବୟସର ପିଲା ଏପରି ଧାରଣା କରିପାରିବ । ଗୋଟିଏ ବିଭାଗ ଏବଂ ଉପବିଭାଗ ମଧ୍ୟରେ ସମ୍ପର୍କ ବୁଝିପାରିବ ।

ନିମ୍ନ ଉଦାହରଣ ଦ୍ୱାରା ଏହାକୁ ସ୍ପଷ୍ଟ କରାଯାଇପାରେ । ମନେକରାଯାଉ ନିମ୍ନରେ ଚାରି ପୁରୁଷର ଗୋଟିଏ ସ୍କେଚ୍ ଦିଆଯାଇଛି ।

ପ୍ରଥମ ସ୍ତର




ଦ୍ୱିତୀୟ ସ୍ତର




ତୃତୀୟ ସ୍ତର




ଚତୁର୍ଥ ସ୍ତର



ଲକ୍ଷ୍ୟ କିରବାର କଥା ଯେ ଉପର ସ୍କେଚରେ 'ଛ' ବ୍ୟକ୍ତିଜଣକ 'ଗ'ର ପୁତ୍ର (କିମ୍ବା କନ୍ୟା) ହେବା ସ୍ଥଳେ 'ଛ'ର ଭାଇ (କିମ୍ବା ଭଉଣୀ) ହୋଇପାରନ୍ତି । ସେ ମଧ୍ୟ 'ଠ'ର ପିତା (କିମ୍ବା ମାତା) ହୋଇପାରନ୍ତି । । ମୋଟଉପରେ ସ୍କୁଲକୁ ଯାଉଥିବା ଗୋଟିଏ ପିଲା ଗୋଟିଏ ପୁରୁଷର ଲୋକମାନଙ୍କ ମଧ୍ୟରେ ପରସ୍ପରର ସମ୍ପର୍କ, ତଳ-ଉପର ପୁରୁଷର ସମ୍ପର୍କ ଏବଂ ଅନ୍ୟମାନଙ୍କର ସମ୍ପର୍କ ବୁଝିପାରେ । ଏପରି ଜଟିଳ ବିଭାଗୀକରଣ ବୁଝିବାର ସାମର୍ଥ୍ୟ ତାକୁ ଅନ୍ୟ କେତେକ ସମସ୍ୟା ସମାଧାନରେ ସାହାଯ୍ୟ କରେ ।

**ସଂରକ୍ଷଣର ସାମର୍ଥ୍ୟ**

ଏହି ସୋପାନରେ ସବୁଠାରୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ଦିଗଟି ହେଉଛି (Conservation) ସଂରକ୍ଷଣ ସାମର୍ଥ୍ୟର ବିକାଶ । ବାହ୍ୟିକ ପରିବର୍ତ୍ତନ ସତ୍ତ୍ୱେ ମୂଳ ଧାରଣାଟି ଅପରିବର୍ତ୍ତିତ ରହିଥିବାର ପ୍ରତ୍ୟକ୍ଷଣ ସାମର୍ଥ୍ୟ ହେଉଛି ସଂରକ୍ଷଣ ସାମର୍ଥ୍ୟ । କେତୋଟି ଉଦାହରଣ ଦ୍ୱାରା ଏହାକୁ ସ୍ପଷ୍ଟ କରାଯାଇପାରେ ।

ପ୍ରଥମେ ସଂଖ୍ୟାର ଧାରଣା ସମ୍ପର୍କୀୟ ସଂରକ୍ଷଣର କଥା ବିଚାର କରାଯାଉ । ମନେକରାଯାଉ ଯେ ପ୍ରଥମେ ଗୋଟିଏ ଧାଡ଼ିରେ କିଛି କମଳା ରଖାଗଲା ଏବଂ ତାହାର ପାଖାପାଖି ଆଉ ଗୋଟିଏ ଧାଡ଼ି କମଳା ରଖାଗଲା । ଦ୍ୱିତୀୟ ଧାଡ଼ିରେ କମଳା ରଖାଯିବା ସମୟରେ ଉପର ଧାଡ଼ିର ପ୍ରତିଟି କମଳା ସାମନାରେ ଗୋଟିଏ ଲେଖାଏଁ କମଳା ରଖାଗଲା । ଏ କ୍ଷେତ୍ରରେ ଦୁଇଟି ଧାଡ଼ିରେ ସମାନ ସଂଖ୍ୟକ କମଳା ରହିଥିବାର କଳ୍ପନା କରିବା ପାଇଁ



ଶିଶୁର କୌଣସି ଅସୁବିଧା ହେବ ନାହିଁ । ମାତ୍ର ପରବର୍ତ୍ତୀ ସ୍ତରରେ ଦ୍ୱିତୀୟ ଧାଡ଼ିର କମଳା ସବୁକୁ ପରସ୍ପରଠାରୁ ଦୂରେଇ ଦିଆଗଲା । ଶିଶୁର ଉପସ୍ଥିତିରେ ଏସବୁ କରାଗଲା । ବର୍ତ୍ତମାନ ଦୁଇଟି ଧାଡ଼ିର ସମାନ ସଂଖ୍ୟକ କମଳା ରହିଛି, ଏହା ଧାରଣା କରିବାରେ ଅଳ୍ପ



ବୟସର ଶିଶୁର ଅସୁବିଧା ହେବ । କେଉଁ ଧାଡ଼ିରେ ଅଧିକ କମଳା ରହିଛି, ଏହା ପଚାରିଲେ ସେ ଦ୍ୱିତୀୟ ଧାଡ଼ିରେ ଅଧିକା ରହିଥିବା ଉତ୍ତର ଦେବ । ଦୀର୍ଘତାର ଧାରଣା ପୂର୍ବରୁ ଆସିଥିବାରୁ ସେ ଦୀର୍ଘତାର ଧାରଣା ଦ୍ୱାରା ପ୍ରଭାବିତ ହେବ । ସଂଖ୍ୟା ସମ୍ପର୍କରେ ସଂରକ୍ଷଣ ସାମର୍ଥ୍ୟ ବିକଶିତ ହେବା ପରେ ସେ ବୁଝେ ଯେ ଧାରଣା ହିସାବରେ ସଂଖ୍ୟାର (ଯଥା-ସଂଖ୍ୟା ଦୁଇ) ଏକ ନିର୍ଦ୍ଦିଷ୍ଟ ଅର୍ଥ ରହିଛି । ଦୁଇଟି ପିମ୍ପୁଡ଼ି, ଦୁଇଟି ଆମ୍ବ ଏବଂ ଦୁଇଟି ହାତୀର ଉଦାହରଣ ଦେଲାବେଳେ ସଂଖ୍ୟା ହିସାବରେ ଦୁଇ ଏସବୁ ବସ୍ତୁଠାରୁ ମୁକ୍ତ । ଏପରି ସଂରକ୍ଷଣ ସାମର୍ଥ୍ୟ

ଆସିଲା ପରେ ହିଁ ଗୋଟିଏ ଶିଶୁକୁ ଦୁଇଟି ଆମ୍ବ ସହିତ ଦୁଇଟି ଆମ ମିଶିଲେ ଚାରୋଟି ଆମ୍ବ ହୋଇଥାଏ, ଏପରି ଉଦାହରଣର ଅର୍ଥ ବୁଝିଥାଏ । ଅନ୍ୟ ପକ୍ଷରେ ସଂରକ୍ଷଣ ସାମର୍ଥ୍ୟ ନ ଆସିଥିଲେ ଆମ୍ବର ଉଦାହରଣ ଦେବାପରେ ଦୁଇଟି ହାତୀ ସହିତ ଦୁଇଟି ହାତୀ ମିଶିଲେ ଫଳାଫଳ କ'ଣ ହେବାର ପ୍ରଶ୍ନ ଶିଶୁ ପାଇଁ ସମସ୍ୟା ସୃଷ୍ଟିକରେ ।

ସେହିପରି ଦୀର୍ଘତାର ସଂରକ୍ଷଣ କଥା ବିଚାର କରାଯାଉ । ମନେକରାଯାଉ ଯେ ଖଣ୍ଡିଏ ସୂତାକୁ ଲମ୍ବ ଭାବରେ ଟେବୁଲରେ ବିଛାଇ ଦିଆଗଲା । ଶିଶୁର ଆଖି ସାମନାରେ ଆଉ ଖଣ୍ଡିଏ ସୂତାକୁ ତ୍ରିଭୁଜ ଆକାରରେ ବିଛାଇ ଦିଆଗଲା । ଥରକୁ ଥର ସମାନ ଦୀର୍ଘତାର ସୂତାମାନ ନିଆଯାଇ ନିମ୍ନ ଆକୃତିରେ ବିଛାଗଲା । କେଉଁ ସୂତାଟି ଅଧିକ ଲମ୍ବ ଏବଂ କେଉଁଟି ଛୋଟ ବୋଲି ପଚରା ଯାଇପାରେ ।



ଏ କ୍ଷେତ୍ରରେ ସମାନ ଦୀର୍ଘତାର ସୂତାକୁ ବିଭିନ୍ନ ଆକୃତିରେ ସଜା ଯାଇଥିଲେ ମଧ ଶିଶୁ ସଠିକ ଉତ୍ତର ଦେଇପାରିବ ନାହିଁ । ଅନ୍ୟ ପକ୍ଷରେ ଦୀର୍ଘତାର ସଂରକ୍ଷଣ ସାମର୍ଥ୍ୟ ହାସଲ କରିବା ପରେ ଏସବୁ ଆକୃତିର ଭିନ୍ନତା ସତ୍ତ୍ୱେ ସୂତାର ଦୀର୍ଘତା ଅପରିବର୍ତ୍ତିତ ରହିଥିବାର ଉତ୍ତର ଦେବ ।

ବସ୍ତୁ ପରିମାଣର ସଂରକ୍ଷଣ ସାମର୍ଥ୍ୟ ଆଉ ଏକ ସ୍ପଷ୍ଟ ଉଦାହରଣ । ବଲ୍ ଆକାରର ଅଟାଚୂନାକୁ ଶିଶୁର ସମ୍ମୁଖରେ ଭିନ୍ନ ଭିନ୍ନ ଆକୃତି ଦିଆଯାଇପାରେ । ବଲ୍ ଆକାରର ଚୂନାକୁ ଚାପ ଦେଇ ଥାଳୀ ଭଳି ଆକୃତି ପୁନଶ୍ଚ ସେହି ଆକୃତିକୁ ବଦଳାଇ ତାକୁ ଗୋଟିଏ ପାତ୍ର ଆକାରର କରାଯାଇ ପାରେ । କେଉଁଥିରେ ଅଧିକ ପରିମାଣର ଅଟା ରହିଛି – ଏପରି ପ୍ରଶ୍ନ ଶିଶୁପାଇଁ ଜଟିଳତା ସୃଷ୍ଟି କରିବ । ସଂରକ୍ଷଣ ସାମର୍ଥ୍ୟ ହାସଲ କରି ନଥିବା ପିଲାଟି ଭୁଲ୍ ଉତ୍ତର ଦେବା ସ୍ଥଳେ ସଂରକ୍ଷଣ ସାମର୍ଥ୍ୟ ହାସଲ କରିଥିବା ପିଲାଟି ସମାନ ପରିମାଣର ଅଟା ରହିଥିବାର ନିର୍ଭୁଲ ଉତ୍ତର ଦେବ ।

ସମାନ ପ୍ରକାର ପରୀକ୍ଷାର ପରିବେଶ ସୃଷ୍ଟି କରାଯାଇ ଓଜନ ବିଷୟରେ ପଚରାଯାଇପାରେ । ଗୋଟିଏ ବସ୍ତୁକୁ ଭିନ୍ନ ଭିନ୍ନ ଆକୃତି ଦେଇ କେଉଁଟି ଭାରୀ ଏବଂ କେଉଁଟି ହାଲୁକା ବୋଲି ପଚରା ଯାଇପାରେ । ଏ କ୍ଷେତ୍ରେ ମଧ ସମସ୍ୟା ସମାଧାନ ଅଳ୍ପବୟସର ଶିଶୁପାଇଁ କଷ୍ଟକର ହେବ ।

ଆୟତନ ଓ ଘନତ୍ୱ ସମ୍ପର୍କରେ ସଂରକ୍ଷଣ ବେଶ୍ କୌତୂହଳ ଜନ୍ମାଏ । ପିଲାଟି ସାମନାରେ ଗୋଟିଏ ସରୁ ମୁହଁ କାଚପାତ୍ରରେ କିଛି ଜଳ ରଖାଯାଇପାରେ । ପୁଣି ସମାନ ଉଚ୍ଚତାରେ ପାଣିଥିବା ଅନ୍ୟ ଗୋଟିଏ ସମାନ ପ୍ରକାର କାଚପାତ୍ରରେ ସମାନ ପରିମାଣର ଜଳ ନେଇ ଶିଶୁର ଉପସ୍ଥିତିରେ ଗୋଟିଏ ଚଟକା ଏବଂ ଓସାରିଆ ମୁହଁଥିବା ପାତ୍ରରେ ଢଳାଯାଇପାରେ । ବର୍ତ୍ତମାନ କେଉଁ ପାତ୍ରରେ ଅଧିକ ଜଳ ରହିଛି –ଏପରି ପ୍ରଶ୍ନ କଲେ ଶିଶୁ



ପ୍ରଥମ ପାତ୍ରରେ ଅଧିକ ଜଳ ରହିଥିବାର ଉତ୍ତର ଦେଇଥାଏ । ସଂରକ୍ଷଣ ସାମର୍ଥ୍ୟର ବିକାଶ ହେଲାପରେ ହିଁ ଦୁଇଟି ପାତ୍ରର ସମାନ ପରିମାଣର ପାଣି ଥିବାର ଉତ୍ତର ଦେଇଥାଏ ।
ସଂରକ୍ଷଣ ସାମର୍ଥ୍ୟର ବିକାଶ କ୍ଷେତ୍ରରେ କ୍ରମାନ୍ୱୟତା ରହିଛି । ପିଆଜେ ଲକ୍ଷ୍ୟ କରୁଥିଲେ ଯେ ଛ'ସାତ ବର୍ଷ ବୟସବେଳକୁ ଶିଶୁମାନେ ବସ୍ତୁର ପରିମାଣ ସମ୍ପର୍କରେ ସଂରକ୍ଷଣ ସାମର୍ଥ୍ୟ ହାସଲ କରନ୍ତି । ନ' ଦଶ ବର୍ଷବେଳକୁ ଓଜନ ବିଷୟରେ ସଚେତନ ହୁଅନ୍ତି ଏବଂ ପ୍ରାୟ ଏଗାର ବର୍ଷ ବୟସ ବେଳକୁ ଆୟତନ ଓ ଘନତ୍ୱ ସମ୍ପର୍କରେ ସଂରକ୍ଷଣ ସାମର୍ଥ୍ୟ ହାସଲ କରନ୍ତି ।

ସଂରକ୍ଷଣ ସାମର୍ଥ୍ୟ ହାସଲ କରିବା କ୍ଷେତ୍ରରେ ମଧ୍ୟ ନିର୍ଦ୍ଦିଷ୍ଟ ଉପସୋପାନ (Sub-stages) ରହିଛି । ବସ୍ତୁର ପରିମାଣ ସମ୍ପର୍କୀୟ ସଂରକ୍ଷଣର ଉଦାହରଣ ଦେଇ ଏହି ଉପସୋପାନ ଗୁଡ଼ିକୁ ସ୍ପଷ୍ଟ କରାଯାଇପାରେ । ମନେକରାଯାଉ ବଲ୍ ଆକାରରେ ଗୋଟିଏ ମାଟି ପିଣ୍ଡୁଳା ନିଆଗଲା ଏବଂ ଶିଶୁର ଉପସ୍ଥିତିରେ ଏହାକୁ ଗୋଟିଏ ବାଡ଼ି ଆକାରର ଆକୃତି ଦିଆଗଲା । ବର୍ତ୍ତମାନ କେଉଁଥିରେ ଅଧିକ ମାଟି ରହିଛି ବୋଲି ପଚରାଗଲେ ବାଡ଼ିଟିରେ ଅଧିକ ମାଟ ରହିଥିବାର ଉତ୍ତର ମିଳିବ । ଏହା ଅଧିକ ଲମ୍ବ ହୋଇଥିବାରୁ ଏଥିର ଅଧିକ ମାଟି ରହିଥିବାର ଯୁକ୍ତି ଦିଆଯିବ । ଏ କ୍ଷେତ୍ରରେ ଶିଶୁଟି ପ୍ରଥମ ଉପସୋପାନରେ ରହିଛି । ତା'ର ସଂରକ୍ଷଣ ସାମର୍ଥ୍ୟ ଆସିନାହିଁ । ବାଡ଼ିଟିକୁ ପୁନଶ୍ଚ ପୂର୍ବର ବଲ୍ ଆକୃତିର ରୂପ ଦିଆଯାଇପାରେ । ଏପରି ପୂର୍ବଅବସ୍ଥାନ୍ତର (Reversibility) ପରିକଳ୍ପନା ଜନ୍ମିନାହିଁ ।

ଦ୍ୱିତୀୟ ଉପସୋପାନରେ ଶିଶୁ ଅସାମର୍ଥ୍ୟ ଏବଂ ସାମର୍ଥ୍ୟର ମଝିରେ ରହିଥାଏ । ବାଡ଼ିଟିର ପ୍ରକୃତରେ ଅଧିକ ମାଟି ରହିଛି କି ସମାନ ପରିମାଣରେ ରହିଛି, ଏହାର ଦ୍ୱନ୍ଦ୍ୱ ତାକୁ ଆଚ୍ଛନ୍ନ କରେ । ପୁଣି ଲକ୍ଷ୍ୟ କରାଯାଇଛି ଯେ ବଲ୍ ଆକୃତିର ମାଟି ପିଣ୍ଡୁଳାଟିକୁ ବାଡ଼ି ଆକାରର କରିବା ସମୟରେ ଅଳ୍ପ ଲମ୍ବର ବାଡ଼ି ହୋଇଥିଲେ ସମାନ ପରିମାଣର ମାଟି ବୋଲି କହିପାରେ । ମାତ୍ର ବାଡ଼ିଟି ଲମ୍ବା ଦେଲେ ଅଧିକ ମାଟି ବୋଲି କହିଥାଏ । ଏହିପରି ଏକ ଦ୍ୱନ୍ଦ୍ୱଗତ ଅବସ୍ଥା ସଂରକ୍ଷଣ ବିକାଶର ମଧ୍ୟବର୍ତ୍ତୀ ସ୍ତର ।

ତୃତୀୟ ଉପସୋପାନରେ ପିଲାଟି ସଂରକ୍ଷଣ କ୍ଷମତା ହାସଲ କରେ । ଆକାର ଭିନ୍ନ ହେଲେ ମଧ୍ୟ ବଲ୍ ଏବଂ ବାଡ଼ିର ସମାନ ପରିମାଣର ମାଟି ରହିଥିବାର ଉତ୍ତର ଦିଏ ।

ବାଡ଼ି ବ୍ୟତୀତ ବଲ୍ ଆକାରର ମାଟିପିଣ୍ଡୁଳାକୁ ଅନ୍ୟସବୁ ଆକୃତି ଦିଆଗଲେ ମଧ ସମାନ ପରିମାଣର ମାଟି ରହିଛି ବୋଲି ଯୁକ୍ତି କରେ ।

ଶିଶୁ କେଉଁ ମାନସିକ ବିକାଶର ଅଧିକାରୀ ହୋଇଥିବାରୁ ଏପରି ସଫଳ ସଂରକ୍ଷଣ ଦର୍ଶାଏ, ତାହାର ପ୍ରଶ୍ନ ଉଠିପାରେ । ସଂରକ୍ଷଣ ସାମର୍ଥ୍ୟ ଦର୍ଶାଇବା ପରେ ଶିଶୁକୁ ଗୋଟିଏ ପ୍ରଶ୍ନ ପଚରାଯାଇପାରେ–''ଏ ଦୁଇଟି ବସ୍ତୁର ସମାନ ପରିମାଣର ମାଟି ରହିଛି ବୋଲି ତୁମେ କାହିଁକି ଭାବୁଛି ?''

ଏହାର ଉତ୍ତରରେ ସଫଳ ହୋଇଥିବା ଶିଶୁ ତିନୋଟି ସମ୍ଭାବ୍ୟ ଉତ୍ତର ମଧ୍ୟରୁ ଅନ୍ତତଃ ଗୋଟିଏ ଉତ୍ତର ଦେଇଥାଏ । ସେ ହୁଏତ ପୂର୍ବ ଅବସ୍ଥାର ନୀତିଟି ଉଲ୍ଲେଖ କରିପାର । ସେ କହିପାରେ ଯେ ବାଡ଼ିକୁ ପୁଣି ଚାପ ଦେଇ ତାର ପୂର୍ବ ଅବସ୍ଥା ବଲ୍ ଆକୃତିକୁ ଅଣାଯାଇପାରେ । ଦ୍ୱିତୀୟ ସମ୍ଭାବ୍ୟ ଉତ୍ତରଟି ହେଉଛି ସମତ୍ୱ (Identry) ନୀତିର ପ୍ରୟୋଗ । ସେ ହୁଏତ କରିପାରେ ଯେ ରୂପାନ୍ତର କରିବା ସମୟରେ କିଛି ମାଟି ସେଥିରେ ଯୋଗ କରାଯାଇ ନାହିଁ କିମ୍ବା ସେଥିରୁ କିଛି କାଢ଼ି ନିଆଯାଇ ନାହିଁ । ପରିମାଣ ଅପରିବର୍ତ୍ତିତ ରହିଛି । ତୃତୀୟତଃ ପିଲାଟି କ୍ଷତିପୂରଣ (Compensation) ନୀତିର ଆଶ୍ରୟ ନେଇପାରେ । ସେ କହିପାରେ ଯେ ବଲ୍ ତୁଳନାରେ ବାଡ଼ିଟି ଅଧିକ ଲମ୍ବ ଦିଶୁଛି ସତ, ହେଲେ ଏହା ବଲ୍ ତୁଳନାରେ ଅଧିକ ସରୁ ହୋଇଯାଇଛି ।

କେବଳ ବସ୍ତୁର ପରିମାଣ କ୍ଷେତ୍ରରେ ନୁହେଁ, ଅନ୍ୟ ସବୁ ସଂରକ୍ଷଣ ସାମର୍ଥ୍ୟ ପରିପ୍ରେକ୍ଷୀରେ ମଧ ଶିଶୁ ଏସବୁ ନୀତିର ପ୍ରୟୋଗ କରେ । ପୂର୍ବରୁ ସୂଚନା ଦିଆଯାଇଛି ଯେ ଏକ ନିର୍ଦ୍ଧାରିତ ଢ଼ଙ୍ଗରେ ଗୋଟିଏ ପରେ ଗୋଟିଏ ସଂରକ୍ଷଣ ସାମର୍ଥ୍ୟ ଶିଶୁ ହାସଲ କରେ । କ୍ରମାନ୍ୱୟତାର ଧାରଣା(Seriation), ଶୂନ୍ୟ ସ୍ଥାନର ଧାରଣା (Space) ଏବଂ ସମୟ ପରି ଜଟିଳ ଧାରଣାସବୁର ସଂରକ୍ଷଣ ପର୍ଯ୍ୟାୟକ୍ରମେ ଆସିଥାଏ । ପିଲାମାନଙ୍କ ମଧ୍ୟରେ ଏ ସମସ୍ତ ସମ୍ଭାବନା ପ୍ରଚ୍ଛନ୍ନ ଭାବରେ ରହିଥାଏ । ମସ୍ତିଷ୍କ ଓ ସ୍ନାୟୁଗତ ପରିପକ୍ୱତା ଆସିବା ଫଳରେ ଏଗାର ବାର ବର୍ଷ ବେଳକୁ ଏସବୁ ସାମର୍ଥ୍ୟ ପୂର୍ଣ୍ଣ ବିକଶିତ ଅବସ୍ଥାରେ ପହଞ୍ଚେ । ବସ୍ତୁ ଜଗତ ସହିତ ପରୀକ୍ଷା ନିରୀକ୍ଷା କରିବାର ସୁଯୋଗ ଦେବା ଫଳରେ ଏକ ସମୃଦ୍ଧ ପରିବେଶ ଶିଶୁର ଏହି ମାନସିକ ବିକାଶକୁ ତ୍ୱରାନ୍ୱିତ କରିଥାଏ । ଏହା ଛଡା ଶିଶୁର ଉଚ୍ଚ ବୁଦ୍ଧିମତ୍ତା (Intelligence) ସ୍କୁଲ କାର୍ଯ୍ୟରେ ସଫଳତା ଏବଂ ଅନ୍ୱେଷଣର ସ୍ୱାଧୀନତା ସହାୟକ ଅବସ୍ଥା ଯୋଗାଏ । ପିତାମାତା ଏକଛତ୍ରବାଦୀ (ପ୍ରଭୁତ୍ୱମୁଖୀ) ହୋଇଥିଲେ ଅନୁକୂଳ ପରିବେଶ ମିଳେ । ପିଆଜେ ଏ କଥା ମଧ ବିଚାର କରିଥିଲେ ଯେ ବିଭିନ୍ନ ସମାଜ ସଂସ୍କୃତିରେ ବିକାଶ ସୋପାନର କ୍ରମନ୍ୱୟତା ଅପରିବର୍ତ୍ତିତ ରହିଲେ ମଧ୍ୟ ପ୍ରତି ସୋପାନର ଆରମ୍ଭ ପରିମାଣର ଶୀଘ୍ର କିଛି ବିଳମ୍ବିତ ହୋଇପାରେ । ସେଥିପାଇଁ କେଉଁ କିମ୍ବା କେଉଁ ସାମର୍ଥ୍ୟର ସମ୍ଭାବନା ରହିଛି, ତାହାର ପରିସଂଖ୍ୟାନ ଦେଶଭିତ୍ତିରେ କରାଯିବା ବିଧେୟ ।

**ପ୍ରୟୋଗାତ୍ମକ ଦିଗ**

ଜାଁ ପିଆଜେଙ୍କ ତତ୍ତ୍ୱ ଏବଂ ଅନ୍ତର୍ଦୃଷ୍ଟି ଶିଶୁର ଶିକ୍ଷା ଓ ପ୍ରଶିକ୍ଷଣ ପାଇଁ ଅପୂର୍ବ ସମ୍ଭାବନା ସୃଷ୍ଟି କରିଛି । ଶିକ୍ଷା ସମ୍ପର୍କିତ ଉପଯୋଗିତାର ସୂଚନା ଦେବା ପୂର୍ବରୁ ପିଆଜେଙ୍କ ତତ୍ତ୍ୱ ଉପରେ

ଗୋଟିଏ ଦୁଇଟି ସମୀକ୍ଷାତ୍ମକ ମନ୍ତବ୍ୟର ଆବଶ୍ୟକତା ରହିଛି । ପ୍ରଶ୍ନ ଉଠିପାରେ ପିଆଜେଙ୍କ ତତ୍ତ୍ୱ ପୂର୍ଣ୍ଣମାତ୍ରାରେ ଅନ୍ୟସବୁ ମନୋବିଜ୍ଞାନୀମାନଙ୍କ ଦ୍ୱାରା ସମର୍ଥିତ କି ? ଏହାର ଉତ୍ତରରେ କୁହାଯାଇପାରେ ଯେ ଏହା ବହୁ ଅଂଶରେ ସମର୍ଥିତ । ପିଆଜେଙ୍କ ଦ୍ୱାରା ବର୍ଣ୍ଣନା କରାଯାଇଥିବା ଚାରୋଟି ସୋପାନ କ୍ରମାନ୍ୱୟରେ ଆସିଥାଏ ଏବଂ ପ୍ରତିଟି ସୋପାନ ମଧ୍ୟରେ ସୁନିର୍ଦ୍ଦିଷ୍ଟ ଉପସୋପାନ (Substages) ରହିଛି । ଏହା ବହୁଳ ଭାବରେ ସମର୍ଥିତ । ସବୁ ସମାଜ ଓ ସଂସ୍କୃତିରେ ପିଲାମାନେ ଏହି ଚାରୋଟି ସ୍ତର ଦେଇ ଗତି କରନ୍ତି ।

ଦ୍ୱିତୀୟତଃ ପିଆଜେ ସାମାଜିକ ଓ ସାଂସ୍କୃତିକ ପରିବେଶର ଭୂମିକାକୁ ଅସ୍ୱୀକାର କରି ନାହାନ୍ତି । ଏକ ନିର୍ଦ୍ଦିଷ୍ଟ ସୋପାନ କେତେକ ସମାଜରେ ଅପେକ୍ଷାକୃତ ଅଳ୍ପ ବୟସରେ ଆରମ୍ଭ ହେବା ସ୍ଥଳେ ଅନ୍ୟ ଗୋଷ୍ଠୀରେ ବିଳମ୍ବିତ ହେବାର ସମ୍ଭାବନାକୁ ଆଧୁନିକ ମନୋବିଜ୍ଞାନୀମାନେ ସମର୍ଥନ କରିଛନ୍ତି ।

ତଥାପି ଦୁଇଟି ବିଷୟରେ ଅଳ୍ପ ପରିମାଣର ଦ୍ୱିମତ ଦେଖାଯାଏ । ପ୍ରଥମଟି ବୟସ ସମ୍ପର୍କିତ ମାନଦଣ୍ଡ । ପିଆଜେ ଇଉରୋପୀୟ ଦେଶ ସମୂହକୁ ଆଖି ଆଗରେ ରଖି ସବୁ ପ୍ରକାର ମାନସିକ ବିକାଶ ପାଇଁ ବୟସଗତ ମାନଦଣ୍ଡ ସୂଚାଇଛନ୍ତି । ଅନେକଙ୍କ ମତରେ ପ୍ରକୃତରେ କାର୍ଯ୍ୟକାରୀ ହେଉଥିବା ବୟସସ୍ତର ପିଆଜେ-ନିର୍ଦ୍ଦେଶିତ ବୟସ ସ୍ତରଠାରୁ କମ୍ । ସମ୍ଭବତଃ ପରୀକ୍ଷା ନିରୀକ୍ଷା ସମୟରେ ପିଲାମାନେ ଗବେଷକମାନଙ୍କର ପ୍ରଶ୍ନସବୁ ଠିକ୍ ରୂପେ ବୁଝିପାରୁ ନଥିବାରୁ ଏପରି ବିଳମ୍ବିତ ମାନଦଣ୍ଡ ପ୍ରଦର୍ଶିତ ହୋଇଛି ।

ଏପରି ସମାଲୋଚନା କିଛି ପରିମାଣରେ ସତ । ଲକ୍ଷ୍ୟ କରାଯାଇଛି ଯେ କେତେକ ପ୍ରଶ୍ନ ମୌଖିକ ଭାବରେ ପଚରା ନଯାଇ ଛବି ବା ଦୂରଦର୍ଶନ ମାଧ୍ୟମରେ ପଚାରିବା ଫଳରେ ସମ୍ପୃକ୍ତ ବୟସ ସୀମାରେଖା ତଳକୁ ଖସୁଛି ।

ଅନ୍ୟ କେତେକ ସମାଲୋଚକଙ୍କ ମତରେ ପିଆଜେ ମସ୍ତିଷ୍କ ଏବଂ ସ୍ନାୟୁଗତ ପରିପକ୍ୱତା (Maturation)କୁ ମାତ୍ରାଧିକ ଗୁରୁତ୍ୱ ଦେଇଛନ୍ତି । ଶିଶୁର ଅନେକ ସାମର୍ଥ୍ୟ ସ୍ୱତଃସ୍ଫୂର୍ତ୍ତ ଭାବରେ ପ୍ରକାଶିତ ହେବ ବୋଲି ବ୍ୟକ୍ତ କରିଛନ୍ତି । ମାତ୍ର ସମାଲୋଚକମାନଙ୍କ ମତରେ ପ୍ରଶିକ୍ଷଣ ଦ୍ୱାରା ବିକାଶକୁ ଅଧିକ ତ୍ୱରାନ୍ୱିତ କରାଯାଇପାରିବ । ଉଦାହରଣ ସ୍ୱରୂପ, ଶିଶୁର ଅଭିନିବେଶ (Attention) କଥା ବିଚାର କରାଯାଉ । ବସ୍ତୁଗତ କ୍ରିୟାତ୍ମକ ସୋପାନର ପ୍ରାରମ୍ଭରେ ଶିଶୁ ଗୋଟିଏ ବସ୍ତୁର କେବଳ ଗୋଟିଏ ଦିଗ ପ୍ରତି ଅଭିନିବିଷ୍ଟ ଥାଏ ବୋଲି ପିଆଜେ କହିଛନ୍ତି । ଗୋଟିଏ ଗୋଲାକାର ବସ୍ତୁ କଳାରଙ୍ଗର ହୋଇଥିଲେ ଶିଶୁଟି ମୁଖ୍ୟତଃ ଆକାର କିମ୍ବା ରଂଗ ପ୍ରତି ଅଭିନିବିଷ୍ଟ ଥାଏ । ଫଳରେ ସମସ୍ୟା ସମାଧାନରେ ଅସୁବିଧା ହୁଏ । କେତେକ ସମୀକ୍ଷକ ଶିଶୁମାନଙ୍କୁ ଏହିପରି ପରିବେଶକୁ ଆଣି ଏକାଧିକ ଦିଗ ପ୍ରତି ସଚେତନ ରହିବାର ତାଲିମ ଦେଇଛନ୍ତି । ଦେଖାଯାଇଛି ଯେ ସେସବୁ କ୍ଷେତ୍ରରେ ଶିଶୁମାନେ ଅପେକ୍ଷାକୃତ କମ୍ ବୟସରେ ସମସ୍ୟା ସମାଧାନ କରିଛନ୍ତି ସତ, କିନ୍ତୁ ସେମାନଙ୍କର ଏପରି ସାମର୍ଥ୍ୟର ବିସ୍ତାରଣ (Generalization) ଘଟୁନାହିଁ । ପରେ ଅନ୍ୟ ଗୋଟିଏ ପରିସ୍ଥିତିରେ

ପୁନଶ୍ଚ ସେମାନେ ଏକାଦେଶବର୍ତ୍ତୀ ହୋଇ ପଡ଼ିଛନ୍ତି । ସୁତରାଂ ପ୍ରଶିକ୍ଷଣର ଭୂମିକାକୁ ଅସ୍ୱୀକାର କରା ନଗଲେ ମଧ୍ୟ ପିଆଜେଙ୍କ ମତବାଦକୁ ସ୍ୱୀକୃତି ଦେବାକୁ ପଡ଼ିବ ।

ପିଲାର ଶିକ୍ଷା ଏବଂ ପ୍ରଶିକ୍ଷଣ ପାଇଁ ପିଆଜେଙ୍କ ତତ୍ତ୍ୱର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସ୍କୁଲରେ ପାଠ୍ୟ ବିଷୟବସ୍ତୁର ପରିକଳ୍ପନା ଏବଂ ଶିକ୍ଷା ପଦ୍ଧତି ପାଇଁ ଏହା ଖୁବ୍ ଉପଯୋଗୀ । କେଉଁ ବୟସରେ ପିଲା କେଉଁ ସାମର୍ଥ୍ୟର ଅଧିକାରୀ ହୁଏ, ଏହାର ସ୍ପଷ୍ଟ ରୂପରେଖ ଦିଆଯାଇ ଥିବାରୁ ଶିକ୍ଷାବିତ୍‌ମାନେ ଅନୁରୂପ ପାଠ୍ୟକ୍ରମ ପ୍ରସ୍ତୁତ କରିପାରିବେ ।

ଦ୍ୱିତୀୟତଃ ପିଲାର ଅନ୍ୱେଷଣ ଏବଂ ପରୀକ୍ଷା ନିରୀକ୍ଷା ବୌଦ୍ଧିକ ବିକାଶର ପ୍ରାଣକେନ୍ଦ୍ର ହୋଇଥିବାରୁ ଶିକ୍ଷାର୍ଥୀର ସକ୍ରିୟତା ଶିକ୍ଷଣ ଶୈଳୀର ମୌଳିକ ଉପାଦାନ ରହିବା ବିଧେୟ । କେଉଁଟି ଭାସୁଛି ଏବଂ କେଉଁଟି ବୁଡ଼ିଯାଉଛି, ତାହା ଶିଶୁ ନିଜେ ପରୀକ୍ଷା ନକରି କେବଳ ପୁସ୍ତକ ଅଧ୍ୟୟନ କରିବା ଉଚିତ ହେବ ନାହିଁ । ସୁତରାଂ ଅନୁଭୂତି ଲାଭ ଏବଂ ଅନୁଭବର ପ୍ରସାରଣ ପାଇଁ ଶିକ୍ଷାପଦ୍ଧତି ଅନୁକୂଳ ହେବା ଦରକାର ।

ତୃତୀୟତଃ ଶିକ୍ଷାଦାନ ସମୟରେ ଶିଶୁର ଅନ୍ତର୍ଜଗତ ସମ୍ପର୍କରେ ଜାଣିବାକୁ ହେବ । କେବଳ କେଉଁ ଉତ୍ତରଟି ଭୁଲ ଏବଂ କେଉଁ ଉତ୍ତରଟି ଠିକ୍, ତାହା ଜାଣିଲେ ଯଥେଷ୍ଟ ନୁହେଁ । ବିଶେଷ କରି ଶିଶୁର ଭୁଲ ଉତ୍ତରଟି ଶିଶୁ କାହିଁକି ଦେଲା ଏବଂ ଏ କ୍ଷେତ୍ରରେ ଶିଶୁ କ'ଣ ଭାବୁଛି, ଏହାର ଅନୁଶୀଳନ ଶିଶୁର ଅନ୍ତର୍ଜଗତକୁ ଉନ୍ମୋଚିତ କରିବ । ଶିଶୁକୁ ନିଷ୍କ୍ରିୟ ବିଚାର ନକରି ସକ୍ରିୟ ଶିକ୍ଷାର୍ଥୀ ରୂପେ ଅନୁଶୀଳନ କରିବାର ମାନସିକତା ସୁନ୍ଦର ସମ୍ଭାବନା ଗଠନ କରିବ ।

## ସହାୟକ ପରାମର୍ଶ

*୧. ଜାଁ ପିଆଜେଙ୍କ ତାତ୍ତ୍ୱିକ ଚିନ୍ତାଧାରା ଶିକ୍ଷା ଓ ମନୋବୈଜ୍ଞାନିକ ଜଗତରେ ବହୁସ୍ୱୀକୃତି ଲାଭ କରିଛି । ପିଆଜେଙ୍କ ନିର୍ଦ୍ଦେଶିତ ସୋପାନସବୁର କ୍ରମାନ୍ୱୟତା ଦୃଷ୍ଟିରୁ ସ୍କୁଲ ଜୀବନର ଆଦ୍ୟ ଭାଗରେ ଶିଶୁର ବସ୍ତୁଗତ କ୍ରିୟାଶୀଳତାକୁ ପ୍ରୋତ୍ସାହନ ଦିଅନ୍ତୁ । ବାହ୍ୟ ଜଗତରେ ଶିଶୁର ପରୀକ୍ଷା ନିରୀକ୍ଷାକୁ ସମ୍ମାନ ଦିଅନ୍ତୁ ।*

*୨. ଶିଶୁ ମନରେ ଯେଉଁ ସବୁ ଧାରଣା ପ୍ରଥମେ ବିକଶିତ ହୁଏ ଏବଂ କେଉଁଟି ପରେ ଆସେ, ତାହାର କ୍ରମାନ୍ୱୟତା ଲକ୍ଷ୍ୟ କରନ୍ତୁ । ଶିଶୁର ଦୀର୍ଘତା ସମ୍ପର୍କରେ ଧାରଣା ଆସିବା ପୂର୍ବରୁ ଆୟତନ ଏବଂ ଘନତ୍ୱ ସମ୍ପର୍କରେ ଧାରଣା ଦେବା ବିଜ୍ଞତା ହେବ ନାହିଁ ।*

*୩. ଶିଶୁର ଅନ୍ତର୍ଜଗତ ବୟସ୍କର ଅନ୍ତର୍ଜଗତଠାରୁ ଗୁଣାତ୍ମକ ଭାବରେ ଭିନ୍ନ । ସୁତରାଂ ଆପଣଙ୍କ ଦୃଷ୍ଟିରେ ଶିଶୁର ଏକ ନିର୍ଦ୍ଦିଷ୍ଟ ଉତ୍ତର ଭୁଲ୍ ହେଲେ ମଧ୍ୟ ଶିଶୁର ନିଜସ୍ୱ ଭାଷାରେ ଉତ୍ତରଟିର କାରଣ ପଚାରନ୍ତୁ । ଏହା ଆପଣଙ୍କୁ ଶିଶୁ ସମ୍ପର୍କୀୟ ଅନ୍ତର୍ଦୃଷ୍ଟି ଦେବ ।*

*୪. ପରିବେଶର ସମୃଦ୍ଧିକରଣ (Enrichment) ପାଇଁ ଯଥାସମ୍ଭବ ଉଦ୍ୟମ କରନ୍ତୁ*

# ବୁଦ୍ଧିମତ୍ତା ସମ୍ପର୍କରେ ନୂତନ ଦୃଷ୍ଟି ଭଙ୍ଗୀ

ବୁଦ୍ଧିମତ୍ତା (Intelligence) ସମ୍ପର୍କରେ ତାତ୍ତ୍ୱିକ ଆଲୋଚନା ଆରମ୍ଭ କିରବା ପୂର୍ବରୁ ଏ ବିଷୟରେ ଏକ ମାନସିକ ଛବି କାର୍ଯ୍ୟଟିକୁ ସହଜ କରିବ । ସଂସ୍କୃତ ସାହିତ୍ୟର ବିଶ୍ୱବିଶ୍ରୁତ କବି କାଳିଦାସଙ୍କ ସମ୍ପର୍କରେ ଗଳ୍ପଟିଏ ଶୁଣାଯାଏ । କୁହାଯାଏ ଯେ, କାଳିଦାସଙ୍କର ପାଣ୍ଡିତ୍ୟର ଉନ୍ମେଷ ଓ ବିକାଶ ହେବା ପୂର୍ବରୁ ସେ ନିର୍ବୋଧ ଥିଲେ । ଗଛରୁ କାଠ ହାଣିବା ସମୟରେ ଗୋଟିଏ ଡାଳରେ ଠିଆହୋଇ ସେ ସେହି ଡାଳଟିକୁ ହାଣୁଥିଲେ । ନିର୍ବୋଧତାର ସୂଚକ ଏହାଠାରୁ ଅଧିକ କ'ଣ ହୋଇପାରେ ? ଅବଶ୍ୟ ସମସ୍ତେ ଜାଣନ୍ତି ଯେ ପରବର୍ତ୍ତୀ କାଳରେ ବିଦ୍ୟାଦାତ୍ରୀ ସରସ୍ୱତୀଙ୍କ କୃପା ଲାଭ କରି ସେ ଅଗାଧ ପାଣ୍ଡିତ୍ୟର ଅଧିକାରୀ ହେଲେ ।

ଅନ୍ୟ ପକ୍ଷରେ ବୁଦ୍ଧିମତ୍ତାର ଗଳ୍ପ ଓ ଇତିହାସ ମଧ୍ୟ କମ୍ ନୁହେଁ । ଓଡ଼ିଶାର ଗାଁ ଗହଳରେ ଯଶସ୍ୱୀ ମଧୁସୁଦନ ଦାସଙ୍କ ବୁଦ୍ଧି ଓ ପ୍ରତ୍ୟୁତ୍ପନ୍ନମତିତା ସମ୍ପର୍କରେ ସବୁକଥା ଶୁଣାଯାଏ । ସେ ଅନ୍ୟମାନଙ୍କ ପାଇଁ ବହୁ ଜଟିଳ ପ୍ରଶ୍ନର ସମାଧାନ ଆଣିଦେଉଥିଲେ । ଥରେ ଗୋଟିଏ ଜଟିଳ ସମସ୍ୟାର ସମାଧାନ ପାଇଁ ଜଣେ ବ୍ୟକ୍ତି ମଧୁବାବୁଙ୍କ ପାଖକୁ ଆସିଲେ । ବ୍ୟକ୍ତିଟି କହିଲା ଯେ ସେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଘର ତିଆରି କରିବାକୁ ଚାହୁଁଛନ୍ତି । ସେଠାରେ ଫ୍ଲାଟ ତିଆରି ହେଉଛି । ସର୍ତ୍ତ ଏପରି ରହିଛି ଯେ କ୍ରୟକାରୀ ଘରନିର୍ମାଣ କିର ଆସିଲା ପରେ ଆଉଜଣେ ବ୍ୟକ୍ତି ପୁନଶ୍ଚ କ୍ରୟକାରୀ ହୋଇ ଛାତଉପରେ ପୁଣି ଗୃହନିର୍ମାଣ କରିବ । ମାତ୍ର ଏହି ବ୍ୟକ୍ତିଜଣକ ଚାହାନ୍ତି ଯେ ତାଙ୍କ ଛାତ ଉପରେ ଆଉ କୌଣସି ବ୍ୟକ୍ତି ଗୃହ ନିର୍ମାଣ ନକରୁ । ମଧୁବାବୁ ଚଟ୍‌କରି ଏକ ବୁଦ୍ଧିମାନର ଉତ୍ତର ଦେଲେ । ସେ ପରାମର୍ଶ ଦେଲେ ଯେ ଗୃହନିର୍ମାଣ ପାଇଁ କ୍ରୟ କଲାବେଳେ ବିକ୍ରୟ – ସର୍ତ୍ତରେ ଜାଗାଟିର ଦୈର୍ଘ୍ୟ, ପ୍ରସ୍ଥ ଏବଂ ଉଚ୍ଚତାର ଉଲ୍ଲେଖ ରହୁ । ମାତ୍ର ୧୨ ଫୁଟ ଉଚ୍ଚତା ପାଇଁ କ୍ରୟ କରାଯାଇଥିବା ସ୍ଥାନରେ ୧୧ଫୁଟ ଉଚ୍ଚତାର ଗୃହ ନିର୍ମାଣ କରାଯାଉ । ଏପରି କରାଗଲେ ୧ଫୁଟ ଉଚ୍ଚର ଶୂନ୍ୟସ୍ଥାନ ବ୍ୟକ୍ତିଙ୍କ ଭାଗରେ ରହିଛି ବୋଲି ଆଇନତଃ ଧରାଯିବ । ସୁତରାଂ ଅନ୍ୟ କେହି ବ୍ୟକ୍ତି ଏହି ଶୂନ୍ୟସ୍ଥାନର ହକ୍‌ଦାର ହୋଇନଥିବାରୁ ସେଠାରେ ଘରର ତଳ ଅଂଶ ଆରମ୍ଭ କରିବା ଅସମ୍ଭବ ହୋଇପାରିବ । କହିବା ନିଷ୍ପ୍ରୟୋଜନ ଯେ କଥାଟି ଗଳ୍ପ କିମ୍ବା ସତ ହୋଇପାରେ । କିନ୍ତୁ ଏହି ସମାଧାନ ସୂତ୍ରରେ ଯେ ଅନନ୍ୟ ବୁଦ୍ଧିମତ୍ତା ପ୍ରତିଫଳିତ, ଏଥିରେ ସନ୍ଦେହ ନାହିଁ ।

ଉପର ଦୁଇ ଗଳ୍ପରେ ସୂଚିତ ହୋଇଥିବା ବୁଦ୍ଧିମତ୍ତାର ଦୁଇ ପ୍ରାନ୍ତ (ନିର୍ବୋଧତା ଓ ଅନନ୍ୟ ବୁଦ୍ଧିମତ୍ତା)କୁ କଳ୍ପନା କରି ବୁଦ୍ଧି ସମ୍ପର୍କରେ ବେଶ୍ କିଛି ଧାରଣା କରାଯାଇପାରେ । କୁହାଯାଇପାରେ ଯେ ବାହ୍ୟଜଗତ ସହିତ ସମନ୍ୱୟ ରକ୍ଷା କିରବାର ସାମର୍ଥ୍ୟ ହେଉଛି ବୁଦ୍ଧିମତ୍ତା ।

ବୁଦ୍ଧିମାନ ଲୋକମାନେ ସହଜରେ ସମସ୍ୟା ସମାଧାନ କରିପାରନ୍ତି । ବାହ୍ୟଜଗତରେ ଶିକ୍ଷା କରିବାର ସାମର୍ଥ୍ୟ ଏମାନଙ୍କର ବେଶୀ । ବସ୍ତୁକୁ ବାଦ୍ ଦେଇ ବିମୂର୍ତ୍ତ (Abstract) ଧାରଣା ସବୁର କାରବାର ଏମାନେ ମାନସିକ ସ୍ତରରେ କରିପାରନ୍ତି । କାର୍ଯ୍ୟକାରଣ ସମ୍ପର୍କ ପ୍ରତ୍ୟକ୍ଷଣ କରିପାରନ୍ତି । ମୋଟ ଉପରେ ସମସ୍ୟା ସମାଧାନ କରିବାର ସାମର୍ଥ୍ୟ ଜାଣିବାକୁ ହେଲେ ଏହାର ବୈଶିଷ୍ଟ୍ୟ ସହିତ ପରିଚିତି ଆବଶ୍ୟକ ।

## ବୁଦ୍ଧିମତ୍ତାର ବୈଶିଷ୍ଟ୍ୟ

ବୁଦ୍ଧିମତ୍ତାର ତିନୋଟି ବୈଶିଷ୍ଟ୍ୟ ସୁସ୍ପଷ୍ଟ । ପ୍ରଥମତଃ ବୁଦ୍ଧିମତ୍ତା ମୁଖ୍ୟତଃ ଏକ ସାଧାରଣ ସାମର୍ଥ୍ୟ (General ability) । ଏହି ସାଧାରଣ ସାମର୍ଥ୍ୟକୁ ଆଧାର କରି ଜଣେ ବ୍ୟକ୍ତି ଅନେକ ପ୍ରକାର କୁଶଳୀ ବ୍ୟବହାର ପ୍ରଦର୍ଶନ କରିଥାଏ । ବୁଦ୍ଧିମତ୍ତା ସମ୍ପର୍କରେ ଗବେଷଣା ଆରମ୍ଭ କରିଥିବା ବିଶେଷଜ୍ଞମାନେ ଏ ପ୍ରକାର ମତ ପ୍ରଖ୍ୟାପନ କରିଥିଲେ । ସେମାନଙ୍କର ଧାରଣା ଥିଲା ଯେ ସାଧାରଣ ସାମର୍ଥ୍ୟ (General ability ବା G-ability) ବୁଦ୍ଧିମାନ କାର୍ଯ୍ୟକଳାପର ମୂଳଭିତ୍ତି । ମାତ୍ର ପରେ ପରେ ଅନୁଭବ କରାଗଲା ଯେ ଏହା ସମ୍ପୂର୍ଣ୍ଣ ଭିତ୍ତିହୀନ ନହେଲେ ମଧ୍ୟ ଏଥିରେ ଜଟିଳତା ରହିଛି । ବ୍ୟବସାୟରେ ଦକ୍ଷତା ଅର୍ଜନ କରି ପରିବାରର ସୁପରିଚାଳନା କରୁଥିବା ବ୍ୟକ୍ତି ହୁଏତ ଗଣିତ ଓ ଇତିହାସ ପରି ସ୍କୁଲ ପାଠ୍ୟକ୍ରମରେ ବିଫଳ ହୋଇପାରେ । ଜୀବନରେ ଅନ୍ୟତ୍ର ସଫଳତା ହାସଲ କରିଥିବା ଲୋକ ସାଧାରଣ ଦକ୍ଷତାରେ ପଛୁଆ ରହିପାରେ । ସୁତରାଂ ସାଧାରଣ ଦକ୍ଷତା ଭିତ୍ତିରେ ସମୟ ସମୟରେ ଲୋକମାନଙ୍କୁ କ୍ରମାନ୍ୱୟରେ ସଜାଇଲେ ମଧ୍ୟ ବିଶେଷ ସାମର୍ଥ୍ୟ (Special ability) ପ୍ରତି ଦୃଷ୍ଟିଦେବାକୁ ହେବ । ବୁଦ୍ଧିମତ୍ତା କ୍ଷେତ୍ରରେ ବ୍ୟକ୍ତିର ସାଧାରଣ ସାମର୍ଥ୍ୟ ସହିତ କିଛି ପରିମାଣରେ ବିଶେଷ ସାମର୍ଥ୍ୟ ତାକୁ ଉଚ୍ଚସ୍ଥାନ ଦେଇଥାଏ ।

ଦ୍ୱିତୀୟତଃ ବୁଦ୍ଧିମତ୍ତା ବହୁମାତ୍ରାରେ ଜ୍ଞାନାତ୍ମକ (Cognitive) କ୍ରିୟାକଳାପ ସହିତ ସମ୍ପୃକ୍ତ । ଆମେ ମଣିଷର ପରିକଳ୍ପନା କଲାବେଳେ ସାଧାରଣତଃ ଭାବ (Feeling) ଏବଂ ଭାବନା (Thinkng) ପରି ଦୁଇଟି ସ୍ୱତନ୍ତ୍ର ଦିଗ ସମ୍ପର୍କରେ ଚିନ୍ତା କରିଥାଉ । ବୁଦ୍ଧିମତ୍ତା ଏହି ଭାବନା କ୍ରିୟା ସହିତ ଅଧିକ ସଂଶ୍ଳିଷ୍ଟ । ଏପରିକି ମଣିଷର ମସ୍ତିଷ୍କରେ ମଧ୍ୟ ନିର୍ଦ୍ଦିଷ୍ଟ କାର୍ଯ୍ୟପାଇଁ ନିର୍ଦ୍ଦିଷ୍ଟ ଅଂଶବିଶେଷର ଭୂମିକା ରହିଛି । ମସ୍ତିଷ୍କର ଉପର ଅଂଶ (Cerebral Cortex) ଭାବନା କାର୍ଯ୍ୟ ସହିତ ଜଡ଼ିତ ଥିବାବେଳେ ନିମ୍ନଅଂଶ ବା ବୃନ୍ତମସ୍ତିଷ୍କ (Brain stem) ନିଦ୍ରା, ଜାଗରଣ ଏବଂ ଭାବ ବା ଆବେଗ ସହିତ ଜଡ଼ିତ । ଅବଶ୍ୟ ଉପର ଓ ତଳ ଅଂଶ ଯେ ପରସ୍ପରଠାରୁ ସମ୍ପୂର୍ଣ୍ଣ ପୃଥକ୍; ସେକଥା କୁହାଯାଉନାହିଁ । ଏ ଦୁଇଟି ଅଂଶ ଅସଂଖ୍ୟ ସଂବେଦନ ବାହୀ ସ୍ନାୟୁଦ୍ୱାରା ସଂଯୁକ୍ତ ହୋଇଥିବାରୁ ଗୋଟିଏ ଭାଗର ଘଟଣା ଅନ୍ୟ ଅଂଶକୁ ପ୍ରଭାବିତ କରିବା ସ୍ୱାଭାବିକ । ସେହି କାରଣରୁ ଆବେଗସବୁ ବୃନ୍ତ-ମସ୍ତିଷ୍କ (ଯେଉଁଠାରେ ମେରୁମଜ୍ଜା ବା Spinal Cord ସରିଛି ଏବଂ ମସ୍ତିଷ୍କ ଆରମ୍ଭ ହୋଇଛି ) ରେ ସଞ୍ଚରିତ ହେଉଥିଲେ ମଧ୍ୟ ଏସବୁର ସ୍ନାୟୁପ୍ରବାହ ଉପର ମସ୍ତିଷ୍କରେ ଘଟୁଥିବା ଭାବନା କାର୍ଯ୍ୟକୁ ପ୍ରଭାବିତ କରେ ।

ଉଦାହରଣ ସ୍ୱରୂପ, ନିମ୍ନଅଂଶରେ ସଞ୍ଚରିତ କ୍ରୋଧର ସଂକେତ-ପ୍ରବାହ ଉପର ଅଂଶରେ ବିଚାର-ବୁଦ୍ଧିକୁ ବିପର୍ଯ୍ୟସ୍ତ କରେ । ଶ୍ରୀମଦ୍ ଭଗବତ ଗୀତାରେ କୁହାଯାଇଛି ଯେ ଆମର ଲୋଭ ଅଧିକ ଲୋଭ ସୃଷ୍ଟିକରେ । ଲୋଭ ପରିପୂରଣ ନହେଲେ ବ୍ୟର୍ଥତା ଆସେ ଏବଂ ବ୍ୟର୍ଥତାରୁ କ୍ରୋଧ ଜନ୍ମେ । କ୍ରୋଧ ଆମର ବିଚାରଶକ୍ତିକୁ ନଷ୍ଟକରେ ଏବଂ ଏପରି ବୁଦ୍ଧିନାଶ ଆମ ଧ୍ୱଂସର କାରଣ ହୁଏ । ମନୋବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କଲେ ଏହି ବିଶ୍ଳେଷଣରେ ମୁଖ୍ୟତଃ ମସ୍ତିଷ୍କର ନିମ୍ନଅଂଶ (ଭାବକେନ୍ଦ୍ର) ଏବଂ ଉପର ଅଂଶ (ଭାବନା କେନ୍ଦ୍ର)ର ସମ୍ପର୍କ କଥା କୁହାଯାଇଛି । ନିମ୍ନ ଅଂଶରେ ସଂଘଟିତ ନକରାତ୍ମକ ଆବେଗ କିପରି ଉପର ମସ୍ତିଷ୍କର ବୁଦ୍ଧିଯୁକ୍ତ ବିଚାର (ଭାବନା)କୁ ନଷ୍ଟ କରେ, ତାହାର ସୂଚନା ଦିଆଯାଇଛି । ସ୍ଥୂଳତଃ ମସ୍ତିଷ୍କର ଉପର ଅଂଶ (Cerebral cortex) ବୁଦ୍ଧିଯୁକ୍ତ ବିଚାର କ୍ରିୟାର ଭୂମିକା ନିର୍ବାହ କରୁଥିଲେ ମଧ୍ୟ ଏହା ସମ୍ପୂର୍ଣ୍ଣ ଭାବରେ ସ୍ୱାଧୀନ ନରହି ନିମ୍ନ ଅଂଶର କୁପ୍ରଭାବରେ ପ୍ରଭାବିତ ହୋଇପାରେ ।

ତୃତୀୟତଃ ବୁଦ୍ଧିମତ୍ତା କେତେ ପରିମାଣର ବଂଶଗତ (Heredity) ଏବଂ କେତେ ପରିମାଣରେ ପରିବେଶ (Environment) ଦ୍ୱାରା ନିୟନ୍ତ୍ରିତ, ସେ ସମ୍ପର୍କରେ ବର୍ଷ ବର୍ଷ ଧରି ବାଦାନୁବାଦ ଚାଲୁ ରହିଛି । ଅନେକଙ୍କ ମତରେ ବୁଦ୍ଧିମତ୍ତା ଜନ୍ମଗତ (Innate) । ପିତୃପୁରୁଷଙ୍କ ବୁଦ୍ଧିମତ୍ତା ଜନ୍ମ-ବାହିତ ହୋଇ ନବଜନ୍ମିତ ସନ୍ତାନପାଖକୁ ଆସିଥାଏ । ଏହା ଉପରେ ନିର୍ଭର କରି ବୁଦ୍ଧିମତ୍ତା ବେଶୀ କିମ୍ବା କମ୍ ହୋଇଥାଏ । ଏପରି ମତକୁ ପ୍ରଖ୍ୟାପନ କରୁଥିବା ବିଶେଷଜ୍ଞମାନେ ମୁଖ୍ୟତଃ ଯମଜ ସନ୍ତାନମାନଙ୍କ ଉପରେ କରାଯାଉଥିବା ଗବେଷଣାକୁ ଆଧାର କରି ଏପରି ତଥ୍ୟ ପ୍ରଦାନ କରନ୍ତି ।

ଯମଜ ସନ୍ତାନମାନଙ୍କୁ (Twins) ଦୁଇଶ୍ରେଣୀର ହୋଇଥାନ୍ତି । ଗୋଟିଏ ଡିମ୍ବକୋଷରୁ (Monozygotic) ଦୁଇଟି ସନ୍ତାନ ଜନ୍ମ ହୋଇଥିଲେ ସେମାନଙ୍କୁ ସମରୂପୀ ଯମଜ (Identical Twins) କୁହାଯାଏ। କହିବା ଅନାବଶ୍ୟକ ଯେ ଗୋଟିଏ ଡିମ୍ବାଣୁରୁ ସେମାନଙ୍କର ବିକାଶ ଘଟିଥିବାରୁ କ୍ରୋମୋଜୋମ୍ ଏବଂ ଜିନ୍ ଅଭିନ୍ନ ରହିଥାଏ । ଅନ୍ୟ ପକ୍ଷରେ ଜରାୟୁରେ ପାଖାପାଖି ଦୁଇଟି ଡିମ୍ବାଣୁରୁ (Dizygotic) ଦୁଇଟି ଯମଜ ସନ୍ତାନକୁ ଭ୍ରାତୃରୂପୀ ଯମଜ (Fraternal Twins) କୁହାଯାଏ । ଏ କ୍ଷେତ୍ରରେ ଡିମ୍ବାଣୁ ଦୁଇଟି ଅଲଗା ହୋଇଥିବାରୁ କିଛିଟା ଭିନ୍ନତା ଏବଂ କିଛିଟା ଅଭିନ୍ନତା ଆଶା କରିବା ସ୍ୱାଭାବିକ । ଏହି ଦୁଇ ପ୍ରକାର ଯମଜମାନଙ୍କ ମଧ୍ୟରେ ବୁଦ୍ଧିମତ୍ତା ଓ ବୁଦ୍ଧିହୀନତାର ସାଦୃଶ୍ୟ ତଥା ପାର୍ଥକ୍ୟ ଅନୁଶୀଳନ କରାଯାଇଛି । ଲକ୍ଷ୍ୟ କରାଯାଇଛି ଯେ ଭାତୃରୂପୀ ଯମଜମାନଙ୍କ ତୁଳନାରେ ସମରୂପୀ ଯମଜମାନଙ୍କର ବୁଦ୍ଧିମତ୍ତାରେ ଅଧିକ ସାଦୃଶ୍ୟ ରହିଛି । କେବଳ ସେତିକି ନୁହେଁ, ବୁଦ୍ଧିମତ୍ତାର ବିଚ୍ୟୁତି ଏବଂ ମାନସିକ ଅନଗ୍ରସରତାର (Mental Retardation) ସାଦୃଶ୍ୟ ମଧ୍ୟ ସମରୂପୀ ଯମଜମାନଙ୍କଠାରେ ଅଧିକ ପରିଲକ୍ଷିତ ହୁଏ ।

ବୁଦ୍ଧିମତ୍ତାର ଉତ୍କର୍ଷ ହେଉ ବା ବୁଦ୍ଧିହୀନତାର ସମସ୍ୟା ହେଉ, ଏସବୁର ସାଦୃଶ୍ୟର ପରିମାଣ ସମରୂପୀ ଯମଜମାନଙ୍କରେ ସର୍ବାଧିକ ଭାତୃରୂପୀ ଯମଜମାନଙ୍କଠାରେ ତା'ଠାରୁ

କମ୍, ସମାନ ପିତାମାତାର ଭାଇଭଉଣୀଠାରେ ତା'ଠରୁ ବି କମ୍ ଏବଂ ଏହି କ୍ରମରେ କମିବାକୁ ଲାଗେ । ବଂଶଗତ ସମ୍ପର୍କ ଯେତେ ଗଭୀର, ବୁଦ୍ଧିମତ୍ତାର ସାଦୃଶ୍ୟ ହୋଇ ଅନୁପାତରେ ବେଶୀ । ଏପରି ଯମଜ ସନ୍ତାନମାନଙ୍କୁ ପୃଥକ୍ କରିଦିଆଯାଇ ଭିନ୍ନ ଭିନ୍ନ ପରିବେଶରେ ପ୍ରତିପାଳନ କଲେ ମଧ୍ୟ କିଛି ପରିମାଣର ସାଦୃଶ୍ୟ ପରିଲକ୍ଷିତ ହୋଇଥାଏ ।

ଏସବୁ ପର୍ଯ୍ୟବେକ୍ଷଣର ସତ୍ୟତା ସତ୍ତ୍ୱେ ପରିବେଶର ପ୍ରଭାବକୁ ଅସ୍ୱୀକାର କରିହେବ ନାହିଁ । ଏକ ଦୁଃସ୍ଥ ପରିବେଶ ବଂଶାନୁକ୍ରମ ଭାବେ ଆସିଥିବା ସମ୍ଭାବନାକୁ ସଂକୁଚିତ କରେ । ଅନ୍ୟ ପକ୍ଷରେ ଉନ୍ନତ ଓ ସମୃଦ୍ଧ ପରିବେଶ ବୁଦ୍ଧିମତ୍ତାର ସମ୍ଭାବନାକୁ ସଂପ୍ରସାରିତ କରେ । ଏ ଦୃଷ୍ଟିରୁ ଆମେ ଦେଖୁଥିବା ପ୍ରକାଶ୍ୟ ବୁଦ୍ଧିମତ୍ତା ବଂଶାନୁଗତି ଏବଂ ପରିବେଶର ପାରସ୍ପାରିକ କ୍ରିୟା ଅନୁକ୍ରିୟାର ପରିଣତି ବୋଲି କୁହାଯିବ । ବଂଶାନୁଗତି ବୁଦ୍ଧିମତ୍ତାର ଏକ ପରିସୀମା ଦେଇଥାଏ ଏବଂ ପରିବେଶର ଗୁଣାତ୍ମକ ଦିଗ ଏହି ସୀମାରେଖା ମଧ୍ୟରେ ବୁଦ୍ଧିମତ୍ତାକୁ ସଂକୁଚିତ କିମ୍ବା ପ୍ରସାରିତ କରିଥାଏ ।

ବଂଶାନୁଗତି ଓ ପରିବେଶ ଉଭୟେ ବୁଦ୍ଧିମତ୍ତାର ମାତ୍ରା ନିର୍ଦ୍ଧାରଣ କରୁଥିବାରୁ କେଉଁଟିର କେତେ ପରିମାଣରେ ଅବଦାନ ଅଛି ବୋଲି ପ୍ରଶ୍ନ ଉଠିପାରେ । ଏ ପ୍ରସଙ୍ଗରେ ଦୁଇଟି ସିଦ୍ଧାନ୍ତ ଦିଆଯାଇପାରେ । ପ୍ରଥମତଃ ପ୍ରକାଶ ପାଉଥିବା ସବୁ ବୈଶିଷ୍ଟ୍ୟ ସମାନ ପରିମାଣରେ ବଂଶାନୁଗତି ଦ୍ୱାରା ନିୟନ୍ତ୍ରିତ ହୋଇ ନଥାଏ । ସକ୍ରିୟତା ପରି ସାଧାରଣ ସାମର୍ଥ୍ୟ ତୁଳନାରେ ସଂଗୀତକୃତି ପରି ବିଶେଷ ଦକ୍ଷତା କମ୍ ପ୍ରଭାବିତ ହୋଇଥାଏ । ତେବେ ମୋଟାମୋଟି ଭାବରେ ପ୍ରତିଶତ ୬୦ ଭାଗ ବୁଦ୍ଧିମତ୍ତା ବଂଶାନୁଗତି ଦ୍ୱାରା ନିୟନ୍ତ୍ରିତ ବୋଲି ଆକଳନ କରାଯାଇଛି ।

ଭିନ୍ନ ଭିନ୍ନ ପିଲା ଏବଂ ବ୍ୟକ୍ତିମାନଙ୍କ ମଧ୍ୟରେ ବୁଦ୍ଧିମତ୍ତାର ପାର୍ଥକ୍ୟ ଥିବାରୁ ଏହାର ମୂଲ୍ୟାୟନ ଜରୁରୀ ମନେହୁଏ । ତେବେ ବଂଶାନୁଗତି ବ୍ୟକ୍ତିକୁ ଯେଉଁ ସମ୍ଭାବନା ଦେଇଛି, ତାହା ସିଧାସଳଖ ଭାବରେ ଜାଣିବା ସମ୍ଭବ ନୁହେଁ । ଆମେ ଅନ୍ୟର ବ୍ୟବହାର ମାଧ୍ୟମରେ ଯେଉଁ ବୁଦ୍ଧିମତ୍ତାକୁ ଅନୁଭବ କରୁ ତାହା ବଂଶାନୁଗତି ଓ ପାରିପାର୍ଶ୍ୱିକ ଅବସ୍ଥାର ପାରସ୍ପାରିକ ଅନୁକ୍ରିୟାରୁ ସୃଷ୍ଟି । କେବଳ ଏହି ପ୍ରକାଶ୍ୟ ରୂପଟି ମାପ କରାଯାଇଥାଏ । କେତେକ ମନୋବିଜ୍ଞାନୀ ବଂଶ-ପର୍ଯ୍ୟବସିତ ବୁଦ୍ଧିମତ୍ତାକୁ 'କ' ବୁଦ୍ଧିମତ୍ତା (Intelligence 'A') ଏବଂ ପରିବେଶ ରୂପାନ୍ତରିତ ବୁଦ୍ଧିମତ୍ତାକୁ 'ଖ' ବୁଦ୍ଧିମତ୍ତା (Intelligence 'B') କହିଥାନ୍ତି । ଆମେ ବୁଦ୍ଧିମତ୍ତା ମାପ କରିବା ସମୟରେ ଏହି 'ଖ' ବୁଦ୍ଧିମତ୍ତାକୁ ହିଁ ମାପ କରିଥାଉ ।

## ବୁଦ୍ଧିଅଙ୍କ ଓ ବୁଦ୍ଧିମତ୍ତାର ମାପକ

ବୁଦ୍ଧିମତ୍ତାର ମାପ ସମ୍ପର୍କରେ ଏକ ସାମାଜିକ ଏବଂ ଶିକ୍ଷାଗତ ଆବଶ୍ୟକତାର ଅଂକୁରଣ ଫ୍ରାନ୍ସର ପ୍ୟାରିସ ନଗରୀରେ ଘଟିଥିଲା । ପ୍ୟାରିସ୍‌ର ସ୍କୁଲ ଶ୍ରେଣୀରେ ଶିକ୍ଷକମାନେ ଏକ ପ୍ରୟୋଜନୀୟତା ଅନୁଭବ କଲେ । ସେମାନେ ଦେଖିଲେ ଯେ, ଶ୍ରେଣୀରେ ଥିବା ସବୁ ଛାତ୍ରଛାତ୍ରୀ ଶିକ୍ଷାଦାନରୁ ସମାନ ପରିମାଣରେ ଲାଭ ପାଉନାହାନ୍ତି । ପ୍ରତି ଶିକ୍ଷକ ଜଣେ ସାଧାରଣ

ଛାତ୍ରକୁ ଦୃଷ୍ଟିରେ ରଖି ପାଠ ପଢ଼ାନ୍ତି । ଏହା ଫଳରେ ପଛୁଆ ଛାତ୍ରଟି ବୁଝିପାରେନାହିଁ । ବୁଦ୍ଧିମାନ ଛାତ୍ରଟି ପାଇଁ ବିଷୟବସ୍ତୁ ଖୁବ୍ ସହଜ ହୋଇଥିବାରୁ ତା'ର ମଧ୍ୟ ଆଗ୍ରହ ଜନ୍ମେ ନାହିଁ । ସୁତରାଂ ଶିକ୍ଷକମାନେ ଏକ ବିକଳ୍ପର ସମ୍ଭାବନା ଚିନ୍ତାକଲେ । ସେମାନଙ୍କ ମତରେ ଶିକ୍ଷାର୍ଥୀମାନଙ୍କୁ କୌଣସି ଉପାୟରେ ପଛୁଆ, ସାଧାରଣ ଏବଂ ବୁଦ୍ଧିମାନ ଛାତ୍ରଛାତ୍ରୀ ପରି ତିନୋଟି ଦଳରେ ବିଭକ୍ତ କରିବା ଉଚିତ ହେବ । ଏହା ଫଳରେ ଶିକ୍ଷକମାନେ ଛାତ୍ରଛାତ୍ରୀମାନଙ୍କର ଗ୍ରହଣଶୀଳତାକୁ ଆଖିରେ ରଖି ପୃଥକ୍ ପୃଥକ୍ ଦଳ ପାଇଁ ଭିନ୍ନ ମାନର ଶିକ୍ଷାବସ୍ତୁ ପ୍ରସ୍ତୁତ କରିବେ । ଏପରି ବର୍ଗୀକରଣ ପାଇଁ ସେମାନେ ମନୋବିଜ୍ଞାନୀଙ୍କ ସାହାଯ୍ୟ ନେଲେ ।

ମନୋବିଜ୍ଞାନୀମାନେ ଏହି ଲକ୍ଷ୍ୟ ସାଧନ ପାଇଁ ଏକ ଯୋଜନା କଲେ । ପ୍ରଥମେ ସେମାନେ ସମାଜର ଅଧିକାଂଶ ପିଲା ପ୍ରଦର୍ଶନ କରୁଥିବା ଦକ୍ଷତାସବୁର ତାଲିକା ପ୍ରସ୍ତୁତ କଲେ । ଏକ ବର୍ଷର ପିଲା କି କି ଦକ୍ଷତା ଦର୍ଶାଏ, ଦୁଇବର୍ଷର ପିଲା କେଉଁ କେଉଁ ଦକ୍ଷତା ଦର୍ଶାଏ ଏବଂ ଅନୁରୂପ ଭାବରେ ଅନ୍ୟ ସବୁ ବୟସର ପିଲାମାନଙ୍କର ଦକ୍ଷତାର ତାଲିକା କରାଗଲା । ଏହାକୁ ଭିତ୍ତି କରି ପ୍ରତି ବୟସର ପିଲା ପାଇଁ ବୁଦ୍ଧିମାପକ (Intelligence Test) ପ୍ରସ୍ତୁତ କରାଗଲା ।

ଗୋଟିଏ ନିର୍ଦ୍ଦିଷ୍ଟ ପିଲାର ବୁଦ୍ଧିମତ୍ତାର ସ୍ତର ମାପିବା ପାଇଁ ଏକ ଶୈଳୀ ଅନୁସୃତ ହେଲା । ଧରାଯାଉ ଗୋଟିଏ ପିଲାର ଜନ୍ମଗତ ବୟସ ୧୦ ବର୍ଷ । ଏପରି ସ୍ଥଳେ ପିଲାଟି ୭ବର୍ଷ ବୟସ ପିଲାପାଇଁ ଉଦ୍ଦିଷ୍ଟ ଥିବା ମାପକଟିରେ ପୂରାପୂରି ସଫଳତାର ସହିତ କାର୍ଯ୍ୟ ସମ୍ପାଦନ କରିପାରିବ । ଧରାଯାଉ ଆଠବର୍ଷ ବୟସ ପାଇଁ ଉଦ୍ଦିଷ୍ଟ ଥିବା ମାପକଟିର ପ୍ରତିଶତ ୫୦ ସଫଳତାର ସହିତ କରିପାରିଲା । ମାତ୍ର ନ'ବର୍ଷ ଶିଶୁପାଇଁ ଉଦ୍ଦିଷ୍ଟ ଥିବା ମାପକରେ ପୁରାପୁରି ବିଫଳ ହେଲା । ଏକ୍ଷେତ୍ରରେ ପିଲାଟିର ବୌଦ୍ଧିକ ବୟସ ୭ + $\frac{୧}{୨}$= ୭ $\frac{୧}{୨}$ ଧରିବାକୁ ହେବ । ଏହାର କାରଣ ହେଉଛି ଯେ ୭ ବର୍ଷର ବୟସ ପାଇଁ ଉଦ୍ଦିଷ୍ଟ ଥିବା ସବୁ କାର୍ଯ୍ୟ ସେ ସମ୍ପାଦନ କରିଥିବାରୁ ସେଥିପାଇଁ ପୂର୍ଣ୍ଣ କୃତିତ୍ୱ (୭) ପାଇବ ଏବଂ ପରବର୍ତ୍ତୀ ଆଂଶିକ ସଫଳତା ପାଇଁ ଆଂଶିକ ଯୋଗ୍ୟତାମାନ ଦିଆଯିବ । ପିଲାଟିର ବୁଦ୍ଧିର ମାତ୍ରାକୁ ସ୍ପଷ୍ଟଭାବରେ ପ୍ରକାଶ କରିବା ପାଇଁ ନିମ୍ନ ସୂତ୍ରଟିର ଅବତାରଣା କରାଗଲା ।

ବୁଦ୍ଧି ଅଙ୍କ (Intelligence Quotient ବା IQ)

$$= \frac{\text{ମାନସିକ ବୟସ}}{\text{ଜନ୍ମଗତ ବୟସ}} \times ୧୦୦$$

ଲକ୍ଷ୍ୟ କଲେ ଦେଖାଯିବ ଯେ ଉପର ପିଲାଟିର ବୁଦ୍ଧି ଅଙ୍କ ୭୫ ବାହରିବ । ପ୍ରକୃତରେ ଏହାର ଅର୍ଥ କ'ଣ ? ଏହାର ଅର୍ଥ ହେଉଛି ଯେ ପିଲାଟିର ଜନ୍ମଗତ ବୟସ ୧୦ବର୍ଷ ହେଲେ ମଧ୍ୟ ମାନସିକ ବିକାଶ ଦୃଷ୍ଟିରୁ ସେ ସାଢେ ସାତ ବର୍ଷରେ ଅଟକି ରହିଛି । ସେହିପରି ଗୋଟିଏ ଦଶବର୍ଷର ପିଲା ଆଠବର୍ଷର ବୌଦ୍ଧିକତା ଦର୍ଶାଇପାରେ କିମ୍ବା ୧୨ ବର୍ଷର ବୌଦ୍ଧିକତା

| ବୁଦ୍ଧିମାପକ (Intelligence Test) ରେ ବ୍ୟବହାର କରାଯାଉଥିବା ଭାଷାବିହୀନ ପ୍ରଶ୍ନର ଏକ ନମୁନା |
|---|
|   *ନିମ୍ନରେ ଦିଆଯାଇଥିବା ଚିତ୍ରମାନଙ୍କ ମଧ୍ୟରୁ କେଉଁ ଚିତ୍ରଟିକୁ ଆଣି ଉପରେ ପ୍ରଶ୍ନ ଚିହ୍ନ (?) ସ୍ଥାନରେ ରଖିଲେ ଉପରର ପାଞ୍ଚୋଟିଯାକ ଚିତ୍ରର ଅର୍ଥପୂର୍ଣ୍ଣ ହେବ ?*   |

ଦର୍ଶାଇପାରେ । ଏ କ୍ଷେତ୍ରରେ ଏ ପିଲାଟିର ବୁଦ୍ଧି ଅଙ୍କ ୮୦ କିମ୍ବା ୧୨୦ ହେବ । ଠିକ୍ ସେହିପରି ଗୋଟିଏ ୧୪ ବର୍ଷର ପିଲାର ବୁଦ୍ଧି ଅଙ୍କ ୧୦୦ ହେବାର ତାତ୍ପର୍ଯ୍ୟ ହେଉଛି ଯେ ସେ ମାନସିକ ବିକାଶ ଦୃଷ୍ଟିରୁ ସାଧାରଣ (Average) ସ୍ଥିତିରେ ରହିଛି । ସେହି ସମାଜର ଚଉଦବର୍ଷର ପିଲାମାନେ ଯେଉଁସବୁ ଦକ୍ଷତା ଦର୍ଶାନ୍ତି, ଉକ୍ତ ପିଲାଟି ସେହିପରି ଦକ୍ଷତା ଦର୍ଶାଉଛି । ଅନ୍ୟ ପକ୍ଷରେ ସେହି ଚଉଦ ବର୍ଷ ପିଲାର ବୁଦ୍ଧିଅଙ୍କ ୧୫୦ ହୋଇଥିଲେ ସ୍ୱୀକାର କରାଯିବ ଯେ ଏହି ଚଉଦବର୍ଷର ପିଲାଟି ୨୧ ବର୍ଷ ଯୁବକର ସାମର୍ଥ୍ୟ ଦର୍ଶାଉଛି ।

| *ବୁଦ୍ଧିମାପକର (Intelligence Test) ରେ ବ୍ୟବହାର କରାଯାଉଥିବା ଭାଷାଗତ ପ୍ରଶ୍ନର ଏକ ନମୁନା* |
|---|
| *ନିମ୍ନରେ ଦିଆଯାଇଥିବା ପ୍ରତିଟି ଦଳ ମଧ୍ୟରୁ କେଉଁଟି ଦଳ ମଧ୍ୟରେ ସ୍ଥାନ ପାଇବା ଉଚିତ ନୁହେଁ, ତାହା ଚିହ୍ନଟକର*<br>*୧. କ୍ରିକେଟ, ଫୁଟବଲ୍, ହକି, ଟେନିସ, ଲୁଡୁ*<br>*୨, କଦଳୀ, ବାଇଗଣ, ଆତ, ସପୁରୀ, ଅଙ୍ଗୁର*<br>*୩. ରିକ୍ସା, ସାଇକେଲ, ଟ୍ରକ୍, ମଟର, ନୌକା*<br>*୪. ଦିଲ୍ଲୀ, ଆମେରିକା, କଲିକତା, ବନାରସ, କଟକ*<br>*୫. ଦଶହରା, ଦୀପାବଳୀ, ରଜ, ଜନ୍ମଦିନ, ବଡ଼ଦିନ* |

ବିନେ (Bene) ନାମକ ଜଣେ ମନୋବିଜ୍ଞାନୀ ଗ୍ରହଣଯୋଗ୍ୟ ବୁଦ୍ଧିମାପକ ପ୍ରସ୍ତୁତ କଲେ । ସମୟର ପରିବର୍ତ୍ତନ ସହିତ ଏହି ମାପକର ସଂଶୋଧନ ଘଟିଥିଲେ ମଧ୍ୟ ବିନେ ମାପକଟିର ଲୋକପ୍ରିୟତା ପାଶ୍ଚାତ୍ୟ ଜଗତରେ ଖୁବ୍ ବେଶୀ । ଅବଶ୍ୟ ଯୁକ୍ତରାଷ୍ଟ୍ର ଆମେରିକାରେ ଓ୍ୱେସ୍‌ଲର୍‌ଙ୍କ ବୁଦ୍ଧିମାପକର ପ୍ରଚଳନ ଅଧିକ । ଏହାର ଦୁଇଟି ଫର୍ମ ରହିଛି-

ଗୋଟିଏ ପିଲାମାନଙ୍କ ପାଇଁ ଏବଂ ଅନ୍ୟଟି ଯୁବକ ଯୁବତୀଙ୍କ ପାଇଁ । ସାଧାରଣତଃ ପ୍ରତି ବୁଦ୍ଧିମାପକର କିଛି ଅଂଶ ଭାଷାଭିତ୍ତିକ (Verbal) ଏବଂ ଅନ୍ୟ ଅଂଶସବୁ କାର୍ଯ୍ୟଭିତ୍ତିକ । ଭାଷାଭିତ୍ତିକ ଅଂଶ ବିଶେଷରୁ ଭାଷାଗତ ଯୁକ୍ତିଶୀଳତାର ପ୍ରଶ୍ନ ଗୋଟିଏ ଦୃଷ୍ଟାନ୍ତ ହୋଇପାରେ । ମନେକରାଯାଉ ପଚରା ଯାଇ ପରେ-ଧଳା ସହିତ କଳାର ସମ୍ପର୍କ ଯାହା, କାହା ସହିତ ରାତିର ସମ୍ପର୍କ ତାହା ? କାର୍ଯ୍ୟ ସମ୍ପାଦନା ଆବଶ୍ୟକ କରୁଥିବା ଭାଗରେ ଖଣ୍ଡ ଖଣ୍ଡ ଅଂଶକୁ ଏକତ୍ର ପରି ଗୋଟିଏ ଅର୍ଥପୂର୍ଣ୍ଣ ଛବି (ଯଥା-ହାତୀ) ପ୍ରସ୍ତୁତ କରିବାର ପ୍ରଶ୍ନ ଦିଆଯାଇଥାଏ ।

ବାହ୍ୟ ପରିବେଶକୁ ବିନିଯୋଗ କରି ବ୍ୟକ୍ତି କେତେଦୂର ନିଜର ସାମର୍ଥ୍ୟ ଦର୍ଶାଉଛି, ବୁଦ୍ଧିମାପକ ଦ୍ୱାରା ତାହା ମାପ କରାଯାଉ ଥିବାରୁ କୌଣସି ମାପକୁ ବାଛବିଚାର ନକରି ସବୁ ଦେଶରେ ପ୍ରୟୋଗ କରିବାର ଯଥାର୍ଥତା ନାହିଁ । ପାଶ୍ଚାତ୍ୟ ଦେଶମାନଙ୍କର ପାଣିପବନକୁ ନେଇ ଗଠିତ ହୋଇଥବା ବୁଦ୍ଧିମତ୍ତା ମାପକସବୁ ଅତୀତରେ ଭାରତରେ ବ୍ୟବହାର କରାଯାଇଥିଲା । ମାତ୍ର ବିଂଶ ଶତକର ଦ୍ୱିତୀୟ ଭାଗରେ ଏ ଦିଗରେ ପ୍ରତିବାଦରେ ସ୍ୱର ଶକ୍ତିଶାଳୀ ହେଲା । ବୁଦ୍ଧିମାପକରେ ଭାଷାଗତ ଅଂଶବିଶେଷଟିକୁ ବାଦ୍ ଦେଇ କେବଳ ବିଭିନ୍ନ ଛବି ଓ ଜ୍ୟାମିତିକ ଚିତ୍ର ସାହାଯ୍ୟରେ ବୁଦ୍ଧିମତ୍ତା ମାପ କରାଯିବାର କେତେକ ପ୍ରସ୍ତାବ ଦିଆଗଲା । ଏଗୁଡ଼ିକ କିଛିମାତ୍ରାରେ ମଧ୍ୟ କାର୍ଯ୍ୟକାରୀ ହେଲା । କିନ୍ତୁ ଏସିଆ ଏବଂ ଆଫ୍ରିକାର ଦେଶମାନଙ୍କରେ ଏହା ବିରୁଦ୍ଧର ସମାଲୋଚନା ତୀବ୍ର ହେଲା ।

ଏହାର ପରିଣତି ସ୍ୱରୂପ ପ୍ରତି ଦେଶର ସାମାଜିକ ସାଂସ୍କୃତିକ ପରିବେଶକୁ ଚାହିଁ ଦେଶୀୟ ବୁଦ୍ଧିମତ୍ତା ମାପକସବୁର ପ୍ରଚଳନ ଆରମ୍ଭ କରାଗଲା । ଭାରତୀୟ ମନୋବିଜ୍ଞାନୀମାନେ ପ୍ରସ୍ତୁତ କରିଥିବା ବୁଦ୍ଧିମତ୍ତାମାପକସବୁର ବିବରଣୀ ରାଷ୍ଟ୍ରୀୟ ଶିକ୍ଷା ଗବେଷଣା ପରିଷଦ ପ୍ରସ୍ତୁତ କରିଛନ୍ତି । ପାଟଣା ବିଶ୍ୱବିଦ୍ୟାଳୟର ପୂର୍ବତନ ମନୋବିଜ୍ଞାନ ପ୍ରଫେସର ମହସିନ୍ଙ୍କ ପ୍ରସ୍ତୁତ ବୁଦ୍ଧିମାପକ ଏବଂ ଭାଟିଆ ବୁଦ୍ଧିମାପକ ଭାରତରେ ସର୍ବାଧିକ ସ୍ୱୀକୃତି ଲାଭ କରିଛି ଏବଂ ବ୍ୟବହୃତ ହୋଇଛି । ଭାରତ ପରି ବହୁ ଧର୍ମ, ସମ୍ପ୍ରଦାୟ ଏବଂ ଭାଷା ପରମ୍ପରା ଥିବା ବହୁ ସଂସ୍କୃତିସମ୍ପନ୍ନ ରାଷ୍ଟ୍ରରେ ସର୍ବବ୍ୟବହୃତ ମାପକଟିଏ ପ୍ରସ୍ତୁତ କରିବା ଖୁବ୍ କଷ୍ଟସାଧ୍ୟ । ଏ ଦିଗରେ ବେଶ୍ ପରିମାଣର ଉଦ୍ୟମ ହୋଇଥିଲେ ମଧ୍ୟ ଅଧିକରୁ ଅଧିକ ସଂଶୋଧନର ଆବଶ୍ୟକତା ରହିଛି ।

## ନୂତନ ଦିଗନ୍ତ

ବୁଦ୍ଧିମାପକ ଗଠନର ଜଟିଳତା ସତ୍ତ୍ୱେ ଏହାର ଲୋକପ୍ରିୟତା ଖୁବ୍ ବେଶୀ । ଏହାର ମୁଖ୍ୟ କାରଣ ହେଉଛି ଯେ ସ୍କୁଲ ପିଲାମାନଙ୍କର ବୁଦ୍ଧି ଅଂକ ସେମାନଙ୍କର ଭବିଷ୍ୟତ ସ୍କୁଲ ସଫଳତା ସମ୍ପର୍କରେ ସଫଳ ପୂର୍ବାନୁମାନ ଯୋଗାଇଥାଏ । କଲେଜ ସ୍ତରରେ ଏହି ପୂର୍ବାନୁମାନତା କମେ ଏବଂ ଜୀବନର ସାଫଲ୍ୟ କ୍ଷେତ୍ରରେ ଆହୁରି କମେ । ସୁତରାଂ ଅନେକ ଶିକ୍ଷାନୁଷ୍ଠାନରେ ଛାତ୍ରଛାତ୍ରୀମାନଙ୍କୁ ଭର୍ତ୍ତି କଲାବେଳେ ବୁଦ୍ଧିମତ୍ତାକୁ ବିଚାରର ଏକ ମାନଦଣ୍ଡ ରୂପେ ଗ୍ରହଣ କରାଯାଏ । ଭାରତ ପରି ବହୁ-ସଂସ୍କୃତିସମ୍ପନ୍ନ ରାଷ୍ଟ୍ରରେ ବୁଦ୍ଧିମାପକ ଭିତ୍ତିରେ ଏହି ପୂର୍ବାନୁମାନତା

ଖୁବ୍ ବେଶୀ ନହେଲେ ମଧ୍ୟ ମାପକର ଉପଯୋଗିତା ରହିଛି । ଫଳରେ ସମାଲୋଚନା ସତ୍ତ୍ୱେ ବୁଦ୍ଧିମତ୍ତା ମାପକର ଗଠନ ଓ ପ୍ରୟୋଗ ଅବ୍ୟାହତ ରହିଛି । ପୁଣି ବୁଦ୍ଧିମତ୍ତା ସମ୍ପର୍କୀୟ କେତେକ ଆଧୁନିକ ଗବେଷଣା ଏ ଦିଗରେ ନୂତନ ଦିଗନ୍ତର ସନ୍ଧାନ ଦେଇଛି । ସେଥିମଧ୍ୟରୁ ଚାରୋଟି ନୂତନ ଦୃଷ୍ଟିଭଙ୍ଗୀ ବିଷୟରେ ଆଲୋଚନା ବେଶ୍ କୌତୁହଳପ୍ରଦ ।

| *ଅଭିନିବେଶ (Attention) ପରୀକ୍ଷା* | | | | | | | |
|---|---|---|---|---|---|---|---|
| କଳ | ପଶ | ବଗ | ଜର | ରଛ | ଡମ | ଢର | ଖଗ |
| ପର | ଗଧ | ଧନ | ଫଳ | ନର | ଘର | ରଣ | ଢପ |
| ଧର | ନଟ | ଗଛ | ହସ | ସହ | ପଟ | ରସ | ଛଟ |
| ବଟ | ଠକ | ବଶ | ବଣ | ତପ | ଗଛ | ସଢ | ମନ |
| *କେଉଁ ଅକ୍ଷରଯୁଗ୍ମ ଦଳଟି ପାଖାପାଖି ଅକ୍ଷର, ତାହା ଯଥାଶୀଘ୍ର ଚିହ୍ନଟ କର ।* | | | | | | | |

ପ୍ରଥମତଃ ବୁଦ୍ଧିମତ୍ତା ସମ୍ପର୍କରେ କେତେକ ଜୀବତାତ୍ତ୍ୱିକ ଏବଂ ସ୍ନାୟୁଭିତ୍ତିକ ଗବେଷଣା ଏହାର ସ୍ୱରୂପକୁ ନୂଆକରି ଦେଖିବାର ସୁଯୋଗ ଦେଇଛି । ବିଶେଷତଃ ବିଶିଷ୍ଟ ଋଷୀୟ ଶରୀର-ବିଜ୍ଞାନୀ ଲୁରିଆ ମସ୍ତିଷ୍କର କାର୍ଯ୍ୟକଳାପର ସୂଚନା ଦେବା ପରିପ୍ରେକ୍ଷୀରେ ବୁଦ୍ଧିମତ୍ତାର ବୈଶିଷ୍ଟ୍ୟ ଦର୍ଶାଇଛନ୍ତି । ତାଙ୍କ ମତରେ ବୁଦ୍ଧିମତ୍ତା ପରିପ୍ରେକ୍ଷୀରେ ମସ୍ତିଷ୍କର ତିନୋଟି କାର୍ଯ୍ୟ ବେଶ୍ ଗୁରୁତ୍ୱପୂର୍ଣ୍ଣ । ପ୍ରଥମଟି ହେଉଛି ମସ୍ତିଷ୍କର ଜାଗରଣ ଓ ଅଭିବିବେଶ (Arousal Attention) ପ୍ରକ୍ରିୟା । ବୁଦ୍ଧିଦୀପ୍ତ ବ୍ୟବହାର ଦର୍ଶାଇବା ପୂର୍ବରୁ ବ୍ୟକ୍ତି ଉଦୀପକ ପ୍ରତି ଧ୍ୟାନଶୀଳ ହେବ କି ନାହିଁ, ତାହା ପ୍ରଥମେ ସ୍ଥିର କରେ । ଶ୍ରେଣୀରେ ଶିକ୍ଷକଙ୍କ ବକ୍ତବ୍ୟ ଶୁଣିବ କି ଅର୍ଦ୍ଧନିଦ୍ରିତ ଅବସ୍ଥାର ସମୟ କଟାଇ ଦେବ, ତାହା ସ୍ଥିର କରେ ।

ପ୍ରଥମ ପର୍ଯ୍ୟାୟର ଏପରି ପ୍ରକ୍ରିୟା ପରେ ବ୍ୟକ୍ତି ଜାଗ୍ରତ ଓ ଅଭିନିବିଷ୍ଟ (Attentive) ହେବା ପରେ ଆହରଣ କରୁଥିବା ସୂଚନାସବୁର ସଂରକ୍ଷଣ କରେ । ଦେଖୁଥିବା, ଶୁଣୁଥିବା ତଥା ଅନ୍ୟ ପ୍ରକାର ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁକୁ ସେ ସଂକେତରେ ରୂପାନ୍ତର (Encoding) କରେ । ଏପରି ସଂକେତକରଣ ଦୁଇ ପ୍ରକାର ଶୈଳୀରେ ହୋଇପାରେ । ସେ ଦୁଇଟି ହେଉଛି କ୍ରମକାଳୀନ ପଦ୍ଧତି (Successive Processing) ଏବଂ ସମକାଳୀନ ପଦ୍ଧତି (Simutaneous Processing) । ଧରାଯାଉ ଜଣେ ବ୍ୟକ୍ତି ଗୋଟିଏ ଟେଲିଫୋନ୍ ନମ୍ବର (ଯଥା ୨୩୫୮) ମନେରଖୁଛି । ଏ କ୍ଷେତ୍ରରେ ପ୍ରଥମ ସ୍ଥାନରେ ରହିଥିବା ନମ୍ବର ପ୍ରଥମେ, ଦ୍ୱିତୀୟ ସ୍ଥାନରେ ରହିଥିବା ନମ୍ବର ଦ୍ୱିତୀୟରେ ରହିବା ଏକାନ୍ତ ଆବଶ୍ୟକ । ସ୍ଥାନ କ୍ରମରେ ନମ୍ବର ଠିକ୍ ନରହିଲେ ଟେଲିଫୋନ୍ ନମ୍ବରଟି ଭୁଲ ହୋଇଯିବ । ସୁତରାଂ ମସ୍ତିଷ୍କରେ ସଂକେତକରଣ କରିବା ସମୟରେ କ୍ରମିକତା ରକ୍ଷା କରିବାକୁ ହେବ । ସେହିପରି ଗୋଟିଏ ଶିଶୁ ''ସପୁରୀ'' ଶବ୍ଦଟିକୁ ମନେରଖିବା ସମୟରେ ପ୍ରଥମ ସ୍ଥାନର 'ସ' ଦ୍ୱିତୀୟ ସ୍ଥାନରେ 'ପୁ' ଏବଂ ତୃତୀୟ ସ୍ଥାନର 'ରୀ' ରଖିବା ବିଧେୟ । ଏହାର ବ୍ୟତିକ୍ରମ ହେଲେ ସଂକେତକରଣ ନିର୍ଭୁଲ ହୋଇ ନଥାଏ । ଅନ୍ୟ ପକ୍ଷରେ କେତେକ କ୍ଷେତ୍ରରେ ସମକାଳୀନ ପଦ୍ଧତି ଅନୁସୃତ ହୁଏ । ଏକାଠି ଠୁଳ ହୋଇଥିବା ଫଳ

ମଧ୍ୟରୁ ଆମ୍ବଟି ଅନ୍ୱେଷଣ କରିବା ସମୟରେ ପିଲାଟି ଗୋଟିଏ ସମୟରେ ସବୁ ଫଳର ଦୃଷ୍ଟିସମ୍ବେଦନ ଗ୍ରହଣ କରି ନିର୍ଦ୍ଦିଷ୍ଟ ଫଳଟିକୁ ବାଛିଥାଏ । କେଉଁ କ୍ଷେତ୍ରରେ କେଉଁ ପଦ୍ଧତି ସହାୟକ, ତାହା କାର୍ଯ୍ୟ ଉପରେ ନିର୍ଭର କରିଥାଏ ।

ସଂକେତ-କରଣ କରିସାରିବା ପରେ ତୃତୀୟ ପ୍ରକ୍ରିୟାଟି କାର୍ଯ୍ୟକାରୀ ହୁଏ । ମୁଖ୍ୟ ମସ୍ତିଷ୍କରେ ସଂଘଟିତ ତୃତୀୟ କାର୍ଯ୍ୟଟି ଯୋଜନା (Planning) ନାମରେ ପରିଚିତ । ବ୍ୟକ୍ତି ଗ୍ରହଣ କରୁଥିବା ସମ୍ବେଦନସବୁ ଯୋଜନାବଦ୍ଧ ଭାବରେ ସଜ୍ଜୀକରଣ କରେ, କିମ୍ବା ପ୍ରକାଶ କରେ । ଅନ୍ୟ ସମୟରେ ଏହି ଗଚ୍ଛିତ ସୂଚନାସବୁକୁ ବ୍ୟବହାର କରି ସମସ୍ୟା ସମାଧାନ କରେ । ଲୁରିଆଙ୍କ ମତରେ ମଣିଷର ଅଗ୍ରମସ୍ତିଷ୍କ (Frontal lobes) ଏହି କାର୍ଯ୍ୟ ସମ୍ପନ୍ନ କରିଥାଏ ।

ଏହି ତାତ୍ତ୍ୱିକ ଦିଗର ଦୁଇଟି ବ୍ୟବହାରିକ ଦିଗ ରହିଛି । ପ୍ରଥମତଃ ଯୋଜନାବଦ୍ଧ ବ୍ୟବହାର (Planning ବା Planful Behaviour) ଏବଂ ବୁଦ୍ଧିମତ୍ତା (Intelligence) ସମ୍ପର୍କିତ ହେଲେ ମଧ୍ୟ ଯୋଜନାବଦ୍ଧ ବ୍ୟବହାର ଅଧିକ ବ୍ୟାପକ ମନେହୁଏ । ଗାଁ ଗହଳରେ ନିଶାପ କରୁଥିବା ବ୍ୟକ୍ତିର ଶିକ୍ଷାଗତ ଯୋଗ୍ୟତା କମ୍ ଥିବାରୁ ସେ ହୁଏତ ବୁଦ୍ଧିମାପକରେ ବିଫଳତା ଦର୍ଶାଇ ପାରେ ।ମାତ୍ର ତା'ର ବ୍ୟବହାରିକ ନିଷ୍ପତ୍ତି-ଦକ୍ଷତା କମ୍ ନୁହେଁ । ଏ ଦୃଷ୍ଟିରୁ ଯୋଜନାବଦ୍ଧ ବ୍ୟବହାର ବ୍ୟାପକ । ଦ୍ୱିତୀୟତଃ ଯୋଜନାବଦ୍ଧ ବ୍ୟବହାରର ଅନ୍ତରାଳରେ ସମକାଳୀନ ଓ କ୍ରମକାଳୀନ ପଦ୍ଧତି ସମ୍ପୃକ୍ତ ଥିବାରୁ ଉପଯୁକ୍ତ ତାଲିମ ପ୍ରଦାନ ଦ୍ୱାରା ଏସବୁ ବୃଦ୍ଧି କରାଯାଇପାରେ । ମନେକରାଯାଉ ଗୋଟିଏ ପିଲା ଠିକ୍ ଭାବରେ କ୍ରମାନ୍ୱୟତା ଜାଣିପାରୁ ନଥିବାରୁ ଅକ୍ଷରଗୁଡ଼ିକ ଠିକ୍ ସ୍ଥାନରେ ରଖି ନପାରି ଶବ୍ଦ (Words) ଶିଖିପାରୁନାହିଁ । ଏ କ୍ଷେତ୍ରରେ ତାକୁ କ୍ରମାନ୍ୱୟତାର ଅଭ୍ୟାସ-କରଣ ଶିକ୍ଷା ଦିଆଯାଇପାରେ । ଆଠୋଟି ବସ୍ତୁର (ଯଥା : କଲମ, ଅଙ୍ଗୁର, ରେଳଗାଡ଼ି...ଇତ୍ୟାଦି) ନାମ କୁହାଯାଇ କ୍ରମାନ୍ୱୟରେ କହିବା ପାଇଁ ନିର୍ଦ୍ଦେଶ ଦିଆଯିବ । ଅଧିକ ମାତ୍ରାରେ ବିଫଳତା ଘଟୁଥିଲେ ଚାରୋଟି ଚାରୋଟି ବସ୍ତୁକୁ ପୃଥକ୍ ପୃଥକ୍ ଅଭ୍ୟାସ କରାଯିବ । ଚୋରୋଟିକୁ ଠିକ୍ ଭାବରେ ଅଭ୍ୟାସ କରାଗଲେ ଅନ୍ୟ ଚାରୋଟି ଦିଆଯିବ । ବାରମ୍ବାର ଅଭ୍ୟାସ କରିବା ଫଳରେ ଏହି ବସ୍ତୁ ବ୍ୟତୀତ ଅନ୍ୟତ୍ର ମଧ୍ୟ ସଫଳତା ହାସଲ କରିବ । ମୋଟ ଉପରେ ଉପଯୋଗୀ ତାଲିମ ପ୍ରଦାନ ମାଧ୍ୟମରେ ଯୋଜନାବଦ୍ଧ ବ୍ୟବହାର ପରି ବୁଦ୍ଧିମାନ କାର୍ଯ୍ୟକୁଶଳତାର ଅଭିବୃଦ୍ଧି ସମ୍ଭବପର ।

ବୁଦ୍ଧିମତ୍ତା କ୍ଷେତ୍ରରେ ଦ୍ୱିତୀୟ ନବ ତୋରଣଟି ହେଉଛି ବହୁମୁଖୀ ବୁଦ୍ଧିମତ୍ତାର ପରିକଳ୍ପନା । ଆଲୋଚନାର ପ୍ରାରମ୍ଭରେ ସୂଚନା ଦିଆଯାଇଛି ଯେ ବୁଦ୍ଧିମତ୍ତାରେ ଏକ ସାଧାରଣ ଦକ୍ଷତା ସମେତ ସ୍ୱତନ୍ତ୍ରଧରଣର କୁଶଳତାକୁ ସ୍ୱୀକୃତି ଦିଆଯାଇଥିଲେ ମଧ୍ୟ ଏହାର ରୂପରେଖ ସ୍ପଷ୍ଟ ହୋଇନଥିଲା । ଚିଲିକାର ମଧ୍ୟଭାଗକୁ ନୌକାଟିକୁ ନେଇ ଯାଇଥିବା ନାଉରୀ ସୁଦକ୍ଷ ଭାବରେ ପୁଣି ନୌକାଟିକୁ କୂଳକୁ ଫେରାଇ ଆଣେ । ନୌକାରେ ବସିଥିବା ଯାତ୍ରୀମାନେ ଦିଗ ସମ୍ପର୍କରେ ବିଶେଷ ଧାରଣା କରିପାରନ୍ତି ନାହିଁ । ଏ ପରିପ୍ରେକ୍ଷୀରେ ନାଉରୀଟିକୁ ବୁଦ୍ଧିହୀନ କହିବା ସଂଗତ କି ? ଆଧୁନିକ ତତ୍ତ୍ୱ ଅନୁସାରେ ଏହା ଆଦୌ ଯୁକ୍ତିଯୁକ୍ତ ନୁହେଁ ।

ଯୋଜନା ବ୍ୟବହାରର ଏକ ସୂଚକ ରୂପେ ଦୃଶ୍ୟଗତ ଅନ୍ୱେଷଣ ।

| | | | | | |
|---|---|---|---|---|---|
| ୩ | ୭ | ୫ | ୮ | ୦ | ୪ |
| ୪ | ୫ | ୪ | ୧ | ୯ | ୩ |
| ୭ | ୫ | (୭) | ୩ | ୨ | ୬ |
| ୪ | ୬ | ୨ | ୭ | ୪ | ୫ |
| ୫ | ୭ | ୯ | ୦ | ୨ | |
| ୧ | ୫ | ୯ | ୭ | ୩ | |
| ୩ | ୫ | ୩ | ୪ | ୮ | |
| ୪ | ୨ | ୬ | ୮ | ୪ | |
| ୫ | ୪ | (୩) | ୬ | ୨ | |

ବୃତ୍ତାକାର ହୋଇଥିବା
ନମ୍ବରଟି ଚିହ୍ନଟ କର

| | | | | |
|---|---|---|---|---|
| ର | ପ | ଶ | ମ | ର |
| ତ୍ର | କ | ଟ | ଫ | କ୍ଷ |
| ଢ଼ | ଚ | (ମ) | ଳ | ଯ |
| ଝ | ଛ | ଶ | ମ | ଷ |
| କ | ଙ | ଚ | ଟ | ଦ |
| ଘ | ଞ | ଧ | ଳ | ଠ |
| ଟ | ର | ଶ | ଦ | ଗ |
| ଛ | (ଦ) | ପ | କ୍ଷ | |
| ଛ | ବ | ଖ | | |

ବୃତ୍ତାକାର ହୋଇଥିବା
ଅକ୍ଷରଟି ଚିହ୍ନଟ କର

### କ୍ରମକାଳୀନ ପ୍ରକ୍ରିୟାର ଏକ ଦୃଷ୍ଟାନ୍ତ

| | | | | | | | | | |
|---|---|---|---|---|---|---|---|---|---|
| ୧. | ରବି | କବି | ପଟ | ଛବି | ୧୧. | ଲେଖ | ଖଟ | ବଟ | ରଟ |
| ୨. | ଜଜ | ନଜ | ରଜ | ଫଜ | ୧୨. | ଯମ | ରମ | ସମ | ଜଟ |
| ୩. | ବାଟ | ଘାଟ | ପାଟ | ରସ | ୧୩. | ଭାତ | ଗୀତ | ଶୀତ | ନାଟ |
| ୪. | ଦିନ | ମୀନ | ବନ | ଫଟ | ୧୪. | ରସ | ଖସ | ଜର | ହସ |
| ୫. | ରଖ | ଶିଖ | ନର | ଦେଖ | ୧୫. | ଧୂପ | ଦୀପ | ଜପ | ବହି |
| ୬. | ଦୂର | ହର | ଭାତ | ଜର | ୧୬. | ଟାଣ | ଆଣ | ବାଣ | ଜାଗ |
| ୭. | ଗୀତ | ଶୀତ | ମିତ | ପାଠ | ୧୭. | ଗଦ | ରଦ | ନିଦ | ଫଳ |
| ୮. | ବହି | ମାଛ | ଗଛ | ମିଛ | ୧୮. | ଫଳ | ମୂଳ | ବଳ | ଆଳୁ |
| ୯. | ବଗ | ଦୀନ | ଶାଗ | ରାଗ | ୧୯. | ନରି | ହରି | ଦାମ | ଗିରି |
| ୧୦. | ମୂଳ | ଢୋକ | ଦଳ | ହଳ | ୨୦. | ଶାଗ | ମାଛ | ମୁଗ | ରାଗ |

ପ୍ରତି ନମ୍ବରରେ ଲେଖାଯାଇଥିବା ଚାରୋଟି ଶବ୍ଦ ପଢ଼ । ତାପରେ ସେସବୁକୁ ମନେରଖ ସେହିକ୍ରମରେ କୁହ କେଉଁ ଶବ୍ଦଟି ସମାନ ତାଳରେ ପଡୁ ନାହିଁ, ତାହା ଚିହ୍ନଟ କର ।

**ସମକାଳୀନ ପ୍ରକ୍ରିୟାର ଏକ ନମୁନା**



ଉପରର କେଉଁ କୋଠରୀର ବର୍ଗକ୍ଷେତ୍ର ମଧ୍ୟରେ ଥିବା ତ୍ରିଭୁଜ ମଧ୍ୟରେ ବୃତ୍ତଟିଏ ରହିଛି ?

ଗାର୍ଡ୍‌ନର ନାମକ ଜଣେ ମନୋବିଜ୍ଞାନୀ ସାତ ପ୍ରକାର ବୁଦ୍ଧିମତ୍ତାର ସ୍ୱରୂପ ସୂଚାଇଛନ୍ତି । ପ୍ରଥମଟି ହେଉଛି ଭାଷାଗତ । କାବ୍ୟ, ସାହିତ୍ୟ ଏବଂ କଳାତ୍ମକ ରଚନାରେ ଏହା ପ୍ରତିଫଳିତ । ଦ୍ୱିତୀୟ ପ୍ରକାର ବୁଦ୍ଧିମତ୍ତାଟି ହେଉଚି ଗାଣିତିକ ଏବଂ ଯୁକ୍ତିଯୁକ୍ତତା-ଧର୍ମୀ ବୁଦ୍ଧିମତ୍ତା ।ଏଥିରେ ଦକ୍ଷତାଥିବା ବ୍ୟକ୍ତିମାନେ ସଫଳରୂପେ ଗାଣିତିକ ସଂକେତର ଉପଯୋଗ କରନ୍ତି । ନମ୍ବର ସବୁ ନେଇ ସମସ୍ୟା ସମାଧାନ କରନ୍ତି ଏବଂ ଯୁକ୍ତିଯୁକ୍ତ ଭାବରେ ସମସ୍ୟା ବିଶ୍ଳେଷଣ କରନ୍ତି । ତୃତୀୟ ବୁଦ୍ଧିମତ୍ତା ଶୂନ୍ୟସ୍ଥାନକୁ ନେଇ ଉପଯୋଗ କରିବାର ସାମର୍ଥ୍ୟରେ ପ୍ରତିବିମ୍ବିତ ହୋଇଥାଏ । ମାନଚିତ୍ର ଅଧ୍ୟୟନ ଏବଂ ଚିତ୍ରାଙ୍କନ କାର୍ଯ୍ୟରେ ଏହାର ଉପଯୋଗ ହୁଏ । ସଂଗୀତ ସମ୍ବନ୍ଧୀୟ ବୁଦ୍ଧିମତ୍ତାକୁ ଚତୁର୍ଥ ଧରଣର ବୁଦ୍ଧିମତ୍ତା କୁହାଯାଇପାରେ । ଶାରୀରିକ କୌଶଳର ପ୍ରକାଶ ପଞ୍ଚମ ପ୍ରକାରର ବୁଦ୍ଧିମତ୍ତା । ଦୌଡ଼ାଦୌଡ଼ି ଏବଂ ଅନ୍ୟସବୁ କ୍ରୀଡ଼ା ପ୍ରତିଯୋଗିତାରେ ଭାଗନେଉଥିବା ବ୍ୟକ୍ତିମାନେ ଏ ଧରଣର ବୁଦ୍ଧିମତ୍ତା ପ୍ରଦର୍ଶନ କରନ୍ତି । ପାରସ୍ପରିକ ସମ୍ପର୍କରକ୍ଷାର କୁଶଳତା ଷଷ୍ଠ ଧରଣର ବୁଦ୍ଧିମତ୍ତା । ଏମାନେ ଅନ୍ୟର ପ୍ରତ୍ୟକ୍ଷଣ ଏବଂ ଅନୁଭବକୁ ସହଜରେ ଜାଣି ପାରନ୍ତି । ଏହା ଏକ ସାମାଜିକ ଦକ୍ଷତା । ସପ୍ତମ ଓ ଶେଷ ପ୍ରକାରର ବୁଦ୍ଧିମତ୍ତା ହେଉଛି ସ୍ୱ-ଅଧ୍ୟୟନର ଦକ୍ଷତା । ନିଜର ଭାବ ଏବଂ ଭାବସବୁ ଠିକ୍‌ଭାବେ ବୁଝିପାରିବା ଏବଂ ଅନୁଶୀଳନ କରିବାର ସାମର୍ଥ୍ୟ ଏଥିରେ ପ୍ରତିଫଳିତ । ସ୍ଥୂଳତଃ ପିଲା ହେଉ ବା ଅନ୍ୟ କେହି ହେଉ, ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଦକ୍ଷତା ଅର୍ଜନ କରି ଜଣେ ନିଜକୁ ବୁଦ୍ଧିମାନ ବୋଲି ପରିଚୟ ଦେଇପାରିବ ।

ତୃତୀୟତଃ ବୁଦ୍ଧିମତ୍ତା ସମ୍ପର୍କରେ ଅନ୍ୟତମ ନବ ଦିଗନ୍ତ ହେଉଛି ଏହାର ପ୍ରୟୋଗାତ୍ମକ ଦିଗ ସମ୍ପର୍କରେ ସଚେତନଶୀଳତା । ଅଧିକାଂଶ ବୁଦ୍ଧିମାପକରେ କେବଳ ବ୍ୟକ୍ତିର ଉତ୍ତରର ସଠିକତା ବିଚାର କରାଯାଏ ନାହିଁ । ଉତ୍ତର ଦେବାର କ୍ଷିପ୍ରତା ମଧ୍ୟ ବିଚାରକୁ ନିଆଯାଏ ।

ଜଣେ ବୁଦ୍ଧିମାନ ବ୍ୟକ୍ତି ଅଳ୍ପ ସମୟ ମଧ୍ୟରେ ଅନେକଗୁଡ଼ିଏ ପ୍ରଶ୍ନର ଉତ୍ତର ଦେଇପାରେ । ଠିକ୍ ସେହିପରି ଦୈନନ୍ଦିନ ଜୀନରେ ଉପୁଜୁଥିବା ସମସ୍ୟାସବୁ କେତେକ ବ୍ୟକ୍ତି କ୍ଷିପ୍ରତାର ସହ ସମାଧାନ କରିପାରନ୍ତି । ଏପରି ବ୍ୟକ୍ତିଙ୍କର ହୁଏତ ସ୍କୁଲ କଲେଜର ଔପଚାରିକ ଶିକ୍ଷା ଖୁବ୍ ସୀମିତ । ନିତିଦିନିଆ ଜୀବନରେ ଏପରି ଆଶୁ ସମାଧାନ ଆଣିପାରୁଥିବା ବ୍ୟକ୍ତିର ଅଧିକ ପରିମାଣର ପ୍ରୟୋଗାତ୍ମକ ବୁଦ୍ଧିମତ୍ତା (Practical Intellgence) ଅଛି ବୋଲି କୁହାଯାଏ । କେହି କେହି ଏହାକୁ ସାମାଜିକ ବୁଦ୍ଧିମତ୍ତା (Social Intellgence) ମଧ୍ୟ କହନ୍ତି । ଦୈନନ୍ଦିନ ଜୀବନରେ ଏହାର ପ୍ରାଧାନ୍ୟ ଦୃଷ୍ଟିରୁ ଏହା ମାପକରିବା ଏବଂ ଅନୁମାନ କରିବାର ପରାମର୍ଶ ଦିଆଯାଏ ।

ପରିଶେଷରେ ଚତୁର୍ଥ ତତ୍ତ୍ୱଟିର ସୂଚନା ଦିଆଯାଇପାରେ । ପୂର୍ବ ଆଲୋଚନା ଅନୁଯାୟୀ ବୁଦ୍ଧିମତ୍ତାକୁ ଭିତ୍ତିକରି ଶିକ୍ଷାଗତ (ବିଶେଷତଃ ସ୍କୁଲ ଶିକ୍ଷା) ସଫଳତାର ପୂର୍ବନୁମାନ (Prediction) ସମ୍ଭବ ହେଲେ ମଧ୍ୟ ଏହାକୁ ଜୀବନର ସଫଳତାର ନିର୍ଦ୍ଧାରକ ବିଚାର କରିବା ବିଜ୍ଞତା ନୁହେଁ । ବୁଦ୍ଧିମତ୍ତାର ମାତ୍ରା ଅଧିକ ନହୋଇ ମଧ୍ୟ ଜୀବନର ଗୁଣାତ୍ମକ ମାନ ଉଚ୍ଚ ହୋଇପାରେ । ଜାତିର ପିତା ମହାତ୍ମା ଗାନ୍ଧୀ ଏହାର ପ୍ରକୃଷ୍ଟ ଉଦାହରଣ । ଔପଚାରିକ ବୁଦ୍ଧିମତ୍ତାର ଶିଖର ପ୍ରଦେଶରେ ନଥିଲେ ମଧ୍ୟ ତାଙ୍କର ମାନବବାଦ ଏବଂ ତ୍ୟାଗ ବିଶ୍ୱବିଶ୍ରୁତ । ସେହିପରି ମଧ୍ୟମ ମାତ୍ରାର ବୁଦ୍ଧିମତ୍ତାର ଅଧିକାରୀ ହୋଇ ମଧ୍ୟ ବ୍ୟକ୍ତି ନିଜର ସୃଜନଶୀଳତା (Creativety) ଦ୍ୱାରା ଜନସମାଜର ଉପକାର କରିପାରେ ।

ବୁଦ୍ଧିମତ୍ତାର ଏହି ପରିସୀମତ୍ୱକୁ (Limitation) ବିଚାରକୁ ନେଇ ୧୯୯୦ ମସିହା ପରେ ଅନ୍ୟ ଏକ ଦିଗ ସମ୍ପର୍କରେ ସବିଶେଷ ଗବେଷଣା ଆରମ୍ଭ ହୋଇଛି । ତାହା ହେଉଛି ଭାବ ବୁଦ୍ଧି (Emotional Intelligence) । ଏହି ପ୍ରବନ୍ଧର ଆଲୋଚିତ ବୁଦ୍ଧି ମୁଖ୍ୟତଃ ଭାବନା ବୁଦ୍ଧି (Rational Intelligence) । ଭାବନା ବୃଦ୍ଧି ଆମ ଜୀବନର ସାଫଲ୍ୟକୁ କେବଳ ଆଂଶିକ ଭାବେ ନିୟନ୍ତ୍ରଣ କରେ । ଅନ୍ୟପକ୍ଷରେ ଭାବବୃଦ୍ଧିର ପ୍ରଭାବ ଅଧିକ ବ୍ୟାପକ । ଏହା ସମ୍ପର୍କରେ ଅନ୍ୟତ୍ର ଆଲୋଚନା କରାଯିବ ଏଠାରେ ବିସ୍ତୃତ ଆଲୋଚନା କରାଯିବ ନାହିଁ । ତେବେ ଆମ ଜୀବନରେ ସଫଳତା ହାସଲ ପାଇଁ ଭାବନା ବୃଦ୍ଧି ଓ ଭାବ ବୃଦ୍ଧିର ସମନ୍ୱୟ ଆବଶ୍ୟକ, ଏହା ଯୁକ୍ତିଯୁକ୍ତ ମନେହୁଏ । ପୁଣି ଏହି ସମନ୍ୱୟ ପରିକଳ୍ପନାକୁ ଭିତ୍ତିକରି ନିକଟ ଅତୀତରେ କେତେକ ବିଶେଷଜ୍ଞ ଅଧ୍ୟାତ୍ମ ବୃଦ୍ଧି (Spiritual Intelligence)ର ମହତ୍ତ୍ୱ ପ୍ରଖ୍ୟାପନ କରିଛନ୍ତି ।

## ସହାୟକ ପରାମର୍ଶ

୧. ବୁଦ୍ଧିମତ୍ତା (Intelligence)କୁ ପରିମାଣାତ୍ମକ ଭାବରେ ପ୍ରକାଶ କରୁଥିବା ବୁଦ୍ଧିଅଙ୍କ (Intellignece Quotient ବା IQ)ଜିନ୍‌-ବାହିତ ବଂଶାନୁଗତି (Heredity) ଏବଂ ପରିବେଶ (Environment)ର କ୍ରିୟା ଅନୁକ୍ରିୟାର ପରିଣତି । ବଂଶାନୁଗତି ବୁଦ୍ଧିମତ୍ତାର ପରିସୀମା ବା ସମ୍ଭାବନା (ସୀମାରେଖା) ଦେଇଥାଏ ଏବଂ ପରିବେଶ ଏହି ସୀମା ମଧ୍ୟରେ ବୁଦ୍ଧିକୁ ସଂକୁଚିତ କିମ୍ବା ପ୍ରସାରିତ କରିଥାଏ । ବଂଶାନୁଗତି କ୍ଷେତ୍ରରେ ହସ୍ତକ୍ଷେପ (Intervention) କରିବାକୁ ସୁଯୋଗ ନଥିବାରୁ ଆପଣ ପାରିପାର୍ଶ୍ୱିକ ଅବସ୍ଥାର ଗୁଣାତ୍ମକ ବିକାଶ ଦିଗରେ ଉଦ୍ୟମ କରନ୍ତୁ । ଏପରି ସୁବିକଶିତ ପରିବେଶରେ ଶିଶୁର ବୁଦ୍ଧିମତ୍ତା ଉନ୍ନତ ହେବ ।

୨. ଶିଶୁର ବୁଦ୍ଧିମତ୍ତା ଶିକ୍ଷାଗତ (ବିଶେଷତଃ ସ୍କୁଲଶିକ୍ଷା) ସଫଳତାର ପୂର୍ବାନୁମାନ ଦେଇଥାଏ । ଏ ଦୃଷ୍ଟିରୁ ବିଶେଷଜ୍ଞଙ୍କ ସହାୟତାରେ ଆପଣ ବୁଦ୍ଧିମାପକର ବ୍ୟବହାର ଏବଂ ଏହାର ଫଳାଫଳ ଆଲୋଚନା କରିପାରନ୍ତି । ମାତ୍ର ପିଲାଟିକୁ ବୁଦ୍ଧିହୀନ କିମ୍ବା ଅତିବୁଦ୍ଧିମାନର ମୋହର ମାରି ପରିବର୍ତ୍ତନର ସମ୍ଭାବନାକୁ ସୀମିତ କରନ୍ତୁ ନାହିଁ । ମନେରଖନ୍ତୁ ଯେ ସାଧାରଣ ସ୍ତରର (ବୁଦ୍ଧିଅଙ୍କ ୧୦୦) କମ୍‌ ବୁଦ୍ଧି ଅଙ୍କର ପିଲାମାନେ ମଧ୍ୟ କେତେକ କାର୍ଯ୍ୟ ସଫଳତାର ସହିତ କରିପାରିବେ ।

୩. ବୁଦ୍ଧିଅଙ୍କର (IQ) ବିକାଶ ସହିତ ଭାବଅଙ୍କ (Emotional Quotient ବା EQ) ବିକାଶ ପ୍ରତି ସଚେଷ୍ଟ ହୁଅନ୍ତୁ ।

୪. ବୁଦ୍ଧିମତ୍ତାର ଅନ୍ତରାଳରେ ଥିବା ସାଧାରଣ ସାମର୍ଥ୍ୟ (General ability)ର ବିକାଶ ସହିତ ଅପେକ୍ଷାକୃତ ଅଧିକ ବ୍ୟାପକ "ଯୋଜନା ବ୍ୟବହାର" (Planning) ମଧ୍ୟ ତାଲିମ ଦିଅନ୍ତୁ ।

୫. ଶିଶୁର ରୁଚିକୁ ଚାହିଁ କଳା, ସାହିତ୍ୟ, ଗଣିତ କିମ୍ବା ଶାରୀରିକ କୌଶଳ ପରି ସ୍ୱତନ୍ତ୍ର ବୁଦ୍ଧିମତ୍ତାର ବିକାଶ ପାଇଁ ଯତ୍ନ କରନ୍ତୁ ।

# ବୁଦ୍ଧିଦୀପ୍ତ ଚିନ୍ତନ–କୌଶଳ ଶିକ୍ଷାଦେବେ କିପରି

ବୁଦ୍ଧିମତ୍ତାର ସଂଜ୍ଞା ଯାହା ହେଉନା କାହିଁକି, ଆରମ୍ଭରୁ ଶିଶୁମାନଙ୍କର ବୁଦ୍ଧିଦୀପ୍ତ ଚିନ୍ତନ–କୌଶଳର ବିକାଶ ହିଁ ଆମର ମୁଖ୍ୟ ଆଭିମୁଖ୍ୟ । ଏ ଆଭିମୁଖ୍ୟର ପରିପୂରଣ କ୍ଷେତ୍ରରେ ପ୍ରାରମ୍ଭିକ ସ୍ତରରେ ଶିଶୁର ବୁଦ୍ଧିମତ୍ତା ମାପ କରିବା ଏବଂ ସେମାନଙ୍କର ବୁଦ୍ଧ୍ୟଙ୍କ (Intelligence Quotient ବା IQ) ସ୍ଥିର କରିବା ଆବଶ୍ୟକ ହୋଇପାରେ । ମାତ୍ର ପରିମାପକର ପ୍ରୟୋଗ ନକରି ମଧ୍ୟ ସିଧାସଳଖ ଆମେ ଶିଶୁକୁ ଚନ୍ତନ କୌଶଳ ସମ୍ପର୍କରେ ତାଲିମ ଦେଇପାରିବା । ପିତାମାତା, ଯତ୍ନକାରୀ ଏବଂ ଶିକ୍ଷକ ଶିକ୍ଷୟିତ୍ରୀ ଏଦିଗରେ ଉପଯୋଗୀ ଭୂମିକା ନିର୍ବାହ କରିପାରିବେ । ଔପଚାରିକ ଭାବରେ ଏବଂ ଅନପୌଚାରିକ ଭାବରେ ନିମ୍ନଲିଖିତ ପଦକ୍ଷେପମାନ ଗ୍ରହଣ କରାଯାଇପାରେ ।

୧– ଶିଶୁକୁ କୌଣସି ବିଷୟରେ ତାଲିମ ଦେବା ସମୟରେ ଦୈନନ୍ଦିନ ଜୀବନର ଅନୁଭୂତିରୁ ପ୍ରାରମ୍ଭିକ ସମ୍ବଳ ସଂଗ୍ରହ କରନ୍ତୁ । ଶିଶୁକୁ ଚିନ୍ତନର ଉଚ୍ଚ ସୋପାନକୁ ନେଲାବେଳେ ତା'ର 'ପରିଚିତ' ଜଗତରୁ 'ଅପରିଚିତ' ଜଗତକୁ ଏବଂ 'ଜ୍ଞାତ' ପରିସରରୁ 'ଅଜ୍ଞାତ' ପରିସରକୁ ନିଅନ୍ତୁ । ଦୁଇବର୍ଷ ପାରହୋଇ ଗଲେ ଶିଶୁକୁ 'ହଁ, ନାହିଁ'ରେ ଉତ୍ତର ସମ୍ଭବ ହେଉଥିବା (ଯଥା : ଖାଇବୁ କି ? ବୁଲିଯିବୁ କି ? ଶୋଇନାହୁଁ କି ?) ପ୍ରଶ୍ନ ନପଚାରି ଶବ୍ଦ ବା ବାକ୍ୟରେ ଉତ୍ତର ଦେବାଭଳି ପ୍ରଶ୍ନ ପଚାରନ୍ତୁ । (ଯଥା : କ'ଣ ଖାଇବୁ ? କେଉଁଠିକୁ ବୁଲିଯିବୁ ? କେତେବେଳେ ଶୋଇବୁ ?) ଏ ଧରଣର କଥୋପକଥନ ଏବଂ ପ୍ରଶ୍ନୋତ୍ତର ଶିଶୁ ଭାଷାଗତ ଦକ୍ଷତା ଏବଂ ଚିନ୍ତନ–ସାମର୍ଥ୍ୟ ବୃଦ୍ଧିକରେ ।

୨– ଶିଶୁ ତା'ର ପରିପାର୍ଶ୍ୱରେ ବିଭିନ୍ନ ବସ୍ତୁ ଓ ସାମଗ୍ରୀର ଅନୁଭବ ପାଉଥିବା ସମୟରେ ବିଭିନ୍ନ ବସ୍ତୁ ମଧ୍ୟରେ ଥିବା ସମତା ଓ ବୈଶିଷ୍ଟ୍ୟ ପ୍ରତି ଶିଶୁକୁ ସଚେତନ କରାନ୍ତୁ । କୁକୁର ଓ ବିରାଡ଼ି କେଉଁ ଭାବରେ ସମାନ ? କୁକୁର ଓ ବିରାଡ଼ି କାହିଁକି ଅଲଗା ? ସୂର୍ଯ୍ୟ ଓ ତାରା ସମାନ କାହିଁକି ? ସୂର୍ଯ୍ୟ ଓ ତାରା ଫରକ କାହିଁକି ? ନିତିଦିନିଆ ଜୀବନର ପରିପ୍ରେକ୍ଷୀ ମଧ୍ୟରେ ଏପରିସବୁ ପ୍ରଶ୍ନ ପଚାରିବା ଫଳରେ ଶିଶୁ ବିଭାଗୀକରଣ ଶିକ୍ଷାକରେ । ବାହ୍ୟଜଗତ ସମ୍ପର୍କରେ ଧାରଣା ବୃଦ୍ଧି ହୁଏ ।

୩– ବିଚାରଶୀଳ ଚିନ୍ତନର ବିକାଶ ପାଇଁ ଏହି ପ୍ରଶ୍ନଗୁଡ଼ିକର କ୍ରମିକତା ରକ୍ଷା କରିବାକୁ ହେବ (କ) ଆମେ ଆମ ପରିବେଶରୁ ଯେଉଁ କଥା (ସୂଚନା) ଜାଣିଲୁ ତାହା କାମରେ ଲାଗିବ କି ? (ଖ) ଏ କଥାଟି ସମସ୍ତେ ଜାଣିଥିବା ନିହାତି ମାମୁଲୀ କଥା ନୁହେଁ କି ? (ଯଥା–ଆକାଶ ନୀଳ ଦିଶେ) । (ଗ) ଯଦି କଥା (ସୂଚନା)ଟି ଦରକାରୀ ତେବେ ବି

କାମରେ ଲାଗିବ ? (ଘ) କଥାଟିର ସତ୍ୟାସତ୍ୟ ଜାଣିବାର ଉପାୟ ଅଛି କି ? ଏପରି ସବୁ ପ୍ରଶ୍ନ ଶିଶୁର ଚିନ୍ତନକଳାକୁ ବିକଶିତ କରିବ । ପ୍ରତ୍ୟେକଟି କଥାକୁ ଖାମଖେୟାଲୀ ଭାବରେ ଗ୍ରହଣ ନକରି ବାଛବିଚାର କରି ଗ୍ରହଣ ବା ବର୍ଜନ କରିବାର ଦକ୍ଷତା ବୃଦ୍ଧି ପାଇବ ।

୪– ପରିସ୍ଥିତି ଭେଦରେ ସମସ୍ୟା ସମାଧାନ ପୃଥକ୍ ହୋଇଥାଏ । ମାତ୍ର ପ୍ରତି କ୍ଷେତ୍ରରେ ସମସ୍ୟା ସମାଧାନର କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ସୋପାନ ରହିଛି । ଶିଶୁ ଯେପରି ଯୋଜନା ପ୍ରସ୍ତୁତ କରିପାରିବ ଏବଂ ସମାଧାନ କରିପାରିବ, ତାହାର ସୋପାନଗୁଡ଼ିକ ଶିକ୍ଷା ଦିଅନ୍ତୁ । କ୍ରମ ଅନୁସାରେ ନିମ୍ନ ସେପାନସବୁ ପ୍ରତି ଶିଶୁର ଦୃଷ୍ଟିଆକର୍ଷଣ କରନ୍ତୁ । (କ) ଶିଶୁ କ'ଣ ଜାଣିଛି ଏବଂ କ'ଣ ନଜାଣିଛି, ସେ ବିଷୟରେ ଧାରଣା ଦିଅନ୍ତୁ । କ'ଣ ଜାଣିବାକୁ ହେବ ସେ ବିଷୟରେ ମଧ୍ୟ ଶିକ୍ଷା ଦିଅନ୍ତୁ । (ଖ) ଯୋଜନାବଦ୍ଧ ବ୍ୟବହାର କ୍ଷେତ୍ରରେ ଗୋଟିଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରହିଥାଏ, ଏହାର ସ୍ପଷ୍ଟ ଧାରଣା ଦିଅନ୍ତୁ । (ଗ) ତୃତୀୟ ପାଦରେ ଲକ୍ଷ୍ୟ ପୂରଣ ଦିଗରେ ସମାଧାନର ବିକଳ୍ପସବୁ ଅନ୍ୱେଷଣ କରାଯାଏ, ଏହାର ଶିକ୍ଷା ଦିଅନ୍ତୁ । (ଘ) ଶେଷ ପାଦରେ ବିକଳ୍ପସବୁର ମୂଲ୍ୟାୟନ (ଲାଭକ୍ଷତିର ହିସାବ) କରି ସର୍ବୋତ୍କୃଷ୍ଟ ପନ୍ଥାଟି ମନୋନୟନ କରାଯାଏ, ଏହାର ତାଲିମ ଦିଅନ୍ତୁ ।

୫– ଶିକ୍ଷା ବା ପ୍ରଶିକ୍ଷଣ ସମୟରେ ଅନୁଭବର ପ୍ରକାରତା (ଦେଖିବା, ଶୁଣିବା, ସ୍ପର୍ଶ କରିବା) ଯେତେ ବେଶୀ ବୃଦ୍ଧି ପାଇବ, ସ୍ମରଣ ସାମର୍ଥ୍ୟ ମଧ୍ୟ ସେତେ ଅଧିକ ହେବ । ଏ ଦୃଷ୍ଟିରୁ କୌଣସି ବିଷୟରେ ତାଲିମ ଦେଲାବେଳେ ଅନୁଭୂତିର ବିବିଧତା ଯଥାସମ୍ଭବ ବୃଦ୍ଧି କରନ୍ତୁ । 'ନଦୀ' ବା 'ସାଗର' ବିଷୟରେ ସୂଚନା ଦେବା କ୍ଷେତ୍ରରେ ପିଲାଟି ସମୁଦ୍ର ଦେଖିବା, ସମୁଦ୍ରର ଗର୍ଜନ ଶୁଣିବା, ସମୁଦ୍ରର ପାଣି ହାତରେ ଧରିବା, ଚାଖିବା ଏବଂ ଏହିପରି ସବୁ ଅନୁଭୂତିର ଅଧିକାରୀ ହେବା ଖୁବ୍ ଫଳପ୍ରଦ ହୋଇଥାଏ ।

୬– ନୂଆ ନୂଆ ଜିନିଷର ବାହାର କରିବାର ସାମର୍ଥ୍ୟ ପାଇଁ ପ୍ରେରଣା ଦିଅନ୍ତୁ । ନୂଆ ବସ୍ତୁ ତିଆରି କରିବା ଏବଂ ନୂଆ ଭାବନାର ପରିଚୟ ଦେବାର ସାମର୍ଥ୍ୟ ତା'ମଧ୍ୟରେ ସୃଷ୍ଟିହେଉ ।

୮– ପିଲାକୁ ସୃଜନଶୀଳ (Creative) କରିବା ପାଇଁ ତା' ବୟସକୁ ଚାହିଁ ଛୋଟ ଛୋଟ ପ୍ରକଳ୍ପ (Project) ଦିଆଯାଇପାରେ । ଗୋଟିଏ ନିର୍ଦ୍ଦିଷ୍ଟ ବିଷୟରେ ଖବର କାଗଜର ପୃଷ୍ଠାକାଟି ଏକତ୍ର ସଂଗ୍ରହ କରି ରଖିବାର କାମ ଏ ଧରଣର ପ୍ରକଳ୍ପ । ସେହପରି ନିଜର ପରିବେଶରେ କେଉଁ କେଉଁ ଗଛସବୁ ରହିଛି, ତାହାର ତାଲିକା ପ୍ରସ୍ତୁତ କରାଯାଇପାରେ । ଅନ୍ୟପକ୍ଷରେ ଲୋକମାନେ କେଉଁସବୁ କାର୍ଯ୍ୟ କରନ୍ତି, ତାହାର ତାଲିକା କରାଯାଇପାରେ । ଏହି ଧରଣର ପ୍ରକଳ୍ପସବୁ ଶିଶୁମାନଙ୍କର ଚିନ୍ତନକୁ ବିକଶିତ କରେ ।

୯– ପରିବେଶ ଓ ବୟସକୁ ଚାହିଁ ଶିଶୁମାନଙ୍କୁ କିଛି ଉପକରଣ ଦିଅନ୍ତୁ ଏବଂ ଏଗୁଡ଼ିକର ବ୍ୟବହାର ଶିଖାଇ ଦିଅନ୍ତୁ । କମ୍ପ୍ୟୁଟର, ମାନଚିତ୍ର, ଅଣୁବୀକ୍ଷଣ ଯନ୍ତ୍ର ପରି ଅନ୍ୟ ପଦାର୍ଥ ଯୋଗାଇ ତାଲିମ ଦିଆଯାଇପାରେ ।

୧୦– ଏକ ନିର୍ଦ୍ଦିଷ୍ଟ ସମୟ ସୀମାରେଖା ମଧ୍ୟରେ ପୂରଣ ହୋଇପାରୁଥିବା ଲକ୍ଷ୍ୟଟିଏ ଧାର୍ଯ୍ୟ କରିବାର ତାଲିମ ଦିଅନ୍ତୁ । ପିଲାଟି ଏପରି ଲକ୍ଷ୍ୟ କିପରି ପୂରଣ କରିବ, ସେ ବିଷୟରେ

ଲେଖିବାକୁ କୁହନ୍ତୁ । ଲେଖିବା ମାଧ୍ୟମରେ ନିଜର ଭାବନାକୁ ସଂଗଠିତ କରିବାର କଳା ଶିଶୁ ଶିକ୍ଷାକରେ । ପରବର୍ତ୍ତୀ ସମୟରେ ନିଜେ ଲେଖିଥିବା ଅନୁଯାୟୀ ସେ କେତେଦୂର ଆଗେଇଛି କିମ୍ବା ପଛୁଆ ରହିଛି, ତାହା ଜାଣିବାକୁ ସୁଯୋଗ ଦିଅନ୍ତୁ ।

୧୧– ଶିଶୁମାନେ ଯାହାସବୁ ଦେଖୁଛନ୍ତି, ଶୁଣୁଛନ୍ତି ଏବଂ ପଢୁଛନ୍ତି, ସେଥିରେ କେଉଁ ଉପାଦାଟି ଗୁରୁତ୍ୱପୂର୍ଣ୍ଣ – ତାହା ଜାଣିବା ପାଇଁ ଶିଶୁମାନଙ୍କୁ ସହାୟତା ପ୍ରଦାନ କରନ୍ତୁ ।

ଆଲୋଚିତ ପନ୍ଥାସବୁର ଅନୁସରଣ ଶିଶୁମାନଙ୍କର ଚିନ୍ତନ କୌଶଳ ବିକାଶରେ ସହାୟକ ହେବ । ପିତାମାତା, ଶିକ୍ଷକ, ଶିକ୍ଷୟିତ୍ରୀ ଏବଂ ଅନ୍ୟସବୁ ଯତ୍ନକାରୀ ଓ ପରାମର୍ଶର ଉପଯୋଗ କରିପାରିବେ ।

| ପୁନଃସ୍ମରଣ ପାଇଁ ସାରାଂଶ | |
|---|---|
| ୧. | *ଶିଶୁକୁ ଶିକ୍ଷା ଓ ତାଲିମ ଦେବାପାଇଁ ଦୈନନ୍ଦିନ ଜୀବନର ଅନୁଭୂତିରୁ ସମ୍ବଳ ସଂଗ୍ରହ କରନ୍ତୁ ।* |
| ୨. | *ଶିଶୁର ପରିପାର୍ଶ୍ୱରେ ରହିଥିବା ବସ୍ତୁ ଓ ସାମଗ୍ରୀ ମଧ୍ୟରେ ଥିବା ସମତା ଏବଂ ବୈଷମ୍ୟ ପ୍ରତି ଦୃଷ୍ଟି ଆକର୍ଷଣ କରନ୍ତୁ ।* |
| ୩. | *ବାହ୍ୟଜଗତରୁ ମିଳୁଥିବା ଅନୁଭୂତିର ମୂଲ୍ୟାୟନ ଦିଗରେ ତାଲିମ ଦିଅନ୍ତୁ ।* |
| ୪. | *ସମସ୍ୟା ସମାଧାନ ବିଭିନ୍ନ ପରିସ୍ଥିତିରେ ଭିନ୍ନ ହେଲେ ମଧ୍ୟ ସମାଧାନର ସୋପାନଗୁଡ଼ିକ ତାଲିମ ଦିଅନ୍ତୁ ।* |
| ୫. | *ଶିଶୁର ଅନୁଭବ ସମୟରେ ଅନୁଭୂତିର ବିବିଧତା (ଦେଖିବା, ଶୁଣିବା, ସ୍ପର୍ଶକରିବା ଇତ୍ୟାଦି) ଯଥା ସମ୍ଭବ ବୃଦ୍ଧି କରନ୍ତୁ । ଏସବୁ ସ୍ମରଣ ସାମର୍ଥ୍ୟର ସହାୟକ ।* |
| ୬. | *ଶିକ୍ଷା କରାଯାଉଥିବା ବିଷୟ ବସ୍ତୁର ଊର୍ଦ୍ଧ୍ୱକୁ ଯିବାପାଇଁ ତାଲିମ ଦିଅନ୍ତୁ ।* |
| ୭. | *ନୂଆ ନୂଆ ଜିନିଷ ତିଆରି କରିବା ପାଇଁ ପ୍ରୋତ୍ସାହନ ଦିଅନ୍ତୁ ।* |
| ୯. | *କିଛି ଉପକରଣ (ଯଥା : କମ୍ପ୍ୟୁଟର, ମାନଚିତ୍ର ଇତ୍ୟାଦି) ଦେଇ ସେସବୁର ବ୍ୟବହାର ଶିଖାଇ ଦିଅନ୍ତୁ ।* |
| ୧୦. | *ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ହାସଲ କରାଯାଇ ପାରୁଥିବା ଲକ୍ଷ୍ୟଧାର୍ଯ୍ୟର ତାଲିକା ଦିଅନ୍ତୁ । ଏପରି ଲକ୍ଷ୍ୟ ଲେଖି ରଖିବା ଏବଂ ତା'ର ଅଗ୍ରଗତି ବିଚାର କରିବାର ସୁଯୋଗ ଦିଅନ୍ତୁ । ଲେଖାମାଧ୍ୟମରେ ଶିଶୁ ଭାବନାସବୁକୁ ସଂଗଠିତ କରିବାର କୌଶଳ ଶିକ୍ଷାକରେ ।* |
| ୧୧. | *ବାହ୍ୟଜଗତର ଅନୁଭୂତିରେ ଥିବା ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଦିଗଟି ଚିହ୍ନଟ କରିବାର ତାଲିମ ଦିଅନ୍ତୁ ।* |

# ମାନସିକ ଅନଗ୍ରସରତା

ବୁଦ୍ଧିମତ୍ତା (Intelligence)ର ଦୌଡ଼ରେ ସମସ୍ତେ ପଦଚାଳନା କରୁଥିବା ପରିପ୍ରେକ୍ଷୀରେ କେତେକଙ୍କ ଅନଗ୍ରସରତା (Retardation) ସମସ୍ତଙ୍କ ଆଖିରେ ପଡ଼େ । ଏମାନଙ୍କର ମାନସିକ ଅନଗ୍ରସରତା (Mental Retardation) ଇଚ୍ଛାକୃତ ନୁହେଁ । କେତେକ କାରଣରୁ ଏମାନଙ୍କ ମଧ୍ୟରେ ଥିବା ସମ୍ଭାବନାସବୁ ପୂର୍ଣ୍ଣ ବିକଶିତ ରୂପ ନେଇପାରେ ନାହିଁ ।

ଏକ ବୃହତ୍ତର ଦୃଷ୍ଟିକୋଣରୁ ବିଚାର କଲେ ଅନଗ୍ରସରତା (Retardation) ଏବଂ ଅକ୍ଷମତା (Disability) ପ୍ରତି ପିଲା ଓ ପ୍ରତି ବ୍ୟକ୍ତିଙ୍କୁ କିଛି ପରିମାଣରେ କବଳିତ କରିଥାଏ । ଜଣକର ଶାରୀରିକ ଅକ୍ଷମତା ଥିବା ସ୍ଥଳେ ଅନ୍ୟ ଜଣକରୁ ଭାବଗତ (Emotional) ଅକ୍ଷମତା ଥାଇପାରେ । ସେହିପରି ଜଣଙ୍କର ବୌଦ୍ଧିକ ଅକ୍ଷମତା ଥିବା ସ୍ଥଳେ ଅନ୍ୟ କାହାର ସାମାଜିକ ଅକ୍ଷମତା ଥାଇପାରେ । ଏ ଦୃଷ୍ଟିରୁ କୌଣସି ଏକ ନିର୍ଦ୍ଦିଷ୍ଟ ପ୍ରକାରର ଅକ୍ଷମତାକୁ ସାମଗ୍ରିକ ଅକ୍ଷମତା ବିଚାର କରିବା ଠିକ୍ ହେବନାହିଁ । ତଥାପି ଦୈନନ୍ଦିନ ଜୀବନଯାପନ ପାଇଁ ବୁଦ୍ଧିମତ୍ତାର ଆବଶ୍ୟକତା ରହିଥିବାରୁ ଏହାର ମାତ୍ରାଧିକ ଅଭାବ ବିଶେଷ ଧରଣର ସମସ୍ୟା ସୃଷ୍ଟି କରେ । ଏ ସମସ୍ୟାକୁ ଠିକ୍ ରୂପେ ବୁଝିପାରିଲେ ତାହା ସମାଧାନ କରିବାରେ ସହାୟକ ଅବସ୍ଥା ସୃଷ୍ଟି କରାଯାଇପାରେ ।

ପୂର୍ବେ ମାନସିକ ଅନଗ୍ରସରତା ଥିବା ପିଲାଟିକୁ ନିର୍ବୁଦ୍ଧିଆ (Idiot) କହି ତାହାକୁ ପୂରାପୂରି ଉପେକ୍ଷିତ କରାଯାଉଥିଲା । ମାତ୍ର ଏବେ ଆମର ଦୃଷ୍ଟିଭଙ୍ଗୀରେ ଯଥେଷ୍ଟ ପରିବର୍ତ୍ତନ ଘଟିଛି । ମାନସିକ ଅନଗ୍ରସରତା ରହିଥିବା ପିଲାମାନେ ଯେ ଭିନ୍ନ କେତେକ ସାମର୍ଥ୍ୟର ଅଧିକାରୀ ହୋଇପାରନ୍ତି, ଏପରି ସମ୍ଭାବନାକୁ ଆଖିରେ ରଖି ସେମାନଙ୍କୁ ଭିନ୍ନକ୍ଷମ ଶିଶୁ (Differentially able) ବୋଲି ଅଭିହିତ କରାଯାଉଛି । ଉଦାର ଦୃଷ୍ଟିଭଙ୍ଗୀର ବିକାଶ ଓ ସମସ୍ୟା ସମାଧାନର ନୂତନ କୌଶଳସବୁ ସମ୍ଭାବନାର ମାର୍ଗ ଖୋଲିଦେଉଛି ।

ଅବଶ୍ୟ ମାନସିକ ଅନଗ୍ରସରତାକୁ ବୁଝିବା ପାଇଁ ଆରମ୍ଭ ହୋଇଥିବା ପ୍ରଚେଷ୍ଟା ବହୁ ପୁରାତନ । ୧୭୯୮ ମସିହାରେ ଇଟାର୍ଡ଼ ନାମକ ଜଣେ ମନୋଚିକିତ୍ସକ ଫ୍ରାନ୍ସର ଆଭେର୍ନନ୍ ନାମକ ସ୍ଥାନରେ ଗୋଟିଏ ବଣୁଆ ପିଲାକୁ ଆବିଷ୍କାର କରିଥିଲେ । ଏହି ବାଳକଟିର ପ୍ରକୃତି ଉଗ୍ର ସ୍ୱଭାବର ଥିଲା ଏବଂ ସେ କଥା କହିପାରୁନଥିଲା । ମାତ୍ର ଚିକିତ୍ସକଜଣକ ଆଶାବାଦୀ ଦୃଷ୍ଟିଭଙ୍ଗୀ ନେଇ ଏହି ବଣୁଆ ବାଳକଟିକୁ ଭିକ୍ଟର ନାମ ଦେଲେ ଏବଂ ତାହାକୁ ସ୍ୱାଭାବିକ ବ୍ୟବହାରର ଅଧିକାରୀ କରିବାକୁ ଉଦ୍ୟମ କରିଥିଲେ । ବାଳକଟିର ଇନ୍ଦ୍ରିୟସବୁ ରହିଥିଲେ ମଧ୍ୟ କେତେକ ଇନ୍ଦ୍ରିୟ ଆଦୌ ଉଦ୍ଦୀପନା ଗ୍ରହଣ କରୁନଥିଲା । ତାକୁ କିଛି କୁହାଗଲେ

ମଧ୍ୟ ସେ ନ ଶୁଣିଲା ପରି ହାବ୍‌ଭାବ ଦେଖାଉଥିଲା । ମନୋଚିକିତ୍ସକ ଜଣକ ବାଳକଟିକୁ ଉଦ୍ଦୀପନା ଗ୍ରହଣର କ୍ଷମତା ଶିକ୍ଷା ଦେବା ସଙ୍ଗେ ସଙ୍ଗେ ତା'ର ସାମାଜିକ ଦକ୍ଷତା, ନିକଟସ୍ଥ ପରିବେଶ ସମ୍ପର୍କରେ ସାଧାରଣଜ୍ଞାନ, ଅନ୍ୟମାନଙ୍କ ସହିତ ଭାବର ଆଦାନ ପ୍ରଦାନ ପାଇଁ ଯୋଗାଯୋଗ କୌଶଳ (Communication Skills) ଏବଂ ବିଦ୍ୟାଳୟରେ ଶିକ୍ଷା ଦିଆଯାଉଥିବା ମାମୁଲି ଦକ୍ଷତା ଶିଖାଇଲେ । ସେ ବେଶ୍ କିଛି ପରିମାଣରେ ସଫଳତା ଅର୍ଜନ କଲେ ।

ମାନସିକ ଅନଗ୍ରସରତା ପାଇଁ ଉଦ୍ଦିଷ୍ଟ ଆଧୁନିକ ଶିକ୍ଷାଦୀକ୍ଷାର ବ୍ୟବସ୍ଥାରେ ବହୁ ପରିବର୍ତ୍ତନ ଘଟିଥିଲେ ମଧ୍ୟ ମୁଖ୍ୟତଃ ଏହି ପାଞ୍ଚୋଟି ଦକ୍ଷତାକୁ (ଉଦ୍ଦୀପନା ଗ୍ରହଣ କରିବାର କ୍ଷମତା, ସାମାଜିକ ଦକ୍ଷତା, ଯୋଗାଯୋଗ ଦକ୍ଷତା, ପରିବେଶ ସମ୍ପର୍କରେ ଜ୍ଞାନ ଓ ପାଠ୍ୟ ବିଷୟର ସାଧାରଣ ଜ୍ଞାନ) ଗୁରୁତ୍ୱ ଦିଆଯାଇଛି ।

ପରବର୍ତ୍ତୀ ସମୟରେ ମାନସିକ ଅନଗ୍ରସରତାର ସଂଜ୍ଞାକୁ ଅଧିକରୁ ଅଧିକ ସ୍ପଷ୍ଟ କରାଯାଇଛି । ୧୯୮୩ ମସିହାରେ ଆମେରିକାରେ ମାନସିକ ଅନଗ୍ରସରତା ଗବେଷଣା ସଂଘ ଏହାର ସଦ୍ୟତମ ସଂଜ୍ଞା ଦେଇଛି । ୧୯୯୩ ମସିହାରେ ଅକ୍ଷମ ବ୍ୟକ୍ତିମାନଙ୍କର ଅଧିକାର ସବୁର ସୁରକ୍ଷା ଏବଂ ସେମାନଙ୍କର ଅଂଶଗ୍ରହଣ ସମ୍ପର୍କିତ ଭାରତୀୟ ଆଇନ ବ୍ୟବସ୍ଥାରେ ମଧ୍ୟ ଏହି ସଂଜ୍ଞା ପ୍ରତିଫଳିତ । ଏ ଦୁଇଟିକୁ ଆଧାର କରି କୁହାଯାଇପାରେ ଯେ ମାନସିକ ଅନଗ୍ରସରତାର ମୁଖ୍ୟତଃ ଚାରୋଟି ବୈଶିଷ୍ଟ୍ୟ ରହିଛି ।

ପ୍ରଥମତଃ ମାନସିକ ଅନଗ୍ରସର ପିଲାମାନଙ୍କର କାର୍ଯ୍ୟଧାରା ବିଶେଷ ଭାବରେ ସୀମିତ (Limited Function) । ନିତିଦିନିଆ ଜୀବନର ସାଧାରଣ କେତେକ କାର୍ଯ୍ୟକ୍ରମରେ ମଧ୍ୟ ଏମାନଙ୍କର ଅସାମର୍ଥ୍ୟ ପ୍ରକାଶ ପାଏ । ଦ୍ୱିତୀୟତଃ ଏମାନଙ୍କର ବୁଦ୍ଧିମତ୍ତା (Intelligence) ମଧ୍ୟ ସୀମାବଦ୍ଧ । ବୁଦ୍ଧିଅଙ୍କ (IQ) ୭୦ରୁ କମ୍ ହୋଇଥାଏ । ଏପରି କମ୍ ବୁଦ୍ଧିଅଙ୍କର ପ୍ରକୃତ ଅର୍ଥ କ'ଣ ତାହା ପରେ ବିଚାର କରାଯିବ । ତୃତୀୟତଃ ମାନସିକ ଅନଗ୍ରସରତାର ଶରବ୍ୟ ହୋଇଥିବା ପିଲାମାନଙ୍କର ସମନ୍ୱୟଶୀଳତା (Adaptive Skills) ମଧ୍ୟ ବିପର୍ଯ୍ୟସ୍ତ । ପରିବର୍ତ୍ତିତ ପରିସ୍ଥିତି ସହିତ ଖାପଖୁଆଇବା ଏବଂ ଅନ୍ୟମାନଙ୍କ ସହିତ ଯୋଗାଯୋଗ ରକ୍ଷା କରିବାରେ ଏମାନଙ୍କର ବିଶେଷ ଅସୁବିଧା ହୁଏ । ଚତୁର୍ଥତଃ ମାନସିକ ଅନଗ୍ରସରତା ସାଧାରଣତଃ ୧୮ ବର୍ଷ ମଧ୍ୟରେ ପ୍ରକାଶ ପାଇଥାଏ । ଏ ଦୃଷ୍ଟିରୁ ମାନସିକ ଅନଗ୍ରସରତାକୁ ଏକ ବିକାଶ-କାଳୀନ ବିପର୍ଯ୍ୟୟ ଆଖ୍ୟା ଦିଆଯାଇଛି ।

ମାନସିକ ଅନଗ୍ରସରତା (Mental Retardation) ମୁଖ୍ୟତଃ ସୀମିତ କାର୍ଯ୍ୟଧାରା ଓ ବୁଦ୍ଧିମତ୍ତା, ବିପର୍ଯ୍ୟସ୍ତ ସମନ୍ୱୟ ଏବଂ ବିକାଶକାଳୀନ ବିପର୍ଯ୍ୟସ୍ତ (୧୮ର ବର୍ଷ ବୟସ ପୂର୍ବରୁ ପ୍ରକାଶ ପାଇବା) ପରି ସମସ୍ୟା ଉପରେ ଆଧାରିତ ହେଲେ ମଧ୍ୟ ଏହାର ବିଧିବଦ୍ଧ ଚିହ୍ନ ପାଇଁ ପ୍ରଶ୍ନ ଉଠିବା ଆବଶ୍ୟକ । ମାନସିକ ଅନଗ୍ରସରତାର ଚିହ୍ନଟ ପାଇ ସୁନିର୍ଦ୍ଦିଷ୍ଟ କରାଯାଇଥିବା ପନ୍ଥା ପିଲାମାନଙ୍କର ବିକାଶ ସମ୍ପର୍କୀୟ ମାନଦଣ୍ଡ ଉପରେ ପ୍ରତିଷ୍ଠିତ ।

ଏହା ସତ୍ୟ ଯେ ପିଲା ପିଲା ମଧ୍ୟରେ ଏବଂ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ବିକାଶକାଳୀନ ସାମର୍ଥ୍ୟର ଭିନ୍ନତା ଥାଏ । କେଉଁ ବୟସରେ ପିଲାଟି କଥା କହିବ ଏବଂ କେଉଁ ବୟସରେ ସେ ଗପ ବୁଝିପାରିବ, ସେପରି ବୟସସ୍ତର ଭିନ୍ନ ଭିନ୍ନ ପିଲାମାନଙ୍କ ପାଇଁ ପୃଥକ୍ ହୋଇଥାଏ । ତଥାପି ଏକ ନିର୍ଦ୍ଦିଷ୍ଟ ସମାଜରେ ବହୁସଂଖ୍ୟକ ପିଲାଙ୍କୁ ଅନୁଧ୍ୟାନ କରାଯାଇ ହାରାହାରି ଭାବରେ ଏକ ନିର୍ଦ୍ଦିଷ୍ଟ ବୟସସ୍ତର ନିରୂପଣ କରଯାଇପାରେ । ଏପରି ଗବେଷଣାକୁ ଭିତ୍ତି କରି ପ୍ରତି ଦେଶରେ ବିକାଶକାଳୀନ ବୟସଚିହ୍ନ (Development milestone) ନିରୂପଣ କରାଯାଇଛି । ଉଦାହରଣସ୍ୱରୂପ, ଭାରତୀୟ ସମାଜରେ ଶିଶୁମାନେ ଚାରିମାସର ବୟସ ବେଳକୁ ସ୍ମିତ ହସ ଦର୍ଶାଇବେ । ମୁହଁରେ କିଛି ପୂରାଇବେ ଏବଂ ମୁଣ୍ଡଟି ସଳଖ ରଖିବାର ସାମର୍ଥ୍ୟ ଦେଖାନ୍ତି । ସେହିପରି ଦେଢ଼ବର୍ଷ ବେଳକୁ ଅନ୍ୟର ସାହାଯ୍ୟ ନ ନେଇ ଚାଲିବା ଏବଂ ନିଜର ନାମ ଉଚ୍ଚାରଣ କରିପାରିବା ଭଳି ଦକ୍ଷତା ଦର୍ଶାନ୍ତି । ତିନିବର୍ଷ ବେଳକୁ ସେମାନେ ପୁଅ ଝିଅକୁ ପୃଥକ୍ ଭାବେ ଚିହ୍ନିବାର ଦକ୍ଷତା ହାସଲ କରନ୍ତି । ମୋଟ ଉପରେ ପ୍ରତି ବୟସସ୍ତର ପାଇଁ ସୁନିର୍ଦ୍ଦିଷ୍ଟ ଦକ୍ଷତାର ପ୍ରତ୍ୟାଶା ରହିଥାଏ ।

ଏହି ପ୍ରତ୍ୟାଶା ସବୁକୁ ମାନଦଣ୍ଡ (Standard) ରୂପେ ଗ୍ରହଣ କରାଗଲେ ଗୋଟିଏ ନିର୍ଦ୍ଦିଷ୍ଟ ପିଲା ଏପରି ମାନଦଣ୍ଡଠାରୁ କେତେ ପଛରେ ପଡ଼ିଛି ବା ଆଗୁଆ ରହିଛି, ତାହା ଜାଣିବା ସମ୍ଭବପର ହୁଏ । ପ୍ରକୃତରେ ବୁଦ୍ଧିଅଙ୍କ (Intelligence Quotient ବା IQ)ର ସଂଜ୍ଞା ମଧ୍ୟ ଏହି ମାନଦଣ୍ଡ ଉପରେ ପ୍ରତିଷ୍ଠିତ । ବୁଦ୍ଧିଅଙ୍କର ସରଳ ସୂତ୍ରଟି ହେଉଛି–

$$\text{ବୁଦ୍ଧିଅଙ୍କ} = \frac{\text{ମାନସିକବୟସ}}{\text{ଜନ୍ମଗତ ବୟସ}} \times ୧୦୦$$

ଏହାର ତାତ୍ପର୍ଯ୍ୟ ହେଉଛି ସେ ପ୍ରତି ପିଲାର ଜନ୍ମଗତ ବୟସ ଜାଣିବା ଖୁବ୍ ସହଜ । ଜନ୍ମତାରିଖକୁ ଭିତ୍ତି କରି ଗୋଟିଏ ପିଲାର ଜନ୍ମଗତ ବୟସ ୧୦ ବର୍ଷ ହୋଇପାରେ । ପୁଣି ପିଲାଟି ଜନ୍ମଲାଭ କରିଥିବା ସମାଜରେ ଅଧିକାଂଶ ଦଶବର୍ଷର ପିଲାମାନେ ଦର୍ଶାଉଥିବା ଶିଶୁମାନଙ୍କର ଦକ୍ଷତା ଏହି ପିଲାଟି ଦେଖାଉଥିଲେ ତାହାର ମାନସିକ ବୟସ ମଧ୍ୟ ଦଶବର୍ଷ ବିଚାର କରାଯିବ ।

ମାନସିକ ବିକାଶ ଦୃଷ୍ଟିରୁ ଏହି ପିଲାଟି ୧୦ ବର୍ଷ ବିକାଶ ସ୍ତରରେ ରହିଛି ବୋଲି ଧରାଯିବ । ଏ କ୍ଷେତ୍ରରେ ପିଲାଟିର ବୁଦ୍ଧିଅଙ୍କ $^{୧୦}/_{୧୦} \times ୧୦୦ = ୧୦୦$ ରହିବ । ଲକ୍ଷ୍ୟ କରିବାର କଥା ଯେ ଜଣେ ଶିଶୁର ଜନ୍ମଗତ ବୟସ ସହିତ ତାହାର ମାନସିକ ବୟସ ସମାନ ହୋଇଥିଲେ ବୁଦ୍ଧିଅଙ୍କ ୧୦୦ ରହିବ । ପ୍ରକାରାନ୍ତରେ ବୁଦ୍ଧିଅଙ୍କ ୧୦୦ ରହିବାର ପ୍ରକୃତ ଅର୍ଥ ହେଉଛି ଯେ ପିଲାଟି ନିଜ ସମାଜର ସାଧାରଣ ପିଲାଙ୍କ ସହିତ ସାମର୍ଥ୍ୟ ଦୃଷ୍ଟିରୁ ସମାନ ସ୍ତରରେ ରହିଛି । ବୁଦ୍ଧିଅଙ୍କର ମାତ୍ରା ୧୦୦ଠାରୁ ଯେତେ କମିଯିବ, ମାନସିକ ବିକାଶର ସ୍ତର ସେତିକି ନିମ୍ନ ବୋଲି ବିଚାର କରାଯିବ । ଅନ୍ୟ ପକ୍ଷରେ ବୁଦ୍ଧିଅଙ୍କର ପରିମାଣ ୧୦୦ରୁ ଯେତେ ବେଶୀ ଅଧିକ, ବୁଦ୍ଧିମତ୍ତାର ମାତ୍ରା ସେତିକି ଅଧିକ ରହିଛି ବୋଲି ଗ୍ରହଣ କରାଯିବ ।

ମାନସିକ ଅନଗ୍ରସରତା କ୍ଷେତ୍ରରେ ୭୦ ବୁଦ୍ଧିଅଙ୍କର ମାତ୍ରାକୁ ଏକ ନିର୍ଣ୍ଣୟାତ୍ମକ ସ୍ତର ରୂପେ ଗ୍ରହଣ କରାଯାଉଛି । ବୁଦ୍ଧିଅଙ୍କ ୭୦ରୁ କମ୍ ହେଲେ ସେପରି ପିଲାମାନେ ମାନସିକ ଅନଗ୍ରସରତାର ଶରବ୍ୟ, ଏହା ବିଚାର କାରଯାଉଛି । ଏହାର ବ୍ୟବହାରିକ ଅର୍ଥ ବୁଝିଗଲେ କଥାଟି ଅଧିକ ପ୍ରାଞ୍ଜଳ ହେବ । ବୁଦ୍ଧିଅଙ୍କ ୭୦ ହେବାର ପ୍ରକୃତ ଅର୍ଥ କ'ଣ ? ଏହାର ପ୍ରକୃତ ଅର୍ଥ ହେଉଛି ଯେ ଗୋଟିଏ ଦଶ ବର୍ଷର ପିଲା ସାତବର୍ଷର ସାମର୍ଥ୍ୟ ଦର୍ଶାଉଛି କିମ୍ବା କୋଡ଼ିଏ ବର୍ଷର ଯୁବକ ୧୪ବର୍ଷର ବୟସ ବାଳକର ସାମର୍ଥ୍ୟ ଦେଖାଉଛି । ଏମାନଙ୍କର ଜନ୍ମଗତ ବୟସ ଯଥାକ୍ରମେ ୧୦ ଓ ୨୦ ହେଲେ ମଧ୍ୟ ମାନସିକ ବିକାଶ ଦୃଷ୍ଟିରୁ ଏମାନେ ଯଥାକ୍ରମେ ୭ବର୍ଷ ଓ ୧୪ବର୍ଷ ବୟସ ସ୍ତରରେ ଅଟକି ରହିଛନ୍ତି ।

ମାନସିକ ଅନଗ୍ରସରତାର ଚିହ୍ନଟ ପାଇଁ ବିଶେଷଜ୍ଞମାନେ କେତେକ ସୁଚିନ୍ତିତ ପରାମର୍ଶ ଦେଇଛନ୍ତି । କିନ୍ତୁ ଏସବୁର ଆଧାର ହେଉଛି ବିକାଶର ବୟସ ଚିହ୍ନ । ଗୋଟିଏ ପିଲା ୧୮ ବର୍ଷ ପୂର୍ବରୁ ବୟସୋଚିତ ସାମର୍ଥ୍ୟ ତାଲିକାଠାରୁ ମାତ୍ରାଧିକ ବିଚ୍ୟୁତି ଦର୍ଶାଇଲେ ମାନସିକ ଅନଗ୍ରସରତାର ସନ୍ଦେହ କରାଯିବ ଏବଂ ବିଶେଷଜ୍ଞଙ୍କ ପରାମର୍ଶ ଲୋଡ଼ିବା ସମୁଚିତ ହେବ ।

ମାନସିକ ଅନଗ୍ରସରତାର ମାତ୍ରାକୁ ଭିତ୍ତି କରି ମନୋବିଜ୍ଞାନୀ ଏବଂ ଶିକ୍ଷାବିଶେଷଜ୍ଞମାନେ ଏପରି ପିଲା ଓ କିଶୋରକିଶୋରୀଙ୍କୁ ତିନି ଭାଗରେ ବିଭକ୍ତ କରିଛନ୍ତି । ମନୋବିଜ୍ଞାନୀମାନେ ବୁଦ୍ଧିମତ୍ତାର ସ୍ତରକୁ ଭିତ୍ତିକରି ଏପରି ବିଭାଗୀକରଣ କରିଥିବା ସ୍ଥଳେ ଶିକ୍ଷା ବିଶେଷଜ୍ଞମାନେ ସେମାନଙ୍କ ପାଇଁ ତାଲିମର ଭୂମିକାକୁ ଦୃଷ୍ଟିରେ ରଖି ବିଭାଗୀକରଣ ପ୍ରସ୍ତୁତ କରିଛନ୍ତି । ମାତ୍ର ଏପରି ବିଭାଗୀକରଣ ସମାନ୍ତରାଳ ହୋଇଥିବାରୁ ସେ ତିନୋଟିକୁ ସମାନ୍ତରାଳ ଭାବରେ ଉଲ୍ଲେଖ କରାଯାଇପାରେ ।

ପ୍ରଥମ ବିଭାଗଟି ଅଳ୍ପ ମାତ୍ରାରେ ମାନସିକ ଅନଗ୍ରସରତା (Mild Mental Retardation) । ଶିକ୍ଷା ବିଶେଷଜ୍ଞମାନେ ଏହି ବିଭାଗକୁ ଶିକ୍ଷା–ଗ୍ରହଣକ୍ଷମ ବିଭାଗ କହନ୍ତି । ଏପରି ମାନସିକ ଅନଗ୍ରସରତା ଦେଖାଉଥିବା ପିଲାମାନଙ୍କର ବୁଦ୍ଧିଅଙ୍କ ୫୦ ରୁ ୭୦ ମଧ୍ୟରେ ରହିଥାଏ । ଅନ୍ୟ ଭାଷାରେ କହିଲେ ଏପରି ପିଲାମାନଙ୍କର ପ୍ରକୃତ ବୟସ ୧୦ ବର୍ଷ ହୋଇଥିଲେ ମଧ୍ୟ ସେମାନେ ପାଞ୍ଚବର୍ଷ କିମ୍ବା ଛ' ବର୍ଷ କିବା ସାତବର୍ଷ ପିଲାପରି ବ୍ୟବହାର କରନ୍ତି ଏବଂ ଏହି ନିମ୍ନ ବୟସର ପିଲାମାନଙ୍କର ସାମର୍ଥ୍ୟ ଦେଖାନ୍ତି । ମାନସିକ ଅନଗ୍ରସରତା ଦର୍ଶାଉଥିବା ପିଲାମାନଙ୍କ ମଧ୍ୟରୁ ପ୍ରାୟ ୭୫/୮୫ ପ୍ରତିଶତ ପିଲା ଏ ବିଭାଗର ଅନ୍ତର୍ଭୁକ୍ତ । ହୁଏତ ଅଳ୍ପ ବୟସରେ ଏମାନଙ୍କର ମାନସିକ ଅନଗ୍ରସରତା ଧରାପଡ଼ି ନ ଥାଏ । ମାତ୍ର ଦ୍ୱିତୀୟ ତୃତୀୟ ଶ୍ରେଣୀ ବେଳକୁ ଏହା ଆଖିରେ ପଡ଼େ । ଏପରି ପିଲାମାନଙ୍କୁ ବ୍ୟକ୍ତିଗତ ଭାବରେ ନଜର ଦେଇ ଶିକ୍ଷା ଦେବା ଫଳରେ ସମସ୍ୟା ଅନେକାଂଶରେ ଦୂର ହୋଇପାରେ । ଏମାନେ ଧୀରେ ଧୀରେ ଶିକ୍ଷା ଗ୍ରହଣ କରିପାରନ୍ତି ।

ଦ୍ୱିତୀୟ ବିଭାଗଟିକୁ ମଧ୍ୟମ ଧରଣର ଅନଗ୍ରସରତାର (Moderate Mental Retardation) କୁହାଯାଏ । ଶିକ୍ଷା ବିଶେଷଜ୍ଞମାନେ ଏହି ଦଳକୁ ତାଲିମ ଗ୍ରହଣକ୍ଷମ (Trainable) ବିଭାଗ ନାମ ଦେଇଛନ୍ତି । ଏପରି ପିଲାମାନଙ୍କର ବୁଦ୍ଧିଅଙ୍କ ୩୫ରୁ ୫୦ ମଧ୍ୟରେ ସୀମିତ । ଏପରି ମାନସିକ ଅନଗ୍ରସରତା ଦର୍ଶାଉଥିବା ପିଲାମାନଙ୍କ ମଧ୍ୟରୁ ପ୍ରାୟ

ଅଧାଅଧି ପିଲାଙ୍କର ମସ୍ତିଷ୍କ କୌଣସି ଯତିର ଶରବ୍ୟ ହୋଇଥାଏ । ଫଳରେ ଅନଗ୍ରସରତା ସହିତ ବାମନତ୍ୱ ବା ଅନ୍ୟ କିଛି ସମସ୍ୟା ମଧ୍ୟ ରହିଥାଏ । ପ୍ରାକ୍-ବିଦ୍ୟାଳୟ ସ୍ତରରେ ଅନଗ୍ରସରତା ଅଧିକ ଆଖିରେ ପଡ଼େ । ତଥାପି ବିଶେଷଜ୍ଞମାନଙ୍କ ଦ୍ୱାରା ପ୍ରସ୍ତୁତ ଓ ନିର୍ଦ୍ଦେଶିତ ତାଲିମ ପ୍ରଦାନ ଫଳରେ ସମସ୍ୟାର କେତେକ ସମାଧାନ ଅଣାଯାଇପାରେ ।

ତୃତୀୟ ପ୍ରକାରର ଅନଗ୍ରସରତାକୁ ତୀବ୍ର ମାନସିକ ଅନଗ୍ରସରତା (Severe MR) କୁହାଯାଏ । ଶିକ୍ଷା ବିଶେଷଜ୍ଞମାନେ ଏପରି ପିଲାମାନଙ୍କୁ ତତ୍ତ୍ୱାବଧାନ -ପ୍ରୟୋଜନ Custodial Groups) କହନ୍ତି । ଏମାନଙ୍କର ବୁଦ୍ଧିଅଙ୍କ ୩୫ ରୁ କମ୍ । ବୁଦ୍ଧିଅଙ୍କ ୨୦ କିମ୍ବା ତା'ଠାରୁ କମ୍ ହୋଇଥିଲେ ଏପରି ପିଲାମାନେ ଅଗ୍ନିର ଦାହିକା ଶକ୍ତି ଏବଂ ଜଳର ବୁଡ଼ାଇବା ଶକ୍ତି ମଧ୍ୟ ଜାଣି ନଥାନ୍ତି । ଏପରି ପିଲାମାନେ ନିଜେ ନିଜର ସୁରକ୍ଷାର ଭାର ନେଇପାରନ୍ତି ନାହିଁ । ଏମାନଙ୍କର ଦୈନନ୍ଦିନ ଜୀବନ ସଂପୂର୍ଣ୍ଣ ବିପର୍ଯ୍ୟସ୍ତ । ଏମାନଙ୍କ ଯତ୍ନ ଓ ଦାୟିତ୍ୱ ନେଉଥିବା ପିତାମାତା ଓ ଯତ୍ନକାରୀଙ୍କୁ ମଧ୍ୟ ବିଶେଷ ତାଲିମ ନେବାକୁ ପଡ଼େ ।

ମାନସିକ ଅନଗ୍ରସରତାର ଚିହ୍ନଟ ଓ ବିଭାଗୀକରଣ ସମସ୍ୟା ସମାଧାନର ଶେଷକଥା ନୁହେଁ । ମାନସିକ ଅନଗ୍ରସରତାର କାରଣ ଏବଂ ଏପରି ପିଲାମାନଙ୍କର ପରିଚାଳନା କ୍ଷେତ୍ରରେ ବିସ୍ତୃତ ଜ୍ଞାନ କୌଶଳର ସମ୍ବଳ ରହିଛି ।

## ଭାରତୀୟ ସମାଜରେ ବିକାଶ ବୟସ ସ୍ତର

| ବୟସ | ପ୍ରତ୍ୟାଶିତ ସାମର୍ଥ୍ୟ |
|---|---|
| ୪ ମାସ | ଅନ୍ୟକୁ ଦେଖି ସ୍ମିତହସ, ମୁଣ୍ଡକୁ ସଳଖି ରଖିବା, ପାଟିରେ କିଛି ପୁରାଇବା । |
| ୬ ମାସ | ପେଟ ଭୂମିରେ ଲାଗିଥିବା ଅବସ୍ଥାରୁ ପରିବର୍ତ୍ତନ କରି ପିଠିକୁ ଭୂମିରେ ଲଗାଇବାର ଅବସ୍ଥା ଆଣିବା |
| ୭ ମାସ | ପୁରା ପାପୁଲିରେ ବସ୍ତୁଟିଏ ଧରିବା, ମା' ବାପା, ଦାଦା, ଇତ୍ୟାଦି ଶବ୍ଦ କରିବା । |
| ୮ ମାସ | ବିନା ସାହାଯ୍ୟରେ ବସିବା । |
| ୧୦ ମାସ : | ନିଜର ନାମ ଶୁଣିଲେ ପ୍ରତିକ୍ରିୟା ଦର୍ଶାଇବା, ଗୁରୁଣ୍ଡିବା, ସାହାଯ୍ୟ ନେଇ ଠିଆହେବା, ବୁଢ଼ା ଅଙ୍ଗୁଳି ଓ ବିଶି ଅଙ୍ଗୁଳିର ସାହାଯ୍ୟ ନେଇ କିଛି ଧରିବା । |
| ୧୨ ମାସ : | ବିନା ସାହାଯ୍ୟରେ ଠିଆହେବା । |
| ୧୮ ମାସ : | ବୁଝିହେବା ଭଳି ମା' ବାବା ଇତ୍ୟାଦି କହିବା, ବିନା ସାହାଯ୍ୟରେ ଚାଲିବା, ନିଜର ନାମଟିକୁ କହିବା । |
| ୨୧ ମାସ : | ପାତ୍ରରେ ପାଣି ନେଇ ନିଜେ ପିଇବା । |
| ୨୪ ମାସ : | ପଚାରିଲେ ଶରୀରର ଅଙ୍ଗପ୍ରତ୍ୟଙ୍ଗକୁ ଦେଖାଇ ପାରିବା, ଆବଶ୍ୟକ ସ୍ଥଳେ ଶୌଚାଗାରକୁ ଯିବା ପାଇଁ ସଂକେତ ଦେବା । |
| ୩୦ ମାସ : | ସଂକ୍ଷିପ୍ତ ବାକ୍ୟସବୁ କହିବା । |

୩୬ ମାସ : ବୋତାମ ଖୋଲି ଜାମା ବାହାର କରିବା, ସଂକ୍ଷିପ୍ତ ଓ ସରଳ ପ୍ରଶ୍ନସବୁର ଅର୍ଥପୂର୍ଣ୍ଣ ଉତ୍ତର ଦେବା, ଛୋଟ ଓ ବଡ଼ ଆକାରର ଜିନିଷକୁ ପୃଥକ୍ ପୃଥକ୍ ଭାବେ ବିଚାର କରିବା, ବାଳକ ଓ ବାଳିକାମାନଙ୍କୁ ପୃଥକ୍ କରି ଚିହ୍ନିବା।

୪୦ ମାସ : ଜାମା ପିନ୍ଧି ଠିକ୍‌ରୂପେ ବୋତାମ୍ ଲଗାଇବା ।

୪୮ ମାସ : ମୁଣ୍ଡ କୁଣ୍ଡାଇବା ।

ଶିଶୁର ତିନିବର୍ଷ ବୟସ ପୂର୍ବରୁ ମାନସିକ ଅନଗ୍ରସରତା କେଉଁ ପରିସ୍ଥିତିରେ ସନ୍ଦେହ କରିବେ ।

| ଶିଶୁର ଦକ୍ଷତା | ସ୍ୱାଭାବିକ ବୟସ ସୀମା | ସନ୍ଦେହ ଉପୁଜିବାର ବୟସସ୍ତର |
|---|---|---|
| ୧. ନିଜର ନାମ ଶୁଣି କିମ୍ବା ଅନ୍ୟର କଣ୍ଠସ୍ୱର ଶୁଣି ପ୍ରତିକ୍ରିୟା ଦର୍ଶାଇବା | ୧ ରୁ ୩ ମାସ ବୟସ | ୪ ମାସ |
| ୨. ଅନ୍ୟପ୍ରତି ସ୍ମିତହସ ଫୁଟାଇବା | ୧ ରୁ ୫ ମାସ ବୟସ | ୬ ମାସ |
| ୩. ମୁଣ୍ଡକୁ ସଳଖି ରଖିବା | ୨ ରୁ ୫ ମାସ ବୟସ | ୬ ମାସ |
| ୪. ଅନ୍ୟର ସାହାଯ୍ୟ ନ ନେଇ ବସିବା | ୫ ରୁ ୧୦ ମାସ ବୟସ | ୧୨ ମାସ |
| ୫. ଅନ୍ୟର ସାହାଯ୍ୟ ନ ନେଇ ଠିଆହେବା | ୯ ରୁ ୧୨ ମାସ ବୟସ | ୧୮ ମାସ |
| ୬. ଠିକ୍ ଭାବେ ଚାଲିପାରିବା | ୧୦ ରୁ ୨୦ ମାସ ବୟସ | ୨୧ ମାସ |
| ୭. ତିନି ଚାରୋଟି ଶବ୍ଦ କହିବା | ୧୬ ରୁ ୩୦ ମାସ ବୟସ | ୩୬ ମାସ |
| ୮. ନିଜେ ନିଜେ ଖାଇବା ପିଇବା କରିବା | ୨ ରୁ ୩ ବର୍ଷ ବୟସ | ୪ ବର୍ଷ |
| ୯. ନିଜର ନାମ କହିବା | ୨ ରୁ ୩ ବର୍ଷ | ୪ ବର୍ଷ |
| ୧୦. ନିଜକୁ ନିୟନ୍ତ୍ରଣ କରିବା | ୨ ରୁ ୩ ବର୍ଷ | ୪ ବର୍ଷ |
| ୧୧. ଛୋଟକାଟିଆ ବିପଦ ଏଡ଼ାଇ ଯିବା | ୩ ରୁ ୪ ବର୍ଷ | ୪ ବର୍ଷରୁ ଅଧିକ |

**ସୂଚନା** : ଉଲ୍ଲିଖିତ ଏଗାରଟି ସାମର୍ଥ୍ୟ ମଧ୍ୟରୁ ଯେକୌଣସି ଗୋଟିଏ କ୍ଷେତ୍ରରେ ବିକାଶଗତ ଅନଗ୍ରସରତା ଦେଖାଗଲେ ଏବଂ ଶିଶୁର ଅପସ୍ମାର କିମ୍ବା ଶାରୀରିକ ଅକ୍ଷମତା ରହିଥିଲେ ମାନସିକ ଅନଗ୍ରସରତା ସନ୍ଦେହ କରାଯାଇ ବିଶେଷଜ୍ଞଙ୍କ ପରାମର୍ଶ ଲୋଡ଼ିବା ଉଚିତ ହେବ ।

ପିଲାଟିର ବୟସ ୭ ବର୍ଷ କିମ୍ବା ଅଧିକ ହୋଇଥିଲେ ନିମ୍ନ ପ୍ରଶ୍ନଗୁଡ଼ିକର ଉତ୍ତର "ହଁ" କିମ୍ବା "ନାହିଁ" ରେ ଦିଅନ୍ତୁ ।

୧. ଅନ୍ୟ ପିଲାମାନଙ୍କ ତୁଳନାରେ ପିଲାଟିର ବସିବା, ଠିଆହେବା ଓ ଚାଲିବାରେ ମାତ୍ରାଧିକ ପରିମାଣରେ ପଛୁଆ କି ?

୨. ଖାଇବା, ପିନ୍ଧିବା ଓ ଗାଧୋଇବା ପରି ନିତ୍ୟ କର୍ମ ନିଜେ କରିବା କ୍ଷେତ୍ରରେ ପିଲାଟି ଅକ୍ଷମ କି ?

୩. ଆପଣ "ଏ କାମଟି କର" କିମ୍ବା "ସେ କାମଟି କର" କହିବା ସମୟରେ ପିଲାଟି ଆପଣଙ୍କ ନିର୍ଦ୍ଦେଶ ପ୍ରତି କୌଣସି ପ୍ରତିକ୍ରିୟା ନ ଦର୍ଶାଇ ଅକ୍ଷମତା ସୂଚାଏ କି ?

୪. ପିଲାଟିର କଥା ଅସ୍ପଷ୍ଟ ଓ ଅବୋଧ୍ୟ କି ?

୫. ପିଲାଟି କ'ଣ ଦେଖିଛି ବା ଶୁଣିଛି, ଏପରି ପ୍ରଶ୍ନ ନ ପଚାରିବା ପର୍ଯ୍ୟନ୍ତ ପିଲାଟିର ନିଜର କଥା ପ୍ରକାଶ କରିବାରେ ନିଜର ଅସାମର୍ଥ୍ୟ ଦେଖାଯାଏ କି ?

୬. ବେଳେବେଳେ ପିଲାଟି ଚେତା ହରାଏ କି ?

୭. ଏକା ବୟସର ପିଲାମାନଙ୍କ ତୁଳନାରେ ଆପଣଙ୍କ ପିଲାଟି ମାତ୍ରାଧିକ ପରିମାଣରେ ମାନ୍ଦା କି ?

**ସୂଚନା** : ଉପର ପ୍ରଶ୍ନ ଗୁଡ଼ିକର ଉତ୍ତର ମଧ୍ୟରୁ ଗୋଟିଏ ମଧ୍ୟ "ହଁ" ଉତ୍ତର ହୋଇଥିଲେ ଆପଣ ମାନସିକ ଅନଗ୍ରସରତାର ସନ୍ଦେହ କରି ବିଶେଷଜ୍ଞଙ୍କ ପରାମର୍ଶ ନେବା ଉଚିତ ହେବ ।

ଶିଶୁର ବୟସ ତିନିବର୍ଷରୁ ଛ' ବର୍ଷ ମଧ୍ୟରେ ସୀମିତ ଥିଲେ ପ୍ରଶ୍ନଗୁଡ଼ିକର ଉତ୍ତର "ହଁ" କିମ୍ବା "ନାହିଁ"ରେ ଦିଅନ୍ତୁ ।

୧. ଅନ୍ୟ ଶିଶୁମାନଙ୍କ ତୁଳନାରେ ଆପଣଙ୍କ ସନ୍ତାନଟି ବସିବା, ଠିଆହେବା ଏବଂ ଚାଲିବାରେ ମାତ୍ରାଧିକ ପଛୁଆ କି ?

୨. ଶିଖିବାରେ ଆପଣଙ୍କ ସନ୍ତାନର ବିଶେଷ ଅସୁବିଧା ହେଉଛି କି ?

୩. ପିଲାଟିର ଦେଖିବାରେ ଅସୁବିଧା ହୁଏ କି ?

୪. ଆପଣ ପିଲାଟିକୁ କିଛି କରିବା ପାଇଁ କହିଲେ ପିଲାଟି ଆପଣଙ୍କ କଥା ବୁଝିପାରୁ ନାହିଁ ବୋଲି ଆପଣ ଅନୁଭବ କରନ୍ତି କି ?

୫. ବେଳେବେଳେ ଶିଶୁଟି ଅଚେତ ହୋଇପଡ଼େ କି ?

୬. ଶିଶୁଟି ଅଧିକ ପରିମାଣରେ ଶାରୀରିକ ଦୁର୍ବଳତା କିମ୍ବା ହାତଗୋଡ଼ କିଛି ସମୟ ପାଇଁ ଅଚଳ ହୋଇଯିବାର ଘଟଣା ଘଟିଛି କି ?

୭. ସମାନ ବୟସର ପିଲାମାନେ କରୁଥିବା କାର୍ଯ୍ୟସବୁ କରିବାରେ ଆପଣଙ୍କ ସନ୍ତାନ ଅକ୍ଷମତା ଦେଖାଏ କି ?

୮. ପିଲାଟିର କଥାବାର୍ତ୍ତା ସମବୟସୀ ପିଲାମାନଙ୍କ କଥାବାର୍ତ୍ତା ତୁଳନାରେ ଅସ୍ୱାଭାବିକ ମନେ ହୁଏ କି ?

୯. ସମବୟସୀ ପିଲାମାନଙ୍କ ତୁଳନାରେ ଆପଣଙ୍କ ସନ୍ତାନ ମାତ୍ରାଧିକ ମାନ୍ଦା ମନେ ହୁଏ କି ?

**ସୂଚନା** : ଉପର ପ୍ରଶ୍ନ ମଧ୍ୟରୁ କୌଣସି ଗୋଟିକର ଉତ୍ତର "ହଁ" ହୋଇଥିଲେ ଆପଣ ମାନସିକ ଅନଗ୍ରସରତାର ସନ୍ଦେହ କରି ବିଶେଷଜ୍ଞ ପରାମର୍ଶ ଲୋଡ଼ିବା ଉଚିତ ହେବ ।

# ମାନସିକ ଅନଗ୍ରସରତାର କାରଣ ଓ ନିରାକରଣ

ମାନସିକ ଅନଗ୍ରସରତା (Mental Retardation) ଏକ ଅବାଞ୍ଛିତ ଅବସ୍ଥା । ସାଧାରଣତଃ ୧୮ ବର୍ଷ ବୟସ ପୂର୍ବରୁ ଏହା ପ୍ରକାଶ୍ୟ ରୂପନିଏ । ମାନସିକ ଅନଗ୍ରସରତା ଦର୍ଶାଉଥିବା ପିଲାମାନେ କମ୍ ବୁଦ୍ଧିମତ୍ତା ଦର୍ଶାନ୍ତି । ଏମାନଙ୍କର ବୁଦ୍ଧିଅଙ୍କ ୭୦ରୁ କମ୍ । ଏହାର ବ୍ୟବହାରିକ ଅର୍ଥ ହେଉଛି ଯେ ସେମାନଙ୍କର ପ୍ରକୃତ ବୟସ ୧୦ ବର୍ଷ ହୋଇଥିଲେ ସେମାନେ ୭ ବର୍ଷ ବା ତା' ଠାରୁ କମ୍ ବୟସର ପିଲାମାନଙ୍କର ସାମର୍ଥ୍ୟ ଦର୍ଶାନ୍ତି । ସେମାନଙ୍କର ବୟସ ୧୬ ବର୍ଷ ହୋଇଥିଲେ ସେମାନେ ୧୦ ବର୍ଷ ପିଲା ବା ତା'ଠାରୁ କମ୍ ବୟସର ପିଲାର ସାମର୍ଥ୍ୟ ଦର୍ଶାନ୍ତି ।

ମାନସିକ ଅନଗ୍ରସରତା ପରି ଏବ ଦୁଃଖଦ ଅବସ୍ଥାର କାରଣ ସମ୍ପର୍କରେ କୌତୁହଳ ସୃଷ୍ଟିହେବା ସ୍ୱାଭାବିକ । ମାନସିକ ଅନଗ୍ରସରତାର କାରଣ ପ୍ରକୃତରେ ଜଟିଳ । ତଥାପି ମୋଟାମୋଟି ଭାବରେ ଏହାର କାରଣ ସମ୍ପର୍କରେ କେତେକ ଜ୍ଞାତବ୍ୟ ସୂଚନା ଦିଆଯାଇପାରେ ।

ପ୍ରଥମତଃ କ୍ରୋମୋଜୋମ୍ (Chromosome) ସ୍ତରରେ ଅସ୍ୱାଭାଭିକତା ମାନସିକ ଅନଗ୍ରସରତାର କାରଣ ହୋଇପାରେ । ଏହା ସାଧାରଣ କଥା ଯେ ଗର୍ଭଧାରଣ ସମୟରେ ଯେଉଁ ଗର୍ଭକୋଷଟି ଗଠିତ ହୁଏ, ସେଥିରେ ୪୬ଟି (୨୩ଟି ଯୁଗ୍ମ କ୍ରୋମଜୋମ୍) କ୍ରେମଜୋମ ରହିଥାଏ । ଏହା ପୁରୁଷର ଶୁକ୍ରାଣୁଠାରୁ ୨୩ଟି କ୍ରୋମଜୋମ୍ ଏବଂ ନାରୀର ଡିମ୍ବାଣୁର ୨୩ଟି କ୍ରୋମଜୋମ୍ ଆଣିଥାଏ । ଏଥିରେ ଶେଷ (୨୩ତମ କ୍ରୋମଜୋମ)ଟି ଲିଙ୍ଗନିର୍ଣ୍ଣାୟକ କ୍ରୋମଜୋମ୍ । ଏହି କ୍ରୋମଜୋମର ସ୍ୱରୂପ XY ହୋଇଥିଲେ ସନ୍ତାନଟି ବାଳକ ହେବା ସ୍ଥଳେ ଏହାର ସ୍ୱରୂପ XX ହୋଇଥିଲେ ଏହା କନ୍ୟା ସନ୍ତାନ ହୋଇ ଜନ୍ମନିଏ ।

ପ୍ରତିଟି କ୍ରୋମଜୋମ୍ ମଧ୍ୟରେ ଅସଂଖ୍ୟ ଜିନ୍ ରହିଯାଏ । ଏଗୁଡ଼ିକରେ ଆମର ବଂଶାନୁଗତ ଗୁଣାବଳୀର ସଂକେତ ରହିଥାଏ । ତିନି ପ୍ରକାରର ଜିନ୍ ରହିଥାଏ । ଗଠନଧର୍ମୀ (Structural) ଜିନ୍‌ସବୁ ବହୁ ପ୍ରାଣୀମାନଙ୍କ କ୍ଷେତ୍ରରେ ଦେଖାଯାଏ । ଏହା ଅନେକ ପ୍ରାଣୀମାନଙ୍କଠାରେ ରହିଥିବାରୁ ପ୍ରାଣୀମାନଙ୍କ ବ୍ୟବହାରରେ କିଛିଟା ସାଦୃଶ୍ୟ ପରିଲକ୍ଷିତ ହୁଏ । ଦ୍ୱିତୀୟ ପ୍ରକାର ଜିନ୍ ହେଉଛି କ୍ରିୟାମୁଖୀ (Operation) ଜିନ୍ । ଏସବୁ ଜିନ୍ ଶରୀରରେ ପ୍ରୋଟିନ୍ ସଂଶ୍ଳେଷଣକୁ ଆରମ୍ଭ କରନ୍ତି କିମ୍ବା ବନ୍ଦ କରନ୍ତି । ତୃତୀୟ ପ୍ରକାରର ଜିନ୍ ହେଉଛି ନିୟନ୍ତ୍ରଣ (Regulatory Gene) । ଏସବୁ ଜିନ୍ କ୍ରିୟାମୁଖୀ ଜିନ୍‌କୁ ସକ୍ରିୟ କିୟା ନିଷ୍କ୍ରିୟ କରନ୍ତି । ଏ ଦୃଷ୍ଟିରୁ ଏହି ଜିନ୍‌ଗୁଡ଼ିକ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏମାନଙ୍କର କାର୍ଯ୍ୟକଳାପ ମଣିଷ

ମଣିଷ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି କରେ । ପୁଣି ଏହି ନିୟନ୍ତ୍ରକ ଜିନ୍‌ର କାର୍ଯ୍ୟ ଗୋଟିଏ ମଣିଷର ବ୍ୟବହାରରେ ପରିଦୃଷ୍ଟ ହେଉଥିବା ପାର୍ଥକ୍ୟର ମଧ୍ୟ କାରଣ ହୋଇଥାଏ ।

କେତେକ କାରଣରୁ ଜିନ୍‌ର କାର୍ଯ୍ୟକଳାପରେ ବିଚ୍ୟୁତି ଘଟି ଅସ୍ୱାଭାବିକତା ସୃଷ୍ଟି ହୁଏ । କେତେକ ଚାପ ଫଳରେ ଜିନ୍‌ର ସ୍ୱରୂପ ମଧ୍ୟ ପରିବର୍ତ୍ତିତ ହୋଇପାରେ । ଉଦାହରଣସ୍ୱରୂପ କୁହାଯାଇପାରେ ଯେ, ତେଜସ୍କ୍ରିୟତା (Radiation) ଫଳରେ ଜିନ୍ ରୂପାନ୍ତରିତ ହୋଇ ପରିବର୍ତ୍ତିତ ରୂପ ନେଇପାରେ ।

କ୍ରୋମୋଜୋମ୍ ଓ ଜିନ୍ ସ୍ତରରେ ଅସ୍ୱାଭାବିକତା କେତେକ ମାନସିକ ଅନଗ୍ରସରତାକୁ ଜନ୍ମ ଦିଏ । ପୂର୍ବରୁ ସୂଚନା ଦିଆଯାଇଛି ଯେ ସ୍ୱାଭାବିକ ଭାବରେ ପ୍ରତିଟି ଗର୍ଭାଣୁରେ (Zygote) ୪୬ଟି କ୍ରୋମଜୋମ୍ ରହିଥାଏ । ମାତ୍ର କେତେକ କ୍ଷେତ୍ରରେ ଗୋଟିଏ ଅଧିକ କ୍ରୋମଜୋମ୍ ରହିଲେ ଅବାଞ୍ଛିତ ଅବସ୍ଥା ସୃଷ୍ଟି ହୁଏ । ଏପରି କ୍ଷେତ୍ରରେ ୪୬ଟି କ୍ରୋମଜୋମ୍ ନଥାଇ ୪୭ଟି କ୍ରୋମଜୋମ୍ ରହିଯାଏ । ଏହା ତିନି ପ୍ରକାରର ରହିପାରେ । ଗର୍ଭାଧାନ ପରେ ସବୁ ଗର୍ଭକୋଷରେ ୪୬ଟି କ୍ରୋମଜୋମ୍ ନଥାଇ ୪୭ କ୍ରୋମଜୋମ୍ ରହିପାରେ । ଦ୍ୱିତୀୟ ପ୍ରକାର ହେଉଛି କେତେକ କୋଷରେ ୪୬ କ୍ରୋମ୍‌ଜୋମ୍ ରହିବା ସ୍ଥଳେ ଅନ୍ୟ କୋଷରେ ୪୭ କ୍ରୋମଜୋମ୍ ରହିଥାଏ । ତୃତୀୟ ପ୍ରକାରର ହେଉଛି ସବୁ କୋଷରେ ୪୬ କ୍ରୋମଜୋମ୍ ଥିବା ସ୍ଥଳେ କେବଳ ଗୋଟିଏ କୋଷରେ ୪୭ କ୍ରୋମଜୋମ୍ ରହିଯାଏ । ଗୋଟିଏ ଅଧିକ କ୍ରୋମଜୋମ ରହିବା ଫଳରେ ଏକ ପ୍ରକାର ବିଚ୍ୟୁତି ସୃଷ୍ଟି ହୁଏ । ଏପରି ପିଲାମାନେ ମାନସିକ ଅନଗ୍ରସରତା ଦର୍ଶାନ୍ତି ଏବଂ ସେମାନେ ଡାଉନ୍‌ସ ଲକ୍ଷଣ (Down's Syndrome)ର ଶରବ୍ୟ ହୁଅନ୍ତି ।

ମାନସିକ ଅନଗ୍ରସରତାର ଅନ୍ୟସବୁ କାରଣଗୁଡ଼ିକ ମୁଖ୍ୟତଃ ତିନୋଟି ଅବସ୍ଥାରେ ସଂଘଟିତ ହୋଇଥାଏ । ସେଗୁଡ଼ିକ ହେଉଛି ଶିଶୁର ଜରାୟୁକାଳୀନ ଅବସ୍ଥା, ଜନ୍ମର ଠିକ୍ ପୂର୍ବ କିମ୍ବା ଠିକ୍ ପର ଅବସ୍ଥା ଏବଂ ଶୈଶବକାଳୀନ ଅବସ୍ଥା ।

ଶିଶୁଟି ମାତୃଗର୍ଭରେ ଜରାୟୁରେଥିବା ସମୟରେ କେତେକ ପାରିପାର୍ଶ୍ୱିକ ଖରାପ ଅବସ୍ଥା ଶିଶୁପାଇଁ ଜଟିଳତା ସୃଷ୍ଟି କରେ । ସନ୍ତାନ-ସମ୍ଭବା ଜନନୀ ବଡ଼ ଧରଣର ସଂକ୍ରମଣର ଶରବ୍ୟ ହେଲେ ଶିଶୁ ପ୍ରତି ବିପଦର ଆଶଙ୍କା ଦେଖାଯାଏ । ବିଶେଷତଃ ଗର୍ଭଧାରଣର ତିନିମାସ ମଧ୍ୟରେ ରୁବେଲା (ଏକପ୍ରକାର ମିଳିମିଳା) ଭୂତାଣୁ ସଂକ୍ରମିତ ହେଲେ ଏହା ଗର୍ଭଥଳୀରୁ ଅତିକ୍ରମ କରି ଶିଶୁକୁ ମଧ୍ୟ କ୍ଷତିଗ୍ରସ୍ତ କରେ । ସେହିପରି ଅନ୍ୟ କେତେକ ବିଷାକ୍ତ ପଦାର୍ଥ ମା'ର ଶରୀରକୁ ଯାଇ ଶିଶୁରେ କ୍ଷତିସାଧନ କରିପାରେ । ମା' ରକ୍ତରେ କେତେକ ଅସଙ୍ଗତି (RH ରକ୍ତ ଗ୍ରୁପ୍) ଶିଶୁକୁ କବଳିତ କରି ଜଟିଳତା ସୃଷ୍ଟିକରେ ।

ସନ୍ତାନ ସମ୍ଭବା ଥିବା ଅବସ୍ଥାରେ ନାରୀର ନିଶାଦ୍ରବ୍ୟ ସେବନ, ମଦ୍ୟପାନ ଏବଂ କେତେକ ବିଶେଷ ଧରଣ ଔଷଧ ସେବନ ଶିଶୁ ପାଇଁ କ୍ଷତିର କାରଣ ହୁଏ । ଜନନୀର ଆଭ୍ୟନ୍ତରୀଣ ପରିବର୍ତ୍ତନ ଏବଂ ଶିଶୁକୁ ଘେରି ରହିଥିବା ନିକଟସ୍ଥ ପରିବେଶର ଖରାପ ଅବସ୍ଥା ଶିଶୁ ମସ୍ତିଷ୍କର ବିକାଶରେ ଅନ୍ତରାୟ ହୁଏ । ଧୂମପାନ ମଧ୍ୟ ବିଶେଷ କ୍ଷତିକାରଣ ହୋଇଥାଏ ।

ଦ୍ୱିତୀୟତଃ, ଶିଶୁ ମସ୍ତିଷ୍କର ବିକାଶ ଦୃଷ୍ଟିରୁ ଶିଶୁ ଜନ୍ମର ଠିକ୍ ପୂର୍ବବର୍ତ୍ତୀ ଓ ଠିକ୍ ପରବର୍ତ୍ତୀ ଅବସ୍ଥାଟି ବେଶ୍ ଗୁରୁତ୍ୱପୂର୍ଣ୍ଣ । ଶିଶୁଟି ଠିକ୍ ସମୟ ପୂର୍ବରୁ ଅପରିପକ୍ୱ (Premature) ଅବସ୍ଥାରେ ଜନ୍ମ ନେଲେ ଜଟିଳତା ସୃଷ୍ଟି ହୁଏ । ବିଶେଷତଃ ଠିକ୍ ସମୟର (୩୮ ସପ୍ତାହ) ପୂର୍ବରୁ ଜନ୍ମ ହେବା ଏବଂ ଓଜନ ୨ ୧/୨ କେଜିରୁ କମ୍ ହେବା ଫଳରେ ସମସ୍ୟା ସୃଷ୍ଟି ହୁଏ । ଅମ୍ଳଜାନ କିପରି ଗ୍ରହଣ କରିବାକୁ ହେବ, ତାହା ଅପରିପକ୍ୱ ଶିଶୁ ଜାଣି ନଥାଏ । ସୁତରାଂ ଅମ୍ଳଜାନର ଅଭାବ ମସ୍ତିଷ୍କ ବିକାଶର ଅନ୍ତରାୟ ହୁଏ । ପୁଣି କେତେକ ବିଶେଷଜ୍ଞମାନଙ୍କ ମତରେ ଏପରି ଜନ୍ମ ଶିଶୁ ପାଇଁ ଟ୍ରମା ବା ଉଦ୍‌ତ୍ରାସ (Trauma) ସୃଷ୍ଟି କରେ । ଏହି ଟ୍ରମା ଶିଶୁ ମସ୍ତିଷ୍କ ପାଇଁ ବିପଦର ସଂକେତ ଦିଏ ।

ପୁଣି ଅପରିପକ୍ୱ ଶିଶୁର ଜନ୍ମ ସମୟରେ କିମ୍ୱା ସ୍ୱାଭାବିକ ସମୟରେ ଜନ୍ମ ନେଉଥିବା ଶିଶୁ କ୍ଷେତ୍ରରେ ଅସ୍ତ୍ରୋପଚାର କରାଯାଇପାରେ । ଏହି ସମୟରେ ଶିଶୁର ମସ୍ତିଷ୍କ ଆଘାତ-ପ୍ରାପ୍ତ ହେଲେ ମାନସିକ ଅନଗ୍ରସରତାର ଆଶଙ୍କା ସୃଷ୍ଟି ହୁଏ । ମୋଟ ଉପରେ ଜନ୍ମ ସମୟରେ ଅମ୍ଳଜାନର ଅଭାବ, ଟ୍ରାମା ଓ ମସ୍ତିଷ୍କ ଆଘାତ ମାନସିକ ଅନଗ୍ରସରତାର କାରଣ ହୋଇଥାଏ ।

ଜନ୍ମର ପରବର୍ତ୍ତୀ ପର୍ଯ୍ୟାୟରେ ଶିଶୁ ସମ୍ପୂର୍ଣ୍ଣ ବିପଦମୁକ୍ତ ନୁହେଁ । କେତେକ ଭୟାନକ ସଂକ୍ରମଣ ଶିଶୁର ମସ୍ତିଷ୍କ ଓ ତା'ର ସ୍ନାୟୁସବୁକୁ ସଂକ୍ରମିତ ହୁଅନ୍ତି । ମସ୍ତିଷ୍କ ଜ୍ୱର ଏ ଧରଣର ଏକପ୍ରକାର ସଂକ୍ରମଣ । ମସ୍ତିଷ୍କରେ ଗୁରୁତର ଆଘାତ ମଧ୍ୟ ଶିଶୁର ଅନଗ୍ରସରତାର କାରଣ ହୋଇପାରେ । କେତେକ ସ୍ଥଳରେ କ୍ଷତିର ପ୍ରଭାବ ସଙ୍ଗେ ସଙ୍ଗେ ପ୍ରକାଶ୍ୟ ରୂପ ନ ନେଇ ପରବର୍ତ୍ତୀ ପର୍ଯ୍ୟାୟରେ ଜଟିଳତା ସୃଷ୍ଟି କରିଥାଏ ।

ମାନସିକ ଅନଗ୍ରସରତାର ଚିକିତ୍ସା ଅପେକ୍ଷା ଏହାର ପ୍ରତିରୋଧ ପାଇଁ ପ୍ରତିଷେଧମୂଳକ (Preventive) ପଦକ୍ଷେପ ଅଧିକ ବିଜ୍ଞତାର କାର୍ଯ୍ୟ ହେବ । ବିହିତ ବ୍ୟବସ୍ଥାକୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ସେଗୁଡ଼ିକ ହେଉଛି ମୌଳିକ ବ୍ୟବସ୍ଥା, ଗୌଣ ବ୍ୟବସ୍ଥା ଏବଂ ପରସମୟର ଅବସ୍ଥା ।

ସନ୍ତାନ ସମ୍ଭବା ଜନନୀ ପାଇଁ ଅନୁକୂଳ ପରିବେଶ, ଉତ୍ତମ ସ୍ୱାସ୍ଥ୍ୟ ଏବଂ ସଚେତନତା ପ୍ରାଥମିକ ଓ ମୌଳିକ ଅବସ୍ଥା । ମାନସିକ ଅନଗ୍ରସରତା ସୃଷ୍ଟି କରୁଥିବା ବିଷୟ ସମ୍ପର୍କରେ ନାରୀ ଏବଂ ଅନ୍ୟ ବ୍ୟକ୍ତିମାନେ ସଚେତନ ରହିବେ ଏବଂ ସନ୍ତାନସମ୍ଭବା ନାରୀକୁ ଆବଶ୍ୟକ ସାହାଯ୍ୟ ଯୋଗାଇବେ । ସଂକ୍ରମଣ ଏଡ଼ାଇବା ପାଇଁ ଟୀକା ଇଞ୍ଜେକ୍‌ସନ୍ ନେବା ନିତାନ୍ତ ଦରକାର । ଉତ୍ତମ ଖାଦ୍ୟ ଖାଇବା, ନିଶାଦ୍ରବ୍ୟଠାରୁ ଦୂରେଇ ରହିବା ଏବଂ ବିଷାକ୍ତ ପରିବେଶଠାରୁ ଦୂରେଇ ରହିବା ପରି ପଦକ୍ଷେପସବୁ ନେବାକୁ ହେବ ।

ଗୌଣ ବ୍ୟବସ୍ଥା ସ୍ୱରୂପ ଡାକ୍ତରଙ୍କ ସହିତ ପରାମର୍ଶ କରିବା ଉଚିତ । ମାନସିକ ଅନଗ୍ରସରତା ଆଶଙ୍କା ଉପୁଜୁଥିଲେ ବିଶେଷଜ୍ଞଙ୍କ ପରାମର୍ଶ ନେବେ । ବିଶେଷତଃ ଅତୀତରେ ଜନ୍ମିତ ସନ୍ତାନମାନଙ୍କର ଅସମୟରେ ମୃତ୍ୟୁ, ମୃତ ସନ୍ତାନର ଜନ୍ମ ଏବଂ ସେହିପରି ଜଟିଳତା ଥିଲେ ବିଶେଷଜ୍ଞ ପରାମର୍ଶ ବିଶେଷ ପ୍ରୟୋଜନ । ପରିବାର ମଧ୍ୟରେ କୌଣସି ଶିଶୁ

ମାନସିକ ଅନଗ୍ରସରତାର ଶରବ୍ୟ ହୋଇଥିଲେ ବିଶେଷଜ୍ଞଙ୍କ ଉପଦେଶ (Genetic Counselling) ଗ୍ରହଣ କରିବା ବିଜ୍ଞତାର କାର୍ଯ୍ୟ ହେବ ।

ଶିଶୁର ଜନ୍ମପରେ କିମ୍ବା କିଛି ବର୍ଷ ପରେ ମାନସିକ ଅନଗ୍ରସରତା ଜଣା ପଡ଼ିଲେ ଏପରି ଶିଶୁ ପାଇଁ ସହାୟକ ଶିକ୍ଷା ଓ ସାମାଜିକ ବ୍ୟବସ୍ଥାର ଆୟୋଜନ କରିବାକୁ ହେବ । ଏହାର ପରବର୍ତ୍ତୀ ସମୟର ଯୋଜନା, ଉପଯୁକ୍ତ ଶିକ୍ଷା ଓ ସାମାଜିକ ବ୍ୟବସ୍ଥା ସାହାଯ୍ୟରେ ଅଳ୍ପ ପରିମାଣରେ ଅନଗ୍ରସରତା ଥିବା ଶିଶୁକୁ ମୋଟାମୋଟି ସାଧାରଣ ଅବସ୍ଥାକୁ ଆଣିବା ସମ୍ଭବପର । ସେହିପରି ମଧ୍ୟମ ଧରଣର ଅନଗ୍ରସରତା ଥିବା ଶିଶୁମାନଙ୍କ ଅବସ୍ଥାରେ ମଧ୍ୟ ଯଥେଷ୍ଟ ଉନ୍ନତି ଅଣାଯାଇ ପାରିବ । ପୂର୍ବରୁ ମାନସିକ ଅନଗ୍ରସର ପିଲାମାନେ ପୂରାପୂରି ଉପେକ୍ଷିତ ହେଉଥିଲେ । ଏବେ ବିଭିନ୍ନ ଅନୁଷ୍ଠାନ ମାଧ୍ୟମରେ ସ୍ୱତନ୍ତ୍ର ଶିକ୍ଷା ଓ ଉପଯୋଗୀ ଉପଦେଶନ ଫଳରେ ଏକ ଉଦାରପୂର୍ଣ୍ଣ ଓ ସହନଶୀଳ ବାତାବରଣ ସୃଷ୍ଟି ହୋଇପାରିଛି ।

## *ସହାୟକ ପରାମର୍ଶ*

*୧. ମାନସିକ ଅନଗ୍ରସର ପିଲାଟିର କେତେକ ଅକ୍ଷମତା ରହିଥିଲେ ମଧ୍ୟ ସେ ଅନ୍ୟ କେତେ କ୍ଷେତ୍ରରେ ସ୍ୱାଭାବିକ ଦକ୍ଷତା ଦର୍ଶାଇ ପାରେ–ଏପରି ଭାବନାରେ ଆସ୍ଥା ସ୍ଥାପନ କରନ୍ତୁ ।*

*୨. ଶିକ୍ଷାନୁଷ୍ଠାନ ଏବଂ ସ୍ୱତନ୍ତ୍ର ଧରଣର ଅନୁଷ୍ଠାନର ସହାୟତାରେ କେତେକ ଧରଣର ସମସ୍ୟା ସମାଧାନ ହୋଇପାରେ । ପ୍ରାଥମିକ ପର୍ଯ୍ୟାୟରେ ଏପରି ସମ୍ଭାବନାର ଅନ୍ୱେଷଣ କରନ୍ତୁ ।*

*୩. ଆବଶ୍ୟକ ହେଲେ ବିଶେଷଜ୍ଞ ପରାମର୍ଶ ନିଅନ୍ତୁ ।*

*୪. ଅନଗ୍ରସର ପିଲାଙ୍କ ପରିଚାଳନା କ୍ଷେତ୍ରରେ ଯଥେଷ୍ଟ ପରିମାଣରେ ଧୈର୍ଯ୍ୟ, ସାହସ ଓ ସମ୍ବେଦଶୀଳତା ରକ୍ଷା କରନ୍ତୁ ।*

# ଅନଗ୍ରସରତା ନିରୂପଣରେ ମନୋବୈଜ୍ଞାନିକ ଉପାୟ

ମାନସିକ ଅନଗ୍ରସରତାର (Mental Retardation) ଶରବ୍ୟ ହୋଇଥିବା ପିଲାମାନଙ୍କୁ ଉପଯୁକ୍ତ ସହାୟତା ପ୍ରଦାନ କରି ସେମାନଙ୍କୁ ପରିପୂର୍ଣ୍ଣ ଜୀବନର ଅନୁଭବ ଦେବାର ପ୍ରଯତ୍ନ ପୂର୍ବରୁ ପ୍ରଥମେ ଅନଗ୍ରସରତାର ମାତ୍ରା ଓ ସ୍ୱରୂପ ଜାଣିବାକୁ ହେବ । ଅନଗ୍ରସରତାର ମାତ୍ରା ନିର୍ଦ୍ଧାରଣ କଲାପରେ ହିଁ ସେପରି ପିଲା ପାଇଁ ଆବଶ୍ୟକ ହେଉଥିବା ଶିକ୍ଷାଦୀକ୍ଷାର ବ୍ୟବସ୍ଥା ଆୟୋଜନ କରିବା ସମ୍ଭବ ହେବ । ପୁଣି ବିଶେଷଜ୍ଞ ଓ ଚିକିତ୍ସକଙ୍କ ପରାମର୍ଶ ଲୋଡ଼ିବା ସମୟରେ ବିଶେଷଜ୍ଞମାନେ ପିତାମାତା ଏବଂ ଅନ୍ୟ ଯତ୍ନକାରୀଙ୍କର ଶିଶୁ ସମ୍ପର୍କୀୟ ବ୍ୟକ୍ତିଗତ ଅନୁଭୂତି ଜାଣିବାକୁ ଇଚ୍ଛା ପ୍ରକାଶ କରନ୍ତି । ସେମାନଙ୍କ ଚିକିତ୍ସା ପ୍ରଣାଳୀ ଏହିସବୁ ସୂଚନା ଉପରେ ନିର୍ଭର କରେ । ସୁତରାଂ ପ୍ରତିକାର ବ୍ୟବସ୍ଥା  ଗ୍ରହଣ ପୂର୍ବରୁ ମାନସିକ ଅନଗ୍ରସରତାର ମାତ୍ରା-ନିର୍ଦ୍ଧାରଣ (Alssessment) ଏକ ଅତ୍ୟାବଶ୍ୟକ ବ୍ୟବସ୍ଥା ।

ବିଶେଷଜ୍ଞଙ୍କ ସହାୟତା ଲୋଡ଼ିବା ପୂର୍ବରୁ ପରିବାରରେ ଏବଂ ବିଦ୍ୟାଳୟରେ ଅନଗ୍ରସରତା ସମ୍ପର୍କରେ ପ୍ରାରମ୍ଭିକ ସୂଚନା ମିଳିବାର ଯଥେଷ୍ଟ ସମ୍ଭାବନା ରହିଛି । ବିଶେଷତଃ ଜଣେ ଅନୁଭବୀ ଶିକ୍ଷକ ବିଦ୍ୟାଳୟର ପରିପ୍ରେକ୍ଷୀରେ ପିଲାଟିର ଅନଗ୍ରସରତା ଲକ୍ଷ୍ୟ କରିପାରନ୍ତି । ବିଦ୍ୟାଳୟର ପରିପ୍ରେକ୍ଷୀରେ ପିଲାଟିର ଅନଗ୍ରସରତା ଧରା ପଡ଼ିଗଲେ ଏହା ତିନୋଟି ଦିଗରୁ ଶିକ୍ଷକ ଶିକ୍ଷୟତ୍ରୀଙ୍କୁ ସାହାଯ୍ୟ ଯୋଗାଇଥାଏ ।

ପ୍ରଥମତଃ ପିଲାଟିର ଅନଗ୍ରସରତାର ମାତ୍ରା ଜାଣିବା ପରେ କ'ଣ ପଢ଼ାଇବାକୁ ହେବ ଏବଂ କିପରି ପଢ଼ାଇବାକୁ ହେବ, ତାହା ଶିକ୍ଷକ ସ୍ଥିର କରିପାରନ୍ତି । ଦ୍ୱିତୀୟତଃ ସ୍କୁଲ ପରିପ୍ରେକ୍ଷୀରେ ମାତ୍ରା-ନିର୍ଦ୍ଧାରଣ ପିଲାଟିକୁ ଅନ୍ୟ ଅବାଂଛିତ ପରିସ୍ଥିତିରୁ ରକ୍ଷା କରିଥାଏ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ଗୋଟିଏ ପିଲାର ମାନସିକ ଅନଗ୍ରସରତା ନଥାଇ ଏକ ସ୍ୱତନ୍ତ୍ର ଧରଣର ଅଭାବ ଥାଇପାରେ । ହୁଏତ ସେ ଲେଖିବା ସମୟରେ ମାତ୍ରାଧିକ ପରିମାଣରେ ବନାନ ଭୁଲ କରିଥାଇପାରେ । ଏପରି ତ୍ରୁଟିବିଚ୍ୟୁତି ଶିକ୍ଷକଙ୍କ ନଜରକୁ ଆସିଲେ ସେ ଏହାକୁ ଅନଗ୍ରସରତା ନ କହି ତାକୁ ବିଦ୍ୟାଳୟର ପରିପ୍ରେକ୍ଷୀ ମଧ୍ୟରେ ସଂଶୋଧନ କାର୍ଯ୍ୟକ୍ରମର ବ୍ୟବସ୍ଥା କରିପାରିବେ । ହୁଏତ ଅନ୍ୟ କେହି ପିତାମାତା ଆଶଙ୍କାଗ୍ରସ୍ତ  ହୋଇ ମନୋଚିକିତ୍ସକଙ୍କ ସାହାଯ୍ୟ ନେଇଥାଆନ୍ତେ  । ମାତ୍ର ଶିକ୍ଷକଙ୍କ ଆଶୁ ମୂଲ୍ୟାୟନ ଏ ଦିଗରେ ଅନୁକୂଳ ବ୍ୟବସ୍ଥା ଆଣପାରିବ ।

ତୃତୀୟତଃ ଶିକ୍ଷକ ପିଲାଟିକୁ ପର୍ଯ୍ୟବେକ୍ଷଣ କରି ଯେଉଁ ସମସ୍ତ ସୂଚନା ପାଇଥିବେ, ପରବର୍ତ୍ତୀ ପର୍ଯ୍ୟାୟରେ ତାହା ବିଶେଷଜ୍ଞ ଓ ଡାକ୍ତରମାନଙ୍କ କାମରେ ଲାଗିଥାଏ । ଡାକ୍ତରୀ ଓ ମନୋଚିକିତ୍ସାର ଆବଶ୍ୟକତା ଉପୁଜିଲେ ଶିକ୍ଷକ ଶିକ୍ଷୟତ୍ରୀମାନେ ଶ୍ରେଣୀ ଗୃହରେ ଯେଉଁ ସମସ୍ତ ସୂଚନା ପାଇଥିବେ, ସେସବୁର ସଦୁପଯୋଗ ଘଟିବ । ମୋଟ ଉପରେ ବିଦ୍ୟାଳୟର ପରିପ୍ରେକ୍ଷୀ ମଧ୍ୟରେ ପିଲାମାନଙ୍କର ମାନସିକ ସାମର୍ଥ୍ୟ ଓ ଅସାମର୍ଥ୍ୟ (Disability) ସମ୍ପର୍କରେ ପ୍ରାରମ୍ଭିକ ଅନୁସନ୍ଧାନ ବିଜ୍ଞାନସମ୍ମତ ।

ପିଲାଟି ମାନସିକ ଅନଗ୍ରସରତାର ଶରବ୍ୟ ହୋଇଛି, ଗୃହରେ କିମ୍ବା ବିଦ୍ୟାଳୟରେ ଏପରି ଆଶଙ୍କା ଘନୀଭୂତ ହେଲେ ପରବର୍ତ୍ତୀ ପର୍ଯ୍ୟାୟରେ ବିଜ୍ଞାନସମ୍ମତ ଅନୁସନ୍ଧାନର ପ୍ରୟୋଜନ ହୁଏ । ଅନଗ୍ରସରତାର ମାତ୍ରା ଜାଣିବା ପାଇଁ ଯେଉଁ ବିଧିବଦ୍ଧ ପଦକ୍ଷେପ ନିଆଯାଏ, ସେଥିରେ ମନୋବୈଜ୍ଞାନିକ ପରୀକ୍ଷା ନିରୀକ୍ଷା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିଏ । ବିଶେଷତଃ ମାନସିକ ଅନଗ୍ରସରତାର ସଂଜ୍ଞା ଓ ପ୍ରକାର ଭେଦ (Classification) ମୁଖ୍ୟତଃ ବୁଦ୍ଧିମତ୍ତାର (Intelligence) ମାତ୍ରା ଉପରେ ଆଧାରିତ ହୋଇଥିବାରୁ ବୁଦ୍ଧିମାପକସବୁ (Intelligence Tests) ତାତ୍ପର୍ଯ୍ୟପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି ।

**ବୁଦ୍ଧିମତ୍ତା ଓ ଅକ୍ଷମତା :**

ବ୍ୟକ୍ତିର ବୁଦ୍ଧିମତ୍ତା ତା'ର ସାମର୍ଥ୍ୟର ସୂଚକ । ବ୍ୟକ୍ତିର ବୁଦ୍ଧିମତ୍ତା ମାପ କରିବା ସମୟରେ ବ୍ୟକ୍ତିର ଜ୍ଞାନଗତ, ଭାବଗତ ଓ ବ୍ୟବହାରଗତ ସାମର୍ଥ୍ୟ ମାପ କରାଯାଇଥାଏ । ଅବଶ୍ୟ ମାନସିକ ଅନଗ୍ରସରତାର ପରିମାଣ ନିର୍ଦ୍ଧାରଣ କରିବା ସମୟରେ ବୁଦ୍ଧିମତ୍ତାକୁ ଅଧିକ ଗୁରୁତ୍ୱ ଦିଆଗଲେ ମଧ୍ୟ ପିଲାର ଶିକ୍ଷାଗତ ଅକ୍ଷମତା, କେତେକ ବିଶେଷ ଧରଣର ଅକ୍ଷମତା, ସ୍କୁଲର ପାଠ୍ୟ ବିଷୟରେ ଅନଗ୍ରସରତା, ପିଲାଟିର ସମନ୍ୱୟଶୀଳ ବ୍ୟକ୍ତିତ୍ୱର ଅଭାବ ଏବଂ ସାମାଜିକ ଓ ଆବେଗିକ ତ୍ରୁଟିସବୁକୁ ବିଚାରକୁ ନିଆଯାଏ ।

ବିଂଶ ଶତକା ପ୍ରାରମ୍ଭରେ ବୁଦ୍ଧିମତ୍ତାକୁ ପରିମାଣମ୍ ଭାବରେ ମାପିବାର ଅଭିନବ କୌଶଳ ବାହାରିଲା । ବିନେ (Binet) ନାମକ ଜଣେ ମନୋବିଜ୍ଞାନୀ ପ୍ରଥମେ ବୁଦ୍ଧିମାପକ (Intelligence Tests)ର ବ୍ୟବହାର କଲେ । ଅଳ୍ପ ବର୍ଷ ମଧ୍ୟରେ ଏହା ବେଶ୍ ଲୋକପ୍ରିୟତା ହାସଲ କଲା । ୧୯୧୧ ମସିହାରେ ବିନେଙ୍କ ମୃତ୍ୟୁପରେ ଷ୍ଟର୍ଣ୍ଣ ନାମକ ଜଣେ ଜର୍ମାନ ମନୋବିଜ୍ଞାନୀ ବୁଦ୍ଧିମତ୍ତାକୁ ପ୍ରକାଶ କରିବା ପାଇଁ ବୁଦ୍ଧିଅଙ୍କ (Intelligence Quotient ବା IQ) ପରିଭାଷାଟି ବ୍ୟବହାର କଲେ । ବୁଦ୍ଧିଅଙ୍କଟି ସ୍ଥିର କରିବା ପାଇଁ ନିମ୍ନ ସୂତ୍ରଟି ପ୍ରୟୋଗ କରାଗଲା ।

$$\text{ବୁଦ୍ଧିଅଙ୍କ} = \frac{\text{ମାନସିକ ବୟସ}}{\text{ଜନ୍ମଗତ ବୟସ}} \times ୧୦୦$$

କହିବା ନିଷ୍ପ୍ରୟୋଜନ ଯେ ପିଲା ବା ବ୍ୟକ୍ତିଟିର ମାନସିକ ବୟସ ହେଉଛି ବୁଦ୍ଧିମତ୍ତାର ସ୍ତର । ଗୋଟିଏ ସମାଜରେ ଅଧିକାଂଶ ବ୍ୟକ୍ତି ଏକ ନିର୍ଦ୍ଦିଷ୍ଟ ବୟସରେ ଯେଉଁସବୁ ସାମର୍ଥ୍ୟ

ଦର୍ଶାନ୍ତି, ଜଣେ ପିଲା ବା ବ୍ୟକ୍ତି ସେହିସବୁ ସାମର୍ଥ୍ୟ ଦର୍ଶାଇଲେ ତାହାର ମାନସିକ ବୟସରୂପେ ତାହା ଗ୍ରହଣ କରାଯିବ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ କୋଡ଼ିଏ ବର୍ଷର ଯୁବକଟି ପନ୍ଦର ବର୍ଷ ବୟସ ବାଳକର ସାମର୍ଥ୍ୟ ଦର୍ଶାଇଲେ ତାହାର ମାନସିକ ବୟସ ୧୫ ବର୍ଷ ରହିବ । ଏପରି ସ୍ଥଳେ ଯୁବକଟିର ବୁଦ୍ଧିଅଙ୍କ = $^{୧୫}/_{୨୦}$ × ୧୦୦ = ୭୫

ଲକ୍ଷ୍ୟ କରିବାର କଥା ଯେ ୧୦୦ ବୁଦ୍ଧିଅଙ୍କର ପ୍ରକୃତ ତାତ୍ପର୍ଯ୍ୟ ହେଉଛି ହାରାହାରିତ୍ୱ । ପନ୍ଦର ବର୍ଷ ବାଳକ ୧୫ ବର୍ଷର ମାନସିକ ସାମର୍ଥ୍ୟ ଦର୍ଶାଇଲେ ବୁଦ୍ଧିଅଙ୍କ ୧୦୦ ରହିବ ଏବଂ ୨୧ ବର୍ଷର ଯୁବକ ୨୧ ବର୍ଷ ଯୁବକର ମାନସିକ ସାମର୍ଥ୍ୟ ଦର୍ଶାଇଲେ ବୁଦ୍ଧିଅଙ୍କ ୧୦୦ ହେବ । ବୁଦ୍ଧିଅଙ୍କ ୧୦୦ ରୁ ଯେତେ ବେଶୀ ଅଧିକ ରହିବ, ବୁଦ୍ଧିମତ୍ତାର ମାତ୍ରା ସାଧାରଣ ସ୍ତରରୁ ସେତେ ଅଧିକ ବୋଲି ବିଚାର କରାଯିବ । ଅନ୍ୟ ପକ୍ଷରେ ବୁଦ୍ଧିମତ୍ତାର ମାତ୍ରା ୧୦୦ ଠାରୁ ଯେତେ କମ୍ ହେବ, ବୁଦ୍ଧିହୀନତାର ପରିମାଣ ସେତିକି ବେଶୀ ଧରାଯିବ ।

ବୁଦ୍ଧିଅଙ୍କକୁ କେନ୍ଦ୍ର କରି ଅନ୍ୟାନ୍ୟ ସାଧାରଣ ବୁଦ୍ଧି ଓ ମାନସିକ ଅନଗ୍ରସରତାର ଯେଉଁ ବିଚାର କରାଯାଇଛି, ନିମ୍ନ ବାକ୍ସଟିରେ ତାହାର ଏକ ସ୍ପଷ୍ଟ ଚିତ୍ର ଦିଆଯାଇଛି ।

| ବୁଦ୍ଧିଅଙ୍କର ପରିମାଣ | ବୌଦ୍ଧିକ ସ୍ତର |
|---|---|
| ୧୪୦ ରୁ ଅଧିକ | ପ୍ରତିଭାସମ୍ପନ୍ନ |
| ୧୨୦ ରୁ ୧୩୯ | ଉଚ୍ଚମାନର ବୁଦ୍ଧି |
| ୧୧୦ ରୁ ୧୧୯ | ଉଚ୍ଚ ସାଧାରଣ ସ୍ତର |
| ୯୦ ରୁ ୧୦୯ | ସାଧାରଣ |
| ୭୦ ରୁ ୮୯ | ନିମ୍ନ ସାଧାରଣ ସ୍ତର |
| ୫୦ ରୁ ୬୯ | କ୍ଷୀଣ ଅନଗ୍ରସରତା |
| ୩୫ ରୁ ୪୯ | ମଧ୍ୟମ ମାତ୍ରାର ଅନଗ୍ରସରତା |
| ୨୦ ରୁ ୩୪ | ତୀବ୍ର ଅନଗ୍ରସରତା |
| ୨୦ ରୁ କମ୍ | ଅତିବେଶୀ ଅନଗ୍ରସରତା |

ବିଂଶ ଶତକର ପ୍ରାରମ୍ଭରେ ଇଉରୋପରେ ପ୍ରଥମେ ବୁଦ୍ଧିମାପକସବୁର ପ୍ରୟୋଗ କରାଯାଇଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଯୁକ୍ତରାଷ୍ଟ୍ର ଆମେରିକାରେ ଏସବୁର ବହୁଳ ପ୍ରୟୋଗ କରାଗଲା । ମୂଳ ବୁଦ୍ଧିମାପକଟିକୁ ଭିନ୍ନ ଏକ ଦେଶରେ ପ୍ରୟୋଗ କରିବା ପୂର୍ବରୁ ସେ ଦେଶର ସାମାଜିକ ସାଂସ୍କୃତିକ ପୃଷ୍ଠଭୂମିକୁ ଦୃଷ୍ଟିରେ ରଖି ମୂଳ ମାପକରେ କେତେକ ପରିବର୍ତ୍ତନ ଅଣାଯାଇଛି । ଏହିପରି ପରିବର୍ତ୍ତନ ସହ ଅନେକ ଗୁଡ଼ିଏ ବୁଦ୍ଧିମାପକକୁ ଭାରତୀୟ ସମାଜରେ ପ୍ରୟୋଗକ୍ଷମ କରାଯାଇଛି ।

ଅଧିକାଂଶ ବୁଦ୍ଧିମାପକରେ କିଛି ଅଂଶ ଭାଷାଭିତ୍ତିକ (Verbal) ହେବା ସ୍ଥଳେ ଅନ୍ୟ କିଛି ଅଂଶ କାର୍ଯ୍ୟଭିତ୍ତିକ (Performance ବା Non-Verbal) ହୋଇଥାଏ । ସ୍ମରଣ ଶକ୍ତି ଓ ଯୁକ୍ତିଯୁକ୍ତତା ପରି ସାମର୍ଥ୍ୟ ସବୁ ଭାଷାଭିତ୍ତିକ ହେବା ସ୍ଥଳେ ଖଣ୍ଡବିଖଣ୍ଡିତ ଚିତ୍ର ବା ବସ୍ତୁ

ସବୁକୁ ଏକତ୍ର ସଜାଇବା ପରି ଦକ୍ଷତାସବୁ କାର୍ଯ୍ୟଭିତ୍ତିକ ପଦ୍ଧତିରେ ମପାଯାଏ । ଅଳ୍ପ କେତେକ ବୁଦ୍ଧିମାପକରେ ଭାଷାଭିତ୍ତିକ ଅଂଶକୁ ବାଦ୍ ଦିଆଯାଇ କେବଳ କାର୍ଯ୍ୟଭିତ୍ତିକ ପରୀକ୍ଷାସବୁ ରଖାଯାଏ । କୌଣସି ପରିବର୍ତ୍ତନ ନ ଘଟାଇ ସେହି ମୂଳ ମାପକଟିକୁ ବିଭିନ୍ନ ଦେଶରେ ବ୍ୟବହାର କରାଯିବା ପାଇଁ ଏପରି ବ୍ୟବସ୍ଥା କରାଯାଇଥାଏ ।

ପୁଣି ଖୁବ୍ ଅଳ୍ପ ବୟସରୁ (ଏପରିକି ଜନ୍ମର ପରେ ପରେ) ବୁଦ୍ଧିମତ୍ତା ମାପ କରିବା ପାଇଁ ମଧ୍ୟ କେତେକ ମାପକର ପରିକଳ୍ପନା କରାଯାଇଛି । ଅଳ୍ପବୟସର ପିଲାର କାର୍ଯ୍ୟକଳାପ ପର୍ଯ୍ୟବେକ୍ଷଣ କରି ତା'ର ବିକାଶକାଳୀନ ସାମର୍ଥ୍ୟ ସବୁ ଅନୁଧ୍ୟାନ କରି ବିକାଶର ସ୍ତର ସ୍ଥିର କରାଯାଏ । ଏ କ୍ଷେତ୍ରରେ ଏହାକୁ ବୁଦ୍ଧିଅଙ୍କ କୁହାନଯାଇ ବିକାଶ ଅଙ୍କ (Developement Quotient ବା DQ) କୁହାଯାଏ । ମାତ୍ର ଏହି ବିକାଶ ଅଙ୍କର ପଦ୍ଧତି ସମାନ ପ୍ରକାର ଯୁକ୍ତି ଉପରେ ପ୍ରତିଷ୍ଠିତ ।

$$\text{ବିକାଶ ଅଙ୍କ} = \frac{\text{ବିକାଶର ବୟସ}}{\text{ଜନ୍ମଗତ ବୟସ}} \times ୧୦୦$$

ଶୈଶବ ଅବସ୍ଥାରେ ଶିଶୁଟିର ଶାରୀରିକ ଦକ୍ଷତା ଏବଂ ଅନ୍ୟସବୁ ବିକାଶକାଳୀନ କାର୍ଯ୍ୟକଳାପ ଅନୁଧ୍ୟାନ କରି ସେ ସମାଜର ସାଧାରଣ ଶିଶୁମାନଙ୍କ ତୁଳନାରେ କେଉଁ ବୟସ ସ୍ତରରେ ରହିଛି, ତାହା ସ୍ଥିର କରାଯାଇଥାଏ । ଏହା ତାଙ୍କର ବିକାଶଗତ ବୟସ (Developmental) । ଏହାକୁ ଭିତ୍ତି କରି ପୂର୍ବ ସୂତ୍ରର ପ୍ରୟୋଗରେ ବିକାଶ ଅଙ୍କ ନିର୍ଦ୍ଧାରିତ ହୁଏ ।

**ଶିଶୁ ପାଇଁ ପ୍ରଶ୍ନ :** ଏହି ଚିତ୍ରରେ ନିମ୍ନଅଂଶରେ ଥିବା ଛୋଟ ଛୋଟ ଛ'ଟି ଡାଞ୍ଚା ମଧ୍ୟରୁ କେଉଁଟିକୁ ତୁମେ ଉଠାଇ ଆଣି ଉପର ଚିତ୍ରର ଖାଲି ସ୍ଥାନରେ ରଖିଲେ ଉପର ଚିତ୍ରଟି ପୂର୍ଣ୍ଣାଙ୍ଗ ହେବ ?




(ଶିଶୁ ପାଇଁ ବୁଦ୍ଧି ପରୀକ୍ଷାର ଗୋଟିଏ ନମୁନା)

# ଭାଷାଦକ୍ଷତାର ସୂକ୍ଷ୍ମ ଦିଗ

ଭାଷା ଦକ୍ଷତାର ବିକାଶ ମାନବୀୟ ସମ୍ବଳର ଏକ ବିଶିଷ୍ଟ ଦିଗ । ଏ କ୍ଷେତ୍ରରେ ବିଜ୍ଞାନସମ୍ମତ ଗବେଷଣା ବହୁ ଉପାଦେୟ ତଥ୍ୟ ଯୋଗାଇଛି । ତଥାପି ବହୁ ପ୍ରଶ୍ନର ଉତ୍ତର ଏବେ ମଧ୍ୟ ସନ୍ତୋଷଜନକ ପର୍ଯ୍ୟାୟରେ ପହଞ୍ଚି ପାରିନାହିଁ । ନୃ-ବିଜ୍ଞାନୀ, ସମାଜବିଜ୍ଞାନୀ, ମନୋବିଜ୍ଞାନୀ, ସ୍ନାୟୁବିଜ୍ଞାନୀ ଏବଂ ଭାଷାବିଜ୍ଞାନୀଙ୍କ ସମ୍ମିଳିତ ଉଦ୍ୟମ ଏ କ୍ଷେତ୍ରରେ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ପୂର୍ବରୁ ସୂଚନା ଦିଆଯାଇଛି ଯେ ଦୁଇ ବର୍ଷ ବୟସ ପୂର୍ବରୁ ଶିଶୁ ଅର୍ଥପୂର୍ଣ୍ଣ ବାକ୍ୟ କହିବା ଏବଂ ବୁଝିବାର ଦକ୍ଷତା ହାସଲ କରିଥାଏ । ପିତାମାତା ଅନେକ ସମୟରେ ସେମାନଙ୍କର କଥନଶୈଳୀର ବ୍ୟାକରଣ ପ୍ରତି ଦୃଷ୍ଟିଦେଉ ନଥିଲେ ମଧ୍ୟ ଶିଶୁମାନେ ବ୍ୟାକରଣର ଉପଯୋଗ କରିବା ଦେଖାଯାଏ । ଶିଶୁ ସ୍ୱତଃସ୍ଫୁର୍ତ୍ତଭାବରେ କିପରି ଭାଷାଦକ୍ଷତାର ଆହରଣ କରେ, ତାହା ଅନେକଙ୍କୁ ବିସ୍ମିତ କରେ । ବିଶେଷଜ୍ଞମାନଙ୍କୁ ମଧ୍ୟ ଏହା କମ୍ ବିସ୍ମିତ କରିନାହିଁ । ଏ ପରିପ୍ରେକ୍ଷୀର ତିନୋଟି ମୁଖ୍ୟ ତାତ୍ତ୍ୱିକ ଚିନ୍ତାଧାରା ରହିଛି ।

**ଭାଷା-ଆହରଣର ତତ୍ତ୍ୱ**

ଆମେରିକାରେ ବହୁ ବ୍ୟବହାରବାଦୀ ମନୋବିଜ୍ଞାନୀ ବିଚାର କରନ୍ତି ଯେ ଭାଷା ଆହରଣ ଏକପ୍ରକାର ସଂଯୋଗାତ୍ମକ କ୍ରିୟାକଳାପ । ଶିଶୁ ସ୍ୱତଃସ୍ଫୁର୍ତ୍ତ ଭାବରେ ପ୍ରାଥମିକ ଅବସ୍ଥାରେ ଅର୍ଥହୀନ ଅସ୍ପଷ୍ଟ ଶବ୍ଦ ସୃଷ୍ଟିକରେ । ମାତ୍ର ପିତାମାତା ଏବଂ ଅନ୍ୟ ସବୁ ବୟସ୍କ ବ୍ୟକ୍ତିମାନେ ଶିଶୁକୁ ପ୍ରୋତ୍ସାହନ ଦିଅନ୍ତି । ଶିଶୁଟି ଠିକ୍‌ଭାବେ 'ବାବା' କିମ୍ବା 'ମା' କହୁନଥିଲେ ମଧ୍ୟ ବୟସ୍କମାନେ ଏସବୁ ପ୍ରତ୍ୟାଶିତ ଶବ୍ଦମାନଙ୍କର ପାଖାପାଖି ଉଚ୍ଚାରଣ ଶୁଣି ସ୍ମିତ ହସନ୍ତି କିମ୍ବା କୋଳେଇ ନିଅନ୍ତି । ଅନ୍ୟମାନଙ୍କର ଏପରି ବ୍ୟବହାର ଶିଶୁକୁ ପ୍ରୋତ୍ସାହନ ଯୋଗାଏ ଏବଂ ସେ ଅଧିକରୁ ଅଧିକ ଶବ୍ଦ ସୃଷ୍ଟି ପାଇଁ ଯତ୍ନ କରେ । କ୍ରମଶଃ ଉଚ୍ଚାରିତ ଶବ୍ଦସବୁ ସ୍ପଷ୍ଟତର ହୁଏ । ସୁତରାଂ ଏହିପରି ଏକ ଅଭ୍ୟନୁକୂଳନ (Conditioning) ପ୍ରକ୍ରିୟାରେ ପ୍ରୋତ୍ସାହନ (Reinforement ବା Reward) ମାଧ୍ୟମରେ ଶିଶୁର ଭାଷାଗତ ସାମର୍ଥ୍ୟ ବୃଦ୍ଧିପାଏ ବୋଲି କେତେକ ଗବେଷକ ମତ ଦିଅନ୍ତି ।

ଶିଶୁର ଭାଷାଶିକ୍ଷା କ୍ଷେତ୍ରର ପ୍ରୋତ୍ସାହନର ଭୂମିକା ରହିଥିଲେ ମଧ୍ୟ ଏହା ଯେ ମୁଖ୍ୟ କାରଣ, ଏସବୁ ସମର୍ଥନ କରିବାରେ ବିଶେଷ ବାଧା ରହିଛି । ସର୍ବେକ୍ଷଣରୁ ଦେଖାଯାଇଛି ଜଣେ ସାଧାରଣ ବୟସ୍କ ଲୋକ ପ୍ରାୟ ୪୦.୦୦୦ ଶବ୍ଦ ଆହରଣ କରିଥାଏ । ହାଇସ୍କୁଲ ଯୋଗ୍ୟତା ଥିବା ଜଣେ ସାଧାରଣ ଲୋକର ଶବ୍ଦକୋଷ ପରିସର ମଧ୍ୟରେ ପ୍ରାୟ ୮୦.୦୦୦ ଶବ୍ଦ ରହିଥାଏ । ବ୍ୟକ୍ତି ପ୍ରତିବର୍ଷ ପ୍ରାୟ ୫୦୦୦ ନୂତନ ଶବ୍ଦ ନିଜର ଶବ୍ଦ ସମ୍ଭାରରେ ଯୋଗ

କରି ଚାଲିଥାଏ । ଏପରି ଦ୍ରୁତ ସମ୍ପ୍ରସାରଣକୁ କେବଳ ପ୍ରୋତ୍ସାହନ ମାଧ୍ୟମରେ ବୁଝାଇବା ସମ୍ଭବ ନୁହେଁ ।

ଅନ୍ୟ କେତକେ ବିଶେଷଜ୍ଞ ଭାଷା ବିକାଶ କ୍ଷେତ୍ରରେ ଶିଶୁର ଅନୁକରଣ ପ୍ରବଣତା ଏବଂ ଆହରଣ ଯୋଗାଉଥିବା ଶବ୍ଦସବୁକୁ ନୂତନ ପରିପ୍ରେକ୍ଷୀକୁ ସମ୍ପ୍ରସାରିତ କରିବାର ସାମର୍ଥ୍ୟ ଉପରେ ଗୁରୁତ୍ୱ ଦିଅନ୍ତି । ସେମାନେ ଅନ୍ୟମାନଙ୍କର କଥା ଏବଂ କଥୋପକଥନକୁ ଲକ୍ଷ୍ୟ କରନ୍ତି ଏବଂ ଅନୁକରଣ କରନ୍ତି । କେତେକ ସ୍ଥଳରେ ପିତାମାତା ଏବଂ ଶିକ୍ଷକ ଶିକ୍ଷୟତ୍ରୀ ସଂଶୋଧନ କରନ୍ତି । ଫଳରେ ତ୍ରୁଟିପୂର୍ଣ୍ଣ ଭାଷା ଧୀରେ ଧୀରେ ତ୍ରୁଟିହୀନ ହୁଏ । ଭାଷା ଶିକ୍ଷା କ୍ଷେତ୍ରରେ ଅନୁକରଣ (Imitation)ର ଭୂମିକାକୁ ସ୍ୱୀକାର କରାଯାଇଥିଲେ ମଧ୍ୟ ଏହାକୁ ମୁଖ୍ୟ କାରଣର ସ୍ୱୀକୃତି ଦିଆଯାଇନାହିଁ । କିଛି ପରିମାଣର ସମାଲୋଚନା ସତ୍ତ୍ୱେ ଯେଉଁ ତତ୍ତ୍ୱଟିକୁ ସର୍ବାଧିକ ସ୍ୱୀକୃତି ଦିଆଯାଇଛି, ତାହା ହେଉଛି ପ୍ରଖ୍ୟାତ ଭାଷାମନୋବିଜ୍ଞାନୀ ଚମୋସ୍କିଙ୍କ ବିଚାର-ଧାରା ।

ଚମୋସ୍କିଙ୍କ ମତରେ ଶିଶୁର ଭାଷା ଆହରଣ ସାମର୍ଥ୍ୟ ମୁଖ୍ୟତଃ ଜନ୍ମଗତ । ଜନ୍ମସମୟରେ ଶିଶୁ ଏପରି ସାମର୍ଥ୍ୟ ନେଇ ଆସିଥାଏ । ଏପରିକି ଭାଷାର ବ୍ୟାକରଣ ମଧ୍ୟ ଶିଶୁ ମସ୍ତିଷ୍କରେ ମୁଦ୍ରିତ ରହିଥାଏ । ଚମୋସ୍କିଙ୍କ ମତରେ ପ୍ରାୟ ସବୁ ଭାଷାର ବ୍ୟାକରଣ ମଧ୍ୟରେ ସର୍ବଜନୀନ ଉପାଦାନ ରହିଛି ଏବଂ ଏହା ଶିଶୁ ମସ୍ତିଷ୍କରେ ଗଚ୍ଛିତ ଥାଏ । ଅନେକ ସମୟରେପ୍ରାରମ୍ଭିକ ପର୍ଯ୍ୟାୟରେ ପିତାମାତା ଏବଂ ବୟସ୍କ ବ୍ୟକ୍ତିମାନେ ବ୍ୟାକରଣର ପ୍ରୟୋଗ ନକରି କଥା କହୁଥିଲେ ମଧ୍ୟ ଶିଶୁମାନେ ଠିକ୍ ଭାବେ (ବ୍ୟାକରଣ ରକ୍ଷାକରି) କଥା କହିବାର ଦେଖାଯାଏ । ଅବଶ୍ୟ ପ୍ରତି ଭାଷା ପାଇଁ ଉଦ୍ଦିଷ୍ଟ ବ୍ୟାକରଣର କିଛି ଅଂଶ ସମାଜ ଓ ସଂସ୍କୃତି ଭେଦରେ ଭିନ୍ନ ଦେଖାଯାଏ । ଶିଶୁ ବ୍ୟାକରଣର ଏପରି ଅଂଶ ସବୁ ଶିକ୍ଷାକରେ ।

ଚମୋସ୍କି (Chomsky)ଙ୍କ ତତ୍ତ୍ୱର ମୂଲ୍ୟାୟନ କରିବା ପରିପ୍ରେକ୍ଷୀରେ କେତେକ ସମାଲୋଚକ ସାମାଜିକ ପରିବେଶର ଭୂମିକାକୁ ଭାଷା ଆହରଣ କ୍ଷେତ୍ରରେ ଦୋହରାଇଛନ୍ତି । ପରିବେଶର ପ୍ରଭାବ ଥିଲେ ମଧ୍ୟ ଅନ୍ତର୍ନିହିତ ଓ ଜନ୍ମଗତ ସାମର୍ଥ୍ୟସବୁକୁ ଅସ୍ୱୀକାର କରାଯାଇନାହିଁ ।

ଚମୋସ୍କିଙ୍କ ମତବାଦକୁ ଗ୍ରହଣ କଲେ ଏଥିରୁ ସୃଷ୍ଟ ହେଉଥିବା କେତୋଟି ସିଦ୍ଧାନ୍ତକୁ ମଧ୍ୟ ଗ୍ରହଣ କରିବାକୁ ହେବ । ପ୍ରଥମତଃ ପ୍ରଶ୍ନ ଉଠିବ ଯେ ଭାଷାଶିକ୍ଷା ପାଇଁ ଏକ ଚରମ (Critical Period) କାଳ ରହିଛି କି ? ଅନ୍ୟ ଭାଷାରେ କହିଲେ, ଭାଷା ଶିକ୍ଷା ପାଇଁ ବୟସ ସୀମା ସୁନିର୍ଦ୍ଦିଷ୍ଟ କି ? ଆଲୋଚିତ ତତ୍ତ୍ୱ ଅନୁଯାୟୀ ଭାଷା ଶିକ୍ଷାପାଇଁ ୩ ବର୍ଷରୁ ୭ ବର୍ଷ ହେଉଛି ସବୁଠାରୁ ଉପଯୋଗୀ ସମୟ । ଏହାପରେ ମଧ୍ୟ କିଛି ପରିଶ୍ରମରେ ଭାଷା ଶିକ୍ଷା ସହଜ ହୁଏ । ମାତ୍ର ୧୧/୧୨ ବର୍ଷ ପରେ ଭାଷା ଶିକ୍ଷା କଷ୍ଟକର ହୋଇଥାଏ । ଚମୋସ୍କିଙ୍କ ତତ୍ତ୍ୱ ଅନୁଯାୟୀ ଭାଷା ଶିକ୍ଷା କ୍ଷେତ୍ରରେ ମସ୍ତିଷ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଭାଷା ଶିକ୍ଷା କ୍ଷେତ୍ରରେ ୩ ବର୍ଷରୁ ୭ବର୍ଷ ବୟସ ସୀମାକୁ ସମ୍ବେଦୀ କାଳ (Sensitive Period) କହିବାର କାରଣ ଦର୍ଶାଇବା ପୂର୍ବରୁ ଭାଷା ପରିପ୍ରେକ୍ଷୀରେ ମସ୍ତିଷ୍କର କାର୍ଯ୍ୟ ସୂଚାଇବା ପ୍ରାସଙ୍ଗିକ ହେବ ।

## ମସ୍ତିଷ୍କର କାର୍ଯ୍ୟ

ଆମ୍ ମସ୍ତିଷ୍କର ମଧ୍ୟଭାଗରେ କର୍‌ପସ୍ କଲୋସସ୍ ନାମକ ଏକ ବହଳ ସ୍ନାୟୁତନ୍ତୁ ରହିଛି । ଏହା ମସ୍ତିଷ୍କକୁ ବାମ ଗୋଲାର୍ଦ୍ଧ ଏବଂ ଦକ୍ଷିଣ ଗୋଲାର୍ଦ୍ଧ ପରି ଦୁଇଟି ଅଂଶରେ ବିଭକ୍ତ କରୁଛି । ଅବଶ୍ୟ ଗଠନ ଦୃଷ୍ଟିରୁ ଏହି ବହଳ ତନ୍ତୁକୋଷ ମସ୍ତିଷ୍କକୁ ଦୁଇ ଗୋଲାର୍ଦ୍ଧରେ ବିଭାଜିତ କଲେ ମଧ୍ୟ କାର୍ଯ୍ୟ ଦୃଷ୍ଟିରୁ ଦୁଇ ଗୋଲାର୍ଦ୍ଧ ମଧ୍ୟରେ ସଂଯୋଗ ରକ୍ଷା କରେ । ବାମ ଗୋଲାର୍ଦ୍ଧରେ କୌଣସି ସ୍ନାୟୁ କେନ୍ଦ୍ରରେ ସକ୍ରିୟତା ସୃଷ୍ଟି ହେଲେ ଏହି ସମ୍ବେଦନ ମଧ୍ୟଭାଗ ଦେଇ ଦକ୍ଷିଣ ଗୋଲାର୍ଦ୍ଧକୁ ଯାଏ । ସେହିପରି ଦକ୍ଷିଣ ଗୋଲାର୍ଦ୍ଧର କୌଣସି ଅଂଶ ସକ୍ରିୟ ହେଲେ ତାହା ସମ୍ବେଦନ କର୍‌ପସ୍ କଲୋସସ୍ ଦେଇ ବାମ ଗୋଲାର୍ଦ୍ଧକୁ ଯାଏ ।




ସ୍ନାୟୁ ସମ୍ବେଦନ ଗୋଟିଏ ଅଂଶରେ ଆରମ୍ଭ ହୋଇ ସେହି ଗୋଲାର୍ଦ୍ଧରୁ ଅନ୍ୟ ଗୋଲାର୍ଦ୍ଧକୁ ପ୍ରସାରିତ ହୋଇଥାଏ । ଏ ଦୃଷ୍ଟିରୁ ମସ୍ତିଷ୍କ ଏକ ସଂଗଠିତ ଏକକ (Unified Whole) ହିସାବରେ କାର୍ଯ୍ୟକରେ ବୋଲି କୁହାଯିବ । ତଥାପି କାର୍ଯ୍ୟର ଆରମ୍ଭ ଓ ନିୟନ୍ତ୍ରଣ ଦୃଷ୍ଟିରୁ ମସ୍ତିଷ୍କର ଏକ ନିର୍ଦ୍ଦିଷ୍ଟ ଅଂଶ ବିଶେଷ ନିର୍ଦ୍ଦିଷ୍ଟ କାର୍ଯ୍ୟ ପାଇଁ ସଂପୃକ୍ତ, ଏହା ଅବଶ୍ୟ ସ୍ୱୀକାର୍ଯ୍ୟ । ବହୁ ଗବେଷଣା ଓ ପରୀକ୍ଷା ନିରୀକ୍ଷାରୁ ସ୍ପଷ୍ଟ ଜଣାଯାଇଛି ଯେ ମସ୍ତିଷ୍କର ବାମ ଗୋଲାର୍ଦ୍ଧ ମୁଖ୍ୟତଃ ଭାଷାଗତ କାର୍ଯ୍ୟ ସହିତ ସମ୍ପୃକ୍ତ । କଥୋପକଥନ ଏବଂ ଲିଖନ କ୍ରିୟା ମଧ୍ୟ ବାମ ମସ୍ତିଷ୍କ ସହିତ ସଂଶ୍ଳିଷ୍ଟ । ଦକ୍ଷିଣ ମସ୍ତିଷ୍କ ଅଳ୍ପ ପରିମାଣର ଭାଷା ସାମର୍ଥ୍ୟ ସହିତ ଜଡ଼ିତ । ମାତ୍ର ଦକ୍ଷିଣ ମସ୍ତିଷ୍କ ମୁଖ୍ୟତଃ ଢାଞ୍ଚା (Pattern) ସବୁର ପ୍ରତ୍ୟକ୍ଷଣ ସହ ସଂଶ୍ଳିଷ୍ଟ । ବୃତ୍ତ, ତ୍ରିଭୁଜ ଏବଂ ବର୍ଗକ୍ଷେତ୍ର ପରି ଆକାର ଆକୃତିସବୁ ଦକ୍ଷିଣ ମସ୍ତିଷ୍କର କ୍ରିୟାକଳାପ ଫଳରେ ଆମେ ଜାଣିପାରିଥାଉ ।

ଅତି ଭୟାନକ ଭାବରେ ଅପସ୍ମାର (Epilepsy ବା Seizure) ଦର୍ଶାଉଥିବା ରୋଗିମାନଙ୍କ କ୍ଷେତ୍ରରେ ମସ୍ତିଷ୍କ ଦୁଇଭାଗରେ ବିଭକ୍ତ କରୁଥିବା କରପସ୍ କଲୋସସ୍‌କୁ ଶଲ୍ୟଚିକିତ୍ସା ଦ୍ୱାରା ବାହାର କରିଦିଆଯାଏ । ପ୍ରତି ତିନି ମିନିଟ୍‌ରେ ଅପସ୍ମାରର ଶରବ୍ୟ ହେଉଥିବା ଏବଂ ଔଷଧପତ୍ର କାମ କରୁନଥିବା ରୋଗୀ ପାଇଁ ଏପରି ଶଲ୍ୟ ଚିକିତ୍ସା ବ୍ୟତୀତ

ଅନ୍ୟ ଉପାୟ ନଥାଏ । ମାତ୍ର ଏପରି ଶଲ୍ୟ ଚିକିତ୍ସା ଫଳରେ ଅନ୍ୟ ଗୋଟିଏ ଜଟିଳତା ସୃଷ୍ଟିହୁଏ । ମସ୍ତିଷ୍କର ଗୋଟିଏ ଗୋଲାର୍ଦ୍ଧର ସଞ୍ଚରିତ ହେଉଥିବା ସମ୍ବେଦନ ଅନ୍ୟ ଗୋଲାର୍ଦ୍ଧକୁ ଯାଇପାରେ ନାହିଁ । ଏପରି ଦ୍ୱିଖଣ୍ଡିତ ମସ୍ତିଷ୍କ (Split Brain) ଅବସ୍ଥାକୁ ଆଧାର କରି ବିଶେଷଜ୍ଞମାନ ଦୁଇ ଗୋଲାର୍ଦ୍ଧର ପୃଥକ୍ ପୃଥକ୍ କାର୍ଯ୍ୟ ଚିହ୍ନଟ କରିବାରେ ସାମର୍ଥ ହୋଇଛନ୍ତି । ରୋଜର ସ୍ପେରୀ ନାମକ ଜଣେ ଚିକିତ୍ସାବିଜ୍ଞାନୀ ଏଥିପାଇଁ ନୋବେଲ ପୁରସ୍କାର ମଧ୍ୟ ପାଇଛନ୍ତି ।

ମସ୍ତିଷ୍କର ଦୁଇଟି ଗୋଲାର୍ଦ୍ଧ ମଧ୍ୟରୁ ବାମ ଗୋଲାର୍ଦ୍ଧଟି ଆଘାତପ୍ରାପ୍ତ ହେଲେ ଭାଷାଗତ ଅକ୍ଷମତା ସୃଷ୍ଟିହୁଏ । ଆଘାତର ପରିମାଣ ଖୁବ୍ ବେଶୀ ହୋଇଥିଲେ ପ୍ରାୟ ପୁରାପୁରି ଅକ୍ଷମତା ଦେଖାଯାଏ । ଭିନ୍ନ ଭିନ୍ନ ଅକ୍ଷର (ଯଥା-'ଗ' ଏବଂ 'ଛ') ଦେଖାଇଲେ ଅକ୍ଷର ଚିହ୍ନିବାରେ ଅସୁବିଧା ହୁଏ ନାହିଁ । ଲକ୍ଷ୍ୟ କରିବାର କଥା ଯେ ଅକ୍ଷର ଚିହ୍ନିବା କାର୍ଯ୍ୟ ହେଉଛି ଢାଞ୍ଚା (ସରଳ ରେଖା, ବକ୍ରରେଖା ଏବଂ ବୃତ୍ତ ଇତ୍ୟାଦି) ପ୍ରତ୍ୟକ୍ଷଣ । ଏପରି ପ୍ରତ୍ୟକ୍ଷଣ ଦକ୍ଷିଣ ଗୋଲାର୍ଦ୍ଧର କାର୍ଯ୍ୟ ହୋଇଥିବାରୁ ବାମ ଗୋଲାର୍ଦ୍ଧ ଆଘାତ ପ୍ରାପ୍ତ ଥାଇ ମଧ୍ୟ ଏସବୁ କାର୍ଯ୍ୟ ହୋଇଥାଏ । ମାତ୍ର 'ଗ' ଓ 'ଛ'କୁ ମିଶାଇ 'ଗଛ' ଶବ୍ଦଟି ଉଚ୍ଚାରଣ କରିପାରିଲେ ମଧ୍ୟ ଏହାର ଅର୍ଥ ଜାଣିବା ସମ୍ଭବ ହୁଏ ନାହିଁ । ଅବଶ୍ୟ ଏହାର ଅର୍ଥ ପଚରାଗଲେ ବେଳେ ବେଳେ ଶିଶୁ (କିମ୍ବା ବ୍ୟକ୍ତି ମଧ୍ୟ) "ଫୁଲ"କି "ଫଳ" କହିପାରେ । ଏହାର କାରଣ ହେଉଛି ଯେ, ଦକ୍ଷିଣ ମସ୍ତିଷ୍କରେ ଅଳ୍ପମାତ୍ରାରେ ଭାଷାଗତ କାର୍ଯ୍ୟ ରହିଥିବାରୁ ଏପରି ସମ୍ପର୍କିତ ଅର୍ଥ (ଯଥା-ଗଛ ସ୍ଥାନରେ ଫୁଲ କିମ୍ବା ଫଳ କିମ୍ବା ଶାଖା) କହିପାରେ । ମାତ୍ର ବାମ ଗୋଲାର୍ଦ୍ଧ ଆଘାତ ପ୍ରାପ୍ତ ଥିବାରୁ ପୂର୍ଣ୍ଣ ଭାଷାଗତ କ୍ଷମତା ପ୍ରକାଶିତ ହୋଇ ନଥାଏ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ମସ୍ତିଷ୍କର ତ୍ରୁଟିବିଚ୍ୟୁତି ନଥାଇ ଏବଂ ଶିଶୁର ବୁଦ୍ଧିମତ୍ତା (Intelligence) ଏବଂ ଅଭିପ୍ରେରଣା (Motivation) ବିପର୍ଯ୍ୟସ୍ତ ନହୋଇ ମଧ୍ୟ ଶିଶୁ କେତେକ ସ୍ଥଳରେ ଶିକ୍ଷାଗତ ଅକ୍ଷମତା (Learning Disability) ବିଶେଷ କରି ଭାଷାଗତ ଅକ୍ଷମତା (Dyslexia) ଦର୍ଶାଏ । ମାତ୍ର ମସ୍ତିଷ୍କର କ୍ଷତି ଏବଂ ଆଘାତରୁ ସୃଷ୍ଟି ହେଉଥିବା ଭାଷାଗତ ଅକ୍ଷମତା ମଧ୍ୟ ବେଳେବେଳେ ଦେଖାଯାଏ । ଏହାକୁ ଆହରଣ କରାଯାଇଥିବା ଭାଷାଗତ ଅକ୍ଷମତା (Acquired dyslexia) କୁହାଯାଏ ।

ପୂର୍ବରୁ ସୂଚନା ଦିଆଯାଇଛି ଯେ, ଦୁଇ ତିନିବର୍ଷର ବୟସ ସମୟକୁ ଭାଷା ଶିକ୍ଷାର ସାମର୍ଥ୍ୟ ଏକ ନୂଆ ମୋଡ଼ ନିଏ । ଏହି ସିଦ୍ଧାନ୍ତଟି ମସ୍ତିଷ୍କର ବିକାଶ ସହିତ ସଂଶ୍ଳିଷ୍ଟ । ପରସ୍ପରର ନିକଟବର୍ତ୍ତୀ ଦୁଇ ସ୍ନାୟୁ ମଧ୍ୟରେ ଥିବା ସ୍ନାୟୁସନ୍ଧି (Synapse)ର ବିକାଶର ଗତି ଲାଗି ରହିଥାଏ ଏବଂ ଦୁଇବର୍ଷ ବୟସରେ ଏହି ବିକାଶଗତ ସର୍ବାଧିକ ହୁଏ । ପୁନଶ୍ଚ ଏହି ବିକାଶଗତି କମିବାକୁ ଲାଗେ ଏବଂ ଦଶ ବର୍ଷରୁ ପନ୍ଦର ବର୍ଷ ବୟସ ମଧ୍ୟରେ ଏହା ସର୍ବନିମ୍ନ ସ୍ତରରେ ପହଞ୍ଚେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ମସ୍ତିଷ୍କରେ ଗୋଟିଏ ସ୍ନାୟୁକୋଷରୁ ଅନ୍ୟ ସ୍ନାୟୁକୋଷକୁ ସମ୍ବେଦନ ସଞ୍ଚରିତ ହୋଇଥାଏ । ଏ କ୍ଷେତ୍ରରେ ଦୁଇ ସ୍ନାୟୁକୋଷ ମଧ୍ୟରେ ରହିଥିବା ସ୍ନାୟୁସନ୍ଧି (Synapse) ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥାଏ । ଏ ଦୃଷ୍ଟିରୁ ସ୍ନାୟୁସନ୍ଧିର ଶକ୍ତି ଭାଷା କ୍ଷମତାକୁ ପ୍ରଭାବିତ କରିବା ସ୍ୱାଭାବିକ ।

## ସମାର୍ଥ୍ୟର ରୂପରେଖ

ଭାଷାଗତ ବିକାଶ ବିଭିନ୍ନ କ୍ଷେତ୍ରରେ ପ୍ରକାଶ୍ୟ ରୂପନିଏ । ଶିଶୁର ଶବ୍ଦ ସମ୍ଭାର (Vocabulary) ଆଶାତୀତ ଭାବରେ ବୃଦ୍ଧିପାଏ । ପ୍ରାକ୍-ବିଦ୍ୟାଳୟ ସ୍ତର ତୁଳନାରେ ଶିଶୁ ବ୍ୟବହାର କରୁଥିବା ଶବ୍ଦର ସଂଖ୍ୟା କେବଳ ସ୍କୁଲ ସ୍ତରରେ ବୃଦ୍ଧି ପାଏନାହିଁ । ଏଗୁଡ଼ିକର ଗୁଣାତ୍ମକ ଦିଗରେ ମଧ୍ୟ ପରିବର୍ତ୍ତନ ଆସେ । ଗୋଟିଏ ପରୀକ୍ଷା କରାଯାଇପାରେ । ଶିଶୁକୁ ଗୋଟିଏ ଶବ୍ଦ ଶୁଣିବା ମାତ୍ରେ ଶିଶୁ ଅନ୍ୟ ଗୋଟିଏ ଶବ୍ଦ ପ୍ରକାଶ କରିବାର କାର୍ଯ୍ୟ କରିବାର ନିର୍ଦ୍ଦେଶ ଦିଆଯାଇପାରେ । ଏ କ୍ଷେତ୍ରରେ ''କୁକୁର'' ଶବ୍ଦଟିଏ କହିବା ମାତ୍ରେ ପ୍ରାକ୍-ବିଦ୍ୟାଳୟ ସ୍ତରର ଶିଶୁ ''କଳା'' କିମ୍ୱା ''ଭୁକେ'' ବୋଲି କହିବ । ମାତ୍ର ସ୍କୁଲକୁ ଯିବା ଆରମ୍ଭ କରିଥିବା ପିଲାଟି ଏପରି ସ୍ଥଳେ ''ବିରାଡ଼ି''କହିବାର ସମ୍ଭାବନା ଅଧିକ । ଲକ୍ଷ୍ୟ କରିବାର କଥା ଯେ ସ୍କୁଲ ବୟସର ପିଲାମାନେ ପରିପ୍ରେକ୍ଷୀ (Context) ପ୍ରତି ଅଧିକ ସଚେତନ ରୁହନ୍ତି । ବିଭାଗୀକରଣର ଧାରଣା ଧୀରେ ଧୀରେ ଶକ୍ତିଶାଳୀ ହେଉଥିବାରୁ ବିଭିନ୍ନ ଦଳ ସମ୍ପର୍କରେ ଧାରଣା ବୃଦ୍ଧି ପାଏ ।

ସ୍କୁଲ ବୟସର ପିଲାମାନଙ୍କ ଭାଷାରେ ବ୍ୟାକରଣର ମଧ୍ୟ ପ୍ରଭାବ ପରିଲକ୍ଷିତ ହୁଏ । ଅର୍ଥପୂର୍ଣ୍ଣ ବାକ୍ୟ ପ୍ରକାଶ କରିବା ଅଧିକରୁ ଅଧିକ ପ୍ରକାଶ୍ୟ ରୂପ ନିଏ । ''ବୃହତ୍ତର'' ଏବଂ ''ବୃହତ୍ତମ'' ପରି ତୁଳନାତ୍ମକ ଶବ୍ଦସବୁର ପ୍ରୟୋଗ ଦେଖାଯାଏ । କାରକ ଓ ବିଭକ୍ତିର ସଫଳ ପ୍ରୟୋଗ ଲକ୍ଷ୍ୟ କରାଯାଏ । ବାକ୍ୟସବୁ ଅଧିକ ଜଟିଳ ଓ ସୂକ୍ଷ୍ମତର ହୁଏ ।

ସ୍କୁଲରେ ଅଧ୍ୟୟନ ଆରମ୍ଭ କରିବା ପରେ ପିଲାମାନଙ୍କର ବାକ୍‌ରୀତିର ଆଉ ଏକ ବୈଭବ ଲକ୍ଷ୍ୟ କରାଯାଏ । ତାହା ହେଉଛି ରୂପକ (Mataphor)ର ପ୍ରୟୋଗ । ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁ କିଛି ପରିମାଣରେ ରୂପକ ବ୍ୟବହାର କରୁଥିଲେ ମଧ୍ୟ ଦୁଇ ସ୍ତର ମଧ୍ୟରେ ସ୍ପଷ୍ଟ ପାର୍ଥକ୍ୟ ରହିଥାଏ । ଗୋଟିଏ ଶବ୍ଦକୁ ଆକ୍ଷରିକ ଅର୍ଥରେ ବ୍ୟବହାର ନ କରି ଭିନ୍ନ ଅର୍ଥରେ ବ୍ୟବହାର କରିବା ହେଉଛି ରୂପକର ପ୍ରୟୋଗ । ''ପର୍ବତ ପରି ଭାଇଟି ମୋ ସହିତ ରହିଛି ''- ଏହା 'ପର୍ବତ' ରୂପକର ଏକ ସୁନ୍ଦର ପ୍ରୟୋଗ । ବିଶ୍ଳେଷଣ କଲେ ଦେଖାଯିବ ଯେ ପ୍ରାକ୍-ବିଦ୍ୟାଳୟ ସ୍ତରରେ ଥିବା ଶିଶୁଟି 'ପର୍ବତ' ଶବ୍ଦର ପ୍ରୟୋଗକୁ ଏକ ଭୌତିକ ଅଥରେ ଗ୍ରହଣ କରିବ । ''ଭାଇ ବସିଥିବା ସ୍ଥାନରୁ ଘୁଞ୍ଚେ ନାହିଁ''-ହୁଏତ ଏହି ଅର୍ଥ ସେ ବୁଝିବ । ''ଭାଇକୁ ଚିମୁଟିଲେ ହାତକୁ କଷ୍ଟ ଲାଗିବ ନାହିଁ'' - ଏହା ମଧ୍ୟ ସେ ଅର୍ଥ କରିପାରେ । ମାତ୍ର ସ୍କୁଲ ବୟସର ପିଲାଟି ଅର୍ଥ କରିବ ଯେ ତାର ଭାଇ ସ୍ଥିର ଓ ଅବିଚଳିତ । ''ପର୍ବତ'' ଶବ୍ଦଟି ବ୍ୟକ୍ତିତ୍ୱର ଏକ ଦିଗ (ସ୍ଥିରତା) ସୂଚାଉଛି, ଏହା ସେ ବୁଝିବ । ମୋଟ ଉପରେ ସ୍କୁଲ ବୟସର ଶିଶୁ ରୂପକସବୁକୁ ପ୍ରୟୋଗ କଲାବେଳେ ପରିପ୍ରେକ୍ଷୀ ପ୍ରତି ସଚେତନ ରହିଥାଏ । ସେ ''ପ୍ରଜାପତି'' ପରି ସୁନ୍ଦର ହୋଇଛି । ଏହା କହିବା ସମୟରେ ସ୍କୁଲ ବୟସର ପିଲା ଦୁଇଟି ଅର୍ଥର ସୂଚନା ଦେଇପାରେ । ''ପ୍ରଜାପତି'' କୁହାଯାଉଥିବା ପିଲାଟି ନୂତନ ପୋଷାକ ପିନ୍ଧିଥିଲେ 'ପ୍ରଜାପତି' ରୂପକର ପ୍ରୟୋଗ ତା'ର ସୁନ୍ଦର ପୋଷାକ ପରିପାଟୀକୁ ବୁଝାଇବ । ଅନ୍ୟ ପକ୍ଷରେ ପିଲାଟି ଅସ୍ଥିର ହୋଇ ଚଞ୍ଚଳତା ଦର୍ଶାଉଥିଲେ 'ପ୍ରଜାପତି' ଶବ୍ଦଟି

ତା'ର ଧୈର୍ଯ୍ୟହୀନତାକୁ ବୁଝାଇବ । ସୁତରାଂ ପରିପ୍ରେକ୍ଷୀ ଉପରେ ନିର୍ଭର କରି ସୂକ୍ଷ୍ମ ଅର୍ଥରେ ରୂପକସବୁର ବ୍ୟବହାର ଏହି ସ୍କୁଲଜୀବନ ପର୍ଯ୍ୟାୟରେ ବିକଶିତ ହୁଏ ।

ଏ ସ୍ତରରେ (ଛ'ବର୍ଷରୁ ଏଗାର ବାର ବର୍ଷ ମଧ୍ୟରେ) ଭାଷାଗତ ସାମର୍ଥ୍ୟ ବିକାଶ କ୍ଷେତ୍ରରେ ଅନ୍ୟ ଏକ ସୂକ୍ଷ୍ମତମ ଦିଗ ହେଉଛି ଭାଷାତୀତ ସଚେତନତା (Metalinguistic awareness) ମନେକରାଯାଉ ଗୋଟିଏ ପିଲାର ଆଉ ଗୋଟିଏ ପିଲାକୁ କହୁଛି-"ତୁ ମୋ ଗୋଡ଼ ଆଙ୍ଗୁଠି ଉପରେ ଠିଆ ହୋଇଛୁ କି" ? ବର୍ତ୍ତମାନ ଏଥିରେ କି ଅର୍ଥ ପ୍ରକାଶ ପାଉଛି ? ଠିଆ ହୋଇଥିବା ପିଲାଟି ପ୍ରାକ୍‌ବିଦ୍ୟାଳୟ ସ୍ତରର ଶିଶୁ ହୋଇଥିଲେ ସେ ହୁଏତ ବୁଝିବ ଯେ ସେ ଅନ୍ୟର ଗୋଡ଼ ଆଙ୍ଗୁଠି ଉପରେ ଠିଆ ହୋଇଛି । ସେ "ହଁ" ବୋଲି କହି ନିଷ୍କ୍ରିୟ ରହିବ । ମାତ୍ର ବଡ଼ ପିଲାଟି ବୁଝିବ ଯେ, ସେ ଗୋଡ଼ଟିକୁ କାଢ଼ିନେବାପାଇଁ ଅନୁରୋଧ କରାଯାଉଛି । ସେ "ଓହୋ" କହି ଦୁଃଖପ୍ରକାଶ କରି ଗୋଡ଼ଟିକୁ କାଢ଼ିନେବ । ଏହା ଭାଷାତୀତ ସଚେତନତା । ଆକ୍ଷରିକ ଭାବରେ ଗୋଡ଼ କାଢ଼ିନେବା ପାଇଁ କୁହାଯାଇନଥିଲେ ମଧ୍ୟ ଏହା ବାକ୍ୟଟିର ଅନ୍ତରାଳରେ ପ୍ରଚ୍ଛନ୍ନ ଭାବରେ ରହିଛି । ସୁତରାଂ ପ୍ରଚ୍ଛନ୍ନ ଭାବରେ ଲୁଚିଥିବା ଅର୍ଥଟିକୁ ପ୍ରତ୍ୟକ୍ଷଣ କରିବାର ସାମର୍ଥ୍ୟ ସ୍କୁଲ ବୟସରେ ଆସିଥାଏ ।

ପରିଶେଷରେ କୁହାଯିବ ଯେ, ପିଲାମାନଙ୍କ ସହିତ ଭାଷା ମାଧ୍ୟମରେ ଯୋଗାଯୋଗ କରିବା ସମୟରେ ଏକ ସୂକ୍ଷ୍ମଦିଗ ପ୍ରତି ସଚେତନ ରହିବା ବୟସ୍କମାନଙ୍କର କର୍ତ୍ତବ୍ୟ । ଅନେକ ସମୟରେ ଆମେ ଧରିନେଉ ଯେ ଶିଶୁମାନେ ଯାହା ଆମଠାରୁ ଶୁଣୁଛନ୍ତି, ତାହା ବୁଝୁଛନ୍ତି । ମାତ୍ର ଏହା ଠିକ୍ ନୁହେଁ । ଶିଶୁମାନେ ଯାହା ଶୁଣନ୍ତି ବା ଦେଖନ୍ତି,ତାହା ସବୁ ଠିକ୍‌ଭାବେ ବୁଝି ନଥାନ୍ତି । ପୁଣି ସେମାନେ ଯେ ବୁଝି ନାହାନ୍ତି ଏପରି ସଚେତନତା ମଧ୍ୟ ସେମାନଙ୍କର ନଥାଏ । ବୟସର ବୃଦ୍ଧି ସହିତ ଏପରି ବୁଝିବା ସାମର୍ଥ୍ୟ ଆସେ ।

ଗୋଟିଏ ପରୀକ୍ଷା ଦ୍ୱାରା ଏହାକୁ ସ୍ପଷ୍ଟ କରାଯାଇପାରେ । ପ୍ରାକ୍-ବିଦ୍ୟାଳୟ ସ୍ତରର ଶିଶୁ ଏବଂ ସ୍କୁଲ ଯାଉଥିବା (ନ' ଦଶ ବର୍ଷର) ଶିଶୁମାନଙ୍କର ଦୁଇଟି ଦଳ ନିଆଗଲା । ସେମାନଙ୍କୁ କୁହାଗଲା ଯେ ପିଲାମାନଙ୍କର ଅନ୍ୟ ଗୋଟିଏ ଦଳ ନିର୍ମାଣ କରିଥିବା ଗୋଟିଏ କାଠ ମଡ଼େଲ ସେମାନେ ନକଲ କରିବେ । କାଠ ମଡ଼େଲଟି ସେମାନେ ଆଖିରେ ଦେଖିବେ ନାହିଁ । କେବଳ ତିଆରି କରିଥିବା ପିଲାମାନଙ୍କ ମଧ୍ୟରୁ ଜଣକର ବର୍ଣ୍ଣନା ଶୁଣି ମଡ଼େଲଟି ନିର୍ମାଣ କରିବାକୁ ହେବ । ଏପରି ନିର୍ଦ୍ଦେଶ ଦେବା ପରେ ପିଲାଟି ମଡ଼େଲ କିପରି କରିବାକୁ ହେବ, ତାହାର ବର୍ଣ୍ଣନା ଆରମ୍ଭ କଲା । କହିବା ଅନାବଶ୍ୟକ ଯେ ନିର୍ମାଣକାରୀ ପିଲାଟି ମଧ୍ୟ ପରିପକ୍ୱ ବୟସର ହୋଇନଥିବାରୁ ବର୍ଣ୍ଣନାରେ ତ୍ରୁଟି ଏବଂ ଅସମ୍ପୂର୍ଣ୍ଣତା ରହିବା ସ୍ୱାଭାବିକ ।

ବର୍ଣ୍ଣନା ଶୁଣି ଶୁଣି ଅଳ୍ପ ବୟସର ଓ ବେଶୀ ବୟସର ପିଲାମାନେ କାର୍ଯ୍ୟ କରୁଥିଲେ । ସେମାନେ ପୃଥକ୍ ପୃଥକ୍ ଭାବେ କାର୍ଯ୍ୟ କରୁଥିଲେ । କାର୍ଯ୍ୟ ଶେଷ ହେବା ପରେ ସେମାନଙ୍କୁ ପଚରାଗଲା -"ତମର ମଡ଼େଲଟି ପୁରାପୁରି ଅବିକଳ ମୂଳ ମଡ଼େଲ ସହିତ ସମାନ ହୋଇଥିବ କି ?"

ଦେଖାଯିବ ଯେ, ଅଳ୍ପ ବୟସର (ପ୍ରାକ୍-ବିଦ୍ୟାଳୟ ସ୍ତରର) ଶିଶୁମାନେ ମଡ଼େଲଟିକୁ ଅବିକଳ ନକଲ କରି ନାହାନ୍ତି କି ନିଜ କାର୍ଯ୍ୟର ତ୍ରୁଟିବିଚ୍ୟୁତି ସମ୍ପର୍କରେ ସଚେତନ ନାହାନ୍ତି । ସୂଚନାସବୁ ଅସମ୍ପୂର୍ଣ୍ଣ ଓ ତ୍ରୁଟିଯୁକ୍ତ ଏବଂ ସେମାନେ ମଧ୍ୟ ଠିକ୍‌ଭାବେ ବୁଝିପାରି ନାହାଁନ୍ତି, ଏପରି ସଚେତନତା ନାହିଁ । ଅନ୍ୟ ପକ୍ଷରେ ସ୍କୁଲ ବୟସର ପିଲାମାନେ ଉତ୍ତର ଦେବେ ଯେ

ନକଲ କାର୍ଯ୍ୟ "ଅସମ୍ପୂର୍ଣ୍ଣ" ହୋଇଥିବା ସ୍ୱାଭାବିକ କାରଣ ମଡ଼େଲ ନିର୍ମାଣ ସମ୍ପର୍କୀୟ ସୂଚନାଗୁଡ଼ିକ ସ୍ପଷ୍ଟ ଓ ନିର୍ଭୁଲ ନଥିଲା । ଏହି ପରୀକ୍ଷାର ଫଳାଫଳରୁ ସ୍ପଷ୍ଟ ସୂଚିତ ହେଉଛି ଯେ ପ୍ରାକ୍‌ବିଦ୍ୟାଳୟର ଛୋଟ ପିଲାମାନେ ଦେଖୁଥିବା, ଶୁଣିଥିବା ଏବଂ ପଢୁଥିବା ବିଷୟସବୁ ଠିକ୍ ଭାବେ ବୁଝିନଥାନ୍ତି । ସେମାନେ ବୁଝି ନାହାନ୍ତି, ଏପରି ସଚେତନତା ମଧ୍ୟ ସେମାନଙ୍କର ନଥାଏ । ସେମାନେ ଯେ ଠିକ୍‌ଭାବେ ବୁଝିଛନ୍ତି, ଏ ବିଷୟରେ ସେମାନେ ନିଜେ ନିଜେ ସ୍ଥିରନିଶ୍ଚିତ ଥାଆନ୍ତି । ସୁତରାଂ ପିତାମାତା, ଶିକ୍ଷକ, ଶିକ୍ଷୟିତ୍ରୀ ଏବଂ ଅନ୍ୟସବୁ ବୟସ୍କ ବ୍ୟକ୍ତିମାନେ କିଛି କହିବା ସମୟରେ କିମ୍ବା ସେମାନଙ୍କ ପାଖରେ ପଢ଼ିବା ସମୟରେ ମଝିରେ ମଝିରେ ପରୀକ୍ଷା କରିନେବାର କଥା ଯେ ପିଲାମାନେ ଠିକ୍ ଭାବରେ ବୁଝିଛନ୍ତି । ଅବଶ୍ୟ ସ୍କୁଲଯିବା ଆରମ୍ଭ ହେବା ପରେ ଧୀରେ ଧୀରେ ଏପରି ସାମର୍ଥ୍ୟର ବିକାଶ ସଂଘଟିତ ହୁଏ ।

## ସହାୟକ ପରାମର୍ଶ

*୧. ଶିଶୁର ଭାଷାଗତ ବିକାଶ ଅନେକାଂଶରେ ଜନ୍ମଗତ ଏବଂ ସ୍ୱତଃସ୍ଫୂର୍ତ୍ତ । ସୁତରାଂ ଅନୁକୂଳ ପରିପ୍ରେକ୍ଷୀରେ ଏହା ଆଶାତୀତ ଭାବରେ ବିକଶିତ ଏବଂ ସମ୍ପ୍ରସାରିତ ହୋଇଥାଏ ।*

*୨. ଶିଶୁର ଭାଷାଗତ ବିକାଶରେ ମସ୍ତିଷ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । କେତେକ ମସ୍ତିଷ୍କଗତ ପରିବର୍ତ୍ତନ ଯୋଗୁଁ ଶିଶୁର ତିନି ବର୍ଷରୁ ସାତ ବର୍ଷ ମଧ୍ୟରେ ଭାଷା ବ୍ୟବହାର କ୍ଷମତା ଖୁବ୍ ବେଶୀ ଥାଏ ବୋଲି କୁହାଯିବ ।ଏ ଦୃଷ୍ଟିରୁ ଭାଷା ଶିକ୍ଷା ପାଇଁ ତିନିବର୍ଷରୁ ସାତବର୍ଷ ଖୁବ୍ ଉପଯୋଗୀ ଏବଂ ସାତବର୍ଷରୁ ଏଗାର ବାର ବର୍ଷ ଉପଯୋଗୀ ବୋଲି କୁହାଯିବ । ଏହି ସମୟରେଖାକୁ ସମ୍ବେଦୀ କାଳ (Sensitive Period) କୁହାଯାଏ ।*

*୩. ସମ୍ବେଦୀ କାଳ ମଧ୍ୟରେ ମାତୃଭାଷା ସ୍ୱତଃ ବିକଶିତ ହୁଏ । ଏହା ବ୍ୟତୀତ ଅନ୍ୟ ଭାଷା ଶିକ୍ଷା କରାଗଲେ କୌଣସି ଅସୁବିଧା ନାହିଁ । ଏକାଧିକ ଭାଷା ଶିକ୍ଷା ପାଇଁ ଏ ସମୟ-ସୀମାର ପୂର୍ଣ୍ଣ ଉପଯୋଗ କରାଯାଇପାରେ । ଏଗାର ବାର ବର୍ଷ ପରେ ଭାଷା ଶିକ୍ଷା ଅପେକ୍ଷାକୃତ କଷ୍ଟକର ହୁଏ ।*

*୪. ସ୍କୁଲ ବୟସରେ ପିଲାର ଶବ୍ଦ ସମ୍ଭାର ବ୍ୟାକରଣ ଜ୍ଞାନ, ବାକ୍ୟରୀତି, ରୂପକ ପ୍ରୟୋଗ ଏବଂ ଭାଷାତୀତ ସଚେତନତା (ଆକ୍ଷରିକ ଅର୍ଥର ଊର୍ଦ୍ଧ୍ୱକୁ ଯାଇ ପ୍ରଚ୍ଛନ୍ନ ଅର୍ଥ ବୁଝିପାରିବାର ଦକ୍ଷତା) ବିକଶିତ ହୁଏ । ଗଳ୍ପ ଶ୍ରବଣ, ପ୍ରତି କଥନ, ଶ୍ରବଣ, ମନନ, ଅଧ୍ୟୟନକୁ ପ୍ରୋତ୍ସାହନ ଦେଇ ଶିଶୁର ଭାଷା ଦକ୍ଷତାକୁ ବିକଶିତ କରନ୍ତୁ ।*

*୫. ଶିଶୁର କଥନ ଓ ଲିଖନ ପ୍ରକ୍ରିୟା ସମୟରେ ଯଥେଷ୍ଟ ପରିମାଣରେ ଫଳାଫଳ (Knowledge of Results) ଜଣାନ୍ତୁ । ଶିଶୁର ଜ୍ଞାନ ଓ ଲିଖନ ଶୈଳୀର କେଉଁ ସ୍ଥାନରେ ଭାଷାଗତ ତ୍ରୁଟି ରହିଛି, ଶିଶୁ ସେ ସମ୍ପର୍କରେ ପ୍ରତ୍ୟକ୍ଷ ସୂଚନା ଲାଭ କରୁ । ସେହିପରି ଉନ୍ନତ ଶୈଳୀ ପ୍ରଦର୍ଶନ କରିବା ସମୟରେ ସେ ଜାଣିବାର ସୁଯୋଗ ପାଉ ଏବଂ ପ୍ରୋତ୍ସାହିତ (Rewarded) ହେଉ ।*

# ପଠନ ସାମର୍ଥ୍ୟର ବିକାଶ

ସାମଗ୍ରିକ ଭାଷାଗତ ସାମର୍ଥ୍ୟର ଚାରୋଟି ଉପାଦାନ ହେଉଛି ବୁଝିବା, କହିବା, ପଢ଼ିବା ଏବଂ ଲେଖିବାର କ୍ଷମତା । ଶିଶୁ ପ୍ରାରମ୍ଭିକ ପର୍ଯ୍ୟାୟରେ ବୁଝିବା ଏବଂ କହିବାର କ୍ଷମତା ଆହରଣ କରେ । ପୂର୍ବରୁ ସୂଚନା ଦିଆଯାଇଛ ଯେ, ଦୁଇବର୍ଷ ବୟସ ବେଳକୁ ମସ୍ତିଷ୍କର ବିକାଶ ବିଶେଷ କରି ସ୍ନାୟୁସନ୍ଧିସବୁର ସମୃଦ୍ଧିକରଣ ଭାଷା ଆହରଣରେ ବିଶେଷ ସହାୟକ ହୁଏ । ଏଥି ସହିତ ଶିଶୁର ସ୍ମରଣ ସାମର୍ଥ୍ୟ ବୃଦ୍ଧି ପାଇଥିବାରୁ ଭାଷା ସାମର୍ଥ୍ୟର ବିକାଶ ତ୍ୱରାନ୍ୱିତ ହୁଏ ।

କହିବା ଏବଂ ବୁଝିବାର ସାମର୍ଥ୍ୟରୁ ଶିଶୁ ଅନ୍ୟ ଏକ ଦକ୍ଷତାକୁ ଗଢ଼ିକରେ । ତାହା ହେଉଛି ପଠନର ଦକ୍ଷତା । ଏହାର ଦୁଇଟି ଦିଗ ରହିଛି । ପ୍ରଥମଟି ହେଉଛି ବାକ୍ୟରେ ରହିଥିବା ଅକ୍ଷର ଓ ଶବ୍ଦସବୁକୁ ଚିହ୍ନିବା ଏବଂ ସେଗୁଡ଼ିକର ଉଚ୍ଚାରଣ କରିବା । ଦ୍ୱିତୀୟଟି ହେଉଛି ଶବ୍ଦ, ବାକ୍ୟ, ଅନୁଚ୍ଛେଦ ଏବଂ ସମଗ୍ର ପଠନର ସାମଗ୍ରିର ଅର୍ଥ ଠିକ୍‌ରୂପେ ବୁଝିବାର ଦକ୍ଷତା । ଏହା ଏକ ସାଧାରଣ କଥା ଯେ ଠିକ୍‌ରୂପେ ପଢ଼ିନପାରି ମଧ୍ୟ କେତେକ ପିଲା ବୁଝିପାରନ୍ତି । ଏପରି ସନ୍ଦେହ ଥିଲେ ଅନ୍ୟ ବ୍ୟକ୍ତି କିମ୍ବା ଟେପରେକର୍ଡ ସାହାଯ୍ୟରେ ପଢ଼ାଯାଉଥିବା ଅଂଶ ବିଶେଷକୁ ପିଲାଟି ବୁଝିପାରୁଛି କି ନାହିଁ, ତାହାର ପରୀକ୍ଷା କରାଯାଇପାରେ । କେତେକ ସ୍ଥଳରେ ତ୍ରୁଟିପୂର୍ଣ୍ଣ ପଠନ କିମ୍ବା ଅତିଧୀର ପଠନ ଫଳରେ ଶିଶୁ ବୁଝିପାରିନଥାଏ । ମାତ୍ର ଅନ୍ୟ ବ୍ୟକ୍ତି ଠିକ୍ ଭାବରେ ପଢ଼ିଲେ ସେ ବୁଝିପାରେ । ଏପରି ଶିଶୁମାନେ ଭାଷାଗତ ପଠନ ସାମର୍ଥ୍ୟ ଦୃଷ୍ଟିରୁ ଅକ୍ଷମ (Dyslexic)। ସାଧାରଣ ବିଦ୍ୟାଳୟର ଶ୍ରେଣୀଗୃହରେ ଏମାନଙ୍କ ସଂଖ୍ୟା ୧ରୁ ୩ ପ୍ରତିଶତ ହୋଇଥିବାର ଆକଳନ କରାଯାଇଛି ।

ବିଭିନ୍ନ କାରଣରୁ ଶିଶୁମାନେ ଠିକ୍ ରୂପେ ପଢ଼ିବାର ଦକ୍ଷତା ହାସଲ କରିନଥାନ୍ତି । ଅନେକ ସ୍ଥଳରେ କିପରି ପଢ଼ିବାକୁ ହୁଏ, ତାହାର ତାଲିମ ଦିଆଯାଉ ନଥିବାରୁ ପିଲାମାନେ ଏ ଧରଣର ଅକ୍ଷମତା ଦର୍ଶାନ୍ତି । ଅନ୍ୟ କେତେକ କ୍ଷେତ୍ରରେ ଉପଯୋଗୀ ଗୃହ ପରିବେଶର ଅଭାବ ସମସ୍ୟା ସୃଷ୍ଟିକରେ । ପୁଣି ଅନ୍ୟ କେତେକ କ୍ଷେତ୍ରରେ ଶିଶୁର ମାତ୍ରାଧିକ ଅସ୍ଥିରତା ଓ ଅତିଚଞ୍ଚଳତା (Hyperactivity) ଅକ୍ଷମତାର କାରଣ ହୁଏ । ବୁଦ୍ଧିମତ୍ତାର ମାତ୍ରା ଖୁବ୍ କମ୍ ହୋଇଥିଲେ ପଠନ ଜନିତ ଅକ୍ଷମତା ମଧ୍ୟ ଦେଖାଯାଇଥାଏ ।

ପଠନ ସାମର୍ଥ୍ୟର ବିକାଶ କିପରି ସଂଘଟିତ ହେଉଛି, ତାହା ଜାଣିବା ପାଇଁ ଏହି ଦକ୍ଷତା ବିକାଶର ସୋପାନଗୁଡ଼ିକ ଅନୁଶୀଳନ କରିବାକୁ ହେବ । ଗବେଷକମାନେ ଦର୍ଶାଇଛନ୍ତି ଯେ ପଠନ ଦକ୍ଷତାର ବିକାଶ ଆଠୋଟି ସୋପାନ ଦେଇ ଗତି କରିଥାଏ । ଏହି ସୋପାନଗୁଡ଼ିକ ବୁଝିପାରିଲେ ଶିଶୁର ସଫଳତା ବିଫଳତାର ମୂଳ ଉପାଦାନ ଚିହ୍ନଟ କରିବା ସହଜ ହୁଏ ।

## ପଠନ ଦକ୍ଷତାର ସୋପାନ



ପଠନ ବିକାଶର ପ୍ରଥମ ସୋପାନରୁ ଶିଶୁ ସରଳରେଖା, ବକ୍ରରେଖା, ବୃତ୍ତାଂଶ ଓ ବୃତ୍ତ ପରି ବିଭିନ୍ନ ରେଖା ସମ୍ବଳିତ ଢାଞ୍ଚା ସବୁକୁ ଚିହ୍ନଟ କରେ । ଗୋଟିଏ ଅକ୍ଷର ଏ ସମସ୍ତ ଢାଞ୍ଚାକୁ ନେଇ ଗଠିତ ହୋଇଥାଏ । ସୁତରାଂ ପ୍ରଥମ ସୋପନରେ ଢାଞ୍ଚା ((Feature) ସହିତ ତାର ପରିଚିତି ଜନ୍ମେ । 'ମ' ରେ ବ୍ୟବହାର କରାଯାଇଥିବା ବକ୍ରଅଂଶଟି 'ଧ'ରେ ବ୍ୟବହାର କରାଯାଇଥବା ବକ୍ରଅଂଶ ଠାରୁ ଭିନ୍ନ, ଏହା ସେ ଲକ୍ଷ୍ୟକରେ । ବିକାଶର ଦ୍ୱିତୀୟ ସେପାନରେ ସେ ଅକ୍ଷର ସବୁ ଚିହ୍ନେ । ରେଖାସବୁର ଭିନ୍ନ ଭିନ୍ନ ମିଶ୍ରଣ ଘଟି ପୃଥକ୍ ପୃଥକ୍ ଅକ୍ଷର ସୃଷ୍ଟି ହୋଇଛି, ଏହା ଅନୁଭବ କରେ । ବର୍ଣ୍ଣମାଳାରେ ରହିଥିବା ଅକ୍ଷର ସହ ପରିଚିତି ଆସେ ।

ତୃତୀୟ ସୋପନରେ ଶିଶୁ ଅକ୍ଷର ସହିତ ଉଚ୍ଚାରଣ (Sound ବା ଶବ୍ଦର) ସଂଯୋଜନା କରେ । କେଉଁ ଅକ୍ଷରଟି କିପରି ଉଚ୍ଚାରିତ ହେବ, ତାହା ଶିଖେ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ଓଡ଼ିଆ ଭାଷା ପରି ଅନ୍ୟସବୁ ଭାରତୀୟ ଭାଷା ଗୋଷ୍ଠୀରେ ଅକ୍ଷରର ଉଚ୍ଚାରଣ ପ୍ରାୟ ଅପରିବର୍ତ୍ତିତ ରହେ । 'ଗ'ର ଉଚ୍ଚାରଣ 'ଗଛ' ଏବଂ 'ଗଗନ' କ୍ଷେତ୍ରରେ ପ୍ରାୟ ସମାନ ରହିଥାଏ । ମାତ୍ର ଇଂରାଜୀ ପରି ଅନ୍ୟ କେତେକ ଭାଷାଗୋଷ୍ଠୀରେ ଏକ ନିର୍ଦ୍ଦିଷ୍ଟ ବର୍ଣ୍ଣର ଉଚ୍ଚାରଣ ଶବ୍ଦ ଭେଦରେ ପୃଥକ୍ ହୁଏ । 'U ' ଅକ୍ଷରଟିର ଉଚ୍ଚାରଣ 'PUT' ଏବଂ 'CUT' ରେ ସମାନ ରହିନଥାଏ । ମୋଟ ଉପରେ ଅକ୍ଷରର ଉଚ୍ଚାରଣ ଏ ସୋପାନରେ ଶିକ୍ଷା କରାଯାଏ । ତେବେ ବେଳେ ବେଳେ ଏହି ତୃତୀୟ ସୋପାନଟିକୁ ଡେଇଁ ସିଧାସଳଖ ଚତୁର୍ଥ ସୋପାନକୁ ଚାଲିଯିବା ଅସମ୍ଭବ ନୁହେଁ ।

ଚତୁର୍ଥ ସୋପାନରେ ପିଲା ଶବ୍ଦ (Word) ସହିତ ଉଚ୍ଚାରଣର ସମ୍ପୃକ୍ତି ଶିକ୍ଷାକରେ । କେଉଁ ଶବ୍ଦ କିପରି ଉଚ୍ଚାରିତ ହେବ, ତାହା ପ୍ରୟୋଗ କରେ । ଅଲଗା ଅଲଗା ଭାବରେ ଅକ୍ଷର-ଉଚ୍ଚାରଣକୁ ବାଦ୍ ଦେଇ କେତେକ ସ୍ଥାନରେ ପୂରାପୂରି ଶବ୍ଦଟିକୁ ଉଚ୍ଚାରଣ କରାଯାଇପାରେ । ମାତ୍ର ଯୁକ୍ତାକ୍ଷରଟିକୁ ଉଚ୍ଚାରଣ କରିବା ପାଇଁ ପ୍ରତିଟି ଅକ୍ଷର ସହିତ ଅଲଗା ଅଲଗା ଉଚ୍ଚାରଣ ପରିଚିତି ଆବଶ୍ୟକ । 'ସୂତ୍ର' ଶବ୍ଦରେ ''ତ୍ର''ର ଉଚ୍ଚାରଣ ପାଇ 'ତ' ଓ 'ର'ର ଉଚ୍ଚାରଣ ପରିଚିତି ଆବଶ୍ୟକ ।

ପାରମ୍ପରିକ ପଦ୍ଧତିରେ ଶିକ୍ଷକ ପ୍ରତିଟି ଅକ୍ଷରର ଉଚ୍ଚାରଣ ଶିକ୍ଷା ଦିଅନ୍ତି । 'କ'ର ଉଚ୍ଚାରଣ 'ଖ'ର ଉଚ୍ଚାରଣ ଶିକ୍ଷା ଦିଆଯାଏ । ଶିକ୍ଷାର୍ଥୀ ଏହା ଶିକ୍ଷା କଲା ପରେ ମାତ୍ରା ସବୁର ଶିକ୍ଷା ଆରମ୍ଭ କରାହୁଏ । 'କ' 'ଖ' ଇତ୍ୟାଦିର ଶିକ୍ଷା ଦିଆଯାଏ । ଏହାପରେ ଯୁକ୍ତାକ୍ଷର (ଯଥା-ତ୍ର) ଶିକ୍ଷା ଦିଆଯାଏ । କହିବା ଅନାବଶ୍ୟକ ଯେ ଏପରି ଏକ ଯାନ୍ତ୍ରିକ ପଦ୍ଧତିରେ ଶିଶୁ ଅନାଗ୍ରହ ସୂଚାଉଥିବାରୁ ଅଧିକ ଗତିଶୀଳ ପଦ୍ଧତିର ପ୍ରୟୋଗ କରାଯାଉଛି । ପୃଥକ୍ ପୃଥକ୍ ଅକ୍ଷରର ଉଚ୍ଚାରଣ ଶିକ୍ଷା ଦିଆ ନଯାଇ ଅପେକ୍ଷାକୃତ ସରଳ ଶବ୍ଦର (ଯଥା-ମା', ରମା, ଘର ଇତ୍ୟାଦି) ଉଚ୍ଚାରଣ ଶିକ୍ଷା ଦିଆଯାଉଛି । ଶବ୍ଦର ଉଚ୍ଚାରଣ ସମୟରେ ଛନ୍ଦ ପ୍ରତି ଧ୍ୟାନ ଦିଆଯାଉଛି । ଶିଶୁ ଏସବୁ ଶିଖିଲା ପରେ ସରଳ ଶବ୍ଦ ସବୁକୁ ଏକତ୍ର କରି ଛୋଟ

ଛୋଟ ବାକ୍ୟ ପଢ଼ିବାକୁ ସୁଯୋଗ ଦିଆଯାଉଛି । ମୋଟ ଉପରେ ପ୍ରତି ଅକ୍ଷର ସହିତ ନିର୍ଦ୍ଦିଷ୍ଟ ଉଚ୍ଚାରଣକୁ ସମ୍ପୃକ୍ତ କରିବାର ଗତାନୁଗତିକ ପଦ୍ଧତି ପରିବର୍ତ୍ତେ ସରଳ ଶବ୍ଦସବୁର ଦୃଶ୍ୟଗତ ଚିହ୍ନଟ (Direct visual recognition of word as a whole) ଆଧୁନିକ ଶିକ୍ଷାପଦ୍ଧତିରେ ବ୍ୟବହାର କରାଯାଉଛି ।

ପରବର୍ତ୍ତୀ ପଞ୍ଚମ ସୋପାନରେ ଶିଶୁ ଏକାଧିକ ଶବ୍ଦକୁ ଏକ ବାକ୍ୟାଂଶ ବା ଶବ୍ଦପୁଞ୍ଜ ହିସାବରେ ପ୍ରତ୍ୟକ୍ଷଣ କରେ । "ଅନ୍ଧାର ରାତିରେ" କଥାଟି ଏକ ଗୋଷ୍ଠୀଭୁକ୍ତ ଶବ୍ଦଦ୍ୱୟର ଉଚ୍ଚାରଣ ବୋଲି ଅନୁଭବ କରେ । ଏହା ବାକ୍ୟାଂଶ ନହୋଇ ବାକ୍ୟ ମଧ୍ୟ ହୋଇପାରେ । ମାତ୍ର ବ୍ୟବହାର କରାଯାଇଥିବା ସବୁ ଶବ୍ଦର ଉଚ୍ଚାରଣକୁ ଏକ ଏକକ ବା ସାମଗ୍ରିକ ଉଚ୍ଚାରଣର ଅଂଶବିଶେଷ ମନେକରିଥାଏ ।

ପଠନ ଦକ୍ଷତାର ଷଷ୍ଠ ସୋପାନଟି ମୋଟାମୋଟି ଧାରଣା ଗଠନର ସୋପାନ । ପରବର୍ତ୍ତୀ (ସପ୍ତମ) ସୋପାନରେ ତାର ଧାରଣା ଅଧିକ ସ୍ପଷ୍ଟ ହୁଏ । ବାକ୍ୟଟିରେ କେଉଁ ଅଂଶଟି ମୁଖ୍ୟ ଧାରଣା ଏବଂ କେଉଁ ଅଂଶଟି ଗୌଣ ଧାରଣାର ବାହକ, ତାହା ସେ ଜାଣିପାରେ ।

ଅଷ୍ଟମ (ଅନ୍ତିମ) ସୋପାନରେ ସେ ପଠନ ସାମଗ୍ରୀର କଥାବସ୍ତୁର ଧାରଣା କରେ । କଥାବସ୍ତୁଟି ଗୋଟିଏ ଗଳ୍ପ ହୋଇଥିଲେ ପୂରା ଗଳ୍ପଟି ବିଷୟରେ ଧାରଣା ଜନ୍ମେ ।

ପିଲାମାନଙ୍କୁ ପଠନ ସମ୍ପର୍କରେ ତାଲିମ ଦେବା ସମୟରେ ବିଶେଷଜ୍ଞମାନେ ଦୁଇଟି ପଦ୍ଧତିର ସୂଚନା ଦେଇଛନ୍ତି । କେତେ ବିଶେଷଜ୍ଞମାନଙ୍କ ମତରେ ପୂର୍ଣ୍ଣ-ଭାଷା ପଦ୍ଧତି ଉତ୍କୃଷ୍ଟ । ଏହି ପଦ୍ଧତିରେ ସମୁଦାୟ ଗଳ୍ପ, କବିତା କିମ୍ବା ପଠନୀୟ ବିଷୟବସ୍ତୁ ପୂରାପୂରି ପଢ଼ାଯିବ । ଏହା ଫଳରେ ପିଲାଟି ସାମଗ୍ରିକ ଭାବରେ ବିଷୟବସ୍ତୁ ସମ୍ପର୍କରେ ଅର୍ଥ ଓ ଧାରଣା ଗଠନ କରିବା ସହଜ ହେବ । ଅନ୍ୟଟି ହେଉଛି ମୌଳିକ କୌଶଳ ଏବଂ ଧ୍ୱନିଗତ ପଦ୍ଧତି । ଏପରି ପଦ୍ଧତିରେ ପିଲାଟିକୁ ପ୍ରତି ଶବ୍ଦର ଶୁଦ୍ଧ ଓ ନିର୍ଭୁଲ ଉଚ୍ଚାରଣ ଶିକ୍ଷା ଦିଆଯିବ । ଧ୍ୱନିଗତ ସାମର୍ଥ୍ୟ ଆସିଲା ପରେ ଶିଶୁଟି ଶବ୍ଦସମୂହର ଏକତ୍ରୀକରଣ ଏବଂ ବାକ୍ୟସବୁ ପାଠ କରିବ । ଏହା ଫଳରେ ଶିଶୁର ଦର୍ଶନ ଓ ଶ୍ରବଣ ସଂକେତ-କରଣ (Encoding) ସହଜ ହେବ । କେଉଁ ପଦ୍ଧତିଟି ପ୍ରକୃତରେ ଉତ୍କୃଷ୍ଟତର, ତାହାର ଯଥେଷ୍ଟ ପ୍ରାମାଣିକ ଯୁକ୍ତି ମିଳିନାହିଁ । ଏ ଦୃଷ୍ଟିରୁ ଏ ଦୁଇଟି ପଦ୍ଧତିର ସମନ୍ୱୟ ସମ୍ପର୍କରେ ଅନେକ ବିଶେଷଜ୍ଞ ଯୁକ୍ତି ବାଢ଼ିଥାନ୍ତି । ସମ୍ଭବତଃ ବିଷୟ ବସ୍ତୁ ଏବଂ ପାଠକର ଭିନ୍ନତା ଲକ୍ଷ୍ୟ କରି ଏ ଦୁଇଟି ପଦ୍ଧତିର ଉପଯୋଗ କରାଯାଇପାରେ ।

ପରିଶେଷରେ କୁହାଯିବ ଯେ ପଠନ ପରିପ୍ରେକ୍ଷୀରେ ସୂଚନାସବୁର ଗ୍ରହଣ (Reception), ସେଗୁଡ଼ିକର ସଜ୍ଜୀକରଣ (Organisation) ଏବଂ ଭବିଷ୍ୟତରେ ସେସବୁର ପୁନଃସ୍ମରଣ ପରି ପ୍ରକ୍ରିୟା ବେଶ୍ ଗୁରୁତ୍ୱପୂର୍ଣ୍ଣ । ପଠନ ସାମଗ୍ରୀକୁ ଗ୍ରହଣ କରିବା ସମୟରେ ସ୍ପଷ୍ଟ ଦର୍ଶନ-କ୍ରିୟା ଏବଂ ସ୍ପଷ୍ଟ ଶ୍ରବଣ-କ୍ରିୟା (ଉଚ୍ଚାରଣ) ଉପଯୋଗୀ ସଂକେତ-କରଣରେ ସହାୟକ ହୋଇଥାଏ । ପଢ଼ିବାର କ୍ଷିପ୍ରତା ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ । ପଢ଼ିବାର ବେଗ ସହିତ

ବୁଝିବାର ସମ୍ପର୍କ ରହିଛି । ପଢ଼ିବାର ଗତି ମୋଟାମୋଟି ଭାବରେ କ୍ଷିପ୍ର ହେବା ଭଲ । ମନ୍ଥରତା ଗ୍ରହଣଶୀଳତା ଏବଂ ବୁଝିବାରେ ବାଧା ସୃଷ୍ଟି କରେ । ଅବଶ୍ୟ ମାତ୍ରାଧିକ କ୍ଷିପ୍ରତା ଭଲ ନୁହେଁ । ମାତ୍ର ଦ୍ରୁତଗତିରେ ପଢ଼ାଯାଉଥିବା ଶବ୍ଦସବୁ କାନକୁ ସ୍ପଷ୍ଟ ଶୁଣାଯିବା ଉପଯୋଗୀ ହୋଇଥାଏ । ଉପଯୁକ୍ତ ସ୍ଥଳରେ ବିରାମ ଚିହ୍ନ (Punctuation) ବୁଝିବାରେ ସହାୟକ ହୋଇଥାଏ । ଉପଯୋଗୀ ପଠନ ପଦ୍ଧତି ଗ୍ରହଣଶୀଳତା, ସଙ୍କେତୀକରଣ ଏବଂ ଭବିଷ୍ୟତର ପୁନଃସ୍ମରଣର ବେଶ୍ ସହାୟକ ହୁଏ ।

## ସହାୟକ ପରାମର୍ଶ

୧. *ଚିତ୍ରରେ ଦିଆଯାଇଥିବା ପଠନର ସୋପାନଗୁଡ଼ିକ ମନନଶୀଳତାର ସହିତ ଲକ୍ଷ୍ୟ କରନ୍ତୁ ଏବଂ ପ୍ରଥମ ସେପାନରୁ ଆରମ୍ଭ କରି ଅଷ୍ଟମ ସୋପାନ ପର୍ଯ୍ୟନ୍ତ ଆବଶ୍ୟକ ସ୍ଥଳରେ ପିଲାମାନଙ୍କୁ ତାଲିମ ଦିଅନ୍ତୁ ।*

୨. *ଗତାନୁଗତିକ ପଦ୍ଧତିରେ ପ୍ରତିଟି ଅକ୍ଷରସହିତ ପ୍ରତିଟି ଉଚ୍ଚାରଣକୁ ସଂଯୁକ୍ତ କରିବାର ଅଭ୍ୟାସ ଜଦି ନ ଦେଇ ଛନ୍ଦଯୁକ୍ତ ସରଳ ଶବ୍ଦର (ଯଥା–ଘର, ସର, ଧର ଇତ୍ୟାଦି) ପଠନ ଶିକ୍ଷା ଦିଅନ୍ତୁ । ପରେ ବାକ୍ୟ ପଠନରେ ସହାୟତା କରନ୍ତୁ ।*

୩. *ପଠନର ଗତି (ଶବ୍ଦ ଉଚ୍ଚାରଣ କରିବାର) କ୍ଷିପ୍ର ହେବା ଭଲ । ଏହା ବୁଝିବାରେ ସହାୟକ ହୁଏ । ଅତି ଧୀର ଧୀର ପଢୁଥିବା ଶିଶୁମାନେ ଅର୍ଥ ବୁଝିପାରନ୍ତି ନାହିଁ ।*

୪. *ଅଳ୍ପ ବୟସର ପିଲା ଉଚ୍ଚାରଣ କରି ପଢ଼ିବା ଉପଯୋଗୀ ହୋଇଥାଏ । ଏହା ଫଳରେ ଦୃଷ୍ଟିଗତ ଏବଂ ଶ୍ରବଣଗତ ସଂକେତକରଣ ମସ୍ତିଷ ସ୍ତରରେ (Encoding) ଭଲ ହୁଏ ।*

୫. *ପିଲାଟିର ଧୈର୍ଯ୍ୟ, ବିଷୟବସ୍ତୁର ପ୍ରାସଙ୍ଗିକତା ଏବଂ ପରିବେଶକୁ ଚାହିଁ ଆପଣ ସମଗ୍ର ପାଠ୍ୟ ବିଷୟକୁ ଗୋଟିଏ ଥରରେ କିମ୍ବା ଭାଗ ଭାଗ କରି ପଢ଼ିବାକୁ ନିର୍ଦ୍ଦେଶ ଦେଇପାରନ୍ତି । ଏ ଦୁଇଟି ପଦ୍ଧତିର ସମନ୍ୱୟ ମଧ୍ୟ କରାଯାଇପାରେ ।*

# ବହୁଭାଷାଭାଷୀ ସମାଜ ପରିପ୍ରେକ୍ଷୀରେ ମାତୃଭାଷା ଏବଂ ଦ୍ୱିତୀୟ ଭାଷା

ଇଂରେଜମାନଙ୍କ ବିଦେଶୀ ଶାସନରୁ ମୁକ୍ତ ହେବାର ଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ମଧ୍ୟରେ ଇଂରାଜୀ ଭାଷାର ଦାସତ୍ୱ ଅଧିକ ଶକ୍ତିଶାଳୀ ହେବାରେ ଲାଗିଛି । ବର୍ଷାଦିନର ଛତୁ ପରି ଗାଁ ଗହଳିରେ ମଧ୍ୟ ଇଂରାଜୀ ମାଧ୍ୟମର ନର୍ସରୀ ସ୍କୁଲମାନଙ୍କର ସଂଖ୍ୟା ପ୍ରତିଦିନ ବୃଦ୍ଧିପାଇବାରେ ଲାଗିଛି । ନିମ୍ନ ମଧ୍ୟବିତ୍ତ ପରିବାରର ଲୋକମାନେ ନିଜେ ଇଂରାଜୀ ଭାଷା ବ୍ୟବହାର କରୁ ନଥିଲେ ମଧ୍ୟ ପୁତ୍ର କନ୍ୟାଙ୍କୁ ଏପରି ସ୍କୁଲକୁ ପଠାଇବା ଉଚିତ ମନେ କରୁଛନ୍ତି । ମାସିକ ବ୍ୟୟ–ବରାଦ ଆଶାତୀତ ପରିମାଣର ହେଲେ ସୁଦ୍ଧା ଏପରି ସ୍କୁଲରେ ପିଲାକୁ ଭର୍ତ୍ତି କରାଇବା ସଫଳତାର ସୂଚକ ବୋଲି ବିଚାର କରାଯାଉଛି । ପୁଣି ଇଂରାଜୀ ଭାଷାଜ୍ଞାନକୁ ଉନ୍ନତ କରାଇବା ଆଳରେ ଶ୍ରେଣୀ ମଧ୍ୟରେ ମାତୃଭାଷା (ଓଡ଼ିଆ)ର ବ୍ୟବହାର ତ ଦୂରର କଥା, ସ୍କୁଲ ପରିସର ମଧ୍ୟରେ ଓଡ଼ିଆ ଭାଷାର ବ୍ୟବହାର ପାଇଁ କଟକଣା ଜାରୀ କରାଯାଉଛି ।

ଏପରି ଏକ ପରିପ୍ରେକ୍ଷୀ ମଧ୍ୟରେ ମନରେ କେତୋଟି ପ୍ରଶ୍ନ ଉଠିବା ସ୍ୱାଭାବିକ । ପିଲାମାନଙ୍କର ବୌଦ୍ଧିକ ବିକାଶରେ ମାତୃଭାଷାର ଭୂମିକା କ'ଣ ? ମାତୃଭାଷା ହିନ୍ଦୀ କିମ୍ବା ବିଦେଶୀ ଭାଷା (ଇଂରାଜୀ)ରେ ମୂଳରୁ ଶିକ୍ଷାଦାନ କେତେ ଦୂର ସମୀଚୀନ ? ପିଲାକୁ ମାତୃଭାଷା ବ୍ୟତୀତ ଅନ୍ୟ କେତୋଟି ଭାଷା ଶିକ୍ଷା ଦିଆଯାଇପାରିବ ? ଶିଶୁର କେଉଁ ବୟସରେ ଦ୍ୱିତୀୟ ଓ ତୃତୀୟ ଭାଷାର ଶିକ୍ଷା ଦିଆଯିବା ବିଧେୟ ?

ଏ ସମସ୍ତ ପ୍ରଶ୍ନର ବିଜ୍ଞାନସମ୍ମତ ଉତ୍ତର ପିଲାର ଭାଷା ଶିକ୍ଷା ଏବଂ ଶିକ୍ଷାର ମାଧ୍ୟମ ବିଚାର ସହିତ ଗଭୀର ଭାବେ ସଂଶ୍ଳିଷ୍ଟ ।

ବହୁ ଭାଷାଭାଷୀ (Multilingual) ଭାରତୀୟ ସମାଜର ପରିପ୍ରେକ୍ଷୀରେ ଏସବୁ ପ୍ରଶ୍ନର ଉତ୍ତର ଅନ୍ୱେଷଣ କରିବା ପୂର୍ବରୁ ପାଶ୍ଚାତ୍ୟ ଦେଶମାନଙ୍କର ବାସ୍ତବିକତା ପ୍ରତି ଧ୍ୟାନ ଦେବାର ମାନସିକତା ଆମର କାମକୁ ସହଜ କରିବ । ବେଶ୍ କିଛି ଦଶକ ତଳେ ଅଧିକାଂଶ ପାଶ୍ଚାତ୍ୟଦେଶର ଲୋକମାନେ ମୁଖ୍ୟତଃ ଏକ ଭାଷାଭାଷୀ (Monolingual) ଥିଲେ । ଖୁବ୍ ଅଳ୍ପ ସଂଖ୍ୟକ ଲୋକ ଦ୍ୱିଭାଷୀ (Bilingual) ଥିଲେ ଏବଂ ତିନୋଟି ଚୋରୋଟି ଭାଷା ଜାଣିଥିବା ଲୋକ ପ୍ରାୟତଃ ବିରଳ ଥିଲେ । ଗୋଟିଏ ଭାଷାର ଦକ୍ଷତା ହାସଲ କରିବା ଏକ ଆବଶ୍ୟକ ମାନଦଣ୍ଡ (Norm), ଦୁଇଟି ଭାଷା ଜାଣିବା ଏକପ୍ରକାର ଜ୍ଞାନଗତ ବହୁଳତା ଏବଂ ତିନୋଟି ଭାଷା ଜାଣିବା ଏକ ପ୍ରକାର ଅର୍ଦ୍ଧପାଗଳାମୀ ବୋଲି ବିଚାର କରାଯାଉଥିଲା ।

ମାତ୍ର ବିଂଶ ଶତକର ସପ୍ତଦଶକରୁ ଏପରି ଚିତ୍ର ପରିବର୍ତ୍ତିତ ହେବାକୁ ଆରମ୍ଭ କରିଛି । ଭାଷା-ବିଜ୍ଞାନୀ, ସମାଜ-ବିଜ୍ଞାନୀ ଏବଂ ମନୋବିଜ୍ଞାନୀମାନେ ସମସ୍ୱରରେ ଗବେଷଣା ମାଧ୍ୟମରେ ଦର୍ଶାଇଛନ୍ତି ଯେ ଏକ ଭାଷାଭାଷୀ ବ୍ୟକ୍ତି ତୁଳନାରେ ଦ୍ୱିଭାଷାଭାଷୀ ବ୍ୟକ୍ତିମାନଙ୍କର ବୌଦ୍ଧିକ ସଚଳତା (Cognitive Flexibility) ପ୍ରଖର । ଏମାନଙ୍କର ଚିନ୍ତନ ଶୈଳୀ ଉନ୍ନତ ଏବଂ ଭାଷାଗତ ଦକ୍ଷତା ଅଧିକ ବିକଶିତ । ଏମାନଙ୍କର ଭାଷାତୀତ ସଚେତନତା (Metalinguistic Awareness) ଉନ୍ନତ । ପୂର୍ବରୁ ସୂଚନା ଦିଆଯାଇଛି ଯେ ଭାଷାରେ ପ୍ରକାଶ ପାଉଥିବା ଆକ୍ଷରିକ ଅର୍ଥର ଉର୍ଦ୍ଧ୍ୱକୁ ଯାଇ ଏମାନେ ବାକ୍ୟ ଓ କଥାରେ ନିହିତଥିବା ପ୍ରକୃତ ମର୍ମ ବୁଝିପାରନ୍ତି । ଉଦାହରଣ ସ୍ୱରୂପ ଗୋଟିଏ ବାକ୍ୟର ଦୃଷ୍ଟାନ୍ତ ଦିଆଯାଇପାରେ । ତୁମେ ମୋ ଗୋଡ଼ ଉପରେ ଠିଆ ହୋଇଛ-ଏପରି କୁହାଯିବା ସମୟରେ ଦୁଇଜଣ ଦୁଇପ୍ରକାର ଅର୍ଥ ବାହାର କରନ୍ତି । ଭାଷାତୀତ ସଚେତନତାର ଅଧିକାରୀ ହୋଇନଥିବା ବ୍ୟକ୍ତିଟି ବୁଝେ ଯେ, ସେ ଅନ୍ୟର ଗୋଡ଼ ଉପରେ ଠିଆ ହୋଇଛି । ମାତ୍ର ଭାଷାତୀତ ସଚେତନତା ହାସଲ କରିଥିବା ବ୍ୟକ୍ତିଟି ବୁଝେ ଯେ ତାକୁ ଗୋଡ଼ଟିକୁ କାଢ଼ିନେବାକୁ ଅନୁରୋଧ କରାଯାଉଛି । ମୋଟି ଉପରେ ଆକ୍ଷରିକ ଅର୍ଥ ମଧ୍ୟରେ ସୀମିତ ନରହି ଅନ୍ତର୍ନିହିତ ଧାରଣାକୁ ଚିହ୍ନଟ କରିବା ଏବଂ ବୁଝିବାର ସାମର୍ଥ୍ୟ ଏକ ଉନ୍ନତ ଭାଷାଗତ ଦକ୍ଷତା । କହିବା ଅନାବଶ୍ୟକ ଯେ ଦୁଇଟି ଭାଷା ଜାଣିବାର ଉପଯୋଗିତା ସ୍ୱୀକୃତ ହେବା ପରେ ବହୁଦେଶର ଶିକ୍ଷା ନୀତିରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଆସିଛି ।

ଅବଶ୍ୟ ଏକ ଭାଷାଭାଷୀ ବ୍ୟକ୍ତି ତୁଳନାରେ ଦ୍ୱିଭାଷାଭାଷୀ ବ୍ୟକ୍ତିର ଉତ୍କର୍ଷ ସୂଚାଇବା ପରିପ୍ରେକ୍ଷୀରେ ମନେରଖିବାକୁ ହେବ ଯେ ବ୍ୟକ୍ତିଜଣକର ଦୁଇଟି ଭାଷାର ପ୍ରାୟ ସମାନ ସ୍ତରର ଦକ୍ଷତା ଥିବା ଆବଶ୍ୟକ । ଏପରି ବ୍ୟକ୍ତିକୁ ସମନ୍ୱିତ ଦ୍ୱିଭାଷାଭାଷୀ (Balanced Bilingual) କହନ୍ତି । ପୁଣି ଆଲୋଚିତ ଦୁଇଟି ଭାଷା ଉକ୍ତ ସମାଜରେ ପ୍ରାୟ ସମାନ ପରିମାଣରେ ଆଦୃତ ଓ ସମ୍ମାନିତ ହେଉଥିବା ଉଚିତ । ଏପରି ଅବସ୍ଥା ଥିଲେ ଏକାଧିକ ଭାଷାଜ୍ଞାନ ନିଶ୍ଚିତ ଭାବରେ ଅଧିକ ସୁଫଳ ହେବ ।

ବର୍ତ୍ତମାନ ଭାରତବର୍ଷର କଥା ବିଚାର କରାଯାଉ । ଏ ଏକ ବହୁଭାଷାଭାଷୀ ଦେଶ । ଏ ଦେଶରେ ଶିଶୁ ଜନ୍ମ ସମୟରୁ ଆରମ୍ଭ କରି ଏକାଧିକ ଭାଷାର ବାତାବରଣ ମଧ୍ୟରେ ବଡ଼ ହୋଇଥାଏ । ହାଇଦ୍ରାବାଦରେ ଚାକିରୀ କରୁଥିବା ଓଡ଼ିଆ ପରିବାରର ପିଲାଟିଏ ଘରେ ମା' ବାପାଙ୍କଠାରୁ ଓଡ଼ିଆ କଥାବାର୍ତ୍ତା ଶୁଣେ । ସେ ନିଜେ ସ୍କୁଲରେ ଇଂରାଜୀ ମାଧ୍ୟମରେ ପାଠ ପଢ଼େ । ଘରେ ସାହାଯ୍ୟ କରୁଥିବା କର୍ମଚାରୀମାନେ ହିନ୍ଦୀରେ କଥାବାର୍ତ୍ତା ହେଉଥିବାରୁ କାରବାର ପାଇଁ ହିନ୍ଦୀ ଶିଖିଯାଏ । ପୁଣି ପରିବେଶ ଓ ପ୍ରତିବେଶୀମାନେ ତେଲୁଗୁ ଶିଖିବାର ଉପାଦାନ ଯୋଗାଇଥାନ୍ତି । ଏହିପରି ଏକ ବହୁ ଭାଷାଗତ ପରିବେଷ୍ଟନୀ ମଧ୍ୟରେ ଅଧିକାଂଶ ଭାରତୀୟ ଶିଶୁ ବଡ଼ ହୁଅନ୍ତି । ଏ ଦେଶର ବହୁ ଭାଷାଭାଷୀ ହେବା ଏକ ନିଛକ ବାସ୍ତବତା ହେବା ସ୍ଥଳେ ଏକମାତ୍ର ଭାଷା ମଧ୍ୟରେ ସୀମିତ ରହିବା ଅପ୍ରାକୃତିକ ମନେହୁଏ ।

## ବହୁଭାଷାର ଶିକ୍ଷା କାର୍ଯ୍ୟକ୍ରମ

ଉପର ଆଲୋଚନାରୁ ଏହା ସ୍ପଷ୍ଟ ଯେ, ଗୁଣାତ୍ମକ ଶିକ୍ଷାର ଅଭିବୃଦ୍ଧି ପାଇଁ ବହୁଭାଷା ଶିକ୍ଷା କାର୍ଯ୍ୟକ୍ରମ ଏକାନ୍ତ ପ୍ରୟୋଜନ । ସୁନିର୍ଦ୍ଦିଷ୍ଟ ଭାବରେ କହିବାକୁ ଗଲେ ବିଶେଷଜ୍ଞମାନେ ମତ ଦିଅନ୍ତି ଯେ ପ୍ରାଥମିକ ଶିକ୍ଷାର ପ୍ରଥମ ବର୍ଷଗୁଡ଼ିକରେ ମାତୃଭାଷାରେ ଶିକ୍ଷା ଦିଆଯିବା ଉଚିତ । ପ୍ରଥମ ପାଞ୍ଚ ଛ'ବର୍ଷ ମାତୃଭାଷା ମାଧ୍ୟମରେ ଶିକ୍ଷାପ୍ରଦାନ କରାଯିବ । ପିଲାର ବୟସ ଓ ସ୍ତରକୁ ଦୃଷ୍ଟିରେ ରଖି ଅଳ୍ପ ଅଳ୍ପ ପରିମାଣର ଦ୍ୱିତୀୟ ଭାଷା ଶିକ୍ଷା ଦିଆଯିବ । ପ୍ରଥମ ଭାଷାରେ ଗଢ଼ି ଉଠିଥିବା ଦକ୍ଷତା ଦ୍ୱିତୀୟ ଭାଷାର ଆହରଣକୁ ସହଜ କରିବ । ଏପରି ପଦ୍ଧତିରେ ଗୋଟିଏ ପର୍ଯ୍ୟାୟରେ ଅନୁଭୂତ ହେବ ଯେ ପିଲାଟି ଦୁଇଟି ଭାଷାକୁ ଭଲଭାବେ ଆୟତ୍ତ କରିପାରିଛି ।

ଦୁର୍ଭାଗ୍ୟବଶତଃ ଅଧିକାଂଶ ପିତାମାତା ଏବଂ ଶିକ୍ଷକ ଶିକ୍ଷୟିତ୍ରୀ ବିଶ୍ୱାସ କରନ୍ତି ଯେ ବଡ଼ପିଲା ଏବଂ ବୟସ୍କମାନଙ୍କ ତୁଳନାରେ ଛୋଟ ପିଲାମାନଙ୍କର ଭାଷା ଆହରଣ କ୍ଷମତା ଅଧିକ ହୋଇନଥିବାରୁ ତା'କୁ ଏ ସମୟରେ ଭବିଷ୍ୟତର ଅତି ଦରକାରୀ ଦ୍ୱିତୀୟ ଭାଷା (ଜାତୀୟ ଭାଷା ହିନ୍ଦୀ କିମ୍ବା ଆନ୍ତର୍ଜାତିକ ଭାଷା ଇଂରାଜୀ) ଶିକ୍ଷାଦେବା ବିଜ୍ଞତାର କାର୍ଯ୍ୟହେବ । ମାତ୍ର ଏ ଧାରଣାଟି ସମ୍ପୂର୍ଣ୍ଣ ଅମୂଳକ । ପ୍ରଥମତଃ ଛୋଟ ପିଲାମାନଙ୍କର ଦ୍ୱିତୀୟ ଭାଷାରେ ଉଚ୍ଚାରଣ ପ୍ରାକୃତିକ ମନେ ହେଲେ ମଧ ବଡ଼ ପିଲାମାନେ ଦ୍ୱିତୀୟ ଭାଷାର ଶବ୍ଦ ସମ୍ଭାର ଏବଂ ବାକ୍ୟରୀତି (Syntax)କ୍ଷେତ୍ରରେ ଉତ୍କର୍ଷ ଦର୍ଶାନ୍ତି । ପୁଣି ଅପକ୍ଷୋକୃତ ଅଧିକ ବୟସର ପିଲାମାନେ ପୂର୍ବରୁ ଶିକ୍ଷା କରିଥିବା ମାତୃଭାଷା (ପ୍ରଥମ ଭାଷାର ଭିତ୍ତିଭୂମି) ଉପରେ ସେମାନଙ୍କର ଦ୍ୱିତୀୟ ଭାଷାର ଦକ୍ଷତାର ସୌଧ ନିର୍ମାଣ କରନ୍ତି । ଫଳରେ ସେମାନଙ୍କର ଦ୍ୱିତୀୟ ଭାଷାର ଆହରଣ ଏବଂ ବିସ୍ତାରଣ ଅପେକ୍ଷାକୃତ ଭଲ ହୁଏ । ଏ ଦୃଷ୍ଟିରୁ ଦ୍ୱିତୀୟ ଭାଷାର ଶିକ୍ଷା ପରେ ଆରମ୍ଭ କରିଥିଲେ ମଧ ଏମାନଙ୍କର ସାମର୍ଥ୍ୟ ମୂଳରୁ ଦ୍ୱିତୀୟ ଭାଷା ଆରମ୍ଭ କରିଥିବା ପିଲାମାନଙ୍କଠାରୁ ଅଧିକ ହୋଇଥାଏ ।

ବୌଦ୍ଧିକ ଏବଂ ଶିକ୍ଷାଗତ ବିକାଶ ପାଇଁ ପ୍ରାଥମିକ ସ୍ତରରେ ମାତୃଭାଷାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଭାଷାର ପ୍ରତ୍ୟେକ ଉପାଦାନ (କହିବା, ବୁଝିବା, ପଢ଼ିବା ଏବଂ ଲେଖିବା) ମଧରୁ କହିବା ଏବଂ ବୁଝିବାର ସାମର୍ଥ୍ୟ ପିଲା ମୂଳରୁ ମାତୃଭାଷାରୁ ହାସଲ କରିଥାଏ । ଗୃହରେ ବ୍ୟବହୃତ ହେଉଥିବା ଭାଷା ଏବଂ ଶ୍ରେଣୀଗୃହର ଭାଷା ମଧରେ ସଂଗତି ଥିବାରୁ ଧାରଣାସବୁର ଗ୍ରହଣ ଏବଂ ସନ୍ନୀକରଣ ସହଜ ହୁଏ ।

## ଦ୍ୱିତୀୟ ଭାଷାର ଶିକ୍ଷା

ଆଧୁନିକ ଜୀବନରେ ଏକାଧିକ ଭାଷାର ଦକ୍ଷତା ଅପରିହାର୍ଯ୍ୟ । ମାତ୍ର ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଟି ହେଉଛି–କେଉଁ ପର୍ଯ୍ୟାୟରେ ଦ୍ୱିତୀୟ ଭାଷାର ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ କରାଯିବ ? କେଉଁ ଭାଷାଟି ଶିଶୁ ପାଇଁ ଦ୍ୱିତୀୟ ଭାଷା , ତାହା ଏଠାରେ ବିଚାର୍ଯ୍ୟ ନୁହେଁ । ଆଦିବାସୀ ପିଲାମାନଙ୍କ ପାଇଁ ଓଡ଼ିଆ ଭାଷା ଦ୍ୱିତୀୟ ଭାଷା ହେଇପାରେ । ଓଡ଼ିଆ ମାତୃଭାଷା ହୋଇଥିବା ପିଲାମାନଙ୍କ

ପାଇଁ ହିନ୍ଦୀ କିମ୍ବା ଇଂରାଜୀ ଦ୍ୱିତୀୟ ଭାଷା ହୋଇପାରେ । ଓଡ଼ିଶା ପରିପ୍ରେକ୍ଷୀରେ ଓଡ଼ିଆକୁ ପ୍ରଥମ (ମାତୃଭାଷା) ଭାଷା ରୂପେ ବିଚାର କରି ଇଂରାଜୀ ଭାଷାକୁ ଦ୍ୱିତୀୟ ଭାଷାର ମର୍ଯ୍ୟାଦା ଦିଆଯାଇପାରେ । ଏ ଦୃଷ୍ଟିରୁ କେଉଁ ପର୍ଯ୍ୟାୟରେ ଇଂରାଜୀ ଭାଷାର ଶିକ୍ଷା ଆରମ୍ଭ କରାଯିବ, ତାହା ଏକ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନ ।

ପୂର୍ବ ଆଲୋଚନା ଅନୁଯାୟୀ ପ୍ରଥମେ ମାତୃଭାଷାର ସାମର୍ଥ୍ୟ ବିକାଶ ଉପରେ ଗୁରୁତ୍ୱ ଦିଆଯିବ ଏବଂ କିଛି ବର୍ଷ ପରେ ଧୀରେ ଧୀରେ ଦ୍ୱିତୀୟ ଭାଷା ଶିକ୍ଷା ଆରମ୍ଭ କରାଯିବ । ଏକଭାଷା ସାମର୍ଥ୍ୟରୁ ଦ୍ୱିଭାଷା ସାମର୍ଥ୍ୟକୁ ଗତି କରାଇବାର କାର୍ଯ୍ୟକ୍ରମ କରିବାର ମଧ୍ୟରେ ସମ୍ପନ୍ନ ହେବ । ପ୍ରଥମେ ପ୍ରଥମେ ମୌଳିକ ଯୋଗାଯୋଗ କୌଶଳ ଶିକ୍ଷା ଦିଆଯିବ । ଦ୍ୱିତୀୟ ସ୍ତରରେ ନୂଆ ଭାଷାର କିଛି ମୌଳିକ ଶିକ୍ଷାଗତ (ସ୍କୁଲ ପାଠ୍ୟକ୍ରମ) ବିଷୟ ଶିକ୍ଷା ଦିଆଯାଇପାରେ । ତା'ପରେ ଅଧିକତର ଜଟିଳ ବିଷୟ ଶିକ୍ଷା ଦିଆଯିବ । ପରବର୍ତ୍ତୀ ପର୍ଯ୍ୟାୟରେ ଦ୍ୱିତୀୟ ଭାଷାର ଶବ୍ଦ ସମ୍ଭାର, ବାକ୍ୟରୀତି ଏକ ଅନ୍ୟସବୁ ଭାବଧାରାର ବାହକ ହେଲା ପରି ଭାଷା ସାମର୍ଥ୍ୟର ଶିକ୍ଷା ଉପରେ ଗୁରୁତ୍ୱ ଦିଆଯିବ । ଏହି ପ୍ରଣାଳୀକୁ ନିମ୍ନମତେ ସୂଚିତ କରାଯାଇପାରେ ।

**ପ୍ରଥମ ବର୍ଷ ଶିକ୍ଷାରେ ମୌଖିକ ଯୋଗାଯୋଗ କୌଶଳ ।**

| ଲକ୍ଷ୍ୟ | ନିର୍ଦ୍ଦିଷ୍ଟ ସୂଚନା |
|---|---|
| *୧. ଦ୍ୱିତୀୟ ଭାଷା ଶିକ୍ଷାର ପ୍ରଥମ ବର୍ଷ ଶେଷରେ ଶିଶୁମାନେ ପରିଚିତ ବିଷୟରେ ଛୋଟ ଛୋଟ ବାକ୍ୟ ଗଠନ କରିପାରିବେ ।* | *● ଅନ୍ୟକୁ ପ୍ରୀତିପୂର୍ଣ୍ଣ ସମ୍ବୋଧନ କରିବାର ଭାଷା ।*<br>*● ଅନ୍ୟମାନଙ୍କର ନିର୍ଦ୍ଦେଶ ଓ ସୂଚନା ବୁଝିବାର ସାମର୍ଥ୍ୟ ।*<br>*● ସାଙ୍ଗସାଥିମାନଙ୍କୁ ଅନୁରୋଧ କରିବାର ଭାଷା ।*<br>*● ଗୋଟିଏ ଦୁଇଟି ଶବ୍ଦରେ ଉତ୍ତର ଦେବାର ଦକ୍ଷତା ।*<br>*● ପରିଚିତ ବସ୍ତୁ, ବ୍ୟକ୍ତି ଏବଂ ଘଟଣା ସବୁର ଛବି ସମ୍ପର୍କରେ କଥାବାର୍ତ୍ତା ।*<br>*● ନିଜ ବିଷୟରେ ପଚରା ଯାଉଥିବା ପ୍ରଶ୍ନର ସହଜ ସରଳ (ଦୁଇ ତିନୋଟି ଶବ୍ଦ କିମ୍ବା ସରଳ ବାକ୍ୟରେ) ଉତ୍ତର* |
| *୨. ପ୍ରଥମ ଭାଷା (ମାତୃଭାଷା) ରେ ଶିଖିଥିବା କିଛି ବିଷୟକୁ ଦ୍ୱିତୀୟ ଭାଷାରେ ପ୍ରକାଶ କରିବାର ସାମର୍ଥ୍ୟ ।* | *● ମାତୃଭାଷାର ଶିଖିଥିବା ରଙ୍ଗର ନାମ, ବିଭିନ୍ନ ଆକୃତି ଏବଂ ସଂଖ୍ୟାକୁ ଦ୍ୱିତୀୟ ଭାଷାରେ ପ୍ରକାଶ କରିବା ।* |

| | |
|---|---|
| ୩. ଦ୍ୱିତୀୟ ଭାଷାର ବର୍ଣ୍ଣମାଳା ସହିତ ପରିଚିତି ଏବଂ ପ୍ରତିଟି ଅକ୍ଷରର ଉଚ୍ଚାରଣ ଶିଖିବା । | • ମାତୃଭାଷା ଏବଂ ଦ୍ୱିତୀୟ ଭାଷାରେ ଉଚ୍ଚାରଣ ଗତ ପାର୍ଥକ୍ୟ ଲକ୍ଷ୍ୟ କରିବା ।<br>• ଦ୍ୱିତୀୟ ଭାଷାରେ ଉଚ୍ଚାରଣର ବୈଶିଷ୍ଟ୍ୟ ଲକ୍ଷ୍ୟ କରିବା । |
| ୪. କର୍ତ୍ତୃବାଚ୍ୟ ଏବଂ କର୍ମବାଚ୍ୟର ପାର୍ଥକ୍ୟ (ଶବ୍ଦ ସମ୍ଭାରର ବୃଦ୍ଧି) | • ପରସ୍ପର ଏବଂ ସ୍ଥାନୀୟ ପରିବେଶରେ ବ୍ୟବହୃତ ହେଉଥିବା ବସ୍ତୁ, ବ୍ୟକ୍ତି ଏବଂ ସ୍ଥାନ-ସବୁର ନାମ ଜାଣିବା ।<br>• ନୂଆ ନୂଆ ଶବ୍ଦର ବ୍ୟବହାର ଆରମ୍ଭ କରିବା । |
| ୫. ସାଧାରଣ ଭାବେ ବ୍ୟାକରଣଗତ ନିୟମ ଜାଣିବା । | • ବାକ୍ୟଗଠନ ସମୟରେ ବ୍ୟାକରଣ ନିୟମ ପ୍ରତି ସଚେତନତା ଦର୍ଶାଇବା । |

## ଲିଖନ /ପଠନ ଦକ୍ଷତା

| ଲକ୍ଷ୍ୟ | ନିର୍ଦ୍ଦିଷ୍ଟ ସୂଚନା |
|---|---|
| ୧. ପିଲାମାନେ ମାତୃଭାଷା ପଠନ-ସାମର୍ଥ୍ୟକୁ ଦ୍ୱିତୀୟ ଭାଷା ପଠନ କ୍ଷେତ୍ରରେ ଉପଯୋଗ କରିବେ । | • ଅନ୍ୟପାଖରେ ବସି ଛବି ଦେଖି ଦ୍ୱିତୀୟ ଭାଷାରେ ପଠନ ଅଭ୍ୟାସ ।<br>• ମନେମନେ କିଛି ପଠନୀୟ ସାମଗ୍ରୀର ବ୍ୟବହାର ।<br>• ଖବର କାଗଜ ଇତ୍ୟାଦିରେ ଶିରୋନମା ପଢ଼ିବା । |
| ୨. ମାତୃଭାଷାରେ ଆୟତ୍ତ କରିଥିବା ଓ ଲିଖନ ଅଭ୍ୟାସକୁ ଦ୍ୱିତୀୟ ଭାଷା କ୍ଷେତ୍ରରେ ପ୍ରୟୋଗ କରିବା । | • ଦ୍ୱିତୀୟ ଭାଷାରେ କେତେ ଶବ୍ଦ ଲେଖି ତାହାର ବନାନ ସଂଶୋଧନ କରିବା (ନିଜେ ନିଜେ କିମ୍ବା ଅନ୍ୟର ସହାୟତାରେ)<br>• ଛବିଟି ଦେଖି ଶବ୍ଦଟିଏ କିମ୍ବା ସରଳ ବାକ୍ୟଟିଏ ଲେଖିବା । |

### ଶବ୍ଦ ସମ୍ଭାର

ଦ୍ୱିତୀୟ ଭାଷାର ନିମ୍ନଲିଖିତ ଶବ୍ଦପୁଞ୍ଜ ଆୟତ୍ତ କରିବାର ସମ୍ଭାବନା ଖୁବ୍ ବେଶୀ ।

- ଅଭିନନ୍ଦନ/ଶୁଭେଚ୍ଛା ଜଣାଇବାର ଶବ୍ଦାବଳୀ
- ନାମ ଓ ବୟସ ପରି ବ୍ୟକ୍ତିଗତ ସୂଚନା ଜ୍ଞାପନ
- ଏକରୁ କୋଡ଼ିଏ ପର୍ଯ୍ୟନ୍ତ ସଂଖ୍ୟା

- ଶରୀରର ଅଂଶ ବିଶେଷ
- ଆତ୍ମୀୟ ସ୍ୱଜନମାନଙ୍କ ପାଇଁ ଶବ୍ଦାବଳୀ (ଅଜା, ଆଈ ଇତ୍ୟାଦି)
- ରଙ୍ଗସବୁର ନାମ
- ସମୟ ସୂଚାଉଥିବା ଶବ୍ଦାବଳୀ
- ଶ୍ରେଣୀଗୃହରେ ବ୍ୟବହୃତ ପଦାର୍ଥସବୁ
- ମୁଖ୍ୟ ମୁଖ୍ୟ ଖାଦ୍ୟର ନାମ
- ବିଭିନ୍ନ ପ୍ରକାର ପୋଷାକପତ୍ରର ନାମ
- ଘରେ ବ୍ୟବହାର କରାଯାଉଥିବା ମୁଖ୍ୟ ସାମଗ୍ରୀ
- ପ୍ରଧାନ ପ୍ରଧାନ ବୃକ୍ଷ ଏବଂ ଜୀବଜନ୍ତୁର ନାମ
- ସରଳ କ୍ରିୟାପଦ (କହିବା, ବସିବା, ଉଠିବା ଇତ୍ୟାଦି)

**ବାକ୍ୟରୀତି (ପ୍ରଥମ ବର୍ଷ ଶିକ୍ଷାର ଶେଷ ଭାଗରେ)**

୧- ଅଭିନନ୍ଦନ ଜଣାଇବାର ବାକ୍ୟ କହିପାରିବେ ଏବଂ ବୁଝିପାରିବେ ।

୨- ସରଳ ବାକ୍ୟର ବ୍ୟବହାର ଏବଂ ବୁଝିବା ସାମର୍ଥ୍ୟ

(କ) ହଁ/ନାହିଁ ର ବ୍ୟବହାର

(ଖ) କିଏ, କ'ଣ, କେଉଁଠି, କେତେବେଳେ, କାହିଁକି, କିପରି ଲାଗିଥିବା ପ୍ରଶ୍ନସବୁର ସରଳ ଉତ୍ତର ଦେଇପାରିବ ।

(ଗ) ନାସ୍ତିବାଚକ ବାକ୍ୟ ବ୍ୟବହାର କରିପାରିବେ ।

୩- ପରିଚିତ ପରିବେଶରେ ସରଳ ବାକ୍ୟର ବ୍ୟବହାର ଏବଂ ବୁଝିବାର ସାମର୍ଥ୍ୟ

(କ) ନିଜ ସମ୍ପର୍କରେ ଏବଂ ପରିବାର ସମ୍ପର୍କରେ କହିପାରିବେ ।

(ଖ) ନିଜ ଘରେ, ସ୍କୁଲରେ ଏବଂ ନିକଟସ୍ଥ ପରିବେଶରେ ବ୍ୟବହାର କରାଯାଉଥିବା ବସ୍ତୁ ସମ୍ପର୍କରେ କିଛି କହିପାରିବେ ।

(ଗ) ଅନ୍ୟମାନଙ୍କର କାମ ସମ୍ପର୍କରେ କିଛି ସୂଚାଇ ଦେଇପାରିବେ ।

୪- ନିମ୍ନ ବିଷୟରେ କରି ସୂଚନା ଦେଇପାରିବେ ।

(କ) ମୋର ପରିବାର

(ଖ) ମୋର ଶରୀର

(ଗ) ମୋର ବିଦ୍ୟାଳୟ

(ଘ) ଆମ ଘର

(ଙ) ଆମର ଗ୍ରାମ/ସହର

(ଚ) ଆମର ପରିବେଶ

(ଛ) ମୁଁ କ'ଣ କରେ

**ଶିକ୍ଷଣ ପ୍ରଣାଳୀ**

ପରିଚିତ ବିଷୟ ବସ୍ତୁ ସହିତ ସମ୍ପର୍କିତ ପାଠ୍ୟପୁସ୍ତକର ସାହାଯ୍ୟ ନେଇ ଭାବର ଆଦାନପ୍ରଦାନ ମାଧ୍ୟମରେ ଶବ୍ଦାବଳୀ ଏବଂ ବାକ୍ୟରୀତିର ତାଲିମ ଦେବା ବିଧେୟ । ଦ୍ୱିତୀୟ ଭାଷାର ଶିକ୍ଷା କ୍ଷେତ୍ରରେ ଅର୍ଥପୂର୍ଣ୍ଣ ବିଷୟବସ୍ତୁ ଏବଂ ଭାବ ଆଦାନପ୍ରଦାନର କାର୍ଯ୍ୟଧାରା ମୁଖ୍ୟ ଭିତ୍ତିଭୂମି ଯୋଗାଇବ । ଅର୍ଥ ନ ବୁଝି ଅନେକ ଶବ୍ଦ ମୁଖସ୍ଥ କରିବା ଏବଂ ବ୍ୟାକରଣ ଉପରେ ମାତ୍ରାଧିକ ଗୁରୁତ୍ୱ ଆରୋପ ଯଥାସମ୍ଭବ ଏଡ଼ାଇ ଯିବା ଉଚିତ ।

ଶିକ୍ଷାର୍ଥୀ ସେହି ପର୍ଯ୍ୟାୟରେ ଆୟତ୍ତ କରିସାରିଥିବା ଶବ୍ଦାବଳୀ ଉପରେ ପାଠ୍ୟ ବିଷୟ ଆଧାରିତ ହେବ । ଶିକ୍ଷାର୍ଥୀ ଭାଷା ବୁଝିପାରୁଛି କି ନାହିଁ, ମଝିରେ ମଝିରେ ତାହାର ପରୀକ୍ଷା ନିରୀକ୍ଷା କରାଯିବା ଉଚିତ । ପ୍ରଶିକ୍ଷକ ଇଚ୍ଛାକରେ ନିମ୍ନରେ ଦିଆଯାଇଥିବା ସାପ୍ତାହିକ ପରାମର୍ଶର ଅନୁସରଣ କରିପାରନ୍ତି ।

| ଦିନ | ଲକ୍ଷ୍ୟ | ଶିକ୍ଷା କାର୍ଯ୍ୟକ୍ରମ |
|---|---|---|
| ସୋମବାର | ବିଷୟବସ୍ତୁ ଓ ଶବ୍ଦାବଳୀ | ● ଗଳ୍ପ ସହିତ ସମ୍ପୃକ୍ତଥିବା ବସ୍ତୁ ଓ ଛବି ବ୍ୟବହାର କରି ଶିଶୁର ଶବ୍ଦଜ୍ଞାନ ପରୀକ୍ଷା କରିବ ।<br>● ଛବି, ବସ୍ତୁ, କିମ୍ବା ଭାବଭଙ୍ଗୀର ସାହାଯ୍ୟ ନେଇ ସରଳ ଗଳ୍ପଟିଏ କହିବ ।<br>● ଶିଶୁ ଭାଷାର ସାହାଯ୍ୟ ନନେଇ ଉତ୍ତର ଦେଇ ପାରୁଥିବା ପ୍ରଶ୍ନ ପଚାରିବା (ଯଥା – ଛବିକୁ ଦେଖାଇ, କିମ୍ବା ଘରଟିକୁ ଦେଖାଇ)<br>● ହଁ / ନାହିଁ ରେ ଉତ୍ତର ଦେବା ଭଳି ପ୍ରଶ୍ନ ପଚାରିବା (ଯଥା : ପିଲାଟି ଖୁସି ହେଲା କି, ସେ ଖାଇଲା କି ?)<br>● ଗୋଟିଏ ଶବ୍ଦରେ ଉତ୍ତର ଦେବାଭଳି ପ୍ରଶ୍ନ ପଚାରିବା (ଯଥା : ସେ କ'ଣ ଖାଇଲା, ସେ କେଉଁଠିକୁ ଗଲା ?)<br>● ଅଙ୍ଗଭଙ୍ଗୀ (ନାଟକୀୟ) କରି ଗଳ୍ପଟିକୁ ଶୁଣାଇବା । |
| ମଙ୍ଗଳବାର | ଶବ୍ଦ, ବୋଧଜ୍ଞାନ ଏବଂ ଉପସ୍ଥାପନ | ● ଛବିରେ ଶ୍ରେଣୀର କିମ୍ବା ନିକଟ ପରିବେଶର ବସ୍ତୁସବୁ ଚିହ୍ନାଇବା (ଶିକ୍ଷକ ନିର୍ଦ୍ଦେଶ ଦେବେ– "ଦୁଇଟି ଫୁଲ ଦେଖାଅ" ଛାତ୍ରଛାତ୍ରୀ ଫୁଲ ଦୁଇଟି ଚିହ୍ନଟ କରିବେ) |

| | | |
|---|---|---|
| | | • ଶବ୍ଦ ବ୍ୟବହାର କରି ଛବିର ନାମ କରଣ କରିବେ (ଯଥା - ଫୁଲ, ଫଳ ଇତ୍ୟାଦି) • ପ୍ରଶିକ୍ଷକ ଗୋଟିଏ କାମ କରିବେ (ଯଥା - ଚାଲିବା କାମ) । ଶିକ୍ଷାର୍ଥୀ ଶବ୍ଦରେ ପ୍ରକାଶ କରିବେ । • ପ୍ରଶିକ୍ଷକ ଗୋଟିଏ ଶବ୍ଦର ପ୍ରଥମ ଅଂଶ କହିବେ ଶିକ୍ଷାର୍ଥୀ ପୂରା ଶବ୍ଦଟି କହିବେ । • ଗୀତ ଗାଇବା ସମୟରେ ଅଙ୍ଗଭଙ୍ଗୀର ପ୍ରଦର୍ଶନ । |
| ବୁଧବାର | ମୌଖିକ ଯୋଗାଯୋଗ (ବାର୍ତ୍ତା ଆଦାନ ପ୍ରଦାନ) | • ପ୍ରଶିକ୍ଷକ ସରଳ ପ୍ରଶ୍ନ ପଚାରିବେ । (ତୁମର କେତେ ଭାଇ ଭଉଣୀ) • ମିଛିମିଛିକା ଖେଳଖେଳି ପିଲାମାନେ କିଛି ଶବ୍ଦ ବ୍ୟବହାର କରିବେ । • ପିଲାମାନେ ଗୋଲାକାର ହୋଇ ବସିବେ ଏବଂ ଗୀତ ଗାଇବା ସମୟରେ ଗୋଟିଏ ବଲ ଜଣେ ଅନ୍ୟ ଜଣକୁ ବଢ଼ାଇଦେବ । ଗୀତ ବନ୍ଦ ହେବାମାତ୍ରେ ବଲଟି ଯାହା ହାତରେ ଥିବ ସେ ପ୍ରଶ୍ନର ଉତ୍ତର ଦେବ । ପ୍ରଶିକ୍ଷକ ସହଜ ପ୍ରଶ୍ନ ପଚାରିବେ (ଯଥା- ତମ ପରିବାରରେ ଆଉ ସବୁ କେଉଁମାନେ ରହିଛନ୍ତି ?) • ଦିନଟିର କାର୍ଯ୍ୟାବଳୀ କିମ୍ବା ଗତକାର୍ଯ୍ୟରେ କାର୍ଯ୍ୟାବଳୀ ବର୍ଣ୍ଣନା କରିବାକୁ କୁହାଯିବ । |
| ଗୁରୁବାର | ଲିଖନ ଓ ଉଚ୍ଚାରଣ ଚିହ୍ନଟ | • କେଉଁପରି ଉଚ୍ଚାରଣ ତୁମ ମାତୃଭାଷାର ରହିଛି ? କେଉଁପରି ଉଚ୍ଚାରଣ ନୂଆ ଲାଗୁଛି ? |

| | | |
|---|---|---|
| | | • ଛନ୍ଦରେ ପଡୁଥିବା ଶବ୍ଦାବଳୀ କହିବାକୁ କୁହାଯାଇପାରେ । • ଶ୍ରୁତଲିଖନ (ଶିକ୍ଷାର୍ଥୀମାନେ ଶବ୍ଦ ଶୁଣି ଲେଖିବେ ଏବଂ ପରେ ସେସବୁ ସଂଶୋଧନ କରାଯାଇ ଜଣାଇ ଦିଆଯିବ) |
| ଶୁକ୍ରବାର | ବାକ୍ୟର ଗଠନ ରୀତି | • ପରିଚିତ ପରିବେଶକୁ ନେଇ ସରଳ ଗଳ୍ପଟିଏ ପିଲାକୁ କହିବା । • ମାତୃଭାଷାରେ ଶିଖିବା ଗୋଟିଏ ସରଳ ଗପକୁ ଦ୍ୱିତୀୟ ଭାଷାରେ କହିବାର ତାଲିମ । • ଗଳ୍ପ ପ୍ରସ୍ତୁତ କଲାପରେ କେତେଗୁଡ଼ିଏ ଛବିର କାର୍ଡ଼ କ୍ରମାନ୍ୱୟରେ ଲେଖିବା ଏବଂ ଏହାକୁ ଦେଖି ଗପ ତିଆରି କରିବାକୁ ପିଲାମାନଙ୍କୁ କହିବା । • ପ୍ରଶିକ୍ଷକ ଗୋଟିଏ ଗପ ଆରମ୍ଭ କରିଦେବେ । ଗୋଟିଏ ପିଲା ଆସି କିଛି ଯୋଗ କରିବ, ପର ପିଲାଟି ଆଉ ଟିକିଏ ଯୋଗ କରିବ, ଏହିପରି ଯଥା ସମ୍ଭବ ଗପଟିକୁ ଦୀର୍ଘ କରିବାର ଚେଷ୍ଟା କରାଯିବ । • ଛବିଟିଏ ଦେଖି ବର୍ଣ୍ଣନା କରିବାର ତାଲିମ । |
| ଶନିବାର | ସଂଶୋଧନ ଏବଂ ପୁନଃସଂକଳନ | • ପିଲାମାନେ ଅପରିଚିତ ଥିବା ବିଷୟ ସମ୍ପର୍କରେ ପ୍ରଶ୍ନ କରାଯିବ । ପିଲାମାନେ ପରିଚିତ ଶବ୍ଦାବଳୀ ସାହାଯ୍ୟରେ ଉତ୍ତର ଦେବେ । • ପିଲାମାନେ ଏକତ୍ର ସମବେତ ସଂଗୀତ ଗାଇବେ • ସମସ୍ତେ ମିଳିମିଶି ଗଳ୍ପଟିଏ ପ୍ରସ୍ତୁତ କରିବେ । |

ସାପ୍ତାହିକ କାର୍ଯ୍ୟକ୍ରମ ନୂଆ ସପ୍ତାହର ପୁଣି ଅନୁସୃତ ହେବ । ପିତାମାତା, ଶିକ୍ଷକ ଶିକ୍ଷୟିତ୍ରୀ ଏବଂ ଅନ୍ୟ କେହି ବୟସ୍କ ବ୍ୟକ୍ତି ପ୍ରଶିକ୍ଷକର ଭୂମିକା ନେଇପାରନ୍ତି । ସ୍ଥୂଳତଃ ମାତୃଭାଷାର ଭାଷାଜ୍ଞାନ ଉପରେ ପ୍ରତିଷ୍ଠିତ ଦ୍ୱିତୀୟ ଭାଷାର ଦକ୍ଷତାକୁ ସମାନ ସ୍ତରକୁ ଜାଣିବାର ପ୍ରୟାସ ସଫଳ ରୂପ ନେବାରେ ବିଶେଷ ବାଧା ନାହିଁ । ଏପରି ବିଚାରବୋଧ ପ୍ରତ୍ୟେକ ଦାୟିତ୍ୱସମ୍ପନ୍ନ ଭାରତୀୟ ନାଗରିକମାନଙ୍କଠାରେ ଅଙ୍କୁରିତ ଓ ବିକଶିତ ହେବା ପ୍ରୟୋଜନ ।

# ଶିକ୍ଷଣ ଓ ଚିନ୍ତନ-ଶୈଳୀ

ସ୍କୁଲକୁ ଯିବା ଆରମ୍ଭ କରିବା ପରେ ପରେ ଶିଶୁମାନଙ୍କର ଶିକ୍ଷଣ ଓ ଚିନ୍ତନ ଶୈଳୀର ଏକ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟେ । ମଣିଷର ମନ କିପରି କାର୍ଯ୍ୟ କରୁଛି, ଏ ସମ୍ପର୍କରେ ସେମାନଙ୍କର ସଚେତନତା ବୃଦ୍ଧିପାଏ । ବିଶେଷଜ୍ଞମାନେ ଏହାକୁ ଶିଶୁର ସୂକ୍ଷ୍ମତର ଜ୍ଞାନ (Metacognition) ବୋଲି କହିଛନ୍ତି । ଧରାଯାଉ ପିଲାମାନଙ୍କୁ ପଚରାଯିବ, କେଉଁ ସଂଖ୍ୟାଟି ମନେରଖିବା ସହଜ-୨୩୯ କି ୫୭୨୧୮୯୦ ?

ଏ କ୍ଷେତ୍ରରେ ପ୍ରାକ୍-ବିଦ୍ୟାଳୟର ଏବଂ ସ୍କୁଲଛାତ୍ରଟି ଉତ୍ତର ଦେବ ଯେ ୭୩୯ ମନେରଖିବା ସହଜ । ମାତ୍ର ବଡ଼ ସଂଖ୍ୟାଟିକୁ ମନେରଖିବା ସମ୍ଭବ କି ? ପ୍ରଶ୍ନର ଉତ୍ତର ଦେବାକୁ ଯାଇ ପ୍ରାକ୍-ବିଦ୍ୟାଳୟର ଶିଶୁମାନେ ନିର୍ଭୁଲଭାବେ ବିଶେଷ କିଛି କହି ପାରିବେ ନାହିଁ । କିନ୍ତୁ ସ୍କୁଲକୁ ଯାଉଥିବା ପିଲାଟି କହିପାରିବ ଯେ କେତେକ ଅବସ୍ଥାରେ ଜଣେ ଅଧିକ ଅଙ୍କ ବିଶିଷ୍ଟ ସଂଖ୍ୟା ମନେରଖି ପାରିବ । କାଗଜ କଲମ ବ୍ୟବହାର କରିବାର ସୁଯୋଗ ଦିଆଗଲେ ଧୀରେ ଧୀରେ କିମ୍ବା ବଡ଼ପାଟିରେ ସଂଖ୍ୟାଗୁଡ଼ିକର ପୁନରାବୃତ୍ତି (Rehearsal) କରିବାର ସୁଯୋଗ ମିଳିଲେ ଏବଂ ସଂଖ୍ୟାଟି ଦେଖାଇବା ଏବଂ ଶୁଣାଇବା ସମୟରେ ଧୀର ଗତିରେ ଏହା କରାଗଲେ ଜଣେ ଛ' ଅଙ୍କ ଆଠ ଅଙ୍କ ବିଶିଷ୍ଟ ସଂଖ୍ୟା ମନେ ରଖିପାରିବ । ଏହାର ତାତ୍ପର୍ଯ୍ୟ ହେଉଛି ଯେ ସ୍କୁଲ ବୟସର ପିଲା ମନର କ୍ରିୟାକଳାପ ସମ୍ପର୍କରେ କିଛିଟା ଜ୍ଞାନ ଆହରଣ କରିଥାଏ । ଏହା ତାହାକୁ ସମସ୍ୟା ସମାଧାନରେ ସାହାଯ୍ୟ କରେ ।

### ଶିକ୍ଷଣ କୌଶଳ

ମନର କ୍ରିୟାକଳାପ ସମ୍ପର୍କରେ ଜ୍ଞାନ ଶିଶୁର ଶିକ୍ଷଣ କୌଶଳକୁ ପରିପକ୍ୱ କରେ । ଏପରି କୌଶଳସବୁର ଆହରଣ କେବଳ ଭାଷା ଦକ୍ଷତା କ୍ଷେତ୍ରରେ ପ୍ରତିଫଳିତ ହୋଇନଥାଏ । ଅନ୍ୟ ସବୁ ନୂତନ ସମସ୍ୟା ସମାଧାନରେ ମଧ ସହାୟକ ହୁଏ ।

ଅଳ୍ପ ବୟସରର ପିଲାଙ୍କ ତୁଳନାରେ ସ୍କୁଲ ବୟସର ପିଲାମାନେ କୌଣସି ଏକ ପରିସ୍ଥିତିର ସବୁ ଦିଗ ପ୍ରତି ଅଭିନିବିଷ୍ଟ (Attentive) ହୁଅନ୍ତି । ଧରାଯାଉ ପିଲାମାନଙ୍କୁ କେତେଗୁଡ଼ିଏ ଛବି ଦେଖାଗଲା ଏବଂ ଏହି ଛବି ମଧରେ ଦୁଇଟି ଛବି ଏକାପରି । ଏହି ସମାନ ଛବି ଦୁଇଟିକୁ ଚିହ୍ନଟ କରିବାକୁ ହେବ । ଏ କ୍ଷେତ୍ରରେ ପ୍ରାକ୍‌ବିଦ୍ୟାୟଳର ଶିଶୁମାନେ ବିଫଳ ହୋଇ ପାରନ୍ତି । ଛବି ଦେଖିବା ସମୟର ଛବିର ଗୋଟିଏ ଦିଗ (ଯଥା-ରଙ୍ଗ କିମ୍ବା ବଡ଼ ଆକାର) ପ୍ରତି ଏମାନେ ଅଭିନିବିଷ୍ଟ (Attentive) ହୋଇ ସେଥିରେ ମଜ୍ଜି ରୁହନ୍ତି ।

ଫଳରେ ଅନ୍ୟସବୁ ଦିଗ ଏଡ଼ାଇ ଯାଆନ୍ତି । ଅନ୍ୟ ପକ୍ଷରେ ବଡ଼ ପିଲାମାନେ ଛବିର ବର୍ଣ୍ଣନା ବହୁଳତା (Details) ପ୍ରତି ଦୃଷ୍ଟି ଦେଉଥିବାରୁ ସମସ୍ୟା ସମାଧାନ ସହଜ ହୁଏ ।

ବଡ଼ ପିଲାମାନେ ସମସ୍ୟା ସମାଧାନ ସମୟରେ ମନେ ମନେ କିମ୍ବା ବଡ଼ପାଟିରେ ପୁନରାବୃତ୍ତି (Rehearsal)ର ଉପଯୋଗ କରନ୍ତି । ଏପରି ପୁନରାବୃତ୍ତି ଫଳରେ ସ୍ମରଣ ସାମର୍ଥ୍ୟ ବୃଦ୍ଧିପାଏ । ଉଦାହରଣ ସ୍ୱରୂପ, ଅନେକଗୁଡ଼ିଏ ଅଙ୍କ ଥିବା ବଡ଼ ସଂଖ୍ୟାଟି ଦେଖିଲେ କିମ୍ବା ଶୁଣିଲେ ସେମାନେ ଉଚ୍ଚାରଣ କରନ୍ତି । ପୁନରାବୃତ୍ତି କରନ୍ତି । ଛୋଟ ପିଲାମାନଙ୍କୁ ଅନେକ ସମୟରେ ଏହା କୁହାଗଲେ ମଧ୍ୟ ସେମାନେ କେବଳ ସେଇ ସମୟରେ ବ୍ୟବହାର କରନ୍ତି । ପରବର୍ତ୍ତୀ ସମୟରେ ସମାନ ପରିସ୍ଥିତିରେ ଏହାର ଉପଯୋଗ କରିବାର ସାମର୍ଥ୍ୟ ସେମାନଙ୍କର ବିକଶିତ ହୋଇନଥାଏ ।

ତୃତୀୟତଃ ସ୍କୁଲ ବୟସର ପିଲାମାନେ ସୂଚନାସବୁକୁ ଅଧିକ ସଂଗଠିତ କରିବାର ଲକ୍ଷ୍ୟ କରାଯାଏ । ସାମଗ୍ରୀ ସବୁକୁ କିପରି ଦଳଭୁକ୍ତ (Grouping) କଲେ କିମ୍ବା କିପରି ଭାବରେ ସଜ୍ଜୀକରଣ (Organization) କଲେ ସମସ୍ୟା ସମାଧାନ ଅପେକ୍ଷାକୃତ ସହଜ ହେବ, ସେ ସମ୍ପର୍କରେ ଧାରଣା ଥାଏ । ଅଧିକ ଅଙ୍କବିଶିଷ୍ଟ ସଂଖ୍ୟା (ଯଥା-୫୪୩୮୭୬)ଟିକୁ ମନେରଖିବା କ୍ଷେତ୍ରରେ ସେମାନେ ପ୍ରତ୍ୟେକ ଅଙ୍କଟିକୁ ପୃଥକ୍ ପୃଥକ୍ ବିଚାର ନକରି ପ୍ରଥମ ତିନୋଟି (୫୪୩) ଏବଂ ଦ୍ୱିତୀୟ ତିନୋଟି (୮୭୬) ଦୁଇଟି ଦଳ (Chunk) ହିସାବରେ ମନେରଖନ୍ତି । ପୁଣି ଏହି ଦୁଇଦଳର କେବଳ ପ୍ରଥମ ସଂଖ୍ୟା (୫ ଏବଂ ୮) ଦୁଇଟି ମନେରଖି ସଂଖ୍ୟା ଦଳର ପରବର୍ତ୍ତୀ ସଂଖ୍ୟାମାନ କ୍ରମଶଃ କମିଛି ବୋଲି ମନେ ରଖନ୍ତି । ଏପରି ବିଭାଗୀକରଣ (Chunking ବା Grouping) ସ୍ମରଣ କ୍ଷେତ୍ରରେ ବେଶ୍ ସହାୟକ ହୁଏ ।

ସ୍କୁଲ ବୟସର ପିଲାମାନେ ଏସବୁ କୌଶଳ କିପରି ହାସଲ କରନ୍ତି, ସେ ବିଷୟରେ ମନରେ ପ୍ରଶ୍ନ ଉଠିପାରେ । ଏ କ୍ଷେତ୍ରରେ ପିଲାମାନଙ୍କ ପାଖରେ ଏକାଧିକ ମାର୍ଗ ରହିଛି । ବେଳେ ବେଳେ ପିଲାମାନେ ଆକସ୍ମିକ ଭାବରେ ଏସବୁର ଅଧିକାରୀ ହୁଅନ୍ତି । ସମସ୍ୟା ସମାଧାନ ସମୟରେ ଭିନ୍ନ ଭିନ୍ନ ପ୍ରଣାଳୀ ଅବଲମ୍ବନ କରୁ କରୁ କୌଣସି ଗୋଟିଏ ପ୍ରଣାଳୀ ସର୍ବୋତ୍କୃଷ୍ଟ ବୋଲି ଅନୁଭୂତ ହୁଏ । ବାରମ୍ବାର ସଫଳତା ବିଫଳତା ମଧ୍ୟରେ ଗୋଟିଏ ପ୍ରଣାଳୀର ଉତ୍କର୍ଷ ପିଲାଟିର ଖୁବ୍ ମନୋମତ ହୋଇଥାଏ । ଏହି କୌଶଳଟିକୁ ଶିଶୁ ଧରି ରଖିବାକୁ ଚେଷ୍ଟାକରେ । ପ୍ରବନ୍ଧ ଲେଖିବା ସମୟରେ ଶ୍ରେଣୀ ଶିକ୍ଷକ ପ୍ରଥମେ ଏଥିପାଇଁ ଏକ ଯୋଜନା ଏବଂ ମୁଖ୍ୟ ଟିପପ୍ପଣୀ ପ୍ରସ୍ତୁତ କରିବାର ପରାମର୍ଶ ଦେଇଥାନ୍ତି । ମାତ୍ର ପିଲାଟି ସମୟ ସମୟରେ ଏହା ନକରି ସିଧାସଳଖ ପ୍ରବନ୍ଧ ଲେଖିପାରେ । ଏ ପରିପ୍ରେକ୍ଷୀରେ ତା'ର ପ୍ରବନ୍ଧଗୁଡ଼ିକ ଉତ୍କୃଷ୍ଟ ବିବେଚିତ ହେଲେ ସେ ଏହି ପଦ୍ଧତିଟି ଅନୁସରଣ କରେ । ପୂର୍ବ ଟିପ୍ପଣୀ ପ୍ରସ୍ତୁତ ନକରି ସିଧାସଳଖ ପ୍ରବନ୍ଧ ଲେଖିବାର ଯତ୍ନ କରେ ।

ଶିଶୁର ଅନ୍ୟ କେତେକ କୌଶଳ ଯୁକ୍ତିଯୁକ୍ତି ବିଚାର ଉପରେ ପ୍ରତିଷ୍ଠିତ । ଅଳ୍ପ ସମୟରେ ଲକ୍ଷ୍ୟ କରାଯାଏ ଯେ ଶିଶୁ କୌଣସି ଏକ ଭୂମିକା ନିର୍ବାହ କଲାବେଳେ ତାହାକୁ ଯଥାରୀତି କରି ଯାଉଛି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ଶିଶୁ ହୁଏତ ଦୂରଦର୍ଶନର ଏକ

କାର୍ଯ୍ୟକ୍ରମରେ ନିଆଁ ଲିଭାଳୀର କାର୍ଯ୍ୟଟି ଅସମ୍ପୂର୍ଣ୍ଣ ଭାବରେ ଦେଖାଥାଇପାରେ । ମାତ୍ର ଖେଳିବା ସମୟରେ ସେ ଏହି ଭୂମିକାଟି ଠିକ୍‌ଭାବରେ କରିଯାଉଛି । ନିଆଁ ଲିଭାଳୀର କାର୍ଯ୍ୟ ପୂରାପୂରି ଦେଖିନଥିଲେ ମଧ୍ୟ ଏପରି କାର୍ଯ୍ୟର ରୂପରେଖ ସମ୍ପର୍କରେ ସେ ଧାରଣା କରିପାରୁଛି ।

ତୃତୀୟତଃ ଶିଶୁ ନିଜର ପର୍ଯ୍ୟବେକ୍ଷଣ (Obsevation) ମାଧ୍ୟମରେ କେତେକ ଶିକ୍ଷଣ କୌଶଳ ହାସଲ କରେ । ଅନ୍ୟମାନେ କିପରି କଥାବାର୍ତ୍ତା ହେଉଛନ୍ତି ଏବଂ କିପରି ବ୍ୟବହାର କରୁଛନ୍ତି, ଶିଶୁ ତାହା ଲକ୍ଷ୍ୟକରେ । ଏହାର ପରିଣତିକୁ ମଧ୍ୟ ପର୍ଯ୍ୟବେକ୍ଷଣ କରେ । ଗୋଟିଏ ପିଲା ପରିବାର ମଧ୍ୟରେ ତାର ବଡ଼ ଭାଇ କିମ୍ବା ବଡ଼ ଭଉଣୀର ବ୍ୟବହାର ପର୍ଯ୍ୟବେକ୍ଷଣ କରେ । ବଡ଼ ଭାଇ ବାପାଙ୍କ ପାଖରେ କିଭଳି ଯୁକ୍ତିକରି ହକେ ନୂଆ ଜାମା ଆଦାୟ କଲା, ତାହା ପର୍ଯ୍ୟବେକ୍ଷଣ କରେ । ପରବର୍ତ୍ତୀ ସମୟରେ ସେ ନିଜେ ଏପରି ଯୁକ୍ତିର ଉପଯୋଗ କରେ । ଅନ୍ୟ ପକ୍ଷରେ ବଡ଼ଭାଇ ଏ କ୍ଷେତ୍ରରେ ବିଫଳ ହୋଇଥିଲେ ସେ ଏପରି ଯୁକ୍ତିର ପ୍ରୟୋଗ କରେନାହିଁ ।

ବୟସର ବୃଦ୍ଧି ସହିତ ପିଲାମାନେ ଏସବୁର କୌଶଳ ହାସଲ କରିଥାନ୍ତି । ତଥାପି ପିତାମାତା ଏବଂ ଶିକ୍ଷକ ଶିକ୍ଷୟିତ୍ରୀ ଇଚ୍ଛାକଲେ ଏସବୁ କୌଶଳର ତାଲିମ ଦେଇପାରନ୍ତି । ଏହାଫଳରେ ଶିଶୁ ଅଳ୍ପ କିଛି ବର୍ଷ ପୂର୍ବରୁ ଏପରି ଶିକ୍ଷଣ କୌଶଳର ଅଧିକାରୀ ହୋଇପାରେ । ବେଳେବେଳେ ଗୋଟିଏ ସଫଳ କୌଶଳ ପ୍ରତି ଶିଶୁର ଦୃଷ୍ଟି ଆକର୍ଷଣ କରାଇ ଅଭିଭାବକ ବା ଶିକ୍ଷକ ତା'ର ଫଳାଫଳ ସୂଚାଇ ଦିଅନ୍ତି । ଉଦାହରଣ ସ୍ୱରୂପ ବଡ଼ଭାଇର ପରିଶ୍ରମ ତାକୁ କିପରି ସଫଳତା ଆଣିଦେଇଛି, ତାହାର ଦୃଷ୍ଟାନ୍ତ ଦୋହରାନ୍ତି । ଅନ୍ୟ ସମୟରେ ପିତାମାତା କୌଶଳଟି କାହିଁକି ସଫଳତା ଆଣିଛି, ତା'ର କାର୍ଯ୍ୟକାରଣ ସମ୍ପର୍କ ଆଲୋଚନା କରନ୍ତି । ମୋଟ ଉପରେ ଶିଶୁ ସଫଳତାର ଅନ୍ତରାଳରେ ଥିବା କାରଣ ଜାଣୁ ବା ନଜାଣୁ, ଅନ୍ତତଃ କୌଶଳଟି ଶିକ୍ଷା କରିବାରେ ସମର୍ଥ ହୁଏ ।

## ଚିନ୍ତନ ଶୈଳୀ

ଶିଶୁର ଚିନ୍ତନ ଶୈଳୀର ଭିନ୍ନତା ଲକ୍ଷ୍ୟ କରାଯାଇଛି । ପରିବେଶକୁ ପ୍ରତ୍ୟକ୍ଷ କରିବା ଏବଂ ସମସ୍ୟା ସମାଧାନ କରିବା କ୍ଷେତ୍ରରେ ସବୁ ଶିଶୁ ଏକପ୍ରକାର ଶୈଳୀର ଉପଯୋଗ କରିନଥାନ୍ତି । ଶିଶୁମାନଙ୍କ କ୍ଷେତ୍ରରେ ଅନେକ ଧରଣର ଚିନ୍ତନ ଶୈଳୀ ପରିଦୃଷ୍ଟ ହେଲେ ମଧ୍ୟ ଦୁଇ ତିନୋଟି ମୁଖ୍ୟ ଶୈଳୀର ଆଲୋଚନା କରାଯାଇପାରେ ।

ସ୍କୁଲ ବୟସର ପିଲାମାନଙ୍କ କ୍ଷେତ୍ରରେ ବହୁଳ ଭାବରେ ପରିଲକ୍ଷିତ ହେଉଥିବା ଗୋଟିଏ ଚିନ୍ତନ ଶୈଳୀ ହେଉଛି ଏକମୁଖୀ (Convergent) ଚିନ୍ତନ ଏବଂ ବହୁମୁଖୀ (Divergent) ଚିନ୍ତନ । ଗୋଟିଏ ସୁନିର୍ଦ୍ଦିଷ୍ଟ ଉତ୍ତର ଅନ୍ୱେଷଣ କରାଯିବା ପରିସ୍ଥିତିରେ ଏକମୁଖୀ ଚିନ୍ତନ ପ୍ରୟୋଗ କରାଯାଏ । ଗାଣିତିକ ସମାଧାନ କ୍ଷେତ୍ରରେ ଉତ୍ତର ଏକ ଏବଂ ଅଭିନ୍ନ । ସୁତରାଂ ଏଠାରେ ଏକମୁଖୀ ଚିନ୍ତନ ଶୈଳୀର ଉପଯୋଗ କରାଯାଏ । କିନ୍ତୁ ଉଦ୍ୟାନଟିକୁ କିପରି ସଜାଇବାକୁ ହେବ, ତାହାର ଏକମାତ୍ର ଉତ୍ତର ନାହିଁ । ଏକାଧିକ ଉତ୍ତର ଉନ୍ନତ ଏବଂ ଗ୍ରହଣୀୟ ହୋଇପାରେ । ସେହିପରି ଇଟାଖଣ୍ଡକୁ କିପରି ବ୍ୟବହାର କରାଯାଇପାରିବ,

ଏହାର ଉତ୍ତର ଦେବାକୁ ଯାଇ ପିଲାଟି ହୁଏତ କହିପାରେ ଯେ ମନ୍ଦିର ନିର୍ମାଣ, ଗୃହ ନିର୍ମାଣ, ଗୋଦାମ ନିର୍ମାଣ, ସ୍କୁଲ ନିର୍ମାଣ, ଏବଂ ଗୁହାଳ ନିର୍ମାଣରେ ଇଟା ବ୍ୟବହାର ହେବ । ଏ କ୍ଷେତ୍ରରେ ପିଲାଟି ପାଞ୍ଚୋଟି ଉତ୍ତର ଦେଇଥିଲେ ମଧ୍ୟ ସବୁ ଉତ୍ତରର କେନ୍ଦ୍ରବିନ୍ଦୁ ହେଉଛି– ନିର୍ମାଣ କରିବା । ସୁତରାଂ ଏଥିରେ ଏକମୁଖୀ ଚିନ୍ତା ପ୍ରତିଫଳିତ ।

କେତେକ ଶିଶୁ ଅନ୍ୟ ଶିଶୁମାନଙ୍କ ତୁଳନାରେ ବେଶୀ ସମୟରେ ଏକମୁଖୀ ଚିନ୍ତନଶୈଳୀ ପ୍ରଦର୍ଶନ କରନ୍ତି । ସେମାନେ ଏକ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଉପରେ ଅଭିନିବିଷ୍ଟ ରୁହନ୍ତି । ନିର୍ଦ୍ଦିଷ୍ଟ ସଠିକ ଉତ୍ତରଟି ଅନ୍ୱେଷଣ କରିବା ପରି ସୁନିର୍ଦ୍ଦିଷ୍ଟ ସମାଧାନ ରହିଥିବା ସମସ୍ୟା ସବୁରେ ଅଧିକ ସମୟ ଦିଅନ୍ତି । କହିବା ନିଷ୍ପ୍ରୟୋଜନ ଯେ କେତେକ କ୍ଷେତ୍ରରେ ଏକମୁଖୀ ଚିନ୍ତନଶୈଳୀ ଉପଯୋଗୀ ହୁଏ ଏବଂ ଅଧିକାଂଶ ଶିଶୁ ଅଳ୍ପବହୁତେ ଏ ଶୈଳୀର ବ୍ୟବହାର କରନ୍ତି ।

ଅନ୍ୟ ପକ୍ଷରେ ବହୁମୁଖୀ ଚିନ୍ତନ ଶୈଳୀ ଅନ୍ୟ କେତେକ ଶିଶୁଙ୍କର ବହୁ ବ୍ୟବହୃତ ସମାଧାନ ଭଙ୍ଗୀ । ଏମାନେ ଅଧିକ ମାତ୍ରାରେ ସୃଜନଶୀଳ । ସାହିତ୍ୟ ଓ ଚିତ୍ରକଳା ପରି ସୃଜନଶୀଳ କାର୍ଯ୍ୟକ୍ଷେତ୍ରରେ ଏହାର ବିଶେଷ ଉପଯୋଗିତା ରହିଛି । କଠୋର ଶୃଙ୍ଖଳାର ବଶବର୍ତ୍ତୀ ନହୋଇ ବିଭିନ୍ନ ଧରଣର ସୃଜନାତ୍ମକ ସମାଧାନ ଆଣିବା ଏ ଚିନ୍ତନ ଶୈଳୀର ମୁଖ୍ୟ ଆଭିମୁଖ୍ୟ ।

ପିଲାମାନଙ୍କ କ୍ଷେତ୍ରରେ ଆଉ ଗୋଟିଏ ଭଙ୍ଗୀ ହେଉଛି ଚିନ୍ତାକାରୀ (Reflective) ଏବଂ ଆବେଗୀ (Impulsive) ଶୈଳୀ। ଚିନ୍ତାକାରୀ ଶୈଳୀର ଭାବନା ପ୍ରୟୋଗ କରୁଥିବା ପିଲାମାନେ ଧୀରସ୍ଥିର ଭାବରେ ସମସ୍ୟା ସମାଧାନ କରନ୍ତି । ପ୍ରତ୍ୟେକ ସମସ୍ୟା ସମାଧାନ କରିବା ପାଇଁ ଏମାନେ ଅପେକ୍ଷାକୃତ ଅଧିକ ସମୟ ଦିଅନ୍ତି । ଫଳରେ ଏମାନଙ୍କ ଉତ୍ତର ବା ସମାଧାନରେ ଅଧିକ ନିର୍ଭୁଲତା ରହିଥାଏ । ଅନ୍ୟ ପକ୍ଷରେ ଆବେଗୀ ପିଲାମାନେ ଉତ୍ତରର କ୍ଷିପ୍ରତା ଉପରେ ଗୁରୁତ୍ୱ ଦିଅନ୍ତି । ଅଳ୍ପ ସମୟ ମଧ୍ୟରେ ସମସ୍ୟା ସମାଧାନର ପ୍ରଚେଷ୍ଟା କରୁଥିବାରୁ ନିର୍ଭୁଲତା କମ୍ ହୋଇଥାଏ । କେତେକ ପିଲା ଅପେକ୍ଷାକୃତ ଅଧିକ ଚିନ୍ତାକାରୀ ହେବା ସ୍ଥଳେ ଅନ୍ୟମାନେ ଆବେଗୀ ହୋଇଥାନ୍ତି ।

ଅବଶ୍ୟ ବୟସ ବୃଦ୍ଧି ସହିତ ଚିନ୍ତନ ଶୈଳୀର ପରିବର୍ତ୍ତନ ମଧ୍ୟ ଲକ୍ଷ୍ୟ କରାଯାଇଛି । ପ୍ରଥମେ ପ୍ରଥମେ ବହୁ ଶିଶୁ ଆବେଗୀ ରହିଥାନ୍ତି । ତରତରିଆ ଭାବରେ ସମସ୍ୟା ସମାଧାନ କରିବାକୁ ଯାଇ ଅନେକ ଭୁଲ୍ କରନ୍ତି । ଏପରି ଅନୁଭବ ଫଳରେ ସେମାନେ କ୍ରମଶଃ ଚିନ୍ତାକାରୀ ଶୈଳୀର ଗୁରୁତ୍ୱ ବୁଝି ସେପରି ଭଙ୍ଗୀର ଉପଯୋଗ କରନ୍ତି । ମାତ୍ର ପୁଣି ବୟସ ବଢ଼ିଲେ ସେମାନେ ଦକ୍ଷତା ହାସଲ କରିଛନ୍ତି ଏପରି ଅନୁଭବ କରି ସେମାନେ ପୁନଶ୍ଚ କ୍ଷିପ୍ରତାର ସହ ସମସ୍ୟା ସମାଧାନ କରନ୍ତି । ଆବେଗୀ ଶୈଳୀ ପ୍ରତି ଆକର୍ଷଣ ବଢ଼େ । ସ୍କୁଲରେ ବ୍ୟବହାର କରାଯାଉଥିବା ବହୁ ମାପକ (Tests)ରେ କ୍ଷିପ୍ରତା (Speed) ଏବଂ ନିର୍ଭୁଲତା (Accuracy) ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଏ ଦୁଇଟି ଅଭିମୁଖତାର ସମନ୍ୱୟ ଅଧିକ ଉପଯୋଗୀ ହୋଇଥାଏ ।

ପରିଶେଷରେ ଆଉ ଗୋଟିଏ ଚିନ୍ତନ ଶୈଳୀର ପରିଚୟ ଦିଆଯାଇପାରେ ତାହା ହେଉଛି କ୍ଷେତ୍ରଯୁକ୍ତ ଏବଂ କ୍ଷେତ୍ରମୁକ୍ତ (Field-Independent) ଚିନ୍ତନ ଶୈଳୀ । କେତେକ

ପିଲା ଦେଖୁଥିବା ବା ଶୁଣୁଥିବା ବସ୍ତୁର ସାମଗ୍ରିକତା (Wholeness) ଦ୍ୱାରା ଅଧିକ ପ୍ରଭାବିତ ହୁଅନ୍ତି । ଗୋଟିଏ ଛବି ଦେଖିଲେ ତାହାର ସମ୍ପୂର୍ଣ୍ଣତା ଉପରେ ସେମାନଙ୍କର ଦୃଷ୍ଟି ନିବଦ୍ଧ ରହେ । ଛବିର ଅଂଶସବୁକୁ ଅଲଗା ଅଲଗା କରି ପ୍ରତ୍ୟକ୍ଷଣ କରିବା ବା ବିଶ୍ଳେଷଣ କରିବା ଏମାନଙ୍କ ପକ୍ଷେ କଷ୍ଟକର ହୁଏ । ସମୁଦାୟ କ୍ଷେତ୍ର (Field) ଦ୍ୱାରା ନିୟନ୍ତ୍ରିତ ହେଉଥିବାରୁ ଏମାନଙ୍କ ଦୃଷ୍ଟିଭଙ୍ଗୀକୁ କ୍ଷେତ୍ରଯୁକ୍ତ କୁହାଯାଏ ।

ଅନ୍ୟ ପକ୍ଷରେ କେତେକ ପିଲା ଗୋଟିଏ ବସ୍ତୁର ଅଂଶ ବିଶେଷସବୁକୁ ପୃଥକ୍ ପୃଥକ୍ ଅଂଶ ରୂପେ ପ୍ରତ୍ୟକ୍ଷଣ କରନ୍ତି । ସମଗ୍ରତା ଦ୍ୱାରା ଅପେକ୍ଷାକୃତ କମ୍ ପ୍ରଭାବିତ ହୁଅନ୍ତି । ଏପରି ପିଲାମାନେ ବିଶେଷ ଭାବରେ ବିଶ୍ଳେଷଣଧର୍ମୀ (Analytical) । କ୍ଷେତ୍ର ଦ୍ୱାରା ଅପେକ୍ଷାକୃତ କାମ ନିୟନ୍ତ୍ରିତ ହେଉଥିବାରୁ ଏମାନଙ୍କୁ କ୍ଷେତ୍ରମୁକ୍ତ କୁହାଯାଏ । କ୍ଷେତ୍ରମୁକ୍ତ ପିଲାମାନେ ଗୋଟିଏ ବସ୍ତୁର ଅଂଶ ବିଶେଷ ଅଲଗା କରିପାରୁଥିବାରୁ କେତେକ ସମସ୍ୟା ସମାଧାନ ଏମାନଙ୍କ ପକ୍ଷେ ସହଜ ହୁଏ । ବୌଦ୍ଧିକ କ୍ରିୟାକଳାପରେ ବିଶ୍ଳେଷଣ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ କ୍ଷେତ୍ରମୁକ୍ତ (Field-Independent) ପିଲାମାନେ ବୌଦ୍ଧିକ କାର୍ଯ୍ୟକଳାପରେ ଉତ୍କର୍ଷ ଦର୍ଶାନ୍ତି । ଅନ୍ୟ ପକ୍ଷରେ କ୍ଷେତ୍ରଯୁକ୍ତ (Field Dependent) ପିଲାମାନଙ୍କର ସଂଶ୍ଳେଷଣ (Synthesis) ଦକ୍ଷତା ଅଧିକ ହୋଇଥିବାରୁ ଅନ୍ୟମାନଙ୍କର ନାମ ମନେରଖିବା, ଅନ୍ୟମାନଙ୍କର ମୁଖର ଆକୃତି ମନେରଖି ସେମାନଙ୍କୁ ଚିହ୍ନିପାରିବା ପରି ବିଭିନ୍ନ ଧରଣର ସାମାଜିକ ଦକ୍ଷତା ଦର୍ଶାନ୍ତି । କେଉଁ ଶୈଳୀଟି ଉତ୍କୃଷ୍ଟତର, ତାହା ନିର୍ଧାର୍ଯ୍ୟ ଭାବେ କହିବା କଷ୍ଟକର । ତେଣୁ ପରିସ୍ଥିତିକୁ ଚାହିଁ ଗୋଟିକର ଅଧିକ ଉପଯୋଗିତା ଏବଂ ଅନ୍ୟଟିର ଅପକ୍ଷୋକୃତ କମ୍ ଉପଯୋଗିତା ଦେଖାଯାଇଥାଏ ।

***ପିଲାଙ୍କ ପାଇଁ ପ୍ରଶ୍ନ :***

***ଛବିଗୁଡ଼ିକରେ ତ୍ରିଭୁଜଟି କେଉଁଠାରେ ଅଛି ଯଥାଶୀଘ୍ର ଦେଖାଅ ।***









ମନ୍ତବ୍ୟ :
ଯେଉଁ ପିଲା ଯେତେ ଶୀଘ୍ର ତ୍ରିଭୁଜଟି ପ୍ରତି ଛବିରେ ଦେଖାଇପାରିବ,ସେ ସେତେବେଶୀ କ୍ଷେତ୍ରମୁକ୍ତ ।

## ସହାୟକ ପରାମର୍ଶ

୧. ବୟସର ବୃଦ୍ଧି ସହିତ ଶିଶୁର ଶିକ୍ଷଣ କୌଶଳ ବିକଶିତ ହେଲେ ମଧ୍ୟ ଆମର ଏ ଦିଗରେ ତାଲିମ ଦେବା ବେଶ୍ ଅନୁକୂଳ ଅବସ୍ଥା ଗଠନ କରେ । ଶିଶୁ ଯେପରି ଗୋଟିଏ ବସ୍ତୁ ବା ଘଟଣାର ସମସ୍ତ ଦିଗ ପ୍ରତି ଦୃଷ୍ଟିଦେବ, ପ୍ରାପ୍ତ ସୂଚନାସବୁକୁ ମନେରଖିବା ପାଇଁ ମନେ ମନେ କହିବା ବା ବଡ଼ପାଟିରେ କହିବାର ଅଭ୍ୟାସ (Rehearsal) କରିବ, ତାହାର ଶିକ୍ଷା ଦିଅନ୍ତୁ । ବିଶେଷ କରି ଭିନ୍ନ ଭିନ୍ନ ସୂଚନାକୁ ଦଳ ଦଳ (Grouping) କରି ସଜାଇବାର ଦକ୍ଷତା ବିକାଶରେ ଯତ୍ନଶୀଳ ହୁଅନ୍ତୁ ।

୨- ଶିଶୁ ବିଭିନ୍ନ ପ୍ରଣାଳୀରେ ସମସ୍ୟା ସମାଧାନ କରିବା ସମୟରେ ଉତ୍କୃଷ୍ଟ ପ୍ରଣାଳୀର ଫଳାଫଳ (ସାଫଲ୍ୟ) ସ୍ପଷ୍ଟଭାବେ ପିଲାକୁ ଜଣାନ୍ତୁ ।

୩- ଶିଶୁ ଅନ୍ୟମାନଙ୍କୁ ଏବଂ ଅନ୍ୟ ଘଟଣାକୁ ପର୍ଯ୍ୟବେକ୍ଷଣ କରେ । ସୁତରାଂ ସେସବୁର ପରିଣତି ପ୍ରତି ସତର୍କ ଦୃଷ୍ଟି ରଖନ୍ତୁ । ଶିଶୁ ନିଜର ପରିପାର୍ଶ୍ୱରେ ଯେପରି ଉନ୍ନତ ଓ ସକରାତ୍ମକ ନମୁନା (Role Model)ର ସମ୍ମୁଖୀନ ହୁଏ, ତାହା ପ୍ରତି ଲକ୍ଷ୍ୟ ରଖନ୍ତୁ ।

୪- ଶିଶୁ ଗୋଟିଏ ନିର୍ଦ୍ଦିଷ୍ଟ ଚିନ୍ତନ ଶୈଳୀ ମଧ୍ୟ ବାନ୍ଧି ନହୋଇ ପରିସ୍ଥିତ ଭିନ୍ନରେ ପୃଥକ୍ ପୃଥକ୍ ଶୈଳୀର ଅବଲମ୍ବନ କରିବା ବାଞ୍ଛନୀୟ । ଏ ଦୃଷ୍ଟିରୁ ବିଭିନ୍ନ ଶୈଳୀର ସମନ୍ୱୟ ଦିଗରେ ପଦକ୍ଷେପ ଗ୍ରହଣ କରନ୍ତୁ ।

# କମ୍ପ୍ୟୁଟର-ପରିଚାଳିତ ବିକାଶ

ଏକବିଂଶ ଶତକର ଜୀବନ ଶୈଳୀର କମ୍ପ୍ୟୁଟର ଏକ ଅପ୍ରତିଦ୍ୱନ୍ଦ୍ୱୀ ନାୟକ । ଶିକ୍ଷା, ସଂସ୍କୃତି ଏବଂ ଜୀବନ ସ୍ୱାଚ୍ଛନ୍ଦ୍ୟର ଏହା ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ବିଶେଷ । କମ୍ପ୍ୟୁଟରର ବ୍ୟବହାର କେବଳ ଉଚ୍ଚ ବ୍ୟବସାୟ ପ୍ରତିଷ୍ଠାନ ଏବଂ ବିଶ୍ୱବିଦ୍ୟାଳୟର ପରିସର ମଧ୍ୟରେ ସୀମିତ ରହିନାହିଁ । ହାଇସ୍କୁଲ ଏବଂ ପ୍ରାଥମିକ ସ୍କୁଲରେ ମଧ୍ୟ ଏହାର ବ୍ୟବହାର ପ୍ରସାରିତ ହୋଇଛି । ଏ ପରିପ୍ରେକ୍ଷୀରେ ବାଲ୍ୟକାଳୀନ ମନସ୍ତାତ୍ତ୍ୱିକ ବିକାଶ କ୍ଷେତ୍ରରେ କମ୍ପ୍ୟୁଟରର ଭୂମିକାକୁ ମୂଲ୍ୟାୟନ କରିବାର ବିଶେଷ ଆବଶ୍ୟକତା ରହିଛି । ଗବେଷକର ଦୃଷ୍ଟିଭଙ୍ଗୀ ନେଇ ଏହାର ମୂଲ୍ୟାଙ୍କନ କଲେ ସକରାତ୍ମକ ଏବଂ ନକରାତ୍ମକ ଦିଗ ଦୁଇଟି ସ୍ପଷ୍ଟ ହୁଏ ।

**ସକରାତ୍ମକ ପ୍ରଭାବ**

ଶିକ୍ଷା କ୍ଷେତ୍ରରେ କମ୍ପ୍ୟୁଟରର ଏକ ବିଶେଷ ଭୂମିକା ହେଉଛି ଘରୋଇ ଶିକ୍ଷକର ଭୂମିକା । କମ୍ପ୍ୟୁଟର ବିଭିନ୍ନ ଧରଣର ସୂଚନା ପ୍ରଦାନ କରେ । କେତେକ ବିଷୟରେ ଅଭ୍ୟାସ (Practice) କରିବାକୁ ଶିଶୁକୁ ସୁଯୋଗ ଦିଏ । ଶିଶୁ କେତେ ପରିମାଣରେ ବୁଝିପାରୁଛି କିମ୍ବା ବୁଝି ନପାରୁଛି, ତାହାର ସ୍ତର ମଧ୍ୟ ନିର୍ଦ୍ଧାରଣ କରେ । ପୁଣି ଏପରି ସ୍ତର ସମ୍ପର୍କରେ ଶିଶୁକୁ ଅବଗତ (Feedback) କରାଏ । ଆବଶ୍ୟକ ସ୍ଥଳେ କମ୍ପ୍ୟୁଟର ଦରକାରୀ ପରାମର୍ଶ ଯୋଗାଇ ପିଲାଟିର ଜ୍ଞାନଗତ ପରିପକ୍ୱତା ବୃଦ୍ଧିକରେ ।

ବହୁଗୁଡ଼ିଏ ଗବେଷଣାତ୍ମକ ଅନୁଧ୍ୟାନ କରାଯାଇ ଲକ୍ଷ୍ୟ କରାଯାଇଛି ଯେ, କମ୍ପ୍ୟୁଟରର ଘରୋଇ ଶିକ୍ଷକ (Tutor) ଭୂମିକାଟି ବେଶ୍ ଉପଯୋଗୀ । ପୁଣି ଲକ୍ଷ୍ୟ କରାଯାଇଛି ଯେ ବଡ଼ ପିଲାଙ୍କ ତୁଳନାରେ କମ୍ପ୍ୟୁଟର ସାନ ପିଲାଙ୍କ କାମରେ ଅଧିକା ଉପଯୋଗୀ ହୋଇଥାଏ । ସାଧାରଣ ବୁଦ୍ଧିମାପକର କମ୍ ସ୍ତରରେ ରହିଥିବା ପିଲାମାନଙ୍କର ଏହା ଅପେକ୍ଷାକୃତ ବେଶୀ ଉପକାର କରିଥାଏ ।

କମ୍ପ୍ୟୁଟର ମାଧ୍ୟମରେ ଶିକ୍ଷାଲାଭର ଦ୍ୱିତୀୟ ଉପଯୋଗିତା ହେଉଛି ମୁକ୍ତ ଏବଂ ଅନୁଭୂତିମୂଳକ ଶିକ୍ଷା ବ୍ୟବସ୍ଥାର ପ୍ରାଚୁର୍ଯ୍ୟ । ସ୍କୁଲ ବୟସର ଶିଶୁମାନଙ୍କର ଅନୁସନ୍ଧିତ୍ସା ଏବଂ ଅନ୍ୱେଷଣ ପ୍ରବୃତ୍ତି ପରିବ୍ୟାପ୍ତ । ଏପରି ମାନସିକତା ସେମାନଙ୍କୁ ବହୁ ପ୍ରକାର ଜ୍ଞାନ ଓ ସୂଚନା ଅନ୍ୱେଷଣରେ ଅଭିପ୍ରେରିତ କରେ । ସୁତରାଂ କମ୍ପ୍ୟୁଟର ସାହାଯ୍ୟରେ ମୁକ୍ତଭାବରେ ମନରେ ପ୍ରଶ୍ନ ଉଠୁଥିବା ଜିଜ୍ଞାସାର ଚରିତାର୍ଥ କରିପାରନ୍ତି । ଶିକ୍ଷାବିତ୍‌ମାନେ ମଧ୍ୟ କଇଁଛ ରେଖାଚିତ୍ର (Turtle Graphics) ପରି ଲୋଗୋ ପ୍ରୋଗ୍ରାମିଂର ପରିକଳ୍ପନା କରିଛନ୍ତି । ବିଭିନ୍ନ ପ୍ରଶ୍ନର ସମାଧାନ ପାଇଁ ଏହା ଖୁବ୍ ଉପଯୋଗୀ ହୋଇଥାଏ ।

ତୃତୀୟତଃ ଶିଶୁର ଲିଖନ ଶୈଳୀକୁ ଉନ୍ନତ କରିବା ପାଇଁ କମ୍ପ୍ୟୁଟରର ସାହାଯ୍ୟ ନିଆଯାଇପାରେ । ସରଳ ବାକ୍ୟ ସାହାଯ୍ୟରେ ଗୋଟିଏ ରଚନା (ପ୍ରବନ୍ଧ) ପ୍ରସ୍ତୁତ କଲାପରେ ଏଥିରେ ଥିବା ଭାଷାଗତ ତ୍ରୁଟିବିଚ୍ୟୁତି ସମ୍ପର୍କରେ କମ୍ପ୍ୟୁଟର ଧାରଣା ଦେଇଥାଏ । ଏହାଫଳରେ ଭାଷାଗତ ନିୟମ ଜାଣିବା ଏବଂ ରଚନାର ମାନଦଣ୍ଡକୁ ଉନ୍ନତ କରିବା ସମ୍ଭବ ହୁଏ ।

ଚତୁର୍ଥତଃ କମ୍ପ୍ୟୁଟର ସହିତ କାରବାର କଲାବେଳେ ଶିଶୁ ନିଜସ୍ୱ ଗତିରେ ଆଗେଇ ପାରେ । ଗୋଟିଏ ଶ୍ରେଣୀ ଗୃହରେ ଶିକ୍ଷକ ସାଧାରଣ ପିଲାକୁ ଆଖିରେ ରଖି ଶିକ୍ଷାଦାନ କାର୍ଯ୍ୟ କରନ୍ତି । ଫଳରେ ପିଲାଟି ପଛୁଆ ହୋଇଥିଲେ ସେ ବହୁତ ଜିନିଷ ବୁଝିପାରେ ନାହିଁ । ଅନ୍ୟ ପକ୍ଷରେ ପିଲାଟି ଅନ୍ୟନ୍ୟ ସାଧାରଣ ହୋଇଥିଲେ ଶିକ୍ଷା ସାମଗ୍ରୀ ତା' ମନରେ ଆଗ୍ରହ ସୃଷ୍ଟି କରିନଥାଏ । ମାତ୍ର କମ୍ପ୍ୟୁଟରଟି ସହିତ ସମ୍ପର୍କ ଏକାନ୍ତ ବ୍ୟକ୍ତିଗତ । ଫଳରେ ନିଜସ୍ୱ ଗତିରେ ଆଗେଇବା ସମ୍ଭବପର ହୁଏ ।

ପରିଶେଷରେ କୁହାଯାଇପାରେ ଯେ କମ୍ପ୍ୟୁଟର ପିଲାର କ୍ଳାନ୍ତିହରଣର ମଧ୍ୟ ସହାୟକ ହୁଏ । ବିଭିନ୍ନ ପ୍ରକାର ଖେଳ ଏବଂ ଗୋଲକଧନ୍ଦାର ଉପଯୋଗ ଶିଶୁ ମନରେ ମାନସିକ ପ୍ରସନ୍ନତା ଆଣିଥାଏ । ସାମଗ୍ରିକ ଭାବରେ ଏସବୁର ଉପଯୋଗ ପିଲାର ସ୍ଫୂର୍ତ୍ତି ଏବଂ ଅନ୍ୱେଷଣ ଆଗ୍ରହକୁ ବୃଦ୍ଧିକରେ ।

କମ୍ପ୍ୟୁଟର ନିୟନ୍ତ୍ରିତ ଶିକ୍ଷା ବ୍ୟବସ୍ଥାର ଉପଯୋଗିତା ସତ୍ତ୍ୱେ କେତେକ କ୍ଷେତ୍ରରେ ଆଶଙ୍କା ରହିବା ସ୍ୱାଭାବିକ । ଏପରି ନକରାତ୍ମକ ଦିଗ ସହିତ ଆମର ପରିଚିତି ପ୍ରତିକାର ବ୍ୟବସ୍ଥା କରିବାରେ ସହାୟକ ହେବ ।

**ନକରାତ୍ମକ ପ୍ରଭାବ**

ପ୍ରଥମତଃ କେତେକ ବିଶେଷଜ୍ଞ ଆଶଙ୍କା ପ୍ରକାଶ କରିଛନ୍ତି ଯେ କମ୍ପ୍ୟୁଟର ସହିତ ମାତ୍ରାଧିକ କାରବାର ଏକ ପ୍ରକାର ଅନମନୀୟ ((Inflexible) ମାନବିକତାବିହୀନ ଯାନ୍ତ୍ରିକ ପରିବେଶ ସୃଷ୍ଟି କରିବ । ଶିଶୁ ତାର ପ୍ରାକୃତିକ ସାମାଜିକ ଜୀବନରୁ ବିଚ୍ଛିନ୍ନ ହୋଇଯିବାର ଆଶଙ୍କା ରହିଛି । କମ୍ପ୍ୟୁଟରର ସହିତ ଦୀର୍ଘସମୟ ଅତିବାହିତ କରିବା ଫଳରେ ହୁଏତ କମ୍ପ୍ୟୁଟର ନିୟନ୍ତ୍ରିତ ସାଙ୍ଗସାଥୀମାନଙ୍କ ସହ ଯୋଗାଯୋଗ ରକ୍ଷା କରାଯିବ । ମାତ୍ର ଦୈନନ୍ଦିନ ଜୀବନର ବାସ୍ତବ ସାଙ୍ଗସାଥିମାନଙ୍କ ସାହଚର୍ଯ୍ୟଠାରୁ ଶିଶୁ ଦୂରେଇ ଯିବ । ପୁଣି ସ୍କୁଲରେ ପଢୁଥିବା ସବୁପିଲାମାନଙ୍କର ଆର୍ଥିକ ସ୍ୱଚ୍ଛଳତା ସମାନ ହୋଇ ନଥିବାରୁ ସବୁପିଲାମାନେ ନିଜ ଘରେ ବ୍ୟବହାର କରିବା ପାଇଁ କମ୍ପ୍ୟୁଟର କିଣିପାରିବେ ନାହିଁ । ଏହା ଫଳରେ କେତେକ ପିଲା ନିଜ ଘରେ ଏବଂ ସ୍କୁଲରେ କମ୍ପ୍ୟୁଟର ବ୍ୟବହାର କରି ଅନ୍ୟପିଲାମାନଙ୍କଠାରୁ ଖୁବ୍ ଅଧିକ ଆଗେଇଯିବେ । ଏପରି ପରିପ୍ରେକ୍ଷୀରେ ସମାନତା ପରିବର୍ତ୍ତେ ଅସମାନତା ସୃଷ୍ଟି ହେବାର ଆଶଙ୍କା ରହିଛି ।

ଦ୍ୱିତୀୟତଃ କମ୍ପ୍ୟୁଟର ସ୍କୁଲରେ ଅନୁସୃତ ପାଠ୍ୟକ୍ରମ ପାଇଁ କିଛିଟା ସମସ୍ୟା ସୃଷ୍ଟି କରିପାରେ । ଗଣିତ ଓ ବିଜ୍ଞାନ ପରି ବିଷୟବସ୍ତୁ ପାଇଁ କମ୍ପ୍ୟୁଟରର ପ୍ରଚଳନ ଓ ପ୍ରୟୋଗ ଖୁବ୍

ଅନୁକୂଳ । ମାତ୍ର ଭାଷା ସାହିତ୍ୟ ଶିକ୍ଷାଦେବା କ୍ଷେତ୍ରରେ ଏହାର ଉପଯୋଗ ସମପର୍ଯ୍ୟାୟଭୁକ୍ତ ହୋଇନଥାଏ । ଫଳରେ ସବୁ ବିଷୟର ଶିକ୍ଷା ଓ ଗ୍ରହଣଶୀଳତା ସମାନ ସ୍ତରରେ ରଖିବାର ଲକ୍ଷ୍ୟସାଧନ କଷ୍ଟକର ହୁଏ ।

ତୃତୀୟ ଆଶଙ୍କାଟି କମ୍ପ୍ୟୁଟର-ଲବ୍ଧ ଶିକ୍ଷାର ବାହ୍ୟ ବିସ୍ତାର ସହିତ ସମ୍ପର୍କିତ ଶିଶୁ କମ୍ପ୍ୟୁଟର ମାଧ୍ୟମରେ ଶିକ୍ଷା କରିବା ସମୟରେ ଶବ୍ଦ, ରଙ୍ଗ ଏବଂ ବହୁବିଧ ଆକର୍ଷଣପୂର୍ଣ୍ଣ ପରିବେଶ ମଧ୍ୟରେ ଶିକ୍ଷା ଲାଭକରେ ।ଏପରି ଶିକ୍ଷାକୁ ତାର ନିତିଦିନିଆ ନିରସ ଜୀବନ କ୍ଷେତ୍ରରେ କେତେ ପରିମାଣରେ ପ୍ରୟୋଗ କରିପାରିବ, ସେ ବିଷୟରେ କେତେକ ପ୍ରଶ୍ନ ଉଠାଇଥାନ୍ତି ।

କମ୍ପ୍ୟୁଟର ସମ୍ପର୍କରେ କେତେକ ଆଶଙ୍କା ସତ୍ତ୍ୱେ ଏହାର ଉପଯୋଗିତା ଯେ ସୁଦୂରପ୍ରସାରୀ, ତାହା ସ୍ୱୀକାର କରିବାକୁ ହେବ । ଉପଯୁକ୍ତ ପରାମର୍ଶର ପରିପ୍ରେକ୍ଷୀ ମଧ୍ୟରେ ଶିଶୁ କମ୍ପ୍ୟୁଟର ନିୟନ୍ତ୍ରିତ ଶିକ୍ଷା ବ୍ୟବସ୍ଥାର ଉପଯୋଗ କଲେ ଫଳାଫଳ ହିତକର ହେବା ସୁନିଶ୍ଚିତ ।

## ସହାୟକ ପରାମର୍ଶ

*୧. ଶିଶୁର ଅନ୍ୱେଷଣ ପ୍ରବଣତାକୁ ଉତ୍ସାହିତ କରିବା ପାଇଁ ଶିଶୁକୁ କମ୍ପ୍ୟୁଟର ବ୍ୟବହାରର ମୌଳିକ ଧାରଣା ପ୍ରଦାନ କରନ୍ତୁ ।*

*୨. ଘରୋଇ ଶିକ୍ଷକ (Tutor)ର ଭୂମିକା ଯେପରି କମ୍ପ୍ୟୁଟର ନିର୍ବାହ କରିପାରିବ, ସେଦିଗରେ ଦୃଷ୍ଟି ରଖନ୍ତୁ ।*

*୩. ସମୟ ସମୟରେ ସାମୂହିକ ଭାବରେ ଏକାଧିକ ପିଲା କମ୍ପ୍ୟୁଟର ବ୍ୟବହାର କରିବାର ପରିବେଶ ଯୋଗାଇ ଦିଅନ୍ତୁ ।*

*୪. କମ୍ପ୍ୟୁଟରର ଗୁରୁତ୍ୱ ସତ୍ତ୍ୱେ ଏହାର ବାହାରେ ଶିକ୍ଷା ଲାଭରେ ଅନ୍ୟ ସବୁ ସାଧନ ସାମଗ୍ରୀ (ଯଥା-ପୁସ୍ତକ, ପାଠାଗାର, ବିଶେଷତଃ ଶିକ୍ଷକ) ରହିଛି, ଏପରି ଧାରଣା ଶିଶୁମନରେ ଦୃଢ଼ କରନ୍ତୁ ।*

*୫. କମ୍ପ୍ୟୁଟର ବ୍ୟବହାର ଯେପରି ଶିଶୁକୁ ବାହ୍ୟ (ସାମାଜିକ) ଜଗତରୁ ବିଚ୍ଛିନ୍ନ ନକରେ, ସେଦିଗରେ ପଦକ୍ଷେପ ନିଅନ୍ତୁ । (ଯଥା : ବାସ୍ତବ ଜଗତରେ ଶିଶୁର ସାଙ୍ଗ ସାଥୀ ସମ୍ପର୍କ ଦୃଢ଼ ରହିଥାଉ ।)*

# ଶିଶୁର ଅସହାୟତାବୋଧ

ଶିଶୁର ଅସହାୟତାବୋଧର ଆଲୋଚନା ଆରମ୍ଭ କଲାମାତ୍ରେ ଶିଶୁର ଶାରୀରିକ ଅକ୍ଷମତା ଅନେକଙ୍କ ମନକୁ ଆସେ । ଶାରୀରିକ ଅକ୍ଷମତା ଫଳରେ ଶିଶୁ ମନରେ ଅସହାୟତା ସୃଷ୍ଟି ହୁଏ । ଗଭୀର ଆତ୍ମବିଶ୍ୱାସ ସହିତ ସେ ବିଭିନ୍ନ କାର୍ଯ୍ୟ କରିବାକୁ ଦ୍ୱିଧାଗ୍ରସ୍ତ ହୁଏ । ବିଫଳତାର ଆଶଙ୍କା ତାକୁ ଅସ୍ଥିର କରେ ଏବଂ ତା'ର ସାମାଜିକ ମିଳାମିଶା ବାଧାପ୍ରାପ୍ତ ହୁଏ । ଏସବୁ ସାଧାରଣ କଥା । ସେମାନଙ୍କ ମନ ଓ କାର୍ଯ୍ୟଧାରାରୁ ଅସହାୟତାବୋଧ ଦୂର କରି ସେମାନଙ୍କଠାରେ ଦକ୍ଷତାର ମନୋଭାବ ସୃଷ୍ଟି କରିବାର ଦାୟିତ୍ୱ ଏକ ସାମାଜିକ କର୍ତ୍ତବ୍ୟ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଶାରୀରିକ ତ୍ରୁଟି ନଥାଇ ମଧ୍ୟ କେତେକ ପରିବେଷ୍ଟନୀଗତ କାରଣରୁ ଶିଶୁ ମନରେ ଏକ ଅସହାୟତାବୋଧ ସୃଷ୍ଟି ହୁଏ ଏବଂ ଅସହାୟତାବୋଧଗ୍ରସ୍ତ ଶିଶୁମାନେ ଦକ୍ଷତା ପୂର୍ଣ୍ଣ ବ୍ୟବହାର ଦର୍ଶାଇବାରେ ବ୍ୟର୍ଥ ହୁଅନ୍ତି । ଏହାର ସମ୍ଭାବନା ମନୋବିଜ୍ଞାନ, ଶିଶୁ ପରିଚାଳନା ଓ ଶିଶୁ ଶିକ୍ଷା ବ୍ୟବସ୍ଥା ଗବେଷଣାରେ ଏକ ଆଲୋଡ଼ନ ସୃଷ୍ଟି କରିଛି ।

ଶିଶୁ ତଥା ମଣିଷ ମନରେ ଅସହାୟତା କିପରି ସୃଷ୍ଟି ହୁଏ ଏବଂ ତାର ପରିଣତି କ'ଣ ହୁଏ, ସେ ବିଷୟରେ ଅନୁଶୀଳନ ଆରମ୍ଭ ହେବା ପୂର୍ବରୁ ଛୋଟ ଛୋଟ ପ୍ରାଣୀମାନଙ୍କ କ୍ଷେତ୍ରରେ ଏହା ଲକ୍ଷ୍ୟ କରାଗଲା । ଏ ଶତକର ଷଷ୍ଠ ଦଶକରେ ସେଲିଗ୍‌ମ୍ୟାନ ଏବଂ ତାଙ୍କର ସହକର୍ମୀମାନେ ଯୁକ୍ତରାଷ୍ଟ୍ର ଆମେରିକାରେ ପେନ୍‌ସିଲ୍‌ଭାନିଆ ବିଶ୍ୱବିଦ୍ୟାଳୟର ପ୍ରାଣୀ ଗବେଷଣାଗାରରେ ଗୋଟିଏ କୌତୁହଳ-ପୂର୍ଣ୍ଣ ଘଟଣା ଲକ୍ଷ୍ୟ କଲେ । ସେମାନେ ଦେଖିଲେ ଯେ ଗୋଟିଏ ପ୍ଲାଟଫର୍ମର ଗୋଟିଏ ପାର୍ଶ୍ୱରେ କ୍ଷୀଣ ବିଦ୍ୟୁତ୍‌ସ୍ରୋତ ଚାଳିତ କରି ଗୋଟିଏ ମୂଷାକୁ ରଖିଦେଲେ, ତାହା ନିରାପଦ ପାର୍ଶ୍ୱକୁ ଚାଲି ଯାଉଛି । ଗୋଟିଏ ପାର୍ଶ୍ୱ ବିପଦପୂର୍ଣ୍ଣ ଥିଲାବେଳେ ଅନ୍ୟ ପାର୍ଶ୍ୱଟି ନିରାପଦ ବୋଲି ବୁଝିବାକୁ ମୂଷାକୁ ଅତି ବେଶୀ ସମୟ ଲାଗୁନାହିଁ । ନିଜକୁ ବିଦ୍ୟୁତ ଆଘାତରୁ ରକ୍ଷା କରିବାର କୌଶଳ ସେ ଶିଖି ପାରୁଛି ।

ଏହି ପର୍ଯ୍ୟବେକ୍ଷଣ ପରେ ଗବେଷକମାନେ କୌତୁହଳୀ ହୋଇ ପ୍ଲାଟଫର୍ମର ଦୁଇପାର୍ଶ୍ୱରେ କ୍ଷୀଣ ବିଦ୍ୟୁତ୍ ପ୍ରବାହ ଆରମ୍ଭ କଲେ ଏବଂ ମୂଷାଟିକୁ ଗୋଟିଏ ପାର୍ଶ୍ୱରେ ଛାଡ଼ି ଦେଲେ । ମୂଷାଟି ନିଜକୁ ରକ୍ଷା କରିବାକୁ ବାରମ୍ବାର ଏପଟର ସେପଟ ଏବଂ ସେପଟରୁ ଏପଟ ଗଲା । ମାତ୍ର ଏପରି ବାରମ୍ବାର କରିବା ସତ୍ତ୍ୱେ କୌଣସି ଫଳ ମିଳୁନଥିବାର ଦେଖି ଗୋଟିଏ ପାର୍ଶ୍ୱରେ

ଚୁପ୍‌ଚାପ୍ ହୋଇ ବସି ରହିଲା । ଆହୁରି କୌତୂହଳପୂର୍ଣ୍ଣ ବିଷୟ ହେଉଛି ଯେ, ପରେ ପରେ ପ୍ଲାଟଫର୍ମର ଗୋଟିଏ ପାର୍ଶ୍ୱ ବିଦ୍ୟୁତ ମୁକ୍ତ (ନିରାପଦ) କରାଯାଇ ମୂଷାକୁ ପ୍ରଥମେ ବିଦ୍ୟୁତ୍ ଯୁକ୍ତ ଅଂଶକୁ ଛାଡ଼ି ଦିଆଯାଇ ଦିଆଗଲେ ମୂଷାଟି ସେହି ବିପଦପୂର୍ଣ୍ଣ ସ୍ଥାନରେ ବସି ରହିଲା । ବିପଦରୁ ଉଦ୍ଧାର ପାଇବାର କୌଶଳ ଶିକ୍ଷା କରିପାରିଲା ନାହିଁ ।

ମୋଟ ଉପରେ ପ୍ରାଣୀର ବ୍ୟବହାର ଏବଂ ପରିବେଶରେ ଆକାଂକ୍ଷିତ ଫଳାଫଳର ସମ୍ପର୍କକୁ ବିଚ୍ଛିନ୍ନ କରାଯିବା ଫଳରେ ମୂଷାଟିର ଅସହାୟତା ସୃଷ୍ଟି ହେଲା । ଅନ୍ୟ ଭାଷାରେ କହିଲେ ନିୟନ୍ତ୍ରଣବିହୀନ (Uncontrollable) ପରିବେଶରେ ପଡ଼ିଲେ ପ୍ରାଣୀ ମନରେ ଅସହାୟତା ସୃଷ୍ଟି ହୁଏ । ଅସହାୟତା ସୃଷ୍ଟି ହେଲେ ତିନୋଟି ମୁଖ୍ୟ ପରିଣତି ଢନ୍ତେ । ପ୍ରଥମତଃ, ପ୍ରାଣୀ ନୂଆ କରି କିଛି ଶିଖିବା କଷ୍ଟକର ହୋଇପଡ଼େ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ନିଜେ ଗୋଟିଏ ପିଲା ପ୍ରଥମେ ନିୟନ୍ତ୍ରଣହୀନ ସ୍କୁଲରେ ପାଠ ଆରମ୍ଭ କଲେ ଦେଖେ ଯେ ନିଜେ ଯେତେ ପରିଶ୍ରମ କଲେ ମଧ୍ୟ ଫଳ ପାଉନାହିଁ । ଭଲ ବ୍ୟବହାର କଲେ ମଧ୍ୟ ଶିକ୍ଷକ ଶିକ୍ଷୟତ୍ରୀଙ୍କଠାରୁ ପ୍ରଶଂସା ପାଉନାହିଁ । ନିଜର ଭଲକାର୍ଯ୍ୟ ଏବଂ ସୁଫଳ ମଧ୍ୟରେ କୌଣସି ସଂଯୋଗ ନାହିଁ ବୋଲି ସେ ଶିକ୍ଷା କଲାପରେ ପରବର୍ତ୍ତୀ ସମୟରେ ସେ ଗୋଟିଏ ସୁପରିଚାଳିତ ସ୍କୁଲକୁ ଗଲେ ମଧ୍ୟ ସେଠାରେ ନୂଆ ନୂଆ ଜିନିଷ ଶିକ୍ଷା କରିବା ତା' ପକ୍ଷରେ କଷ୍ଟକର ହୁଏ । ଏକ ପ୍ରକାର ଶିକ୍ଷାଗତ ବାଧା ଅନୁଭୂତ ହୁଏ । ଦ୍ୱିତୀୟରେ ଅସହାୟତା ସୃଷ୍ଟି ହେଲେ ପ୍ରାଣୀର ଅଭୀପ୍ସା (Motivation) ର ହ୍ରାସ ଘଟେ । ନିଜର ତତ୍ପରତା କମିଯାଏ । ଚେଷ୍ଟାକରି ଶାରୀରିକ ଓ ମାନସିକ ସଂଚାଳନ ଘଟାଇ କିଛି ହାସଲ କରିବାର ମନୋବୃତ୍ତି କମିଯାଏ । ତୃତୀୟତଃ, ଏକ ଭାବଗତ ଦାରିଦ୍ର୍ୟ ମଧ୍ୟ ସୃଷ୍ଟି ହୁଏ । ଅସହାୟତାବୋଧରେ ପୀଡ଼ିତ ହେଲେ ମାନସିକ ଅବସାଦ ବଢ଼େ ଏବଂ ମାନସିକ ପ୍ରସନ୍ନତା କମିଯାଏ ।

ପରବର୍ତ୍ତୀ ଗବେଷଣାମାନଙ୍କରେ ବିଭିନ୍ନ ଧରଣରେ ଯାନ୍ତ୍ରିକ କୌଶଳ ଅବଲମ୍ବନ କରାଯାଇ ଶିଶୁ ଓ ମନୁଷ୍ୟମାନଙ୍କର ଅସହାୟତା ବିଷୟରେ ଅନୁଶୀଳନ କରାଯାଇଛି । ଦେଖାଯାଇଛି ଯେ, ପ୍ରାଣୀମାନଙ୍କ ପରି ନିୟନ୍ତ୍ରଣବିହୀନ ପରିସ୍ଥିତିରେ ମନୁଷ୍ୟକୁ ରଖାଗଲେ ଅସହାୟତାବୋଧ ସୃଷ୍ଟି ହେବ ଏବଂ ପରେ ପରେ ସେମାନଙ୍କର ଶିକ୍ଷା କୌଶଳ, ଅଭୀପ୍ସା ଓ ପ୍ରସନ୍ନତାରେ ହ୍ରାସ ଘଟିବ । ଅଧିକନ୍ତୁ ଶିଶୁ ଓ ମନୁଷ୍ୟ କ୍ଷେତ୍ରରେ ଆଉ ଗୋଟିଏ କ୍ଷତି ଘଟିବ । ତାହା ହେଉଛି ଆତ୍ମବିଶ୍ୱାସର ବିଲୟ । ଅସହାୟତାବୋଧର ଶିକାର ହେଲେ ନିଜର ସାମର୍ଥ୍ୟ ଉପରୁ ଆସ୍ଥା ତୁଟେ ଏବଂ ଗଭୀର ବିଶ୍ୱାସ ନେଇ କୌଣସି କାମଟିଏ କରିବା ସେମାନଙ୍କ ପକ୍ଷେ କଷ୍ଟକର ହୋଇପଡ଼େ ।

ଏକ ବୃହତ୍ତର ପରିପ୍ରେକ୍ଷୀରେ ଦେଖିଲେ ଜଣାଯାଏ ସେ ଅସହାୟତାବୋଧ ମାନବ ଜୀବନର ଗୁଣାତ୍ମକ ଦିଗଟିକୁ ବିପନ୍ନ କରେ । ଅସହାୟତା ସମ୍ପର୍କରେ ଗବେଷଣା କରାଯାଇଥିବା ତଥ୍ୟରୁ ଜଣାପଡ଼େ ଯେ, ଅସହାୟତାବୋଧଗ୍ରସ୍ତ ମନୁଷ୍ୟ ଅନ୍ୟ କେତେକ ସମସ୍ୟାର ସମ୍ମୁଖୀନ

ହୁଏ । ଏପରି ଲୋକମାନେ ଅଧିକ ମାତ୍ରାରେ ରୋଗଗ୍ରସ୍ତ ହେବାର ଦେଖାଯାଏ । ଅସହାୟତାବୋଧ ସମ୍ପନ୍ନ ବ୍ୟକ୍ତିମାନେ ଦୈନନ୍ଦିନ ଜୀବନର ସମସ୍ୟା ସହିତ ସମନ୍ୱୟ ରକ୍ଷା କରିବାରେ ବିଶେଷ ସମର୍ଥ ହୁଅନ୍ତି ନାହିଁ । ସେମାନେ ବେଶୀ ବିଷାଦଗ୍ରସ୍ତ ହୋଇପଡ଼ନ୍ତି । ଅସହାୟତାର କୁପରିଣତିର ବିଷଦ ଆଲୋଚନା ଅପେକ୍ଷା ଶିଶୁ ମନରେ ଏହା କିପରି ଅଙ୍କୁରିତ ଏବଂ ପ୍ରସାରିତ ହୁଏ, ଏ ସଂପର୍କରେ ଆଲୋଚନା ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ।

ପୂର୍ବ ଆଲୋଚନା ଅନୁଯାୟୀ ଇତରପ୍ରାଣୀ ହେଉ ବା ମଣିଷ ଶିଶୁହେଉ, ନିୟନ୍ତ୍ରଣବିହୀନ ପରିବେଶର ଶରବ୍ୟ ହେଲେ ଅସହାୟତାବୋଧ ସୃଷ୍ଟି ହୁଏ । ଖରାପ ପରସ୍ଥିତିର ଶରବ୍ୟ ହୋଇ ଶିଶୁଟି ଯେତେବେଳେ ଦେଖେ ଯେ ତା'ର ବ୍ୟବହାର ଦ୍ୱାରା ସେ ବାହ୍ୟଜଗତରେ କୌଣସି ପରିବର୍ତ୍ତନ ଆଣିବାରେ ଅସମର୍ଥ ସେତେବେଳେ ତାର ଅସହାୟତାବୋଧ ଜନ୍ମେ । ପରିବେଶରେ ନିୟନ୍ତ୍ରଣଶୀଳତାର ଅଭାବ ଘଟିଲେ ଅସହାୟତାବୋଧ ଅଙ୍କୁରିତ ହେବା ସ୍ୱାଭାବିକ । କିନ୍ତୁ ଏ ପ୍ରକାର ପରିସ୍ଥିତି ସବୁଶିଶୁଙ୍କ ମନରେ ସମାନ ପରିବାଣରେ ଅସହାୟତା ସୃଷ୍ଟି କରି ନଥାଏ ।

ଗବେଷଣାରୁ ଦେଖାଦେଇଛି ଯେ, କେତେକ ସମାଜୀକରଣ ବ୍ୟବସ୍ଥା ଶିଶୁ ମନରେ ଅସହାୟତାକୁ ବ୍ୟାପକ କିମ୍ବା ସୀମିତ କରିପାରେ ।ଆମର ପରିବାର, ବନ୍ଧୁ, ପ୍ରତିବେଶୀ ଓ ଶିକ୍ଷାନୁଷ୍ଠାନ ଇତ୍ୟାଦି ସଂସ୍ଥା ଅନେକ ସମୟରେ ପୂର୍ବବର୍ଣ୍ଣିତ ମୂଷାର ପ୍ଲାଟଫର୍ମ ପରି କାମ କରେ । ଏଗୁଡ଼ିକ ଏପରି କେତେକ ଅବସ୍ଥା ସୃଷ୍ଟି କରନ୍ତି, ଯାହାକି ଶିଶୁର ଅସହାୟତା ବୃଦ୍ଧିରେ ସହାୟକ ହୁଏ । ଏ ସବୁଗୁଡ଼ିକର ଭୂମିକା ଗୋଟିଏ ପ୍ରବନ୍ଧର ସୀମିତ ପରିସର ମଧ୍ୟରେ ଆଲୋଚନା କରିବା ସମ୍ଭବ ନୁହେଁ । କେବଳ ବାପା-ମା'ଙ୍କ ଭୂମିକା ବିଚାର କରାଯାଉ । ତାହା ପୁଣି ସେମାନଙ୍କର ସାମାଜୀକରଣ ପ୍ରକ୍ରିୟାର କେତୋଟି ନିର୍ଦ୍ଦିଷ୍ଟ ଦିଗ ।

ଆମର ଗବେଷଣାରୁ ଜଣାପଡ଼ିଛି ଯେ, ଅନେକ ସମୟରେ ବାପା ମା' ନିଜଜାଣତ ବା ଅଜାଣତରେ ସଂଯୋଗହୀନ ବ୍ୟବହାର (Noncontingent behaviour) ଦର୍ଶାନ୍ତି ଏବଂ ଏହା ସେମାନଙ୍କ ପିଲାମାନଙ୍କ ଅସହାୟତାବୋଧ ବଢ଼ାଇପାରେ ସାହାଯ୍ୟ କରେ । ସଂଯୋଗହୀନ ବ୍ୟବହାର କହିଲେ କ'ଣ ବୁଝାଯାଏ ? ଘଟଣା ଓ ବ୍ୟବହାର ମଧ୍ୟରେ ସମ୍ପର୍କହୀନତାକୁ ସଂଯୋଗହୀନ ବ୍ୟବହାର କୁହାଯାଏ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ପିଲାଟି ପରୀକ୍ଷାରେ ଭଲ କଲେ ବାପ ମା' ତା'କୁ ଏକ ଉପହାର ଦେବେ ବୋଲି କହି ଦିଅନ୍ତି । କିନ୍ତୁ ପିଲାଟି କୃତିତ୍ୱ ଦର୍ଶାଇବା ପରେ ବାପା ମା'ଙ୍କର ଏସବୁ କଥା ମନେ ନ ଥାଏ । କଥା ଓ କାର୍ଯ୍ୟ ମଧ୍ୟରେ ଏପରି ସଂଯୋଗହୀନତାର ବାରମ୍ବାର ପୁନରାବୃତ୍ତି ଫଳରେ ଶିଶୁ ମନରେ ଧାରଣା ଜନ୍ମେ ଯେ କଥା ଓ କାର୍ଯ୍ୟ ମଧ୍ୟରେ କିଛି ସଂଯୋଗ ନାହିଁ । ସେହିପରି ପିତାମାତା କୌଣସି କାରଣ ନ ଦର୍ଶାଇ ଭାଗ୍ୟ ଉପରେ ଗୁରୁତ୍ୱ ଆରୋପ କରିବା, ଗତାନୁଗତିକତା ଉପରେ ପ୍ରାଧାନ୍ୟ ଦେବା, ଅତି ମାତ୍ରାରେ ପରିବର୍ତ୍ତନହୀନ (Rigid) ବ୍ୟବହାର ଦର୍ଶାଇବା ଫଳରେ ଶିଶୁ ମନରେ ବାପା ମା'ଙ୍କର ସଂଯୋଗହୀନ ବ୍ୟବହାରର ପ୍ରଭାବ ପଡ଼େ । ସାମାଜୀକରଣର ମାଧ୍ୟମରେ ବାପା ମା'ଙ୍କର ଅସହାୟତା ଶିଶୁମାନଙ୍କୁ ସଂକ୍ରମିତ ହୁଏ ।

ଆମର ଗବେଷଣାରେ ପିତାମାତାଙ୍କ ସାମାଜୀକରଣ ତଥା ଶିଶୁପାଳନ ବ୍ୟବସ୍ଥାର ଆଉ ଗୋଟିଏ ଦିଗ ସ୍ପଷ୍ଟ ହୋଇଛି । ତାହା ହେଉଛି କାରଣ ନିର୍ଦ୍ଦେଶ ସମ୍ପର୍କୀୟ ତାଲିମ (Training for attribution) ପ୍ରତ୍ୟେକ ମଣିଷ କିଛି ନା କିଛି ଖରାପ ପରସ୍ଥିତିର ସମ୍ମୁଖୀନ ହୁଅନ୍ତି ଏବଂ ଖରାପ ପରିସ୍ଥିତି ପାଇଁ କିଏ ଦାୟୀ, ପରିସ୍ଥିତିର ପ୍ରଭାବ କେତେ ବେଶୀ ହେବ ଏବଂ ଖରାପ ଅବସ୍ଥା କେତେ ଦିନ ଲାଗି ରହିବ ସେ ସମ୍ପର୍କରେ ଚିନ୍ତା କରନ୍ତି । ଏ କ୍ଷେତ୍ରରେ ଲକ୍ଷ୍ୟ କରାଯାଇଛି ଯେ ପ୍ରତ୍ୟେକ ବ୍ୟକ୍ତି ପରିସ୍ଥିତିଟି କିପରି ବିଶ୍ଳେଷଣ କରିବ, ତା'ର ଏକ ନିଜସ୍ୱ ଶୈଳୀ ରହିଛି । କେତେ ଲୋକ ଖରାପ ପରିସ୍ଥିତିର ସମ୍ମୁଖୀନ ହେଲେ ନିଜକୁ ପୂର୍ଣ୍ଣ ଭାବରେ ଦାୟୀ କରନ୍ତି । ନିଜର ସାମର୍ଥ୍ୟ ନ ଥିବାରୁ ଏପରି ଉପୁଜିଲା ବୋଲି ମନେ କରନ୍ତି । ଅନ୍ୟ ପକ୍ଷରେ ଅନ୍ୟ କେତେକ ଲୋକ ଖରାପ ପରିସ୍ଥିତି ପାଇଁ ଅନ୍ୟମାନେ ଓ ବାହ୍ୟ ପରିସ୍ଥିତି ଦାୟୀ ବୋଲି ବିଚାର କରନ୍ତି । ସାଧାରଣତଃ ନିଜକୁ ପୂର୍ଣ୍ଣ ମାତ୍ରାରେ ଦାୟୀ କରୁଥିବା ଲୋକମାନେ ମାତ୍ରାଧିକ ପରିମାଣର ଅସହାୟତା ଦର୍ଶାଇଥାନ୍ତି । ସେହିପରି କେତେକ ଲୋକ ଖରାପ ପରିସ୍ଥିତି ସବୁଦିନ ବା ସବୁକାଳେ ରହିଥବ ବୋଲି ଧରି ନିଅନ୍ତି । କିନ୍ତୁ ଖରାପ ପରିସ୍ଥିତି କ୍ଷଣସ୍ଥାୟୀ ଓ ଏହା ଅପସରିଯିବ ବୋଲି ଅନ୍ୟ କେତେକ ବିଶ୍ୱାସ କରନ୍ତି । ଖରାପ ପରିସ୍ଥିତିକୁ ଦୀର୍ଘସ୍ଥାୟୀ ମନେ କରୁଥିବା ଲୋକଙ୍କର ଅସହାୟତା ଦୀର୍ଘସ୍ଥାୟୀ ଓ ଖରାପ ପରିସ୍ଥିତିକୁ କ୍ଷଣସ୍ଥାୟୀ ମନେକରୁଥିବା ଲୋକମାନଙ୍କର ଅସହାୟତା ଅସ୍ଥାୟୀ ହୋଇଥାଏ । ପରିଶେଷରେ କେତେକ ଲୋକ ଅସହାୟତାର ପ୍ରଭାବକୁ ବ୍ୟାପକ ବୋଲି ଧରି ନିଅନ୍ତି । ଦୁର୍ଘଟଣାରେ ହାତ ଭାଙ୍ଗିଥିବା ଲୋକଟି ଏପରି ବିଚାର କରୁଥିଲେ ସେ ଧରି ନିଏ ଯେ ତା' ଜୀବନର ସବୁ ସରିଗଲା । ସେ ଆଉ କୌଣସି କାର୍ଯ୍ୟ କରିପାରିବ ନାହିଁ । ମାତ୍ର ଅସହାୟତାର ପ୍ରଭାବକୁ ସୀମିତ ବିଚାର କରୁଥିବା ବ୍ୟକ୍ତି ବିଶ୍ୱାସ ରଖେ ଯେ, ସେ ହାତର ସୁପରିଚାଳନା ଆବଶ୍ୟକ କରୁଥିବା କାମସବୁ ଠିକ୍ ରୂପେ କରି ନ ପାରିଲେ ମଧ୍ୟ ଅନ୍ୟସବୁ କାମ ସେ ଠିକ୍ କରିପାରିବ । ଖରାପ ପରସ୍ଥିତିର ପ୍ରଭାବକୁ ସୀମିତ ମନେ କରୁଥିବା ବ୍ୟକ୍ତି ଜୀବନରେ ଅସହାୟତାର ପରିସର ସୀମାବଦ୍ଧ ରହେ ।

ଗବେଷଣାରୁ ଦେଖାଯାଇଛି ବାପ ମା' ବିଭିନ୍ନ ଖରାପ ପରିସ୍ଥିତିର ବିଶ୍ଳେଷଣ କଲାବେଳେ ପିଲା ଆଗରେ ଯେଉଁ କାରଣ ନିର୍ଦ୍ଦେଶ ଶୈଳୀର ବ୍ୟବହାର କରନ୍ତି, ସେସବୁ ପିଲା ମନରେ ଅଙ୍କୁରିତ ହୁଏ । ପିଲାଟି ପରୀକ୍ଷାରେ ଖରାପ କରି ଭଗ୍ନ ହୃଦୟରେ ଥିବାବେଳେ ବାପ ମା' ଯଦି ଆଲୋଚନା କରି ବସନ୍ତି ଯେ ପିଲାଟିର କିଛି ସାମର୍ଥ୍ୟ ନାହିଁ, ତା' ଦ୍ୱାରା କିଛି ହୋଇପାରିବ ନାହିଁ, ଏପରି କାରଣ ନିର୍ଦ୍ଦେଶ ପିଲାର ଅସହାୟତା ବୃଦ୍ଧି କରେ । ସେହିପରି ପିଲାଟିର ବିଫଳତା ସବୁଦିନ ସେପରି ଲାଗି ରହିବ ଏବଂ କେବଳ ପାଠପଢ଼ା ନୁହେଁ ଜୀବନର ଅନ୍ୟ କ୍ଷେତ୍ରରେ ମଧ୍ୟ ସେ ବିଫଳ ହେବ-ଏପରି କଥୋପକଥନ ପିଲାର ଅସହାୟତା ବୃଦ୍ଧି କରେ ।

ପରୋକ୍ଷରେ ବାପ ମା' ପିଲାଟିର ବିଫଳତା ବିଶ୍ଳେଷଣ କରିବାକୁ ଯାଇ ପିଲାଟିର ଉଦ୍ୟମଶୀଳତାର ଅଭାବ ଯୋଗୁଁ ଏହା ଘଟିଲା ବୋଲି ମତବ୍ୟକ୍ତ କରି ପାରନ୍ତି । ପିଲାଟି

ଏଥର ବିଫଳ ହେଲେ ମଧ୍ୟ ସଫଳ ହେବାର ସମ୍ଭାବନା ରହିଛି ଏବଂ ପାଠଛଡ଼ା ସଫଳତା ଦର୍ଶାଇବା ପାଇଁ ଜୀବନର ଅନ୍ୟାନ୍ୟ କ୍ଷେତ୍ର ଉନ୍ମୁକ୍ତ । ବାପ ମା'ଙ୍କର ଏପରି ଆଲୋଚନା ପିଲାଟିର ଅସହାୟତା ହ୍ରାସରେ ସହାୟକ ହୁଏ ।

ମୋଟ ଉପରେ ବାପ ମା'ଙ୍କ ସାମାଜୀକରଣ ପ୍ରକ୍ରିୟାର କେତୋଟି ସୂକ୍ଷ୍ମଦିଗ ଶିଶୁର ଅସହାୟତା ବୃଦ୍ଧି ତଥା ହ୍ରାସକରଣରେ ସହାୟକ ହୁଏ । ଶିଶୁ ମନରୁ ଅସହାୟତାବୋଧର ହ୍ରାସ ଘଟାଇ ତା' ମନରେ ସକ୍ଷମତାର ମନୋଭାବ ସୃଷ୍ଟି କରିବାକୁ ହେଲେ ଶିଶୁର ପରିବେଶ ନିୟନ୍ତ୍ରଣଶୀଳ (Controllable) ଏବଂ ସଂଯୋଗାତ୍ମକ (Contingent) କରିବାକୁ ହେବ ।

## ସହାୟକ ପରାମର୍ଶ

*୧. ପ୍ରାରମ୍ଭିକ ପ୍ରର୍ଯ୍ୟାୟରେ ଶିଶୁକୁ ମଧ୍ୟମ ଧରଣର କଷ୍ଟକର କାର୍ଯ୍ୟ ଦିଅନ୍ତୁ । ଯେଉଁ କାର୍ଯ୍ୟରେ ସଫଳତା ଲାଭ କରିବାର ସମ୍ଭାବନା ପ୍ରାୟ ଅଶୀ/ନବେ ଭାଗ, ସେପରି କାର୍ଯ୍ୟ ଦିଅନ୍ତୁ । ମୂଳରୁ ବିଫଳତା ଆସିଲେ ପରିଣତି ବିଷମ ହେବ ।*

*୨. ବିଫଳତା କ୍ଷେତ୍ରରେ ଶିଶୁଟି ପୂରାପୂରି ଦାୟୀ, ଏପରି ଭାବନା ଦିଅନ୍ତୁ ନାହିଁ ।*

*୩. ଶିଶୁ ଗୋଟିଏ କ୍ଷେତ୍ରରେ ବିଫଳ ହେଲେ ମଧ୍ୟ ଅନ୍ୟ କ୍ଷେତ୍ରରେ ତା'ର ଭଲ ସାମର୍ଥ୍ୟ ରହିଛି, ଏପରି ଭାବନା ସୃଷ୍ଟି କରନ୍ତୁ ।*

*୪. ଶିଶୁଟି ଆଜି ବିଫଳ ହେଲେ ମଧ୍ୟ କାଲି ସଫଳ ହୋଇପାରିବ, ଏପରି ଧାରଣା ଦିଅନ୍ତୁ ।*

# ଅନନ୍ୟ ସାଧାରଣ ଶିଶୁ ଓ ତାର ଶିକ୍ଷା ବ୍ୟବସ୍ଥା

ପଞ୍ଚମ ଷଷ୍ଠ ଶ୍ରେଣୀରେ ପଢୁଥିବା ପିଲାଟି ବଡ଼ ବଡ଼ ହିସାବ କରିଦେଉଥିବାର ଦେଖିଲେ ଆମେ ବିସ୍ମିତ ହେବା ସ୍ୱାଭାବିକ । ମାତ୍ର ଏହାଯେ ଯାଦୁକରର ଯାଦୁ-ପ୍ରସ୍ତୁତ, ସେକଥା ନୁହେଁ । ଆମର ପରିପାର୍ଶ୍ୱରେ କେତେକ ମୁଷ୍ଟିମେୟ ପିଲା ଅଛନ୍ତି, ଯେଉଁମାନଙ୍କ ବୁଦ୍ଧିମତ୍ତା ଅସାଧାରଣ, କାର୍ଯ୍ୟଦକ୍ଷତା ଅନନ୍ୟ ସାଧାରଣ ଏବଂ ଚିନ୍ତାଧାରା ଗତାନୁଗତିକତାରୁ ମୁକ୍ତ । ଏପରି ପିଲାମାନଙ୍କର ଶିକ୍ଷା ଦୀକ୍ଷା ଓ ପରିଚାଳନା କ୍ଷେତ୍ରରେ ଅଭିଭାବକ, ଶିକ୍ଷାନୁଷ୍ଠାନ ତଥା ସମାଜର ଯେ ଏକ ଗୁରୁଦାୟିତ୍ୱ ରହିଛି, ଏଥିରେ ସନ୍ଦେହ ନାହିଁ । ଅନନ୍ୟ ସାଧାରଣ ଶିଶୁମାନଙ୍କ ପାଇଁ ଉପଯୋଗୀ ଶିକ୍ଷା ବ୍ୟବସ୍ଥା କରା ନ ଗଲେ, ସମାଜ କେବଳ ସେମାନଙ୍କର ଭବିଷ୍ୟତ ଦାନରୁ ବଞ୍ଚିତ ହୁଏ ନାହିଁ, ଅନ୍ୟ ଗୋଟିଏ ସମସ୍ୟା ମଧ୍ୟ ସୃଷ୍ଟି ହୁଏ । ବହୁଦେଶରେ ଗବେଷଣାରୁ ଦେଖାଯାଇଛି ଯେ, ସାଧାରଣ ଜନବସତିରେ ଆତ୍ମହତ୍ୟାର ଶତାଙ୍କ ଯାହା, ଅନନ୍ୟ ସାଧାରଣ ପିଲା ଓ ବ୍ୟକ୍ତିଙ୍କ ମଧ୍ୟରେ ଆତ୍ମହତ୍ୟାର ଶତକଡ଼ା ହାର ତା'ଠାରୁ ଖୁବ୍ ଅଧିକ । ଏପରି କ୍ଷତିର ସମ୍ଭାବନା ଥିବା ସ୍ଥଳେ ଅନନ୍ୟ ସାଧାରଣ ପିଲାମାନଙ୍କର ଶିକ୍ଷା ଦୀକ୍ଷାର ପରିକଳ୍ପନା ନ କରିବା ଦାୟିତ୍ୱହୀନତାର ପରିଚାୟକ ।

ଅନ୍ୟାନ୍ୟ ସାଧାରଣ ପିଲାମାନଙ୍କୁ ଚିହ୍ନଟ କରିବା ସହଜ ନ ହେଲେ ହେଁ ଅତି ବେଶି କଷ୍ଟ ନୁହେଁ । ସେମାନଙ୍କର କଥାବାର୍ତ୍ତା, କାର୍ଯ୍ୟକଳାପ ତଥା ଆଗ୍ରହ ପ୍ରକାଶରେ ଅସାଧାରଣ ପରିଚୟ ମିଳେ । ଏମାନଙ୍କ ବୁଦ୍ଧିର ସ୍ତର ଖୁବ୍ ବେଶି । ମନୋବିଜ୍ଞାନୀମାନେ ବ୍ୟବହାର କରୁଥିବା ବୁଦ୍ଧିମାପକରେ ଏମାନଙ୍କ ବୁଦ୍ଧି ମାପିଲେ ଖୁବ୍ ଉଚ୍ଚ ବୁଦ୍ଧିମତ୍ତାର ପରିଚୟ ମିଳେ । ଜନବସତିରେ ହାରାହାରି ବୁଦ୍ଧିର ସ୍ତର ୧୦୦ ବୁଦ୍ଧିଅଙ୍କ ହେବା ସ୍ଥଳେ ଏପରି ଅନନ୍ୟ ସାଧାରଣ ଶିଶୁମାନଙ୍କର ବୁଦ୍ଧିଅଙ୍କ ୧୪୦ରୁ ୧୮୦ ପର୍ଯ୍ୟନ୍ତ ହୋଇପାରେ । ଏମାନଙ୍କୁ ଚିହ୍ନଟ କଲା ପରେ ଯେଉଁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଟି ବିଚାରକୁ ଆସେ ତା' ହେଉଛି ଏମାନଙ୍କର ପରିଚାଳନା ଓ ଶିକ୍ଷାଦୀକ୍ଷାର ଦାୟିତ୍ୱ । ଅନନ୍ୟ ସାଧାରଣ ଶିଶୁମାନଙ୍କର ଶିକ୍ଷାଦୀକ୍ଷା ପାଇଁ ତିନୋଟି ମାର୍ଗ ରହିଛି ।

**ତ୍ୱରାନ୍ୱିତକରଣ :**

ଅନନ୍ୟ ଅସାଧାରଣ ଶିଶୁ ଶିକ୍ଷା ବ୍ୟବସ୍ଥାର ତ୍ୱରାନ୍ୱିତକରଣ ଏକ ବିଶିଷ୍ଟ ପର୍ଯ୍ୟାୟ । ସାଧାରଣ ପିଲାଙ୍କ ତୁଳନାରେ ଅଳ୍ପ ବୟସରୁ ଏପରି ପିଲାକୁ ସ୍କୁଲରେ ଭର୍ତ୍ତି କରାଇବା ଏବଂ ପ୍ରଚଳିତ

ଶିକ୍ଷା ବ୍ୟବସ୍ଥା ମଧ୍ୟରେ ଶୀଘ୍ର ଶୀଘ୍ର ତାକୁ ଗତି କରାଇବା ଏ ଯୋଜନାର ମୌଳିକ ଦିଗ । ଖୁବ୍ ଛୋଟବେଳେ ତାକୁ ନର୍ସରୀ ବା ପ୍ରାକ୍-ବିଦ୍ୟାଳୟରେ ଭର୍ତ୍ତି କରାଇବା ଏବଂ ଦରକାର ବେଳେ କେତେକ ଶ୍ରେଣୀକୁ ବାଦ୍‌ଦେଇ ଉପର ଶ୍ରେଣୀକୁ ଉଠାଇଦେବା କାର୍ଯ୍ୟକାରୀ କରାଯାଇପାରେ । ଏହା କରାନଗଲେ ଅନନ୍ୟ ସାଧାରଣ ଶିଶୁର ଆଗ୍ରହ ବ୍ୟାହତ ହୁଏ । କାରଣ ଯେ କୌଣସି ଶ୍ରେଣୀର ଶିକ୍ଷକର ଶିକ୍ଷାଦାନ ସାଧାରଣ ଛାତ୍ରକୁ ଭିତ୍ତି କରି ହୋଇଥାଏ । ଫଳରେ ଅନନ୍ୟ ସାଧାରଣ ଶିଶୁ ସେ ବ୍ୟବସ୍ଥାରେ କୌଣସି ଆହ୍ୱାନର ସମ୍ମୁଖୀନ ନ ହୋଇ ଆଗ୍ରହ ହରାଇ ବସେ କିମ୍ବା ବିରକ୍ତିକର ପରିବେଶର ଶରବ୍ୟ ହୁଏ । ଆମ ଦେଶରେ ଏପରି ତ୍ୱରାନ୍ୱିତକରଣ ବ୍ୟବସ୍ଥା ଖୁବ୍ କମ୍ । କୌଣସି ଛାତ୍ରକୁ ଏକାବେଳକେ ଦୁଇଟି ପ୍ରମୋଶନ ଦେବାର ଦୃଷ୍ଟାନ୍ତ ଆମ ଦେଶରେ ଖୁବ୍ କମ୍ । ଅବଶ୍ୟ ତ୍ୱରାନ୍ୱିତକରଣ ବ୍ୟବସ୍ଥାର ଏକ କୁଫଳ ରହିଛି ବୋଲି କେତେକ ସମାଲୋଚକ ଅନୁଭବ କରନ୍ତି । ଅନନ୍ୟ ସାଧାରଣ ପିଲାର ଶିକ୍ଷା ବ୍ୟବସ୍ଥା ଖୁବ୍ ଅଳ୍ପ ବୟସରୁ ଆରମ୍ଭ କଲେ କେତେକ ଶ୍ରେଣୀକୁ ବାଦ୍ ଦେଲେ ଛାତ୍ରଟି ଯେଉଁ ଶ୍ରେଣୀରେ ଭର୍ତ୍ତି ହୁଏ, ସେଠାରେ ତା'ଠାରୁ ଅଧିକ ବୟସର ଛାତ୍ରମାନେ ଥାଆନ୍ତି । ଅଧିକ ବୟସର ଛାତ୍ରମାନଙ୍କ ସହିତ ସାମାଜିକ ମିଳାମିଶାରେ କେତେକ ଅସୁବିଧା ସୃଷ୍ଟି ହୋଇ ଅନନ୍ୟ ସାଧାରଣ ପିଲାର ଭାବଗତ ଓ ସାମାଜିକ ବିକାଶ ବ୍ୟାହତ ହୁଏ । ଗବେଷଣାରୁ ଦେଖାଯାଇଛି ଯେ, କେତେକ ଅନନ୍ୟ ସାଧାରଣ ପିଲାଙ୍କ ପାଇଁ ତ୍ୱରାନ୍ୱିତକରଣ କ୍ଷତିକାରକ ହେଲେହେଁ ପୂରାପୂରି ଏ ଯୋଜନା ମନ୍ଦ ନୁହେଁ । ଅବଶ୍ୟ ଶିକ୍ଷାବିତ୍‌ମାନେ ଅନ୍ୟ ଦୁଇଟି ମାର୍ଗ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।

**ପ୍ରାଠ୍ୟକ୍ରମ ସମୃଦ୍ଧି :**

ଏ ଯୋଜନାରେ ପ୍ରତିଭାଶାଳୀ ଛାତ୍ରକୁ ସାଧାରଣ ପିଲାଙ୍କ ପରି ତାର ବୟସ ଉପଯୋଗୀ ଶ୍ରେଣୀରେ ଭର୍ତ୍ତି କରାହେବ ଏବଂ ସାଧାରଣ ପିଲାଙ୍କ ପରି ବର୍ଷକୁ ଥରେ ପ୍ରମୋସନ୍ ଦିଆଯିବ । କିନ୍ତୁ ତାକୁ ଶ୍ରେଣୀର ପାଠ୍ୟକ୍ରମ ବାହାରେ ଅନ୍ୟାନ୍ୟ ଅଭିଜ୍ଞତାର ସୁଯୋଗ ଦିଆଯିବ । ସ୍ୱତନ୍ତ୍ର କାର୍ଯ୍ୟ, ଅଧିକ ପଢ଼ା ଏବଂ ପାଠ୍ୟକ୍ରମ ବାହାରେ ଅନ୍ୟ ପ୍ରତିଯୋଗିତାପୂର୍ଣ୍ଣ ଅଭ୍ୟାସକୁ ଉତ୍ସାହ ଦିଆଯିବ । ବିଶେଷକରି ଶିଶୁଟି ଯେପରି ନିଜ ଉଦ୍ୟମରେ କାମ କରେ ଏବଂ ସ୍ୱାଧୀନତାର ସହିତ କାମ କରେ, ତା' ଉପରେ ଗୁରୁତ୍ୱ ଦିଆଯିବ । ଏପରି ସମୃଦ୍ଧିକରଣ ଯୋଜନାଟି ଲୋକପ୍ରିୟ ହେବାର ଏକ ମୁଖ୍ୟ କାରଣ ହେଉଛି ଯେ ସାଧାରଣ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ଶିକ୍ଷା ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ ନ କରି ଏ ଯୋଜନାଟି କାର୍ଯ୍ୟକାରୀ କରାଯାଇପାରେ । ଅଧିକନ୍ତୁ ଏ ଯୋଜନାଟି ମଧ୍ୟ ବ୍ୟୟସାପେକ୍ଷ ନୁହେଁ ।

ବିଶ୍ୱର ବିଭିନ୍ନ ସ୍ଥାନରେ ଏ ବ୍ୟବସ୍ଥାଟିର କାର୍ଯ୍ୟକାରିତା ଲକ୍ଷ୍ୟ କରାଯାଇଛି । ପ୍ରାୟ ଦଶବର୍ଷ ତଳେ ଯୁକ୍ତରାଷ୍ଟ୍ର ଆମେରିକାର ସାନ୍‌ଫ୍ରାନ୍‌ସିସ୍କୋ ନଗରରେ ବୃହତ୍ ଆକାରରେ ଏ ଯୋଜନାଟି କାର୍ଯ୍ୟକାରୀ କରାଯାଇଥିଲା । ନଗରର ସ୍କୁଲମାନଙ୍କରେ ପଞ୍ଚମ ଶ୍ରେଣୀରେ ପଢୁଥିବା ଅନନ୍ୟ ସାଧାରଣ ପିଲାଙ୍କୁ ଚିହ୍ନଟ କିରାଯିବା ପରେ ସେମାନଙ୍କୁ ନେଇ ସାନ୍‌ଫ୍ରାନ୍‌ସିସ୍କୋରେ

ଥିବା ବିଭିନ୍ନ ସଂଗ୍ରହାଳୟରେ (ମ୍ୟୁଜିୟମ) କନିଷ୍ଠ ଗାଇଡ୍ ହିସାବରେ ରଖାଗଲା । ଏହି କନିଷ୍ଠ ଗାଇଡ୍‌ମାନଙ୍କର କାମ ହେଲା ସ୍ୱେଚ୍ଛାସେବୀ ରୂପେ କାମ କରିବା । ପ୍ରଥମେ ସଂଗ୍ରହାଳୟର କର୍ମକର୍ତ୍ତାମାନେ ଏହି ସ୍ୱେଚ୍ଛାସେବୀମାନଙ୍କୁ ତାଲିମ ଦେବେ । ତାଲିମ ପ୍ରାପ୍ତି ପରେ କନିଷ୍ଠ ଗାଇଡ୍‌ମାନେ ସଂଗ୍ରହାଳୟକୁ ଆସୁଥିବା ପରିଦର୍ଶକମାନଙ୍କୁ ବୁଲାଇ ନେଇ ବିଭିନ୍ନ କଳାତ୍ମକ ତଥା ବୈଜ୍ଞାନିକ ପରିଦର୍ଶନୀୟ ବସ୍ତୁ ଦେଖାଇବେ । ପରିଦର୍ଶନୀୟ ବସ୍ତୁ ସମ୍ପର୍କରେ କିଛି କିଛି ସୂଚନା ମଧ୍ୟ ଦେବେ । ଏହା ସହଜରେ ଅନୁମେୟ ଯେ ବିଜ୍ଞାନରେ ଆଗ୍ରହ ଥିବା ଛାତ୍ର ପକ୍ଷେ ବୈଜ୍ଞାନିକ ଭାବଧାରା ସମ୍ପର୍କରେ ଅଧିକ ଜ୍ଞାନଲାଭ କରିବାର ଏହା ଏକ ପ୍ରକୃଷ୍ଟ କ୍ଷେତ୍ର । ସେହିପରି କଳାପ୍ରିୟ ଛାତ୍ରର ମାନସିକ ବିକାଶ ପାଇଁ ସଂଗ୍ରହାଳୟର ପରିପ୍ରେକ୍ଷୀ ଏକ ବିଶିଷ୍ଟ ସୁଯୋଗ । ଏତଦ୍‌ବ୍ୟତୀତ ବିଭିନ୍ନ ଭାବଭଙ୍ଗୀର ପରିଦର୍ଶମାନଙ୍କର ସାକ୍ଷାତ ଲାଭ କରି ଅଭିଜ୍ଞତାର ପରିସର ବୃଦ୍ଧି କରିବା, ବିଭିନ୍ନ ଧରଣର ଆହ୍ୱାନର ସମ୍ମୁଖୀନ ହେବା ଏବଂ ନେତୃତ୍ୱ ନେବାରେ ଦକ୍ଷତା ବୃଦ୍ଧି କରିବାର ସୁଯୋଗ ଏ ପରିବେଶରେ ମିଳିପାରିବ ।

ସାନ୍‌ଫ୍ରାନ୍‌ସିସ୍କୋର ଏ ଯୋଜନାର ପରବର୍ତ୍ତୀ ଅନୁଧ୍ୟାନରୁ ଜଣାଗଲା ଯେ ବହୁ ଅନନ୍ୟ ସାଧାରଣ ଛାତ୍ର ଏହାଦ୍ୱାରା ଉପକୃତ ହୋଇଛନ୍ତି । ଏହା ବିଭିନ୍ନ ରୂପରେଖ ନେଇ କାର୍ଯ୍ୟକାରୀ କରାଯାଇପାରେ । ମାତ୍ର ଏଥିରେ ଅଧିକ ସୁଫଳ ମିଳିବା ପାଇଁ ଶିକ୍ଷକ ଓ ଶିକ୍ଷାବିତ୍‌ମାନଙ୍କୁ ଖୁବ୍ ଅଧିକ ସମୟ ଯତ୍ନ ଓ ନିଷ୍ଠା ଦେଇ କାର୍ଯ୍ୟସୂଚୀ ପ୍ରସ୍ତୁତକରିବାକୁ ହେବ ।

**ସ୍ୱତନ୍ତ୍ର ଗୋଷ୍ଠୀକରଣ :**

ଅନନ୍ୟ ସାଧାରଣ ଶିଶୁମାନଙ୍କର ଉପଯୋଗୀ ଶିକ୍ଷାବ୍ୟବସ୍ଥାର ଅନ୍ୟ ଏକ ପରିକଳ୍ପନା ହେଉଛି ସ୍ୱତନ୍ତ୍ର ଗୋଷ୍ଠୀକରଣ। ଅନନ୍ୟ ସାଧାରଣ ପିଲାଙ୍କୁ ଦୃଷ୍ଟିରେ ରଖି ସେମାନଙ୍କ ପାଇଁ ସ୍ୱତନ୍ତ୍ର ଶ୍ରେଣୀ ବା ଶିକ୍ଷାକ୍ରମର ବ୍ୟବସ୍ଥା କରାଯାଇପାରେ । କେତେକ ସାଧାରଣ ସ୍କୁଲକୁ ଅନନ୍ୟ ସାଧାରଣ ପିଲାଙ୍କୁ ଚିହ୍ନଟ କରି ସେମାନଙ୍କ ପାଇଁ ଉକ୍ତ ଅଞ୍ଚଳରେ ଗୋଟିଏ ସ୍ୱତନ୍ତ୍ର ସ୍କୁଲ ପ୍ରତିଷ୍ଠା କରାଯାଇପାର । ବିକଳ୍ପ ବ୍ୟବସ୍ଥାରୂପେ ଅନନ୍ୟ ସାଧାରଣ ପିଲାଙ୍କୁ ନେଇ ପରବର୍ତ୍ତୀ ସ୍ଥାନରେ ସରକାରୀ ସହାୟତାରେ ସ୍ୱତନ୍ତ୍ର ସ୍କୁଲରେ ଭର୍ତ୍ତି କରାଯାଇପାରେ । ଏପରି ସ୍ୱତନ୍ତ୍ର ସ୍କୁଲରେ ବ୍ୟକ୍ତିଗତ ଉଦ୍ୟମ ଓ ବୌଦ୍ଧିକ ପାରଦର୍ଶିତା ଉପରେ ପ୍ରାଧାନ୍ୟ ଦିଆଯାଏ ।

ଆମ ଦେଶରେ କିଛି ପରିମାଣରେ ଏ ବ୍ୟବସ୍ଥା ପ୍ରଚଳନ ଅଛି । ରାଜସ୍ଥାନର ବନସ୍ଥଳୀ ବିଦ୍ୟାପୀଠ ଏ ଦିଗରେ ଏକ ପରିକଳ୍ପନା । ପାଶ୍ଚାତ୍ୟ ଦେଶମାନଙ୍କରେ ଏ ଯୋଜନାକୁ କାର୍ଯ୍ୟକାରୀ କରାଯାଉଛି । ଏପରି ସ୍ୱତନ୍ତ୍ର ସ୍କୁଲରେ ଅନନ୍ୟ ସାଧାରଣ ଛାତ୍ର ନିଜର ଶିକ୍ଷାବ୍ୟବସ୍ଥାର ପରିକଳ୍ପନାରେ ଭାଗ ନିଏ । ଆଲୋଚନା ଚକ୍ର ଓ ସ୍ୱାଧୀନ କାର୍ଯ୍ୟକ୍ରମର ଅଂଶ ଗ୍ରହଣ କରେ ଏବଂ ପ୍ରଚଳିତ ଶିକ୍ଷାପଦ୍ଧତିର ବାହାରେ କେତେକ ଅଭିନବ ପ୍ରଣାଳୀରେ ଶିକ୍ଷାଗ୍ରହଣ କରେ । କେତେକ ବ୍ୟକ୍ତିବିଶେଷ ମନେକରନ୍ତି ଯେ ଅଳ୍ପ କେତେକ ପିଲାଙ୍କୁ ଏପରି ସୁଯୋଗ ଦେଲେ ସେମାନେ ନିଜର ଦକ୍ଷତା ବିଷୟରେ ଅତିରଂଜିତ ଭାବନା ଆଣି ଆତ୍ମଗର୍ବ କରନ୍ତି ଓ ଅନ୍ୟମାନଙ୍କୁ ହେୟ ମନେ କରନ୍ତି । ମାତ୍ର ଏହା ପ୍ରକୃତରେ ସତ୍ୟ

ନୁହେଁ । ଗବେଷଣାରୁ ଦେଖାଯାଇଛି ଯେ ସ୍ୱତନ୍ତ୍ର ସ୍କୁଲରେ ଶିକ୍ଷାଲାଭ କରୁଥିବା ଛାତ୍ରଛାତ୍ରୀମାନେ ଅନେକ ସମୟରେ ବିନମ୍ର ହୋଇଥାନ୍ତି ଏବଂ ଅନ୍ୟମାନଙ୍କ ଗହଣରେ ନିଜକୁ ଜଣେ ସାଧାରଣ ବ୍ୟକ୍ତି ହିସାବରେ ଗ୍ରହଣ କରିଥାନ୍ତି ।

ଅନନ୍ୟ ସାଧାରଣ ଶିଶୁମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ବିପକ୍ଷରେ ବେଳେବେଳେ ପ୍ରତିବାଦ ହୁଏ । କେହି କେହି ଅନୁଭବ କରନ୍ତି ଯେ ଅନନ୍ୟ ସାଧାରଣ ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ବ୍ୟୟସାପେକ୍ଷ ଏବଂ ଗଣବିରୋଧୀ । ଯେଉଁ ପିଲାମାନଙ୍କର ଅଧିକ ବୁଦ୍ଧିମତ୍ତା ମୂଳରୁ ରହିଛି, ସେମାନଙ୍କର ମାନସିକ ଅଭିବୃଦ୍ଧି ପାଇଁ ପୁଣି ଅଧିକ ସୁବିଧାସୁଯୋଗ ଦେବା ସାମାଜିକ ନ୍ୟାୟର ଅନ୍ତରାୟ ନୁହେଁକି ? ମାତ୍ର ଗଭୀର ଅନୁଧ୍ୟାନ କଲେ ଜଣାଯାଏ ଯେ ଏ ଧରଣର ଯୁକ୍ତି ଗୋଷ୍ଠୀଗତ ସ୍ୱାର୍ଥର ବିରୋଧୀ। ଅନନ୍ୟ ସାଧାରଣ ପିଲାପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଦ୍ୱାରା କେବଳ ପିଲା ଓ ତାର ପିତାମାତା ଉପକୃତ ହୁଅନ୍ତି ନାହିଁ, ସମାଜରେ ଭବିଷ୍ୟତ ସୁଖର ସମ୍ଭାବନା ବହୁଗୁଣିତ ହୁଏ । ଏ ଦୃଷ୍ଟିରୁ ଅନନ୍ୟ ସାଧାରଣ ଶିଶୁ ଶିକ୍ଷାବ୍ୟବସ୍ଥାରେ ପ୍ରତି ସମାଜ ଅଙ୍ଗୀକାରବଦ୍ଧ ହେବା ନିତାନ୍ତ ବିଧେୟ ।

## ସହାୟକ ପରାମର୍ଶ

*୧. ଅନନ୍ୟ ସାଧାରଣ ଶିଶୁ ଦର୍ଶାଉଥିବା ଦକ୍ଷତାର କ୍ଷେତ୍ରକୁ ଚାହିଁ ତାହା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥାର ଆୟୋଜନ କରନ୍ତୁ ।*

*୨. ଏହା କରିବା ସଙ୍ଗେ ସଙ୍ଗେ ପରିବାରର ଅନ୍ୟ ଶିଶୁମାନେ ଯେପରି ଅବହେଳିତ ମନେ ନ କରନ୍ତି, ସେ ଦିଗପ୍ରତି ସତର୍କ ଦୃଷ୍ଟି ଦିଅନ୍ତୁ ।*

# ନୈତିକ ବିଚାର ଓ ବ୍ୟବହାର

ଜୀବନର ବିକାଶଧାରରେ ନୈତିକ ବିଚାରର ଉନ୍ମେଷ ଓ ଅଭିବୃଦ୍ଧି ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ବ୍ୟକ୍ତିତ୍ୱର ବିକାଶ ସହିତ ଏହା ଗଭୀର ଭାବରେ ସଂଶ୍ଳିଷ୍ଟ । ଶାରୀରିକ ଓ ମାନସିକ ବିକାଶର କ୍ରମ ସୋପାନ ଥିଲାପରି ନୈତିକ ବିଚାରବୋଧର ମଧ୍ୟ ବିଭିନ୍ନ ସ୍ତର ରହିଛି । ଅବଶ୍ୟ ଶାରୀରିକ ଓ ମାନସିକ ବିକାଶ ସହିତ ସମତାଳ ଦେଇ ଏହି ବିଚାରବୋଧର ଅଭିବୃଦ୍ଧି ଘଟିଥାଏ ।

ପିଲାମାନଙ୍କର ଜ୍ଞାନଗତ (Congnitive) ବିକାଶ ସମ୍ପର୍କରେ ବିଶ୍ୱବିଖ୍ୟାତ ମନୋବିଜ୍ଞାନୀ ଜାଁ ପିଆଜେ (Jean Piaget) ବଳିଷ୍ଠ ତଥ୍ୟପ୍ରଦାନ କରିଛନ୍ତି । ସେହିପରି ଏକ ସୋପାନ-ଭିତ୍ତିକ ଦୃଷ୍ଟିଭଙ୍ଗୀ ନେଇ ଅନ୍ୟତମ ବିଶିଷ୍ଟ ମନୋବିଜ୍ଞାନୀ କୋଲ୍‌ବର୍ଗ (Kohlberg) ପିଲାମାନଙ୍କର ବିଚାରଶୀଳତାର ବିକାଶ ସମ୍ପର୍କରେ ସୁନ୍ଦର ତଥ୍ୟ ଯୋଗାଇଥାନ୍ତି । କୋଲବର୍ଗଙ୍କ ମତରେ ପିଲାର ନୈତିକ ବିକାଶ ତିନୋଟି ମୁଖ୍ୟ ସୋପାନ ଦେଇ ଗତି କରିଥାଏ । ସେଗୁଡ଼ିକ ହେଉଛି ପ୍ରାକ୍-ଗତାନୁଗତିକ (Pre-conventional) ସୋପାନ, ଗତାନୁଗତିକତାର ସୋପାନ (Conventional) ଏବଂ ଗତାନୁଗତିକତା ପରବର୍ତ୍ତୀ (Post-conventional) ସୋପାନ ।

ପ୍ରାକ୍-ବିଦ୍ୟାଳୟ (ପାଞ୍ଚ ଛ' ବର୍ଷରୁ କମ୍) ସ୍ତରରେ ଶିଶୁର ସ୍ପଷ୍ଟ ନୈତିକ ଧାରଣା ନଥାଏ । ଭଲ କ'ଣ ଓ ମନ୍ଦ କ'ଣ, ଏ ବିଷୟରେ ଏକ ବିଚିତ୍ର ଧାରଣା ଥାଏ । କୌଣସି ବସ୍ତୁ ବା କାର୍ଯ୍ୟର ବାହ୍ୟିକ ଫଳାଫଳକୁ ଦେଖି ସେ ଭଲମନ୍ଦର ବିଚାର କରେ । କାର୍ଯ୍ୟଟିର ଫଳ ଭଲହେଲେ କିମ୍ବା ସେଥିରୁ ଲାଭ ମିଳିଲେ, ତାହା ଭଲ ବୋଲି ବିଚାର କରାଯାଏ ।

ଅନ୍ୟପକ୍ଷରେ କାର୍ଯ୍ୟର ପରିଣତି ଖରାପ ହେଲେ କିମ୍ବା ସେଥିରେ କ୍ଷତି ହେଲେ ତାହା ମନ୍ଦବୋଲି ଧାରଣା କରେ । ଏପରି ସ୍ଥଳେ ଶିଶୁଟି କାର୍ଯ୍ୟ କରିଥିବା ବ୍ୟକ୍ତିର ମନୋବୃତ୍ତିକୁ ବିଚାରକୁ ନିଏ ନାହିଁ ।

ବିଚାରଶୀଳତାର ଦ୍ୱିତୀୟ ସୋପାନଟି ଗତାନୁଗତିକତାର ସୋପାନ । ହାଇସ୍କୁଲ ଜୀବନର ଆଦ୍ୟଭାଗରେ ପିଲାଟିର ବିଚାରଶୀଳତା ଏକ ନୂତନ ମୋଡ଼ନିଏ । ସେ ଅନୁଭବ କରେ ଯେ ଭଲମନ୍ଦ ହେଉଛି ଏକ ସାମାଜିକ ଅବସ୍ଥା ଓ ନିୟମ । ପିତାମାତାଙ୍କ ସୂଚନା ଅନୁଯାୟୀ ସେ ଭଲମନ୍ଦକୁ ଚିହ୍ନେ । ଶିକ୍ଷକ ଶିକ୍ଷୟିତ୍ରୀଙ୍କ ନିର୍ଦ୍ଦେଶ ଅନୁସାରେ ଭଲ ଓ ମନ୍ଦ ମଧ୍ୟରେ ବିଭେଦ ଦେଖେ । ସମାଜର ଉଚ୍ଚସ୍ଥାନରେ ଥିବା ବ୍ୟକ୍ତିମାନଙ୍କ ଇଙ୍ଗିତ ଅନୁଯାୟୀ ନୀତି-ଅନୀତିରେ ପାର୍ଥକ୍ୟ ଦେଖେ । ଲୋମାନେ ଭଲ କହୁଥିଲେ ତାହା ଭଲ । ଲୋକମାନେ

ଖରାପ କହିଲେ, ତାହା ଖରାପ । ଏହି ବିଚାରବୋଧ ପିଲାଟିର ମନରେ ସ୍ଥାନ ପାଏ । ନୀତି ଅନୀତିର ନିୟମସବୁ ଅପରିବର୍ତ୍ତନୀୟ, ଏପରି ଧାରଣା ମଧ୍ୟ ଜନ୍ମେ ।

ହାଇସ୍କୁଲ ଜୀବନର ଦ୍ୱିତୀୟ ଭାଗକୁ (ପ୍ରାୟ ୧୦-୧୨ ବର୍ଷ) ପିଲାମାନଙ୍କର ବୁଦ୍ଧି ପରିପକ୍ୱ ହୁଏ । ବସ୍ତୁଜଗତର ବାହାରେ ଥିବା ଅବିମୂର୍ତ୍ତ ଧାରଣା (Abstract Ideas) ସହିତ ପରିଚିତି ଘଟେ । ଏହା ସହିତ ସମତାଳ ଦେଇ ସେମାନଙ୍କର ନୈତିକ ବିଚାରଶୀଳତା ମଧ୍ୟ ଉନ୍ନତ ହୁଏ । ଭଲମନ୍ଦର ନିୟମ ସବୁ ସମାଜ-ପ୍ରଣୀତ ଏବଂ ଆବଶ୍ୟକ ହେଲେ ସେଗୁଡ଼ିକର ପରିବର୍ତ୍ତନ କରାଯାଇପାରେ, ଏପରି ଧାରଣା ସ୍ପଷ୍ଟ ହୁଏ । ସମାଜରେ ଭଲଭାବରେ ଚଳିବାପାଇଁ ମଣିଷ ଏସବୁ ତିଆରି କରିଛି, ଏହା ହୃଦୟଙ୍ଗମ କରେ । କେତେକ ନୀତି ସାର୍ବଜନୀନ (Universal), ଏହା ମଧ୍ୟ ବୁଝେ । ଉଦାହରଣ ସ୍ୱରୂପ, ସତ୍ୟାନୁରାଗ ସବୁସ୍ଥାନରେ ଓ ସବୁସମୟରେ ନୀତିପୂର୍ଣ୍ଣ, ଏପରି ବିଚାର ଆସେ । ମୁଖ୍ୟତଃ ସାମାଜିକ ନିୟନ୍ତ୍ରଣର ଉର୍ଦ୍ଧ୍ୱକୁ ଯାଇ କିଶୋର କିଶୋରୀ ନୀତି ଅନୀତିର ବିଚାର କରନ୍ତି ।

ଗୋଟିଏ ଉଦାହରଣ ଦ୍ୱାରା ଏହି ତିନୋଟି ସୋପାନର ପାର୍ଥକ୍ୟକୁ ସ୍ପଷ୍ଟ କରାଯାଇପାରେ । ମନେକରାଯାଉ, ପିଲାମାନଙ୍କୁ ଗୋଟିଏ ଗପ କହିବା ପରେ ଗୋଟିଏ ପ୍ରଶ୍ନ ପଚରାଗଲା । ଗପଟି ଏହିପରି ହୋଇପାରେ । ''ଅଶୋକର ସ୍ତ୍ରୀ ଖୁବ୍ ଅସୁସ୍ଥ ଥିଲା । ଡାକ୍ତରଙ୍କୁ ଦେଖାଇବା ପାଇଁ ଅଶୋକ ପାଖରେ ପଇସା ନଥିଲା । ବହୁତ କାକୁତି ମିନତୀ କରିବା ପରେ ଜଣେ ଡାକ୍ତର ରୋଗୀକୁ ଦେଖିଲେ ଏବଂ ଔଷଧ ଲେଖିଦେଲେ । ମାତ୍ର ଔଷଧ ପାଇଁ ମଧ୍ୟ ଅଶୋକ ପାଖରେ ପଇସା ନଥିଲା । ସେ ଗୋଟିଏ ଡାକ୍ତରୀ ଦୋକାନକୁ ଯାଇ ଉଧାରରେ ଔଷଧ ମାଗିଲା । ମାତ୍ର ଦୋକାନୀ ଦେବାପାଇଁ ରାଜି ହେଲାନାହିଁ । ରାତିରେ ଅଶୋକ ଔଷଧ ଦୋକାନର କବାଟ ଭାଙ୍ଗି ଔଷଧ ଆଣିଲା । ପରଦିନ ପୋଲିସ ଅଶୋକକୁ ଗିରଫକରି ଥାନାକୁ ନେଇଗଲା ।''

ଗପଟି କୁହାଯିବା ପରେ ପ୍ରଶ୍ନ କରାଯିବ-''ଅଶୋକ ଠିକ୍ କଲା କି ଭୁଲ୍ କଲା ?'' ଏହାର ଉତ୍ତରରେ ହୁଏତ ଅଧିକାଂଶ ପିଲା କହିବେ ଯେ ଅଶୋକ ଭୁଲ୍ କରିଛି । ଏପରି ଉତ୍ତର୍ ଅପ୍ରତ୍ୟାଶିତ ନୁହେଁ । ମାତ୍ର କୌତୁହଳପୂର୍ଣ୍ଣ ହେଉଛି ଦ୍ୱିତୀୟ ପ୍ରଶ୍ନ ''ଅଶୋକର କାମ କାହିଁକି ଭୁଲ ବୋଲି ତୁମେ ଭାବୁଛ ?''

ଏ ପ୍ରଶ୍ନର ଉତ୍ତର ବିଭିନ୍ନ ବୟସର ପିଲାମାନେ ଭିନ୍ନ ଭିନ୍ନ ଭାବରେ ଉତ୍ତର ଦେବେ । ବିଚାରଶୀଳତାର ପ୍ରାକ୍-ଗତାନୁଗତିକତା ସୋପାନରେ ରହିଥିବା ପ୍ରାକ୍-ବିଦ୍ୟାଳୟର (ଚାରି ବର୍ଷରୁ ଛ'ବର୍ଷ) ପିଲାମାନେ କହିବେ ଯେ ଅଶୋକ ଭୁଲ୍ କରିଛି । ତେଣୁ ପୋଲିସ ତାକୁ ଧରିନେଲା । ଅର୍ଥାତ୍ ପୋଲିସ୍ ଧରିବାର କ୍ଷତିକୁ ଭିତ୍ତିକରି ପିଲାଟି ନୀତିର ବିଚାର କରିବ । ତା'ଠାରୁ ବଡ଼ ପିଲାଟି କହିବ ଯେ ବାପା କହିଛନ୍ତି ''ଚୋରି କରିବା ପାପ'' କିମ୍ବା ଶିକ୍ଷକ କହନ୍ତି ''ଚୋରି କଲେ ଦଣ୍ଡ ମିଳେ'' । ଉଚ୍ଚପଦବୀର (ପିତାମାତା, ଶିକ୍ଷକ ଶିକ୍ଷୟତ୍ରୀ ଏବଂ ଅନ୍ୟାନ୍ୟ ବୟସ୍କ ଓ ସମ୍ମାନସ୍ପଦ ବ୍ୟକ୍ତି) ଲୋକଙ୍କ ଉକ୍ତିକୁ ଉଦ୍ଧାର କରି ପିଲାଟି ନୀତିର ବୟାନ ଦେବ । ମାତ୍ର କିଶୋର କିଶୋରୀମାନେ (ଏଗାର/ବାରବର୍ଷରୁ ଉର୍ଦ୍ଧ୍ୱ) ଚୋରିକାର୍ଯ୍ୟକୁ

ଏକ ଅନୈତିକ ବ୍ୟବହାରର ଆଖ୍ୟା ଦେବେ । ମୂଲ୍ୟବୋଧରେ ଦୃଷ୍ଟିକୋଣରୁ ଭଲମନ୍ଦର ବିଚାର ସୂଚାଇବେ ।

ସେହପରି ଆଉ ଗୋଟିଏ ଉଦାହରଣ ଦିଆଯାଇପାରେ । ଧରାଯାଉ କୁହାଗଲା ଯେ ଜଣେ ମହିଳା ଅତିଥିଙ୍କର ଚର୍ଚ୍ଚା ପାଇଁ ଟେବୁଲ ଉପରେ ଖାଦ୍ୟ ପଦାର୍ଥ ସଜାଇ ରଖିବାର ଉଦ୍ୟମ କରୁଥିଲେ । ସାନପୁଅଟି ଟ୍ରେରେ ପାଣିଗିଲାସସବୁକୁ ଆଣୁଥିବା ସମୟରେ ତାର ଗୋଡ଼ ଖସିଗଲା ଏବଂ ଆଠଟି ଗ୍ଲାସ୍ ଭାଙ୍ଗିଗଲା । ଏହାଦେଖି ବଡ଼ ପୁଅଟି ରାଗିଗଲା ଏବଂ ରାଗରେ ଗୋଟିଏ ଗ୍ଲାସ୍ ଧରି ତଳେ ପିଟିଦେଲା । ଫଳରେ ସେ ଗ୍ଲାସଟି ଭାଙ୍ଗିଗଲା । ପ୍ରଶ୍ନ କରାଯିବ କିଏ ଭୁଲ୍ କଲା ?

ଏହାର ଉତ୍ତର ଦେବାକୁ ଯାଇ ନୈତିକ ବିଚାରର ପ୍ରଥମପାଦରେ ଥିବା ପିଲାମାନେ କହିବେ ଯେ ସାନପୁଅ ବେଶୀ ଭୁଲକଲା । କାରଣ ସେ ଆଠଟି ଗ୍ଲାସ୍ ଭାଙ୍ଗିଲା । ବାହ୍ୟିକ କ୍ଷତିର ପରିମାଣ ଦୃଷ୍ଟିରୁ ଆଠଟି ଗ୍ଲାସ୍ ନଷ୍ଟ ହେବା ଗୋଟିଏ ଗ୍ଲାସ୍ ନଷ୍ଟ ହେବାଠାରୁ ଅଧିକ କ୍ଷତିକାରକ । ଦ୍ୱିତୀୟ ସୋପାନରେ ଥିବା ବଡ଼ ପିଲାମାନେ କହିବେ ଯେ ବଡ଼ପୁଅଟି ଭୁଲ୍ କଲା, କାରଣ ରାଗିବା ଉଚିତ ନୁହେଁ ବୋଲି ମା' କହିଛନ୍ତି । କିଶୋର କିଶୋରୀମାନେ ବିଚାରଶୀଳତାର ଗତାନୁଗତିକତା ପରବର୍ତ୍ତୀ ସୋପାନରେ ଥିବାରୁ ରାଗ ବା କ୍ରୋଧ ଏକ ଅନୈତିକ ବ୍ୟବହାର ହେଉଥିବାରୁ ବଡ଼ପୁଅଟିକୁ ଦୋଷୀ ସାବ୍ୟସ୍ତ କରିବେ । କୈଶୋର ଅବସ୍ଥାରେ ନୈତିକ ବିକାଶର ଯେଉଁ ଶେଷ ସୋପାନଟି ସଂପନ୍ନ ହୁଏ, ଧୀରେ ଧୀରେ ତାହା ଅଧିକ ପରିପୁଷ୍ଟ ହୁଏ ।

## ନୈତିକ ବିକାଶର ସୋପାନ

| ସ୍ତର | ସୋପାନ | ପରିପ୍ରକାଶ |
|---|---|---|
| ***ପ୍ରଥମ ସ୍ତର:*** ପ୍ରାକ୍-ଗତାନୁଗତିକ ନୈତିକତା | ***ପ୍ରଥମ ସେପାନ :*** ଆଜ୍ଞାଧୀନତା ଓ ଶାସ୍ତିବିଧାନ ଉପରେ ପ୍ରତିଷ୍ଠିତ ନୈତିକ ଭାବନା । | ପିଲାଟି ବିଚାର କରେ ଯେ ପିତାମାତା କରିବାକୁ ନିର୍ଦ୍ଦେଶ ଦେଉଥିବା ଆଚରଣଟି ନୈତିକ ଏବଂ ମନାକରୁଥିବା ଆଚରଣଟି ଅନୈତିକ । |
| | ***ଦ୍ୱିତୀୟ ସେପାନ :*** ଆଚରଣର ଫଳାଫଳକୁ ଭିତ୍ତିକରି ନୈତିକ ବିଚାର | ଆଚରଣଟି ପୁରସ୍କୃତ ହେଉଥିଲେ ତାହା ନୈତିକ ଏବଂ ଆଚରଣଟି ତିରସ୍କୃତ ହେଉଥିଲେ ତାହା ଅନୈତିକ ବୋଲି ବିଚାର କରାଯାଏ । ଫଳାଫଳ ଭଲ ହେଲେ ବ୍ୟବହାରଟି ନୈତିକ ବୋଲି ବିଚାରକରାଯାଏ । |

| | | |
|---|---|---|
| ***ଦ୍ୱିତୀୟ ସ୍ତର:*** ଗତାନୁଗତିକ ନୈତିକତା । | ***ତୃତୀୟ ସୋପାନ :*** ଭଲପିଲା ନୈତିକତା | ପୂର୍ବରୁ ପିଲାଟି ପିତାମାତା ଓ ବୟସ୍କମାନଙ୍କୁ ଶକ୍ତିଶାଳୀ (ପୁରସ୍କାର ବା ତିରସ୍କାର ଦେବାର ସାମର୍ଥ୍ୟ ଥିବା) ମନେ କରି ସେମାନଙ୍କ ନିର୍ଦ୍ଦେଶିତ ବ୍ୟବହାରକୁ ନୈତିକ ବୋଲି ବିଚାର କରୁଥିଲା । ବର୍ତ୍ତମାନ ପିଲାମାନେ ବୟସ୍କମାନଙ୍କର ଅନୁମୋଦନ (ପସନ୍ଦ/ନାପସନ୍ଦ)ର ସଙ୍କେତ ଦେଖି ନୈତିକ ଓ ଅନୈତିକ ଆଚରଣର ବିଚାର କରନ୍ତି । |
| | ***ଚତୁର୍ଥ ସୋପାନ :*** ସାମାଜିକ ଶୃଙ୍ଖଳାଭିତ୍ତିକ ନୈତିକତା । | ଶୃଙ୍ଖଳା ଓ ସ୍ଥିରତା ରକ୍ଷାପାଇଁ ସମାଜ ଯେଉଁ ସମସ୍ତ ନିୟମସବୁ ପ୍ରଣୟନ କରିଛି, ସେଗୁଡ଼ିକ ପାଳନ କରିବାର ଆଚରଣ ହେଉଛି ନୈତିକତା ଏବଂ ସେଗୁଡ଼ିକର ଅବହେଳା ଅନୈତିକ ବ୍ୟବହାର ରୂପେ ଏ ସ୍ତରରେ ବିଚାର କରାଯାଏ । |
| ***ତୃତୀୟ ସ୍ତର:*** ଗତାନୁଗତିକତା – ପରବର୍ତ୍ତୀ ନୈତିକତା | ***ପଞ୍ଚମ ସୋପାନ :*** ସାମାଜିକ ଚୁକ୍ତି ଭିତ୍ତିକ ନୈତିକତା । | ଏ ସୋପାନରେ ଧାରଣା ଜନ୍ମେ ଯେ ସମାଜରେ ବସବାସ କରୁଥିବା ଲୋକମାନଙ୍କର ସହମତି ଫଳରେ (ଏକ ପ୍ରକାର ଚୁକ୍ତି) କେତେକ ଆଚରଣକୁ ନୈତିକ ବିଚାର କରାଯିବା ସ୍ଥଳେ ଅନ୍ୟ କେତେକ ଆଚରଣକୁ ଅନୈତିକ ବିଚାର କରାଯାଏ । |
| | ***ଷଷ୍ଠ ସୋପାନ :*** ବ୍ୟକ୍ତି ପାଇଁ ନୀତିଗତ ମାନଦଣ୍ଡ । | ଏ ପର୍ଯ୍ୟାୟରେ ନୈତିକ ମୂଲ୍ୟବୋଧକୁ ବ୍ୟକ୍ତିଗତ ଆଚରଣର ମାନଦଣ୍ଡ ରୂପେ ବିଚାର କରାଯାଏ । |

# ନିଜ ସମ୍ପର୍କରେ ଧାରଣା

ମନୁଷ୍ୟର ନିଜ ସମ୍ପର୍କରେ ଧାରଣା ତା'ର ଚିନ୍ତନ, ଆବେଗ ଓ ବ୍ୟବହାରରେ ଏକ ବିଶିଷ୍ଟ ନିର୍ଦ୍ଧାରକ । ସ୍ୱପ୍ରତ୍ୟୟ (Self-Concept) ବା ନିଜ ସମ୍ପର୍କରେ ଧାରଣା ମନୁଷ୍ୟର ବ୍ୟକ୍ତିତ୍ୱ ଓ ବ୍ୟବହାରକୁ ଏକପ୍ରକାର ସ୍ୱାତନ୍ତ୍ର୍ୟ ପ୍ରଦାନ କରିଥାଏ । ମନୁଷ୍ୟର ସ୍ୱାସ୍ଥ୍ୟ, ବୁଦ୍ଧିମତ୍ତା, ସାମାଜିକତା, ପାରିବାରିକ ଭୂମିକା ଏବଂ ନୈତିକ ମାନଦଣ୍ଡ କ୍ଷେତ୍ରରେ ନିଜ ସମ୍ପର୍କରେ ଧାରଣା ଥାଏ । ସେ କେତେ ପରିମାଣରେ ସୁସ୍ଥ, ତାହାର ବ୍ୟକ୍ତିଗତ ବିଚାର ଥାଏ । ତା'ର ବୁଦ୍ଧିମତ୍ତା ଉନ୍ନତ କି ଅନୁନ୍ନତ, ସେ ବିଷୟରେ ମଧ୍ୟ ଭାବନା ଥାଏ । ତାର ସାମାଜିକ ଦକ୍ଷତା କେତେ ପରିମାଣର, ସେ ବିଷୟରେ ନିଜସ୍ୱ ଆକଳନ ଥାଏ । ତା'ର ପରିବାର ପାଇଁ ସେ କେତେ ପରିମାଣରେ ଉପଯୋଗୀ, ତାହାର ମଧ୍ୟ ଧାରଣା ଥାଏ । ସର୍ବୋପରି ତା'ର ନୈତିକ ମାନଦଣ୍ଡ କେଉଁ ସ୍ତରର, ସେ ବିଷୟରେ ମଧ୍ୟ ସେ ଚିନ୍ତାକରେ । ତା'ର ମୂଲ୍ୟାୟନ ଠିକ୍ କି ଭୁଲ, ସେ ଭିନ୍ନ କଥା । ମାତ୍ର ତା'ର ମୂଲ୍ୟାୟନ ଯେ ତା'ର ବ୍ୟବହାରକୁ ପ୍ରଭାବିତ କରେ, ଏଥିରେ ସନ୍ଦେହ ନାହିଁ ।

ଜନ୍ମ ସମୟରେ ନ ହେଲେ ମଧ୍ୟ ପ୍ରାୟ ଦୁଇବର୍ଷ ବୟସ ସମୟରୁ ଏହି ପ୍ରକ୍ରିୟା ଆରମ୍ଭ ହୁଏ । ଗବେଷଣାରୁ ଦେଖାଯାଇଛି ଯେ ପ୍ରାୟ ୨୮ ମାସ ବୟସ ବେଳକୁ ଶିଶୁ ନିଜକୁ ଦର୍ପଣରେ ଦେଖି ନିଜ ସମ୍ପର୍କରେ ଧାରଣା ଗଠନ ଆରମ୍ଭ କରେ । ଦର୍ପଣରେ ଦେଖି ଆତ୍ମଚିହ୍ନଟ (Self-Recognition) କରିବା ମୁହୂର୍ତ୍ତରୁ ସେ ନିଜର ସ୍ୱତନ୍ତ୍ରତାକୁ ନେଇ ଏକ ଆତ୍ମ-ସଂଜ୍ଞା (Self-Defination) ପ୍ରସ୍ତୁତ କରେ ।

ଅବଶ୍ୟ ଏହି ଅଳ୍ପବୟସରେ ଗଠିତ ହେଉଥିବା ସ୍ୱପ୍ରତ୍ୟୟ (Self-Correct) ତିନୋଟି ଜିନିଷର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ହୋଇଥାଏ । ପ୍ରଥମଟି ହେଉଛି ନିଜର ଅନୁଭୂତି । ଦ୍ୱିତୀୟଟି ହେଉଛି ଅନ୍ୟମାନଙ୍କର ମନ୍ତବ୍ୟ ଏବଂ ବ୍ୟବହାର । ତୃତୀୟଟି ହେଉଛି ସାମାଜିକ ମାନଦଣ୍ଡ । ପ୍ରତି ସମାଜରେ କେତେକ ସ୍ଥୂଳ ବିଭାଗୀକରଣ ଥାଏ । ବାଳକ-ବାଳିକ, ଡେଙ୍ଗା-ଗେଡ଼ା, ଦୁର୍ବଳ-ସବଳ ଇତ୍ୟାଦି ସାମାଜିକ ବିଭାଗୀକରଣ ଶିଶୁ ଦେଖେ ଏବଂ ଶୁଣେ । ପ୍ରାୟ ତିନିବର୍ଷ ବୟସ ବେଳକୁ ତା'ର ପ୍ରାରମ୍ଭିକ ଧାରଣା ଗଠିତ ହୋଇସାରିଥାଏ । ସେ ବାଳକ କିମ୍ବା ସେ ତିନିବର୍ଷର ପିଲା, ଏପରି ନାମାଙ୍କନ ନେଇ ସେ ନିଜର ଆତ୍ମ-ପରିଚିତି ସ୍ଥିର କରେ ।

ଶୈଶବକାଳୀନ ଏହି ସ୍ୱପ୍ରତ୍ୟୟର ଦୁଇଟି ଦିଗଥାଏ । ସେ ପ୍ରକୃତରେ କ'ଣ (Real Self), ଏ ବିଷୟରେ ତା'ର ମୋଟାମୋଟି ଧାରଣା ଜନ୍ମେ । ସେ କିପରି ଦିଶୁଛି, କେଉଁ

ପର୍ଯ୍ୟାୟରେ ରହିଛି ଏବଂ କ'ଣ କରୁଛି, ଏ ବିଷୟରେ କିଛି ଧାରଣା ଥାଏ । ପୁନଶ୍ଚ ସେ କ'ଣ କରିବା ଉଚିତ (Ideal self) ଏ ବିଷୟରେ ମଧ୍ୟ କିଛି ଧାରଣା ଜନ୍ମେ । ବର୍ତ୍ତମାନର ଭୂମିକା ଏବଂ ବାଞ୍ଛନୀୟ ଭୂମିକା ମଧ୍ୟରେ କିଛିଟା ବ୍ୟବଧାନ ଦେଖେ । ଏପରି ବ୍ୟବଧାନ ଉପଯୋଗୀ ହୋଇଥାଏ । କାରଣ ସେ ଭବିଷ୍ୟତରେ ଜଣେ ଆଦର୍ଶସ୍ଥାନୀୟ ବ୍ୟକ୍ତିତ୍ୱ ହୋଇପାରିବ, ଏପରି ଆଶା ଓ ସମ୍ଭାବନା ତାକୁ ସକ୍ରିୟ ରଖେ । ଜୀବନର ଅଗ୍ରଗତି ପାଇଁ ଏହି ବ୍ୟବଧାନ ବାଞ୍ଛନୀୟ ।

ପ୍ରାକ୍‌ବିଦ୍ୟାଳୟ ସ୍ତରରେ 'ମୁଁ'ର ଧାରଣା କିଛିମାତ୍ରାରେ ଗଠିତ ହୋଇଥିଲେ ମଧ୍ୟ ଏଥିରେ ସ୍ଥିରତା ଆସିନଥାଏ । ଶିଶୁ ବିଶ୍ୱାସ କରେ ଯେ ସେ ବାଳକ ହେଲେ ମଧ୍ୟ କେଶରାଶିକୁ ଲମ୍ବା କରି ବାଳିକା ହୋଇପାରିବ । ବାଳିକାର ପୋଷାକ ପିନ୍ଧି ସେ ବାଳିକା ହୋଇପାରିବ । ନାମ ବଦଳାଇ ସେ ବାଳିକା ହୋଇପାରିବ । ତା'ର ବାଳକତ୍ୱ ଯେ ଅପରିବର୍ତ୍ତନୀୟ, ଏହା ବୁଝିନଥାଏ ।

ସ୍କୁଲକୁ ଯିବା ଆରମ୍ଭ କରିବା ସମୟ ବେଳକୁ ସ୍ୱପ୍ରତ୍ୟୟରେ ଗୋଟିଏ ଧରଣର ସ୍ଥିରତା ଆସେ । ପିଲାଟିର ବାଳକତ୍ୱ ବା ବାଳିକାତ୍ୱ ଯେ ଅପରିବର୍ତ୍ତନୀୟ, ତାହା ସେ ବୁଝେ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ପିଲାଟିର ସ୍ୱପ୍ରତ୍ୟୟ ଦୃଢ଼ ଓ ଅପରିବର୍ତ୍ତିତ ହୋଇ ଏହି ସ୍କୁଲ ବୟସ ସ୍ତରର ରହିଯାଏ । ପ୍ରକୃତରେ ସ୍କୁଲ ଏବଂ କୈଶୋର ଜୀବନରେ ସ୍ୱପ୍ରତ୍ୟୟ ପରିବର୍ତ୍ତିତ ହୋଇ ଚାଲିଥାଏ । ତେବେ ସ୍କୁଲ ବୟସରେ କିଛିଟା ସ୍ଥିରତା ଆସେ । ପୁଣି ଆରମ୍ଭରେ ପିଲାମାନେ ଭୌତିକ (Physical) ସୂଚକ ସାହାଯ୍ୟରେ 'ମୁଁ'ତ୍ୱର ଧାରଣା ଗଠନ କରନ୍ତି (ଯଥା: "ମୁଁ ଡେଙ୍ଗା" କିମ୍ବା "ମୁଁ ପତଳା" ।) ଏପରି ଧାରଣା ଗଠନର ଗୋଟିଏ ସୁବିଧା ହେଉଛି ଯେ ଏପରି ଶାରୀରିକ ସୂଚକସବୁ ଆଖିରେ ପଡ଼େ । ମାତ୍ର ଏଗୁଡ଼ିକର ସ୍ଥାୟୀତ୍ୱ ମଧ୍ୟ ବେଶୀ ଦିନର ନୁହେଁ । ପତଳା ପିଲାଟିର ଶାରୀରିକ ପରିବର୍ତ୍ତନ ଘଟି ସେ ହୃଷ୍ଟପୁଷ୍ଟ ହୋଇପାରେ ।

ସୁତରାଂ ପରବର୍ତ୍ତୀ ପର୍ଯ୍ୟାରେ ପ୍ରାୟ ଆଠ ନ' ବର୍ଷ ବେଳକୁ ସେ ନିଜକୁ ବର୍ଣ୍ଣନା କରିବାକୁ ଯାଇ ବ୍ୟକ୍ତିତ୍ୱସୂଚକ ଶବ୍ଦାବଳୀ ବ୍ୟବହାର କରେ । ସେ ହୁଏତ କହେ ଯେ 'ସେ ସାହସୀ' କିମ୍ବା 'ସେ ଡ଼ରୁଆ' । ଏ ପର୍ଯ୍ୟାୟରେ ଗୋଟିଏ ବିଶେଷ ଦିଗ ଲକ୍ଷ୍ୟ କରିବାର କଥା । ସେ ନିଜର ସ୍ୱପ୍ରତ୍ୟୟ ପ୍ରକାଶ କରୁଥିବା ଶବ୍ଦସବୁକୁ ବ୍ୟାପକ ଅର୍ଥରେ ପ୍ରୟୋଗ କରେ । ସେ ନିଜକୁ 'ଚାଲାକ୍ ଚତୁର' କହୁଥିବା ସମୟରେ ସେ ସବୁ କ୍ଷେତ୍ରରେ 'ଚାଲାକ୍ ଚତୁର' ବୋଲି ମନେକରିଥାଏ । ସବୁବେଳେ ଶବ୍ଦଟିକୁ ଉଚ୍ଚାରଣ ନକଲେ ମଧ୍ୟ ସେ ସବୁବେଳେ 'ଚାଲାକ୍ ଚତୁର' ବୋଲି ନିଜକୁ ମନେକରେ । ସେହିପରି 'ମୁଁ ଖୁସିବାସିଆ' ବୋଲି ଧାରଣା କରିବା ସମୟରେ ସବୁବେଳେ ଖୁସିବାସିଆ ମନେକରେ ।

କୈଶୋର ସୋପାନର ଅବ୍ୟବହିତ ପୂର୍ବରୁ (ପ୍ରାୟ ଦଶ ଏଗାର ବର୍ଷ ବେଳକୁ) ପିଲାଟିର ନିଜ ସମ୍ପର୍କରେ ଧାରଣା ପରିପ୍ରେକ୍ଷୀ ସହିତ ସଂଶ୍ଳିଷ୍ଟ ହୋଇଯାଏ । ନିଜର ଅନୁଭବ

ଏବଂ ଅନ୍ୟମାନଙ୍କର ମନ୍ତବ୍ୟ ପ୍ରତି ଅଧିକ ସଚେତନ ହେବା ଫଳରେ ସେ ଜାଣେ ଯେ ନିଜ ସମ୍ପର୍କରେ ଧାରଣାର ଗୋଟିଏ ପରିପ୍ରେକ୍ଷୀ (Context) ରହିଛି । ଉଦାହରଣ ସ୍ୱରୂପ, ସେ ମନେକରେ ଯେ ସେ "ଖେଳ ପଡ଼ିଆର ଖୁସିବାସିଆ" ଏବଂ "ଶ୍ରେଣୀରେ ସେ ବୋକା ।"

ପୂର୍ବ ତୁଳନାରେ ତା'ର ସ୍ୱପ୍ରତ୍ୟୟ ଅଧିକ ବାସ୍ତବମୁଖୀ ହେବାର ମୁଖ୍ୟ କାରଣ ହେଉଛି ଯେ ସେ ପୂର୍ବରୁ ଅଧିକ ମାତ୍ରାରେ "ଅହଂକେନ୍ଦ୍ରୀ" ଥିଲା । "ମୁଁ କେନ୍ଦ୍ରୀ" ଭାବନା ଫଳରେ ଅନ୍ୟମାନଙ୍କର ମନ୍ତବ୍ୟ ଓ ଦୃଷ୍ଟିଭଙ୍ଗୀ ପ୍ରତି ସେ ବିଶେଷ ସଚେତନ ନଥିଲା । ମାତ୍ର ଅନ୍ୟମାନଙ୍କର ଦୃଷ୍ଟିଭଙ୍ଗୀ ବିଚାର କରିବା ପାଇଁ ସଚେତନତା ସ୍କୁଲ ବୟସରେ ଆସିଥାଏ । ଫଳରେ ନିଜକୁ ବିଭିନ୍ନ ବିଶେଷଣ ଶବ୍ଦ ମାଧ୍ୟମରେ ବର୍ଣ୍ଣନା କରିବା ଏବଂ କେଉଁ ପରିସ୍ଥିତିରେ ସେ କିପରି ଗୁଣର ଅଧିକାରୀ, ସେ ବିଷୟରେ ନିଜସ୍ୱ ଜ୍ଞାନ ଜନ୍ମେ ।

ସାମାଜିକ-ସାଂସ୍କୃତିକ ପରିବେଶ ମଧ୍ୟ ସ୍ୱପ୍ରତ୍ୟୟକୁ ପ୍ରଭାବିତ କରେ । ଗବେଷକମାନେ ଲକ୍ଷ୍ୟ କରନ୍ତି ଯେ ନେପାଳ, ଭାରତ ଓ ଜାପାନ ପରି ଏସିଆର ଦେଶମାନଙ୍କରେ ଗୋଟିଏ ପିଲା ଏକ ସମୟରେ ତିନୋଟି 'ମୁଁ' ତ୍ୱର ପରିପ୍ରକାଶ ଦର୍ଶାଏ । ଗୋଟିଏ ପ୍ରତ୍ୟୟ (Self-Concept) ତା'ର ପରିବାରକୁ ନେଇ ଗଠିତ ହୋଇଥାଏ । ଗୋଟିଏ ସ୍ୱପ୍ରତ୍ୟୟ ତା' ସମାଜର ଧାର୍ମିକ ପରମ୍ପରାକୁ ନେଇ ଗଠିତ । ଅନ୍ୟଟି 'ବ୍ୟକ୍ତି' ହିସାବରେ ତାର 'ମୁଁ'ତ୍ୱର ପରିପ୍ରକାଶ । ଅନ୍ୟ ପକ୍ଷରେ ଆମେରିକା ଓ ଇଉରୋପର ପିଲାମାନେ ମୁଖ୍ୟତଃ ବ୍ୟକ୍ତି-ସୂଚକ 'ମୁଁ'ତ୍ୱର ଅଧିକାରୀ ହୋଇଥାନ୍ତି ।

ଉପର ଆଲୋଚନାରୁ ସ୍ପଷ୍ଟ ଯେ ଶୈଶବ ସମୟରୁ ଆରମ୍ଭ କରି କୈଶୋର କାଳ ପର୍ଯ୍ୟନ୍ତ ସ୍ୱପ୍ରତ୍ୟୟ (Concept) ପରିବର୍ତ୍ତିତ ହେବାରେ ଲାଗିଥାଏ । କୈଶୋର ଓ ଯୌବନ କାଳରେ ଏହା ସ୍ଥିରତା ପ୍ରାପ୍ତ ହୁଏ । ଏ ପରିପ୍ରେକ୍ଷୀରେ ହୁଏତ ପ୍ରଶ୍ନ ଉଠିପାରେ-ପ୍ରାକ୍ ବିଦ୍ୟାଳୟର ପରବର୍ତ୍ତୀ ସୋପାନର (ଛ'ବର୍ଷରୁ ଏଗାର ବର୍ଷ) କି ବିଶେଷତ୍ୱ ରହିଛି ।

ଅନୁଧ୍ୟାନ କଲେ ଦେଖାଯାଏ ଯେ ଏ ପର୍ଯ୍ୟାୟର ପିଲାମାନେ ଏକ ନୂଆ ମୋଡ଼ରେ ପହଞ୍ଚନ୍ତି । ପ୍ରଥମତଃ ଗୁଣ ଅବିଗୁଣ ସୂଚକ ବିଶେଷଣ ପଦ ମାଧ୍ୟମରେ ନିଜ ସମ୍ପର୍କରେ ଧାରଣା କରନ୍ତି । ପୁଣି ପରିପ୍ରେକ୍ଷୀ ଭିନ୍ନରେ ଏହା କିଛି ପରିବର୍ତ୍ତିତ ହୁଏ । ସେ ବିଷୟରେ ସଚେତନ ରୁହନ୍ତି । ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ଦିଗଟି ହେଉଛି ଅନ୍ୟମାନଙ୍କର ଦୃଷ୍ଟିକୋଣର ବିଚାର କରିବା । ଧରାଯାଉ ଗୋଟିଏ ପ୍ରାକ୍-ବଦ୍ୟାଳୟର ବୟସର ଶିଶୁକୁ ପଚରାଯିବ ତା'ର ବାପା ରାଗକଲେ ସେ କ'ଣ କରିବ । ସମ୍ଭବତଃ ସେ ଉତ୍ତର ଦେବ ଯେ ସେ ରାଗିଯିବ । ସେହିପରି ବାପା ଆନନ୍ଦିତ ଥିଲେ ସେ ଆନନ୍ଦିତ ରହିବ ଏବଂ ବାପା ବିଷର୍ଣ୍ଣ ଥିଲେ ସେ ମଧ୍ୟ ବିଷାଦଗ୍ରସ୍ତ ହୋଇପଡ଼ିବ ବୋଲି ଉତ୍ତର ଦେବ । ମାତ୍ର ସ୍କୁଲ ବୟସର ପିଲାଟି ଏ କ୍ଷେତ୍ରରେ ପରିପୂରକ ଆବେଗ ସମ୍ପର୍କରେ ସୂଚନା ଦେବ । ବାପା ରାଗିଗଲେ ସେ ଭୟପାଇବ ବୋଲି ପିଲାଟି କହିବ । ମୋଟ ଉପରେ ଅନ୍ୟର ଭାବନା, ଆବେଗ ଓ ପ୍ରତିକ୍ରିୟା ସ୍କୁଲ ବୟସର ପିଲା ଲକ୍ଷ୍ୟ କରି ସେସବୁକୁ ନିଜ ସ୍ୱପ୍ରତ୍ୟୟରେ ସମନ୍ୱିତ କରେ ।

ନିଜ ସମ୍ପର୍କରେ ଧାରଣା କରିବା ପରିପ୍ରେକ୍ଷୀରେ ସେ ଆତ୍ମ-ମୂଲ୍ୟାୟନ (Self-Evaluation)ରେ ପ୍ରସ୍ତୁତ ହୁଏ । ନିଜର ମୂଲ୍ୟ ଏବଂ ନିଜ ସମ୍ପର୍କରେ ଗଢ଼ି ଉଠିଥିବା ଏକ ଆତ୍ମମର୍ଯ୍ୟାଦାବୋଧ (Self-Esteem) ତା'ର ବ୍ୟବହାରକୁ ରୂପଦିଏ ।

## ଆତ୍ମମର୍ଯ୍ୟାଦାବୋଧ

ଆତ୍ମମର୍ଯ୍ୟାଦାବୋଧ ଶିଶୁର ମାନସିକ ବିକାଶକୁ ତ୍ୱରାନ୍ୱିତ କରେ । ଉଚ୍ଚ-ଆତ୍ମ ମର୍ଯ୍ୟାଦାବୋଧ ହାସଲ କରିଥିବା ପିଲାମାନେ ସାଙ୍ଗସାଥିମାନଙ୍କ ପାଖରେ ପ୍ରିୟ ଏବଂ ସେମାନେ ସ୍କୁଲ କାର୍ଯ୍ୟ ଓ ପରୀକ୍ଷାରେ ସଫଳତା ଦର୍ଶାନ୍ତି । ଶରୀରର ଉଚ୍ଚତା, ଓଜନ ଏବଂ ଦୈହିକ ଚେହେରା ସହିତ ଏହାର ସମ୍ପର୍କ ଥିବାର ପ୍ରମାଣ ନାହିଁ । ତେବେ ପରିବାରର ସକରାତ୍ମକ ପ୍ରଭାବ ଏଥିରେ ସ୍ପଷ୍ଟ ।

ଆତ୍ମମର୍ଯ୍ୟାଦାବୋଧର ନିର୍ଦ୍ଦିଷ୍ଟ ଉପାଦାନଗୁଡ଼ିକ ବିଶ୍ଳେଷଣ କରାଯାଇପାରେ । ଦେଖାଯାଏ ଯେ ଏଥିରେ ମୁଖ୍ୟତଃ ପାଞ୍ଚୋଟି ଉପାଦାନ ରହିଛି । ସେଗୁଡ଼ିକ ହେଉଛି ଶିକ୍ଷାଗତ ଦକ୍ଷତା, ସାମାଜିକ ଦକ୍ଷତା, ଖେଳକସରତର ଦକ୍ଷତା, ଶାରୀରିକ ଦକ୍ଷତା ଏବଂ ଆଚରଣଶୀଳତା । ଉଲ୍ଲେଖ କରାଯାଇପାରେ ଯେ ପିଲାଟି କୈଶୋର ସୋପାନରେ ପଦାର୍ପଣ କରିବା ସମୟରେ ତା'ର ଅନ୍ତରଙ୍ଗ ବନ୍ଧୁ ସଂପର୍କର କୁଶଳତା ଏବଂ ବୃତ୍ତିସଂଶ୍ଳିଷ୍ଟ ଦକ୍ଷତା ପରି ଆଉ କେତୋଟି ଉପାଦାନ ଏହା ସହିତ ମିଶିଯାଏ ।

ବାହ୍ୟଦୃଷ୍ଟିରୁ ଶିକ୍ଷାଗତ ଦକ୍ଷତା ଏବଂ ଶାରୀରିକ ସାମର୍ଥ୍ୟ ପରି ଉପାଦାନସବୁର ପରିମାଣ ମାପ କରାଯାଇ ଗୋଟିଏ ପିଲାର ମୋଟାମୋଟି ଆତ୍ମମର୍ଯ୍ୟାଦାବୋଧର ଆକଳନ କରାଯାଇପାରେ । ତେବେ ପିଲାଟିର କେଉଁ ଅନ୍ତର୍ନିହିତ ଭାବନା ତାକୁ ଆତ୍ମ-ମର୍ଯ୍ୟାଦାବୋଧର ଅଧିକାରୀ କରିବ, ସେ ବିଷୟରେ ପ୍ରଶ୍ନ ଉଠିପାରେ । ଦେଖାଯାଇଛି ଯେ, ଚାରୋଟି ମାନସିକ ସ୍ଥିତି ଆତ୍ମମର୍ଯ୍ୟାଦାବୋଧର ସହାୟକ । ପ୍ରଥମତଃ ଶିଶୁ ଯେଉଁ ବ୍ୟକ୍ତିବିଶେଷଙ୍କୁ ଗୁରୁତ୍ୱ ଦେଉଛି, ସେମାନେ କେତେ ପରିମାଣରେ ଶିଶୁକୁ ଭଲପାଆନ୍ତି ଏବଂ ତା'ର କାର୍ଯ୍ୟକଳାପକୁ ଅନୁମୋଦନ କରନ୍ତି, ତାହା ହେଉଛି ପ୍ରଥମ ବିଚାର । ଏପରି ଭଲପାଇବା ଏବଂ ଅନୁମୋଦନ ବେଶୀ ହେଲେ ଆତ୍ମମର୍ଯ୍ୟାଦାବୋଧ ବୃଦ୍ଧି ହେବ । ଶିଶୁ ପ୍ରାଧାନ୍ୟ ଦେଉଥିବା କାର୍ଯ୍ୟରେ ଦକ୍ଷତା ଓ ସଫଳତାର ମାତ୍ରା ବେଶୀ ହେଲେ ମର୍ଯ୍ୟାଦାବୋଧ ଅଧିକ ହେବ । ତୃତୀୟତଃ ଶିଶୁ କେତେ ପରିମାଣରେ ନୈତିକ ମୂଲ୍ୟବୋଧର ଅନୁସରଣ କରିପାରୁଛି, ତାହା ମଧ୍ୟ ନିର୍ଦ୍ଧାରକ ରୂପେ କାର୍ଯ୍ୟ କରିବ । ଚତୁର୍ଥତଃ ଶିଶୁ ନିଜର ଇଚ୍ଛା ଅନୁଯାୟୀ ଅନ୍ୟମାନଙ୍କୁ ପ୍ରଭାବିତ କରିପାରୁଥିଲେ ଶିଶୁର ଆତ୍ମମର୍ଯ୍ୟାଦାବୋଧ ଅଧିକ ରହିଛି ।

ସ୍କୁଲ ବୟସରେ ସାଙ୍ଗସାଥିମାନେ ଶିଶୁ ଉପରେ ବେଶ୍ ପ୍ରଭାବ ପକାଉଥିଲେ ମଧ୍ୟ ପରିବାରର ଭୂମିକା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଶିଶୁର ଆତ୍ମମର୍ଯ୍ୟାଦାବୋଧ ସହିତ ଘନିଷ୍ଠ ସମ୍ବନ୍ଧ ଥିବା ଶିଶୁ ପାଳନ ଶୈଳୀଟିକୁ ଗୁରୁତ୍ୱମୁଖୀ ଶୈଳୀ (Authoritative Style) କୁହାଯାଇପାରେ । ଏହା ଏକଛତ୍ରବାଦୀ (Authoritarian Style) ଶୈଳୀ ନୁହେଁ ଏବଂ ସର୍ବାନୁମୋଦନମୁଖୀ (Permissive Style) ଶୈଳୀ ନୁହେଁ । ଏ ଶୈଳୀରେ ପିତାମାତା

ଅନେକ ବିଷୟରେ ସ୍ୱାଧୀନତା ଦିଅନ୍ତି, କିନ୍ତୁ କେତୋଟି ଗୁରୁତ୍ୱପୂର୍ଣ୍ଣ ବିଷୟରେ ନିୟନ୍ତ୍ରଣ ରକ୍ଷା କରନ୍ତି । ପିତାମାତା ପିଲାମାନଙ୍କୁ ଭଲପାଆନ୍ତି ଏବଂ ଭାବପ୍ରକାଶର ସୁଯୋଗ ଦିଅନ୍ତି । ପିଲାକୁ ସ୍ୱାଧୀନତା ଦେଲେ ମଧ୍ୟ ପିଲାଟିର ପରିସୀମତ୍ୱ (Limit) ବୁଝାଇ ଦିଅନ୍ତି । ଯେଉଁସବୁ ନିୟମ କଡ଼ାକଡ଼ି ଭାବରେ କାର୍ଯ୍ୟକାରୀ ହେବ, ସେଗୁଡ଼ିକ ସ୍ପଷ୍ଟ ବ୍ୟକ୍ତ କରନ୍ତି । ନିୟମଗୁଡ଼ିକ ଅସଂଗତ ହୋଇନଥାଏ । ନିୟମ କାନୁନ କାର୍ଯ୍ୟକାରୀ କରିବା ସମୟରେ ଶାସ୍ତିବିଧାନ ଅପେକ୍ଷା ପ୍ରୋତ୍ସାହନ ନୀତିର ଅଧିକ ପ୍ରୟୋଗ କରନ୍ତି । ପିଲାମାନଙ୍କର କାର୍ଯ୍ୟକଳାପରେ ଏପରି ପିତାମାତା ଆଗ୍ରହ ଦର୍ଶାନ୍ତି । ସର୍ବୋପରି ପିତାମାତା ନିଜେ ଉଚ୍ଚ ଆତ୍ମମର୍ଯ୍ୟାଦାବୋଧର ଅଧିକାରୀ ହୋଇଥାନ୍ତି ।

ଆତ୍ମମର୍ଯ୍ୟାଦାବୋଧର ଗୁରୁତ୍ୱ ଦୃଷ୍ଟିରୁ ଏହାର ବିକାଶ ଦିଗରେ ପଦକ୍ଷେପ ଗ୍ରହଣର ପ୍ରକଳ୍ପ ଏକ ବିଶିଷ୍ଟ ଦିଗ । ଆତ୍ମମର୍ଯ୍ୟାଦାବୋଧ ବୃଦ୍ଧିକରିବାକୁ ହେଲେ ପ୍ରଥମେ ନିମ୍ନ ମର୍ଯ୍ୟାଦାବୋଧର କାରଣ ଅନ୍ୱେଷଣ କରିବାକୁ ହେବ । ଗୋଟିଏ ପିଲାର କେଉଁ କାରଣରୁ ଏପରି ଘଟିଛି, ତାହା ବାହାର କରିବାକୁ ହେବ । ଅନେକ ସମୟରେ 'ଖୁସି ରୁହ', 'ଉଚ୍ଚ ଚିନ୍ତାକର'–ଏହିପରି ପ୍ରସ୍ତାବ ଦେଇ ପିଲା ଏବଂ ବୟସ୍କମାନଙ୍କର ମନୋଭାବ ପରିବର୍ତ୍ତନର ଚେଷ୍ଟା କରାଯାଇଛି । ମାତ୍ର ଏ ଯୋଜନା କାର୍ଯ୍ୟକାରୀ ହୋଇନାହିଁ । ଅନ୍ୟ ପକ୍ଷରେ ଶିଶୁ (ଏବଂ ବ୍ୟକ୍ତି ମଧ୍ୟ) ଗୁରୁତ୍ୱ ଦେଉଥିବା କାର୍ଯ୍ୟଗୁଡ଼ିକ ଚିହ୍ନଟ କରିବାକୁ ହେବ । ଏପରି କାର୍ଯ୍ୟ କରିବାର ଏବଂ ସଫଳତା ହାସଲ କରିବାର ସୁଯୋଗ ଦେଲେ ଆତ୍ମମର୍ଯ୍ୟାଦାବୋଧ ସ୍ୱତଃ ବୃଦ୍ଧିପାଇବ ।

ଆତ୍ମମର୍ଯ୍ୟାଦାବୋଧର ଅଭିବୃଦ୍ଧି ପାଇଁ ଦ୍ୱିତୀୟ ଉପାୟଟି ହେଉଛି ସାମାଜିକ ଓ ଭାବଗତ ସହାୟତା । ଅନେକ ସମୟରେ ଦେଖାଯାଇଛି ଯେ ଦାରିଦ୍ର୍ୟ–ପ୍ରପୀଡ଼ିତ ଏବଂ ଦୁଃସ୍ଥ ପରିବାର ମଧ୍ୟରୁ ଆସିଥିବା କେତେକ ପିଲାଙ୍କର ଆତ୍ମମର୍ଯ୍ୟାଦାବୋଧ ଉଚ୍ଚ ରହିଥାଏ । ପର୍ଯ୍ୟବେକ୍ଷଣରୁ ଦେଖାଯାଇଛି ଯେ, ଏପରି ପିଲାମାନଙ୍କର ପିତାମାତା ଏବଂ ପରିବାର ଆବଶ୍ୟକ ପ୍ରେରଣା ଯୋଗାଇ ପାରୁ ନଥିଲେ ମଧ୍ୟ ଏମାନଙ୍କ ଜୀବନରେ ଏକ ବିଶିଷ୍ଟ ସହାୟକ ବ୍ୟକ୍ତି ରହିଥାନ୍ତି । ଏପରି ସହାୟକ ବ୍ୟକ୍ତି ପିଲାଟିର ଶିକ୍ଷକ, କୌଣସି ବନ୍ଧୁ କିମ୍ବା ଆତ୍ମୀୟ ସ୍ୱଜନ ହୋଇପାରନ୍ତି । କେତେକ ସ୍ଥଳରେ ସେ ଗ୍ରାମ ବା ପରିପାର୍ଶ୍ୱର ଜଣେ ସାଧାରଣ ନାଗରିକ ହୋଇପାରନ୍ତି । କିନ୍ତୁ ଶିଶୁର ମାନସିକ ଏବଂ ଆବେଗିକ (Emotional) ଚାହିଦା ପୂରଣ କରିବାରେ ସେ ସଦାତତ୍ପର ଥାଆନ୍ତି । ଶିଶୁ ସ୍କୁଲରେ ପୁରସ୍କାରଟିଏ ପାଇଲେ ଯେପରି ପ୍ରଥମେ ତାଙ୍କ ପାଖରେ କହିଥାଏ, ମନର ବ୍ୟଥା ମଧ୍ୟ ସେଠାରେ ପ୍ରଥମେ ପ୍ରକାଶ କରେ । ସ୍ୱାଭାବିକ ଭାବରେ ଶିଶୁ ପାଇଁ ପରିବେଶରେ ଏପରି ସହାୟକ ଅବସ୍ଥା ନଥିଲେ ଆନୁଷ୍ଠାନିକ ଭାବରେ ଏ ଦିଗରେ ପଦକ୍ଷେପ ନିଆଯାଇପାରେ । ଜ୍ୟେଷ୍ଠଭଗ୍ନୀର ଗୋଷ୍ଠୀ (Society of Big Sisters) କରି ଆନୁଷ୍ଠାନିକ ବ୍ୟବସ୍ଥା ମାଧ୍ୟମରେ ଶିଶୁର ଭାବଗତ ଚାହିଦାର ଯତ୍ନ ନିଆଯାଇପାର ।

ଶିଶୁର ଆତ୍ମମର୍ଯ୍ୟାଦାବୋଧ ବିକାଶ ପାଇଁ ଶିଶୁକୁ ନୂତନ ନୂତନ କୌଶଳର ତାଲିମ ଦିଆଯିବା ଉଚିତ । ବିଶେଷତଃ ଶିଶୁ ଯେଉଁସବୁ କାର୍ଯ୍ୟକୁ ଗୁରୁତ୍ୱପୂର୍ଣ୍ଣ ମନେକରେ, ସେ ଦିଗରେ ସଫଳତା ହାସଲ ପାଇଁ ଉଚ୍ଚସ୍ତରର ଜ୍ଞାନ କୌଶଳ ଆବଶ୍ୟକ । ଏପରି କୌଶଳ ଶିକ୍ଷାଦେବା ସମୟରେ ଦୁଇଟି ଦିଗପ୍ରତି ଦୃଷ୍ଟିଦେବାକୁ ହେବ । ଶିଶୁ କାର୍ଯ୍ୟ କୌଶଳ ସମ୍ପର୍କରେ ଜ୍ଞାନ ଆହରଣ କିରବ । ଦ୍ୱିତୀୟରେ ଏହା ସହିତ ତାର ଆତ୍ମବିଶ୍ୱାସ ମଧ ବୃଦ୍ଧିପାଇବ । ବିଶିଷ୍ଟ ମନୋବିଜ୍ଞାନୀ ବାନ୍ଦୁରା ଏହାକୁ ଆତ୍ମ-ସାମର୍ଥ୍ୟବୋଧ (Self-Efficacy) ଆଖ୍ୟା ଦେଇଛନ୍ତି । ଶିଶୁଟିର ବିଶ୍ୱାସ ଦୃଢ଼ ହେବ ଯେ ସେ ସଫଳତାର ସହିତ କାର୍ଯ୍ୟଟି ସମ୍ପନ୍ନ କରିପାରିବ । କାର୍ଯ୍ୟ କୌଶଳ ଓ ଆତ୍ମସାମର୍ଥ୍ୟବୋଧର ତାଲିମ ଶିଶୁଟିର ମର୍ଯ୍ୟାଦାବୋଧ ବୃଦ୍ଧି କରିବ ।

ଚତୁର୍ଥରେ ପିଲାଟିକୁ ଉପଯୋଗୀ ସମନ୍ୱୟ ଶୈଳୀ (Coping) ଶିକ୍ଷାଦେବାକୁ ହେବ । ବିଶେଷତଃ ଦୁଇଟି ସମନ୍ୱୟ ଭଙ୍ଗୀ ବିଶେଷ ଗୁରୁତ୍ୱପୂର୍ଣ୍ଣ । ବିପଦ ଓ ଆହ୍ୱାନମୂଳତଃ ପରିସ୍ଥିତି ଉପୁଜିବା ପୂର୍ବରୁ ପିଲାଟି କିଛି ପଦକ୍ଷେପ ନେବାର ସମନ୍ୱୟ (Proactive Coping) କୁହନ୍ତି । ଏପରି ଦକ୍ଷତା ଅନେକ ସମୟରେ ମାନସିକ ଚାପକୁ ନିୟନ୍ତ୍ରଣ କରିଥାଏ । ଦ୍ୱିତୀୟତଃ ଅଘଟଣସବୁକୁ ସମ୍ମୁଖୀନ ନହୋଇ ପରୋକ୍ଷ ପନ୍ଥା (ଯଥା: ଶୋଇ ରହିବା, ଇତ୍ୟାଦି) ତ୍ୟାଗ କରିବାକୁ ଶିକ୍ଷା ଦିଆଯିବା ବିଧେୟ । ସିଧାସଳଖ ମୁକାବିଲା କରିବାର ଶୈଳୀ ପ୍ରଥମେ ପ୍ରଥମେ କିଛିଟା ଅସ୍ୱସ୍ତିକର ହେଲେ ମଧ ଏହାର ଦୀର୍ଘମିଆଦୀ ଫଳାଫଳ ଭଲ ହୋଇଥାଏ । ସୁତରାଂ ସମସ୍ୟାଟିର କାରଣ ବିଶ୍ଳେଷଣ କରି ତାହାର ସମ୍ମୁଖୀନ ହେବାର କୌଶଳ ଶିଶୁ ଶିକ୍ଷା କରିବା ବାଞ୍ଛନୀୟ । ଏପରି ତାଲିମପ୍ରାପ୍ତ ଶିଶୁ ସମନ୍ୱୟ-ସଫଳତା ପ୍ରଦର୍ଶନ କରେ ଏବଂ ନିଜର ଆତ୍ମମର୍ଯ୍ୟାଦା ବୃଦ୍ଧିକରେ ।

## ଶିଶୁର ଆତ୍ମମର୍ଯ୍ୟାଦାବୋଧ ବୃଦ୍ଧିପାଇଁ ସହାୟକ ପରାମର୍ଶ

*୧. ଆତ୍ମମର୍ଯ୍ୟାଦାବୋଧର ସୁଫଳ ଭଲରୂପେ ଲକ୍ଷ୍ୟ କରନ୍ତୁ ।*
*(କ) ଶିକ୍ଷାକ୍ଷେତ୍ରରେ (ସ୍କୁଲ କାର୍ଯ୍ୟରେ) ଶିଶୁର ସଫଳତା ।*
*(ଖ) ଶିଶୁର ଲୋକପ୍ରିୟତା*
*(ଗ) ଶିଶୁର ଆନନ୍ଦ ଓ ଶ୍ରମ ।*
*(ଘ) ସଫଳ ସମନ୍ୱୟ କୌଶଳ ।*
*୨. ଆତ୍ମ-ମର୍ଯ୍ୟାଦାବୋଧର ପାଞ୍ଚୋଟି କ୍ଷେତ୍ର*
*(କ) ଶିକ୍ଷାଗତ ଦକ୍ଷତା*
*(ଖ) ଖେଳସରତରେ ଦକ୍ଷତା*
*(ଗ) ସାମାଜିକ ଦକ୍ଷତା*
*(ଘ) ଶାରୀରିକ ଦକ୍ଷତା*
*(ଙ) ଆଚରଣଶୀଳତା । .*

୩. ଶିଶୁର କି ପ୍ରକାର ମାନସିକତା ତା'ର ଆତ୍ମମର୍ଯ୍ୟାଦାବୋଧ ସହିତ ସମ୍ପୃକ୍ତ, ତାହା ଲକ୍ଷ୍ୟ କରନ୍ତୁ । ଏଗୁଡ଼ିକର ବୃଦ୍ଧି ଦିଗରେ ପଦକ୍ଷେପ ନିଅନ୍ତୁ ।

(କ). ଶିଶୁ ଗୁରୁତ୍ୱ ଦେଉଥିବା ବ୍ୟକ୍ତିବିଶେଷଙ୍କଠାରୁ ସ୍ନେହ, ଶ୍ରଦ୍ଧା ପାଉଛି ।

(ଖ) ଶିଶୁ ପ୍ରାଧାନ୍ୟ ଦେଉଥିବା କାର୍ଯ୍ୟ କରିବାର ସୁଯୋଗ ଓ ସଫଳତା ପାଉଛି ।

(ଗ) ଶିଶୁର ନୈତିକ ମାନଦଣ୍ଡ ରହିଛି ।

(ଘ) ଶିଶୁ ନିଜର ବ୍ୟବହାର ଦ୍ୱାରା ଅନ୍ୟମାନଙ୍କୁ ପ୍ରଭାବିତ କରିପାରୁଛି ।

୪. ଗୁରୁତ୍ୱମୁଖୀ (Authoritative) ଶିଶୁପାଳନ ଭଙ୍ଗୀ ଶିଶୁର ଆତ୍ମମର୍ଯ୍ୟାଦାବୋଧକୁ ବୃଦ୍ଧି ଓ ସମ୍ପ୍ରସାରିତ କରେ । ସୁତରାଂ ଏପରି ଶୈଳୀର ଚିହ୍ନ ସବୁ ଜାଣନ୍ତୁ ଏବଂ ଅନୁସରଣ କରନ୍ତୁ ।

(କ) ପିଲାମାନଙ୍କୁ ସ୍ୱାଧୀନତା ଦିଆଯିବ, କିନ୍ତୁ ଗୁରୁତ୍ୱପୂର୍ଣ୍ଣ ଦିଗରେ ନିୟନ୍ତ୍ରଣ ମଧ୍ୟ ଜାରି ରହିବ ।

(ଖ) ଶିଶୁଙ୍କୁ ସ୍ନେହ, ଶ୍ରଦ୍ଧା ପ୍ରଦର୍ଶନ କରାଯିବ ।

(ଗ) ଶିଶୁର ଭାବବ୍ୟକ୍ତ ପାଇଁ ସୁଯୋଗ ଦିଆଯିବ ।

(ଘ) ନିୟମକାନୁନଗୁଡ଼ିକ ସ୍ପଷ୍ଟ ଭାବରେ ଏବଂ ସୁସଂଗତ ଭାବରେ ଜଣାଇ ଦିଆଯିବ ।

(ଙ) ଶିଶୁର ପରିସୀମତ୍ୱ (Limitation) ବିଷୟରେ ସ୍ପଷ୍ଟ ଧାରଣା ଦିଆଯିବ ।

(ଚ) ଶାସ୍ତିବିଧାନ ଅପେକ୍ଷା ପ୍ରୋତ୍ସାହନ ନୀତି ଅଧିକ ଅନୁସୃତ ହେବ ।

(ଛ) ପିତାମାତା ନିଜେ ଉଚ୍ଚ ଆତ୍ମମର୍ଯ୍ୟାଦାବୋଧର ଅଧିକାରୀ ହେବେ ।

୫. ଶିଶୁର ଆତ୍ମମର୍ଯ୍ୟାଦାବୋଧ ବୃଦ୍ଧି କରିବେ କିପରି ।

(କ) ଶିଶୁ ଗୁରୁତ୍ୱ ଦେଉଥିବା କାର୍ଯ୍ୟାବଳୀ ଚିହ୍ନଟ କରିବେ ଏବଂ ଏହା କରିବା ଓ ସଫଳତା ହାସଲ କରିବାରେ ଶିଶୁକୁ ତାଲିମ ଦେବେ ।

(ଖ) ସ୍ନେହଶ୍ରଦ୍ଧା ସୂଚାଇବା ମାଧ୍ୟମରେ ଶିଶୁର ମାନସିକ ଓ ଆବେଗିକ ଚାହିଦା ପୂରଣ କରିବେ ।

(ଗ) ଶିଶୁକୁ ନୂତନ ନୂତନ ଜ୍ଞାନ କୌଶଳ ଏବଂ ଆତ୍ମବିଶ୍ୱାସର ତାଲିମ ଦେବେ ।

(ଘ) ଉନ୍ନତ ସମନ୍ୱୟ କୌଶଳ (ସମସ୍ୟାର ସମ୍ମୁଖୀନ ହେବା ଏହା ସ୍ଥଳବିଶେଷରେ ସମସ୍ୟା ଉପୁଜିବା ପୂର୍ବରୁ ବିହିତ ପ୍ରତିକାର କରିବା)ର ପ୍ରଶିକ୍ଷଣ ଦେବେ ।

# ବ୍ୟକ୍ତିତ୍ୱ-ବିକାଶର କେତୋଟି ଦିଗ

ବ୍ୟକ୍ତିତ୍ୱର ବିକାଶ ଏକ ନିରବଚ୍ଛିନ୍ନ ପ୍ରକ୍ରିୟା । ବ୍ୟାପକ ଦୃଷ୍ଟିକୋଣରୁ ବିଚାର କଲେ ଜନ୍ମର ବହୁପୂର୍ବରୁ ମଧ୍ୟ ବ୍ୟକ୍ତିତ୍ୱର ବିକାଶ ଅଙ୍କୁରଣ ଘଟିଥାଏ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ଏହା ଅବ୍ୟାହତ ରହିଥାଏ । ତଥାପି ଜୀବନ ବିକାଶର ପ୍ରତିଟି ସୋପାନ (ଶୈଶବ, ବାଲ୍ୟ, କୈଶୋର, ଯୌବନ ଏବଂ ବାର୍ଦ୍ଧକ୍ୟ)ରେ କିଛିମାତ୍ରାର 'ବୈଶିଷ୍ଟ୍ୟ' ରହିଥାଏ । ଏ ଦୃଷ୍ଟିରୁ ପରବର୍ତ୍ତୀ ବାଲ୍ୟଜୀବନ (ଛ' ବର୍ଷରୁ ଏଗାର ବାରବର୍ଷ ବୟସର) ମଧ୍ୟ ଗୁରୁତ୍ୱ ରହିଛି । ବିଭିନ୍ନ ମନୋବିଜ୍ଞାନୀ ଏହି ବିକାଶ ସୋପାନର କେତୋଟି ପୃଥକ୍ ପୃଥକ୍ ବୈଶିଷ୍ଟ୍ୟ ଉପରେ ଆଲୋକପାତ କରିଛନ୍ତି ।

ବିଶ୍ୱବିଶ୍ରୁତ ମନସମୀକ୍ଷକ ସିଗ୍‌ମଣ୍ଡ୍ ଫ୍ରଏଡ୍ ଏହାକୁ ଏକ ଅପ୍ରକଟ କାଳ (Latency Priod) ରୂପେ ବର୍ଣ୍ଣନା କରିଛନ୍ତି । ଏହି ସମୟରେ ଶିଶୁର ଇଚ୍ଛା ଓ କାମନା ଅବ୍ୟକ୍ତ ରହିବା ଅର୍ଥରେ ଏହା ବ୍ୟବହାର କରାଯାଇନାହିଁ । ଫ୍ରଏଡ୍‌ଙ୍କ ମତରେ ଏହି ସମୟରେ ଶିଶୁ ଏକ ଅପେକ୍ଷାକୃତ ଉଦ୍‌ବେଳନହୀନ ସମୟ ଅନୁଭବ କରେ । ପୂର୍ବରୁ ତାର ଶାରୀରିକ ପରିବର୍ତ୍ତନ ଯେଉଁସବୁ ଅସ୍ଥିରତା ସୃଷ୍ଟିକରିଥିଲା, ସେଥିରେ ବିରାମ ଆସେ । ଶିଶୁର ଆଗ୍ରହ ଖେଳ ସାମଗ୍ରୀ ଓ ଖେଳସାଥିମାନଙ୍କ ପ୍ରତି ନିର୍ଦ୍ଦେଶିତ ହେବା ଫଳରେ ଶରୀରଭିତ୍ତିକ କାମନାର ତୀବ୍ରତା ରହେନାହିଁ । ବାଳକଟି ନିଜର ପିତାଙ୍କ ପ୍ରତି ବୈରତା ଏବଂ ମା'ଙ୍କ ପ୍ରତି ଆକର୍ଷଣ ନେଇ ଯେଉଁ ବିଚଳନ ଅନୁଭବ କରୁଥିଲା, ତାହାର ଅବସାନ ହୁଏ । ସେହିପରି ବାଳିକାଟି ନିଜ ମା'ଙ୍କ ପ୍ରତି ବୈରତା ଏବଂ ପିତାଙ୍କ ପ୍ରତି ଆକର୍ଷଣ ନେଇ ଯେଉଁ ବିଚଳନ ଅନୁଭବ କରୁଥିଲା, ତାହାର ଅବସାନ ଘଟେ ।ଏପରି ସବୁ ବିଚଳନ ଦୀର୍ଘସ୍ଥାୟୀ ହେଲେ କ୍ଷତିକାରକ ହେବ, ଏପରି ଉପଲବ୍ଧି ପିଲାମାନଙ୍କର ମାନସିକ ଜଟିଳତା କମାଇଦିଏ । ସୁତରାଂ ପିଲାମାନେ ପିତାମାତାଙ୍କ ଉପଦେଶ ପ୍ରତି ଅଧିକ ଗ୍ରହଣଶୀଳତା ପ୍ରଦର୍ଶନ କରନ୍ତି । ଅନ୍ୟମାନଙ୍କ ଉପଦେଶନ ଗ୍ରହଣରେ ଆଗ୍ରହୀ ହୁଅନ୍ତି । ସାମାଜୀକରଣ ପ୍ରକ୍ରିୟା ପ୍ରଭାବଶାଳୀ ହୋଇଥାଏ । ଶରୀର-ଭିତ୍ତିକ କାମନା ପରିବର୍ତ୍ତେ ସାମାଜିକ ଅନୁମୋଦନ ଲାଭ କାର୍ଯ୍ୟ ଇଚ୍ଛା ବଳବତୀ ହେଉଥିବାରୁ ଫ୍ରଏଡ୍ ତାହାକୁ ଅପ୍ରକଟ କାଳ ବୋଲି ଆଖ୍ୟା ଦେଇଛନ୍ତି । ଅବଶ୍ୟ ଶରୀର-ଭିତ୍ତିକ କାମନା ପୂରାପୂରି ବିଲୁପ୍ତ ନହୋଇ ପ୍ରଚ୍ଛନ୍ନ (Latent) ଭାବରେ ରହିଥାଏ ଏବଂ କୈଶୋର କାଳରେ (ବାର ବର୍ଷ ବୟସ ଏବଂ ତାର' ପରବର୍ତ୍ତୀ ବୟସ)ରେ ତାହା ପୁନଶ୍ଚ ପ୍ରକାଶ୍ୟ ରୂପ ନିଏ ।

ଫ୍ରଏଡ୍‌ଙ୍କ ଶରୀରଭିତ୍ତିକ ତତ୍ତ୍ୱକୁ ଏ ଯୁଗର ଅନ୍ୟତମ ପ୍ରଖ୍ୟାତ ମନୋବିଜ୍ଞାନୀ ଏରିକ୍‌ସନ୍ ସାମାଜିକ ଦୃଷ୍ଟିକୋଣରୁ ବିଚାର କରିଛନ୍ତି । ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁର ବ୍ୟକ୍ତିତ୍ୱ ବିକାଶ ଆଲୋଚନା ପ୍ରସଙ୍ଗରେ ଏରିକ୍‌ସନ୍‌ଙ୍କ ମୂଳ ତତ୍ତ୍ୱର ସୂଚନା ଦିଆଯାଇଛି । ତାଙ୍କ ମତରେ ଜୀବନର ପ୍ରତିଟି ସୋପାନରେ ମଣିଷ ଭିନ୍ନ ଭିନ୍ନ ଦ୍ୱନ୍ଦର ସମ୍ମୁଖୀନ ହୁଏ । ଏହିସବୁ ଦ୍ୱନ୍ଦ କେତେ ସଫଳତାର ସହିତ ସମ୍ମୁଖୀନ ହେଉଛି, ସେହି ସଫଳତାର ମାତ୍ରା ଉପରେ ନିର୍ଭର କରି ବ୍ୟକ୍ତିତ୍ୱ ଗଠିତ ହୁଏ । ଶୈଶବ କାଳରେ ବିଶ୍ୱାସ ଅବିଶ୍ୱାସ ମଧ୍ୟରେ ଦ୍ୱନ୍ଦ ଉପୁଜିଥାଏ । ପ୍ରାକ୍-ବିଦ୍ୟାଳୟର ସ୍ତରରେ ପ୍ରଥମ ପର୍ଯ୍ୟାୟରେ ସ୍ୱାଧୀନତା ଏବଂ ଆତ୍ମସନ୍ଦେହ ମଧ୍ୟରେ ଦ୍ୱନ୍ଦ ଉପୁଜିବା ସ୍ଥଳେ ଦ୍ୱିତୀୟ ପର୍ଯ୍ୟାୟରେ ଉଦ୍ୟମଶୀଳତା ଏବଂ ଅପରାଧବୋଧ ମଧ୍ୟରେ ଦ୍ୱନ୍ଦ ସୃଷ୍ଟି ହୁଏ ।

ପ୍ରାକ୍-ବିଦ୍ୟାଳୟ ସ୍ତରର ପରବର୍ତ୍ତୀ ସୋପାନରେ ପରିଶ୍ରମଶୀଳତା ଏବଂ ହୀନମନ୍ୟତା ମଧ୍ୟରେ ଦ୍ୱନ୍ଦ ସୃଷ୍ଟିହୁଏ । ପିଲାଟି ନିଜ ସମାଜ ଓ ସଂସ୍କୃତିରେ ଗୁରୁତ୍ୱ ଦିଆଯାଉଥିବା କାର୍ଯ୍ୟସବୁ ନିଜେ ପରିଶ୍ରମ କରି ସାଧନ କରିବାର ପ୍ରଚେଷ୍ଟା କରେ । କହିବା ଅନାବଶ୍ୟକ ଯେ, କେଉଁ କାର୍ଯ୍ୟଟି ଗୁରୁତ୍ୱପୂର୍ଣ୍ଣ ତାହା ସମାଜ ସ୍ଥିର କରିଥାଏ । ନୂଆ ଗିନିର ଆରାପେଶ ସମ୍ପ୍ରଦାୟର ବାଳକ ଧନୁଶର ଚାଳନାରେ ନିଜର ପରିଶ୍ରମଶୀଳତାରେ ପ୍ରମାଣ ଦେବାକୁ ଚେଷ୍ଟାକରେ । ଏ ସମାଜର ବାଳିକା ଦକ୍ଷ ରୋପଣ ଏବଂ ଶସ୍ୟ ଅମଳ କରିବାରେ ନିଜର ପରିଶ୍ରମଶୀଳତା ସୂଚାଏ । ସେହିପରି ଆଲାସ୍କାର ଇନୁଟ୍ (ଏସ୍କିମୋ) ସମାଜର ପିଲାମାନେ ଶିକାର କରିବା ଏବଂ ମାଛ ଧରିବା କାର୍ଯ୍ୟରେ ନିଜର ଦକ୍ଷତା ପ୍ରଦର୍ଶନ କରନ୍ତି । ଆଧୁନିକ ଶିକ୍ଷୋନ୍ନତ ସମାଜର ପିଲାମାନେ ଲେଖିବା, ପଢ଼ିବା ଏବଂ କମ୍ପ୍ୟୁଟର ବ୍ୟବହାର କରିବାର କାର୍ଯ୍ୟ ମାଧ୍ୟମରେ ନିଜ ପରିଶ୍ରମର ପରିଚୟ ଦିଅନ୍ତି ।

ଫଳତଃ ସମାଜରେ ଗୁରୁତ୍ୱ ଦିଆଯାଉଥିବା କାର୍ଯ୍ୟ କରିବା ମାଧ୍ୟମରେ ସେମାନେ ନିଜର ଦକ୍ଷତା ପ୍ରଦର୍ଶନ କରନ୍ତି ଏବଂ ଅନ୍ୟମାନଙ୍କର ଅନୁମୋଦନ ଲାଭ କରନ୍ତି । ଅନ୍ୟମାନଙ୍କର ମତାମତ ଏବଂ ଅନୁମୋଦନକୁ ଏ ବୟସରେ ପିଲାମାନେ ପ୍ରାଧାନ୍ୟ ଦିଅନ୍ତି । ଅନ୍ୟ ପକ୍ଷରେ ପିଲାମାନଙ୍କର ପରିଶ୍ରମ ପ୍ରୋତ୍ସାହିତ ନହେଲେ କିମ୍ବା ସେମାନେ ବିଫଳ ହେଲେ ସେମାନଙ୍କ ମନରେ ହୀନମନ୍ୟତା ସଞ୍ଚରିତ ହୁଏ । "ବୃଥାରେ ସମୟ ନଷ୍ଟ କରୁଛି"- ଅନ୍ୟମାନଙ୍କର ଏପରି ମନ୍ତବ୍ୟ ସେମାନଙ୍କ ମନରେ ନିରୁତ୍ସାହ ଆଣେ ଏବଂ ସେମାନେ ସମାଜ ପାଇଁ ଠିକ୍ ଉପଯୋଗୀ ନୁହଁନ୍ତି ବୋଲି ଧାରଣା ଜନ୍ମାଏ । ଏରିକ୍‌ସନ୍‌ଙ୍କ ମତରେ ଜୀବନର ଏ ସୋପାନରେ ଏ ଦୁଇଟି ପରସ୍ପର ବିରୋଧର ମାନସିକତା ମଧ୍ୟରେ ସମାଧାନ ଆସିବା ଉଚିତ । ପିଲାଟି କାର୍ଯ୍ୟ କରି ଉତ୍ସାହ ପାଇବ ଏବଂ ତା'ମନରେ ଆତ୍ମସାମର୍ଥ୍ୟବୋଧ ବିକଶିତ ହେବ । ଏହା ତାର ଦକ୍ଷତା ଗଠନର ସହାୟକ ହେବ ।

ଶିଶୁର ବ୍ୟକ୍ତିତ୍ୱ ବିକାଶକୁ ପ୍ରଭାବିତ କରୁଥିବା ଅନ୍ୟ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଉପାଦାନ ହେଉଛି ଶିଶୁର ପର୍ଯ୍ୟବେକ୍ଷଣ । ପ୍ରାକ୍-ବିଦ୍ୟାଳୟ ସ୍ତରରେ ପ୍ରୋତ୍ସାହନ ସିଧାସଳଖ ଭାବରେ

କାର୍ଯ୍ୟ କରୁଥିଲା । ଏହାର ତାତ୍ପର୍ଯ୍ୟ ହେଉଛି ଯେ ତା'ର ସିଧାସଳଖ ପ୍ରୋତ୍ସାହିତ ହେଉଥିବା ବ୍ୟବହାରଟି ଦୃଢ଼ୀଭୂତ ହେଉଥିଲା ଏବଂ ନିରୁତ୍ସାହିତ ହେଉଥିବା ବ୍ୟବହାରଟି କ୍ରମଶଃ ଦୁର୍ବଳ ହୋଇ ତିରୋହିତ ହେଉଥିଲା । ପୁରସ୍କାର ସିଧାସଳଖ କାର୍ଯ୍ୟ କରୁଥିଲା । ମାତ୍ର ସ୍କୁଲ ବୟସରେ ପରୋକ୍ଷ ପ୍ରୋତ୍ସାହନ୍ ଅଧିକ ସକ୍ରିୟ ହୁଏ । ଏହାର ଅର୍ଥ ହେଉଛି ଯେ, ପିତାମାତା, ଶିକ୍ଷକ, ଶିକ୍ଷୟିତ୍ରୀ ଏବଂ ବୟସ୍କମାନଙ୍କ ମତାମତ ଶିଶୁକୁ ପ୍ରଭାବିତ କରେ । ଶିଶୁର ସଫଳତାକୁ ଅନ୍ୟମାନେ କେଉଁ ଦୃଷ୍ଟିରେ ଦେଖୁଛନ୍ତି, ତାହା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । ଶିଶୁ ଅନ୍ୟମାନଙ୍କ ଅନୁମୋଦନ ଲାଭ କଲେ ଆଗେଇଯାଏ । ଅନ୍ୟମାନଙ୍କ ଅବହେଳା ତା' ବ୍ୟବହାରକୁ ସମସ୍ୟା–ବିଜଡ଼ିତ କରିଥାଏ ।

ସ୍କୁଲ ଜୀବନର ଆଦ୍ୟ ଭାଗରେ ଲକ୍ଷ୍ୟ ସାଧନ ଓ ସଫଳତାର ଅନୁଭୂତି ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଏ ସମ୍ପର୍କରେ ସ୍ୱତନ୍ତ୍ର ବିଚାରର ଆବଶ୍ୟକତା ରହିଛି ।

## ଲକ୍ଷ୍ୟସାଧନ ଓ ସଫଳତା

ପୂର୍ବରୁ ସୂଚନା ଦିଆଯାଇଛି ଯେ, ପରିଶ୍ରମଶୀଳତା ଏ ସୋପାନର ଏକ ବୈଶିଷ୍ଟ୍ୟ । ସମାଜ ଗୁରୁତ୍ୱ ଦେଉଥିବା କାର୍ଯ୍ୟସବୁରେ ଶିଶୁ ମନୋନିବେଶ କରେ ଏବଂ ପରିଶ୍ରମ ଜାରିରଖେ । ଏପରି ପରିଶ୍ରମଶୀଳତା ଅବ୍ୟାହତ ରଖିବା ସମୟରେ ପିଲାମାନଙ୍କର ଦୁଇଟି ଅଭିମୁଖତା (Orientation) ଲକ୍ଷ୍ୟ କରାଯାଇଛି । ପୁଣି ବୟସର ବୃଦ୍ଧି ସହିତ ପିଲାମାନଙ୍କର ଏହି ଅଭିମୁଖତା (Orientation) ଅଧିକାଂଶ ପିଲାମାନଙ୍କ କ୍ଷେତ୍ରରେ ପରିବର୍ତ୍ତନ ହେବାର ପର୍ଯ୍ୟବେକ୍ଷଣ କରାଯାଇଛି ।

ପ୍ରଥମ ଅଭିମୁଖତା ହେଉଛି ଶିକ୍ଷଣ ଅଭିମୁଖତା । (Learning Orientition) ଏ କ୍ଷେତ୍ରରେ ଶିକ୍ଷା ବା କାର୍ଯ୍ୟଟି ଉପରେ ଗୁରୁତ୍ୱ ଦିଆଯାଏ । ଆନନ୍ଦ ଉତ୍ସାହର ସହିତ କାର୍ଯ୍ୟଟିକୁ କରିବାକୁ ହେବ, ଏପରି ବିଚାର ମନରେ ମୁଖ୍ୟ ସ୍ଥାନ ଗ୍ରହଣ କରେ । ଏ କାର୍ଯ୍ୟରେ ସଫଳତାର ସମ୍ଭାବନା କେତେ ବେଶୀ ବା କମ୍, ସେ ବିଚାର ଗୌଣ ସ୍ଥାନ ପାଇଥାଏ । ଅନ୍ୟ ପକ୍ଷରେ ଦ୍ୱିତୀୟ ଅଭିମୁଖତା ହେଉଛି ଫଳାଫଳ ଅଭିମୁଖତା (Performance Orientation)। ଲକ୍ଷ୍ୟଟିର ସଫଳତା ସମ୍ଭାବନା କେତେ ଏବଂ ଅନ୍ୟମାନେ କି ପ୍ରତିକ୍ରିୟା ପ୍ରକାଶ କରିବେ, ତାହାର ବିଚାର ମୁଖ୍ୟ ସ୍ଥାନ ପାଇଥାଏ ।

ଦେଖାଯାଇଛି ଯେ ଶୈଶବ କାଳରେ ଅଧିକାଂଶ ଶିଶୁ ଶିକ୍ଷଣ ଅଭିମୁଖତା ନେଇ କାର୍ଯ୍ୟସବୁ କରିଥାନ୍ତି । ଫଳାଫଳ ଏବଂ ଅନ୍ୟମାନଙ୍କର ପ୍ରତିକ୍ରିୟା ପ୍ରତି ଅପେକ୍ଷାକୃତ କମ୍ ନଜର ଦିଅନ୍ତି । ନିଜକୁ ଖୁସି ଦେଉଥିବା କାର୍ଯ୍ୟସବୁ କରିଥାନ୍ତି । ଅନ୍ତର୍ନିହିତ ଅଭିପ୍ରେରଣା ମୁଖ୍ୟତଃ କାର୍ଯ୍ୟ କରେ । ପ୍ରାକ୍–ବିଦ୍ୟାଳୟର ସ୍ତରରେ ଶିଶୁ ଦୁଇଟି ଅଭିମୁଖତାର ସମନ୍ୱୟ କରେ । ସେ କାମର ପଦ୍ଧତିଟିକୁ ଉପଭୋଗ କରିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କର ମତାମତ ପ୍ରତି ମଧ୍ୟ ସଚେତନ ଥାଏ । ଶିକ୍ଷକ ପ୍ରଶଂସା କରୁଥିବାରୁ ଏବଂ ସେ ଭଲକାମ କରୁଥିବାରୁ ସେ ନିଜକୁ ଦକ୍ଷ ବିଚାର କରେ । ମାତ୍ର ସ୍କୁଲକୁ ଯିବା ଆରମ୍ଭ କରିବା ପରେ ତା'ର ଫଳାଫଳ

ଅଭିମୁଖତା ପ୍ରାଧାନ୍ୟ ଲାଭ କରେ । ଅନ୍ୟମାନେ ତା' କାମକୁ କି ଦୃଷ୍ଟିରେ ଦେଖୁଛନ୍ତି, ସେଥିପ୍ରତି ସେ ସତର୍କ ଦୃଷ୍ଟି ନିକ୍ଷେପ କରେ ।

ଏପରି ଅଭିମୁଖତା ସହିତ ଆଉ ଗୋଟିଏ ଦୃଷ୍ଟିଭଙ୍ଗୀ ମଧ୍ୟ ସକ୍ରିୟ ଥାଏ । ତାହା ହେଉଛି ସାମର୍ଥ୍ୟର ଅଭିମୁଖ୍ୟତା (Mastery Orientation)ଏବଂ ଅସହାୟତାର ଆଭିମୁଖତା (Helplessness Orientation) । ପିଲାଟି ନିଜକୁ ଦକ୍ଷ ଓ ସମର୍ଥ ଭାବି ଗଭୀର ଆତ୍ମବିଶ୍ଵାସର ସହିତ କାର୍ଯ୍ୟ ଓ ପରିସ୍ଥିତିର ମୁକାବିଲା କରିପାରେ । ଅନ୍ୟ ପକ୍ଷରେ ବିଫଳତାର ପୁନରାବୃତ୍ତି ଘଟିଲେ ତା'ର ଅସହାୟତା ଏବଂ ଅସାମର୍ଥ୍ୟ ଅଭିମୁଖତା ଅଂକୁରିତ ଏବଂ ବର୍ଦ୍ଧିତ ହୁଏ । ଏପରି ଦୃଷ୍ଟିଭଙ୍ଗୀ ନିଶ୍ଚିତ ଭାବରେ ଅନୁପଯୋଗୀ । କୌଣସି ପରିସ୍ଥିତିର ସମ୍ମୁଖୀନ ହେବା ପୂର୍ବରୁ ପିଲାଟି ଅସହାୟତାଭାବ ଦର୍ଶାଏ । ସେ ଆଦୌ ଚେଷ୍ଟା ନକରି ଛାଡ଼ିଦିଏ ।

ଏପରି ଅନୁପଯୋଗୀ ମନୋଭାବ ପରିବର୍ତ୍ତନ କରିବା ଅସମ୍ଭବ ନୁହେଁ । ପ୍ରଥମେ ଶିଶୁମନରେ ଧାରଣା ଦେବାକୁ ହେବ ଯେ କାର୍ଯ୍ୟସବୁରେ ସଫଳତା ବା ବିଫଳତା କେବଳ ପୂର୍ଣ୍ଣ ବା କେବଳ ଶୂନ୍ୟ ନୀତି ଉପରେ ଆଧାରିତ ନୁହେଁ । ଏହାର ଅର୍ଥ ହେଉଛି ଯେ ବହୁ କ୍ଷେତ୍ରର କାର୍ଯ୍ୟର ସଫଳତା ମାତ୍ରାର ବିଭିନ୍ନତା ରହିଛି । ଏହା ଶୂନ୍ୟ କିମ୍ବା ପୂର୍ଣ୍ଣ ନୁହେଁ । ଉଦ୍ୟମ କଲେ ଯେ କୌଣସି ଅଳ୍ପ ମାତ୍ରାର ସଫଳତା ଅଧିକ ମାତ୍ରାର ସଫଳତା ଦିଗରେ ଗତିକରିପାରେ । ଏପରି ଉପଦେଶ ନ ଦେଇ ପିଲାକୁ କିଛି ପ୍ରଶ୍ନ କିଛି ସମସ୍ୟା ଦିଆଯିବ । ଉତ୍ତରର ମୂଲ୍ୟାୟନ କରାଯାଇ ଫଳାଫଳ ଶିଶୁକୁ ଅବଗତ କରାଯିବ । ଶିଶୁ ଅନୁଭବ କରିବ ଯେ ବହୁ ପ୍ରଶ୍ନର ଉତ୍ତର କ୍ଷେତ୍ରରେ ବିଭିନ୍ନ ଅଂଶ ପାଇଁ ତା'ର କୃତିତ୍ୱକୁ ସ୍ୱୀକାର କାରାଯାଇ ତା'ର ସଫଳତା ପାଇଁ ମାର୍କ ଦିଆଯାଇଛି । ଏପରି ଅନୁଭବ ତା'ର ହତାଶା ଭାବ ଦୂର କରିବ ।

ଦ୍ୱିତୀୟତଃ ଏପରି ପିଲାମାନଙ୍କୁ ସମବେତ ସମସ୍ୟା ସମାଧାନର ସୁଯୋଗ ଦିଆଯାଇପାରେ । ପିଲାଟିକୁ ଦଳଭୁକ୍ତ କରି ସମଗ୍ର ଦଳ ପାଇଁ ଗୋଟିଏ କାର୍ଯ୍ୟ ବା ସମସ୍ୟା ଦିଆଯାଇପାରେ । ସମସ୍ୟାଟି ଦେବା ପୂର୍ବରୁ ଉକ୍ତ ପିଲାଟିର ଏ ଦିଗରେ କିଛି ନା କିଛି ସାମର୍ଥ୍ୟ ରହିଛି, ତାହା ଜାଣି ରଖିବା ଉଚିତ ହେବ । ସାମୂହିକ ଭାବରେ ସମସ୍ୟା ସମାଧାନ କରିବା ସମୟରେ ସେ ନିଜସ୍ୱ ପରିଶ୍ରମ ଓ କାର୍ଯ୍ୟକୁଶଳତାର ଉପଯୋଗ କରିବ । ସାମୂହିକ ଭାବରେ ନିଷ୍ପନ୍ନ ହେଉଥିବା କାର୍ଯ୍ୟଟିର ସଫଳତା ତ' ' ଅସହାୟତାବୋଧ ଦୂରକରିବାରେ ସହାୟକ ହେବ ।

ପରିଶେଷରେ ପିଲାମାନଙ୍କ ଲକ୍ଷ୍ୟସାଧନ ଏବଂ ସଫଳତାର ପରିପ୍ରେକ୍ଷୀରେ ପିତାମାତା ଓ ଶିକ୍ଷକ ଶିକ୍ଷୟତ୍ରୀମାନେ ପ୍ରତ୍ୟାଶା (Expectancy) ସମ୍ପର୍କରେ ମନ୍ତବ୍ୟ ଦିଆଯାଇପାରେ । ପ୍ରତ୍ୟେକ ବ୍ୟକ୍ତିର ନିର୍ଦ୍ଦିଷ୍ଟ ପ୍ରତ୍ୟାଶା ଥାଏ ଶିଶୁମାନଙ୍କ ବିକାଶ ସମ୍ପର୍କରେ । ପିଲାଟି କେଉଁ ବୟସରେ ସ୍ୱାଧୀନ ଭାବରେ ରାସ୍ତା ପାର ହେବ, କେଉଁ ବୟସରେ କଇଁଚି ନେଇ ଖେଳିପାରିବ–

ଏହି ପ୍ରଶ୍ନର ଉତ୍ତର ସମ୍ପର୍କରେ ନିଜସ୍ୱ ଉତ୍ତର ରହିଥାଏ । କେତେକ ପିତାମାତା ଏବଂ ଶିକ୍ଷକ ଶିକ୍ଷୟତ୍ରୀ ପିଲାର ଅଳ୍ପ ବୟସରେ ଏସବୁ କ୍ରିୟାକର୍ମ ଆରମ୍ଭ ହେବା ଉଚିତ ବୋଲି ବିଚାର କରୁଥିବା ସ୍ଥଳେ ଅନ୍ୟମାନେ ଅଧିକ ବୟସରେ ଏସବୁର ଆରମ୍ଭ ପ୍ରତ୍ୟାଶା କରନ୍ତି । ଏହା ସହଜରେ ଅନୁମେୟ ଯେ କମ୍ ବୟସରେ ଏସବୁ ଆଶା କରୁଥିବା ପିତାମାତା ଏବଂ ଶିକ୍ଷକ ଶିକ୍ଷୟତ୍ରୀମାନଙ୍କର ପ୍ରତ୍ୟାଶା ଅପେକ୍ଷାକୃତ ଉଚ୍ଚ । ମନର ପ୍ରଶ୍ନ ଉଠିପାରେ-ଉଚ୍ଚ ପ୍ରତ୍ୟାଶା ଉପଯୋଗୀ କି ଅନୁପଯୋଗୀ ?

ପରୀକ୍ଷା ନିରୀକ୍ଷାର ଦେଖାଯାଇଛି ଯେ ଉଚ୍ଚ ପ୍ରତ୍ୟାଶା ପିଲାମାନଙ୍କର ସଫଳତାର ସହାୟକ ହୋଇଥାଏ । ଅବଶ୍ୟ ମାତ୍ରାଧିକ ଅବାସ୍ତବ ଉଚ୍ଚ ପ୍ରତ୍ୟାଶାର କଥା ଏଠାରେ କୁହାଯାଉ ନାହିଁ । କିନ୍ତୁ ଉଚ୍ଚ ପ୍ରତ୍ୟାଶା ପିଲାମାନଙ୍କର ଉନ୍ନତି, ଲକ୍ଷ୍ୟ ସାଧନ ଏବଂ ସଫଳତାର ସହାୟକ ହେବାର ପ୍ରମାଣ ରହିଛି । ପିତାମାତା ଏବଂ ଶିକ୍ଷକ ଶିକ୍ଷୟତ୍ରୀମାନଙ୍କର ଉଚ୍ଚ ପ୍ରତ୍ୟାଶା ଉପଯୋଗୀ ହେବା ଅନ୍ତରାଳରେ ଦୁଇଟି ଉପାଦାନ ସୂକ୍ଷ୍ମ ଭାବରେ କାର୍ଯ୍ୟକରିବାର ସମ୍ଭାବନା ରହିଛି । ପ୍ରଥମତଃ ଉଚ୍ଚ ପ୍ରତ୍ୟାଶା ପୋଷଣ କରିଥିବା ପିତାମାତା ଶିକ୍ଷକ ଶିକ୍ଷୟତ୍ରୀ ନିଜର ଜ୍ଞାତସାରରେ ଏବଂ ଅଜ୍ଞାତସାରରେ ଉଚ୍ଚ ଧରଣର ପାରସ୍ପାରିକ କ୍ରିୟା ଅନୁକ୍ରିୟା (Interaction) ଦର୍ଶାନ୍ତି । ଏମାନଙ୍କର ପରିଚାଳନା ଭଙ୍ଗୀ ଉତ୍କୃଷ୍ଟ ଧରଣର ହୋଇଥାଏ । ଦ୍ୱିତୀୟତଃ ପିଲାମାନେ ମଧ୍ୟ ଜ୍ଞାତସାରରେ ଏବଂ ଅଜ୍ଞାତସାରରେ ଏହିସବୁ ଉଚ୍ଚ ପ୍ରତ୍ୟାଶାର ପରିପୂରଣ ପାଇଁ ଅନୁରୂପ କାର୍ଯ୍ୟକୌଶଳ ଏବଂ ବ୍ୟବହାର ପ୍ରଦର୍ଶନ କରନ୍ତି । ମୂଳତଃ ପାରସ୍ପାରିକ ଅନୁକ୍ରିୟା (Interaction)ର ଉତ୍କର୍ଷ ହିଁ ସକରାତ୍ମକ ପରିଣତି ସୃଷ୍ଟିରେ ସହାୟକ ହୋଇଥାଏ ।

## ସହାୟକ ପରାମର୍ଶ

୧. *ପ୍ରାକ୍-ବିଦ୍ୟାଳୟର ସ୍ତରର ପରବର୍ତ୍ତୀ ସୋପାନ (ଛ'ବର୍ଷରୁ ଏଗାର ବାର ବର୍ଷ) ରେ ପିଲାମାନେ ପ୍ରତ୍ୟକ୍ଷ (Direct) ପ୍ରୋତ୍ସାହନ ଅପେକ୍ଷା ପରୋକ୍ଷ ପ୍ରୋତ୍ସାହନ ପ୍ରତି ଅଧିକ ଗୁରୁତ୍ୱ ଦିଅନ୍ତି । ସୁତରାଂ ବସ୍ତୁଗତ ଉପହାର ବଦଳରେ ପ୍ରଶଂସା ଓ ଅନୁମୋଦନ ମାଧ୍ୟମରେ ଭଲ ବ୍ୟବହାର ଗଠନ କରନ୍ତୁ ।*

୨. *ଶିଶୁ ଏ ବୟସରେ ପର୍ଯ୍ୟବେକ୍ଷଣକୁ ପ୍ରାଧାନ୍ୟ ଦେଉଥିବାରୁ ନିଜେ ପିଲାମାନଙ୍କ ପାଖରେ ଆଦର୍ଶ ନମୁନା (Role Model) ହୁଅନ୍ତୁ ।*

୩. *ଶିଶୁର ପରିଶ୍ରମଶୀଳତାକୁ ଯଥୋଚିତ ସ୍ୱୀକୃତ ଦିଅନ୍ତୁ ।*

୪. *ସଫଳତାର ଅନ୍ତରାଳରେ ପରିଶ୍ରମଶୀଳତା ମୁଖ୍ୟ କାରଣ, ଏପରି ମନ୍ତବ୍ୟ ସ୍ପଷ୍ଟ କରନ୍ତୁ । (ତୋ ଦ୍ୱାରା ଏ କାର୍ଯ୍ୟ ହେବନି, ଏହା ନ କହି ପରିଶ୍ରମ କଲେ ସବୁ ଠିକ୍ ହେବ- ଏପରି ଧାରଣା ଦିଅନ୍ତୁ)*

୫. *ଆପଣଙ୍କ ପ୍ରତ୍ୟାଶାସବୁକୁ ଉଚ୍ଚସ୍ତରରେ ରଖନ୍ତୁ (ମାତ୍ରାଧିକ ଓ ଅବାସ୍ତବ ଉଚ୍ଚ ପ୍ରତ୍ୟାଶା ଅନୁପଯୋଗୀ ହୋଇଥାଏ । ମାତ୍ର ଶିଶୁ ଯେଉଁ ସ୍ତରରେ ବର୍ତ୍ତମାନ ସଫଳତା ହାସଲ କରୁଛି, ତାହାର ଉର୍ଦ୍ଧ୍ୱ ସ୍ତରରେ ପ୍ରତ୍ୟାଶା ଶିଶୁ ପାଖରେ ସ୍ପଷ୍ଟ କରନ୍ତୁ) ।*

# ପରିବାରର ପ୍ରଭାବ

ପ୍ରାକ୍-ବିଦ୍ୟାଳୟ ସୋପାନର ପରବର୍ତ୍ତୀ ପର୍ଯ୍ୟାୟରେ ଶିଶୁର ପରିସର ପରିବର୍ତ୍ତିତ ଏବଂ ପ୍ରସାରିତ ହୁଏ । ପିତାମାତାଙ୍କ ସହିତ ଅତିବାହିତ ହେଉଥିବା ସମୟର ମାତ୍ରା ଉଲ୍ଲେଖଯୋଗ୍ୟ ପରିମାଣରେ କମିଯାଇଥାଏ । ଖେଳ, ସାଙ୍ଗସାଥୀ, ଦୂରଦର୍ଶନ ଏବଂ ଅଧ୍ୟୟନ ଅଧିକରୁ ଅଧିକ ସମୟ ନିଏ । ସାଙ୍ଗସାଥିମାନଙ୍କ ପ୍ରଭାବ ଆଶାତୀତ ପରିମାଣରେ ବୃଦ୍ଧିପାଇଲେ ମଧ୍ୟ ପରିବାର ଏବଂ ପିତାମାତାଙ୍କ ପ୍ରଭାବ ଗଭୀର ରହିଥାଏ । ଥରେ ସମ୍ବାଦ ପତ୍ର ମାଧ୍ୟମରେ ପିଲାମାନଙ୍କୁ ଗୋଟିଏ ବିଷୟରେ ଲେଖିବା ପାଇଁ ଉତ୍ସାହିତ କରାଗଲା । ବିଷୟବସ୍ତୁ ଥିଲା- ''ମା'ବଡ଼ କାହିଁକି ?'' ଅଧିକାଂଶ ପିଲାମାନଙ୍କର ଲେଖାରୁ ଯେଉଁ ନିର୍ଯ୍ୟାସ ସୂଚିତ ହେଲା, ତାହା ମା' ଭୂମିକାର ଗୁରୁତ୍ୱକୁ ସ୍ପଷ୍ଟ କରେ । ''ମା ସବୁବେଳେ ମୋ କଥା ଶୁଣେ ଏବଂ ମୁଁ କ'ଣ ଅନୁଭବ କରୁଛି ସେ ଜାଣିପାରେ'' ପରି ବକ୍ତବ୍ୟମାନ ଗଭୀର ସମ୍ପର୍କର ସ୍ପଷ୍ଟ ସୂଚକ । ପରିବାର ବନ୍ଧୁ ଭାବରେ ଶିଶୁ ବିକାଶକୁ ପ୍ରଭାବିତ କରେ ।

ଅବଶ୍ୟ ପ୍ରାକ୍-ବିଦ୍ୟାଳୟ ସ୍ତରର ପିଲାମାନଙ୍କ ପାଇଁ ପିତାମାତା ଯଥେଷ୍ଟ ସମୟ ଦିଅନ୍ତି । ଶିଶୁର ଯତ୍ନ ନେବା ମାଧ୍ୟମରେ ସଂସର୍ଗ ସମୟର ପରିମାଣ ଅଧିକ ରହିଥାଏ । ଖାଦ୍ୟପେୟ, ପୋଷାକ, ପରିଚ୍ଛନ୍ନତା ଏବଂ ଅନ୍ୟସବୁ ଯତ୍ନ ନେବା ସହିତ ଆଚରଣଗତ ସୌଷ୍ଠବ, ରାତିରେ ଶୋଇବା ସମୟରେ ନିୟମାନୁବର୍ତ୍ତିତା, ସାନଭାଇଭଉଣୀମାନଙ୍କ ସହିତ କଳିଗୋଳ ନ କରିବା ଏବଂ ଖାଇବା ସମୟରେ କେତେକ ନିୟମ ପାଳନ କରିବା ଉପରେ ଦୃଷ୍ଟି ଦେବାକୁ ହୋଇଥାଏ । ପ୍ରାକ୍-ବିଦ୍ୟାଳୟ ସ୍ତରର ପରବର୍ତ୍ତୀ ପର୍ଯ୍ୟାୟ (ଛ'ବର୍ଷରୁ ଏଗାର ବାର ବର୍ଷ)ରେ ଏହା ସହିତ ଅନ୍ୟ କେତୋଟି ଦିଗ ପ୍ରତି ପିତାମାତାଙ୍କୁ ଦୃଷ୍ଟିଦେବାକୁ ହୁଏ । ପିଲାମାନେ ଘରର କି କି କାର୍ଯ୍ୟର ଦାୟିତ୍ୱ ନେବେ ଏବଂ ପରିବାର ବାହାରେ ସ୍କୁଲରେ ଓ ବନ୍ଧୁମାନଙ୍କ ସହିତ କିପରି ଭାବରେ ସମୟ ଅତିବାହିତ କରାଯାଉଛି, ସେଥିପ୍ରତି ସତର୍କ ଦୃଷ୍ଟିଦେବାକୁ ହୁଏ । ବିଶେଷତଃ କେଉଁ ବନ୍ଧୁମାନଙ୍କ ସହିତ କିପରି ଭାବରେ କେଉଁଠାରେ ସମୟ ଅତିବାହିତ କରାଯାଉଛି, ପିତାମାତା ସେସବୁର ତଦାରଖ କରନ୍ତି ।

ସ୍କୁଲ-ବୟସର ଆଦ୍ୟ ଭାଗରେ ପିଲାର ପିତାମାତାଙ୍କ ସହ ପାରସ୍ପରିକ କ୍ରିୟାକଳାପର ଗୁଣାତ୍ମକ ପରିବର୍ତ୍ତନ ଘଟେ । ପିଲାମାନଙ୍କର ଯତ୍ନନେବା ପରିବର୍ତ୍ତେ ପିଲାଙ୍କୁ ଶିକ୍ଷା ଦେବା, ପିଲାମାନଙ୍କ ପାଖରେ କିଛି ପଢ଼ି ଶୁଣାଇବା, ପିଲାଙ୍କ ସହିତ କଥାବାର୍ତ୍ତା ହେବା ଏବଂ ପିଲାଙ୍କ ସହିତ ଖେଳାଖେଳି କରିବାରେ ସମୟ କଟେ ।

କେତେକ କ୍ଷେତ୍ରରେ ପିତାମାତାଙ୍କର ଉଦ୍‌ବେଗ ଅଧିକ ମାତ୍ରାରେ ପ୍ରକାଶ୍ୟ ରୂପନିଏ । ସ୍କୁଲ କାର୍ଯ୍ୟରେ ପିଲାଟି କିପରି ଅଗ୍ରଗତି ଦର୍ଶାଉଛି, ସେ ବିଷୟରେ ଚିନ୍ତା କରନ୍ତି । ବିଶେଷତଃ ପିଲାଟି ସ୍କୁଲ କାର୍ଯ୍ୟରେ ଏବଂ ପାଠପଢ଼ାରେ ଅନାଗ୍ରହ ଦର୍ଶାଉଥିଲେ ଏବଂ ସ୍କୁଲ ଯିବାକୁ ଚାହୁଁନଥିଲେ ପିତାମାତା ବ୍ୟଥିତ ହୁଅନ୍ତି । କେଉଁମାନଙ୍କ ସହ ବନ୍ଧୁତ୍ୱ ରକ୍ଷାକରିବା ଉଚିତ ହେବ ଏବଂ କେଉଁମାନଙ୍କଠାରୁ ଦୂରରେ ରହିବାକୁ ହେବ, ସେ ବିଷୟରେ ମନ୍ତବ୍ୟ ପ୍ରକାଶ କରିନ୍ତି ।

## ପାରିବାରିକ ସଂହତି ଓ ଶୃଙ୍ଖଳା

ପ୍ରତି ପରିବାରରେ ବିଶେଷ ଆଭିମୁଖ୍ୟ ଥାଏ ପାରିବାରିକ ସଂହତି (Harmony) ଏବଂ ଶୃଙ୍ଖଳା (Discipline) ବଜାୟ ରଖିବା । ଅନେକ ସମୟରେ ଶୃଙ୍ଖଳା କହିଲେ ଅଧିକାଂଶ ଲୋକ କଟକଣା କିମ୍ବା ଶାସ୍ତିବିଧାନ (Punishment)କୁ ବୁଝିଥାନ୍ତି । ମାତ୍ର ଏହା ଶୃଙ୍ଖଳାର ପ୍ରକୃତ ଅର୍ଥ ନୁହେଁ । ଏପରି ଶୃଙ୍ଖଳାର ଇଂରାଜୀ ଶବ୍ଦଟି ଯେଉଁ ମୂଳ ଲାଟିନ୍ ଶବ୍ଦରୁ ଆସିଛି, ତାହାର ପ୍ରକୃତ ଅର୍ଥ ହେଉଛି ଜ୍ଞାନ (Knowledge)। ପରିବାରରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ପାଇଁ ପିତାମାତା ଇଚ୍ଛା କରନ୍ତି । ମାତ୍ର ଅନେକ ସମୟରେ ସେମାନେ ଅନୁପଯୋଗୀ କୌଶଳର ବ୍ୟବହାର କରନ୍ତି । କଟକଣା ଏବଂ ଶାସ୍ତିବିଧାନକୁ ସଂହତି ଓ ଶାନ୍ତିରକ୍ଷାର ଏକମାତ୍ର ଉପାୟ ଭାବି ନିଅନ୍ତି ।

ପ୍ରକୃତରେ ସଂହତି ରକ୍ଷାପାଇଁ ଏକାଧିକ ଉପଯୋଗୀ କୌଶଳ ରହିଛି । ପିଲାମାନଙ୍କୁ ଯଥାସମ୍ଭବ ଭଲକାର୍ଯ୍ୟ ପାଇଁ ପ୍ରୋତ୍ସାହନ (Reinforcement or Reward) ଦେବା ସବୁଠାରୁ ପ୍ରଭାବଶାଳୀ କୌଶଳ । ମନେ ରଖିବାକୁ ହେବ ଯେ ଏ ବୟସର ଶିଶୁମାନଙ୍କ ପାଇଁ ଭୌତିକ ପ୍ରୋତ୍ସାହନ ବା ପୁରସ୍କାର (ଯଥା-ଉପହାର ଓ ଟଙ୍କାପଇସା) ବଦଳରେ ପରୋକ୍ଷ ପ୍ରୋତ୍ସାହନ ଅଧିକ କାର୍ଯ୍ୟକରେ । ପ୍ରଶଂସା ଓ ଅନୁମୋଦନର ମନ୍ତବ୍ୟ ବେଶୀ ଉପଯୋଗୀ ହୋଇଥାଏ । ('ବାଃ ? କି ସୁନ୍ଦର କାମ କରିଛୁ')

ଅବାଂଛିତ ବ୍ୟବହାରର ବିଲୋପ ପାଇଁ ଏକାଧିକ ପନ୍ଥା ରହିଛି । ଗୋଟିଏ ବେଶ୍ ପ୍ରଭାବଶାଳୀ ପନ୍ଥା ହେଉଛି ପୂର୍ବର ସୁବିଧା ସୁଯୋଗର ପ୍ରତ୍ୟାହାର (Withdrawal of Privilege)। ମନେକରାଯାଉ ପିଲାଟି ହାତ ନଧୋଇ ଖାଇବାକୁ ଜିଦ୍ ଧରୁଛି । ଏ କ୍ଷେତ୍ରରେ ପିତାମାତା ଶାସ୍ତି ନ ଦେଇ କହିପାରନ୍ତି "ହାତ ନଧୋଇଲେ ଆମ ସହିତ ଖାଇବୁ ନାହିଁ ।" ଅଧିକାଂଶ ପିଲା ପିତାମାତାଙ୍କ ସହିତ ବିଶେଷ କରି ମା'ଙ୍କ ସହିତ ଖାଇବାକୁ ଭଲପାଆନ୍ତି । ଏପରି ସୁଯୋଗରୁ ବଞ୍ଚିତ ହେବାର ଭୟ ନିଶ୍ଚୟ କାର୍ଯ୍ୟ କରିବ । ଶାରୀରିକ ଦଣ୍ଡ ଦେବା ପରିବର୍ତ୍ତେ ଏପରି ପୂର୍ବ ସୁଯୋଗ କାଢ଼ି ନେବାର ଭୟ ଦେଖାଇବା ଭଲ କାମ କରିଥାଏ ।

ଅନ୍ୟ କେତୋଟି ବିକଳ୍ପ ପନ୍ଥାର ସୂଚନା ଦିଆଯାଇପାରେ । କେତେକ ସ୍ଥଳରେ ପିଲାର ଆତ୍ମମର୍ଯ୍ୟାଦାକୁ ସ୍ପର୍ଶ କଲାଭଳି ମନ୍ତବ୍ୟର ଆଶ୍ରୟ ନିଆଯାଇପାରେ । ('ତୋ ଭଳି ପିଲା ଏପରି କରନ୍ତି ନାହିଁ କି') । ଖରାପ ବ୍ୟବହାର ପାଇଁ ପିଲାଟି ଅନୁତପ୍ତ ହେବାର ପରିବେଶ ସୃଷ୍ଟି କରାଯାଇପାରେ । (ବୟସ୍କ ଲୋକମାନେ ବସ୍‌ରେ ଠିଆ ହୋଇଥିବା ବେଳେ ତୋର ବସିପଡିବା କ'ଣ ଭଲ ଦିଶୁଥିଲା ?) ହାସ୍ୟରସ ସୃଷ୍ଟି କରିବା ମାଧ୍ୟମରେ କିଛିଟା

ପରିବର୍ତ୍ତନର ସମ୍ଭାବନା ଆଶା କରାଯାଏ (ତୋର ଗାଧୋଇବା ଯଦି ଦରକାର ନାହିଁ, ଗାଧୁଆ ଘର କରି ବାପା ପଇସା ନଷ୍ଟ କରିଛନ୍ତି) । ଅନ୍ୟ ସ୍ଥଳରେ ବ୍ୟବହାରର କୁପରିଣତି ପ୍ରତି ଦୃଷ୍ଟି ଆକର୍ଷଣ କରାଯାଇ ବ୍ୟବହାର-ପରିବର୍ତ୍ତନର ଉଦ୍ୟମ କରାଯାଇପାରେ । (କାଲି ରାତିରେ ଏତେ ଡେ଼ରି ଟେଲିଭିଜନ ଦେଖିଲୁ ଯେ ଆଜି ବିଳମ୍ବରେ ଉଠି ସ୍କୁଲବସ୍ ଧରିପାରିଲୁ ନାହିଁ । ଆଜି ଚାଲି ଚାଲି ଯାଇ କଷ୍ଟ ପାଇଲେ ଜାଣିବୁ ।)

ଉପର ସୂଚନା ଅନୁଯାୟୀ ପିତାମାତା ଯଥାସମ୍ଭବ ଶାସ୍ତିବିଧାନ ପରିବର୍ତ୍ତେ ଅନ୍ୟସବୁ କୌଶଳ ଅବଲମ୍ବନ କରିବା ବାଞ୍ଛନୀୟ । ସ୍ଥଳବିଶେଷରେ ସାମାନ୍ୟ ଦଣ୍ଡବିଧାନ ଅପରିହାର୍ଯ୍ୟ ହୋଇପାରେ । ସେ କ୍ଷେତ୍ରରେ କେତୋଟି ସତର୍କତା ଅବଲମ୍ବନ କରିବାକୁ ହେବ । ପିଲାଟି କାହିଁକି ଶାସ୍ତି ପାଉଛି, ତାହାର କାରଣ ସ୍ପଷ୍ଟ ଭାବରେ ସୂଚାଇବାକୁ ହେବ । ଦ୍ୱିତୀୟତଃ ଖରାପ ବ୍ୟବହାର ପରେ ପରେ (ଅଳ୍ପ ସମୟ ବ୍ୟବଧାନରେ) ଶାସ୍ତି ଦେବାକୁ ପଡ଼ିବ । ଶାସ୍ତି ଦେବା ସମୟରେ ସ୍ଥିରତା (Consistency) ଆବଶ୍ୟକ । ଗ୍ଲୋବ୍‌ଟିଏ ଭାଙ୍ଗିଦେବା ଏକ ଦଣ୍ଡନୀୟ ବ୍ୟବହାର ହୋଇଥିଲେ ସବୁ ସମୟରେ ଏବଂ ସବୁ ପିଲାକୁ ଏପରି ଦଣ୍ଡ ଦିଆଯିବା ବିଧେୟ । ଆଜି ଶିକ୍ଷକ ଗୋଟିଏ ପିଲାକୁ ଏପରି ଅପରାଧ ପାଇଁ ଦଣ୍ଡଦେଲେ ମାତ୍ର କାଲି ନିଜେ କାର୍ଯ୍ୟବ୍ୟସ୍ତ ରହି ଏଡ଼େଇ ଗଲେ- ଏପରି ଦଣ୍ଡବିଧାନ ନୀତି ଜଟିଳତା ସୃଷ୍ଟି କରିବ । ପୁଣି ଜାତି, ଧର୍ମ ଶ୍ରେଣୀ ନିର୍ବିଶେଷରେ ସମାନ ଅପରାଧ ପାଇଁ ସମସ୍ତେ ଏକାଭଳି ଶାସ୍ତି ପାଇବା ଉଚିତ ହେବ । ପୁଣି ଦୋଷୀକୁ ଚାହିଁ ଦଣ୍ଡ ଯଥୋଚିତ ହେବା ଆବଶ୍ୟକ । ପରିଶେଷରେ ମନେରଖିବାକୁ ହେବ ଯେ କେବଳ ଦଣ୍ଡବିଧାନ ନକରି ପୁରସ୍କାର ଓ ତିରସ୍କାର ମିଶାମିଶି ପ୍ରୟୋଗ କରିବା ପ୍ରଭାବଶାଳୀ ହେବ । ଗୋଟିଏ ଉଦାହରଣ ଦ୍ୱାରା ଏହାକୁ ସ୍ପଷ୍ଟ କରାଯାଇପାରେ । ମନେକରାଯାଉ ଗୋଟିଏ ପିଲା ପ୍ରତିଦିନ ବିଳମ୍ବରେ ଶ୍ରେଣୀକୁ ଆସୁଛି । ଲକ୍ଷ୍ୟକଲେ ଦେଖାଯିବ ଯେ, ପିଲାଟିର ବିଳମ୍ବତାର ପରିମାଣ ଭିନ୍ନ ଭିନ୍ନ ହେଉଛି । ଗୋଟିଏ ଦିନ ୧୫ ମିନିଟ୍ ବିଳମ୍ବ ହେବା ସ୍ଥଳେ ଅନ୍ୟ ଦିନ ୨୫ ମିନିଟ୍ ଏବଂ ଅନ୍ୟ ଦିନ ୩୦ ମିନିଟ୍ ବିଳମ୍ବ ହେଉଛି । ଏ କ୍ଷେତ୍ରରେ ୧୫ ମିନିଟ୍‌ର ଡେ଼ରି ଏକ ପ୍ରକାର ବିଳମ୍ବ ହେଲେ ମଧ ପିଲାଟିକୁ ଏପରି ମନ୍ତବ୍ୟ ଦିଆଯାଇପାରେ-"ବାଃ । ଆଜି ତୋର ଡେ଼ରିର ପରିମାଣ ବେଶ୍ କମିଛି । ଆଜି ଯଦି ଏପରି କରିପାରିଲୁ, କାଲି ମଧ କରିପାରିବୁ ।" ଲକ୍ଷ୍ୟ କରିବାର କଥା ଯେ ପିଲାଟି ବିଳମ୍ବ କରିଥିଲେ ମଧ ବିଳମ୍ବର ମାତ୍ରା କମ୍ ଥିବାରୁ ପ୍ରଶଂସାସୂଚକ ମନ୍ତବ୍ୟ ଦିଆଯିବ । ଏହାର ପୁନରାବୃତ୍ତି ଫଳରେ ବିଳମ୍ବତାର ପରିମାଣ କମିଯିବ ଏବଂ ପୁନଶ୍ଚ ପୂରାପୂରି ଠିକ୍ ସମୟରେ ହିଁ ପ୍ରୋତ୍ସାହନ ଦିଆଯିବ । ଅନ୍ୟ ଭାଷାରେ କହିଲେ ସବୁ ମାତ୍ରାର ବିଳମ୍ବତାକୁ ଦଣ୍ଡନୀୟ ମନେକରି ସବୁବେଳେ ଶାସ୍ତି ବିଧାନ କଲେ ସୁଫଳ ମିଳିନଥାଏ । ସୁତରାଂ ପ୍ରଶଂସା ଓ ଦଣ୍ଡ ବିବେଚନା କରି ପ୍ରୟୋଗ କରିବାକୁ ହେବ ।

ଅବାଂଛିତ ବ୍ୟବହାରର ପରିବର୍ତ୍ତନ ପ୍ରଚେଷ୍ଟା ସହିତ ପରିବାରରେ ସଂହତି ରକ୍ଷା ଅନ୍ୟତମ ଆଭିମୁଖ୍ୟ ହୋଇଥାଏ । ପିତାମାତା ଅନୁଭବ କରନ୍ତି ଯେ, ପିଲାମାନେ ଏ ବୟସରେ କିଛି ପରିମାଣରେ ନିଷ୍ପତ୍ତି ଗ୍ରହଣର ସାମର୍ଥ୍ୟ ହାସଲ କରିଛନ୍ତି । ସୁତରାଂ ଏପରି ବୟସର ପିଲାମାନଙ୍କ ପାଇଁ ଯେଉଁପ୍ରକାର ନିୟନ୍ତ୍ରଣ (Control) କୌଶଳ ଉପଯୋଗୀ, ତାହା ହେଉଛି ଯୁଗ୍ମ ନିୟନ୍ତ୍ରଣ (Coregulation)।

ଯୁଗ୍ମ ନିୟନ୍ତ୍ରଣର ଅର୍ଥ ହେଉଛି ଯେ ପିତାମାତା ପିଲାମାନଙ୍କର ସାମର୍ଥ୍ୟ ପ୍ରତି ସ୍ୱୀକୃତି ମନୋଭାବ ଦର୍ଶାଇବେ । ପ୍ରତି ମୁହୂର୍ତ୍ତରେ ଏବଂ ପ୍ରତି କଥାରେ ପିଲାମାନଙ୍କୁ ନିର୍ଦ୍ଦେଶ ଦେବେ ନାହିଁ । ତଥାପି ଦୂରତ୍ୱ ରକ୍ଷାକରି ପିତାମାତା ସତର୍କ ଦୃଷ୍ଟିରଖିବେ ଏବଂ ପରାମର୍ଶ ଦେବେ । ସାମଗ୍ରିକ ପରିଚାଳନାର ଦାୟିତ୍ୱ ପିତାମାତାଙ୍କ ହାତରେ ନ୍ୟସ୍ତ ହେଲେ ମଧ୍ୟ ନିତିଦିନିଆ ଛୋଟକାଟିଆ ବିଷୟରେ ପିଲାମାନେ ନିଷ୍ପତ୍ତି ନେବେ । ପିଲାଟି କେଉଁ ପୋଷାକ ପିନ୍ଧିବ, କେଉଁ ଖାଦ୍ୟ ଖାଇବ ଏବଂ କେଉଁ ରଙ୍ଗର ଜୋତା ବ୍ୟବହାର କରିବ-ସବୁ ବିଷୟରେ ପିତାମାତା ହସ୍ତକ୍ଷେପ ନ କରିବା ବାଞ୍ଛନୀୟ ହେବ । ଅନ୍ୟ ପକ୍ଷରେ ପିଲାମାନେ କେତେ ସମୟ ବାହାରେ ରହିବେ, କେଉଁମାନଙ୍କ ସହ ମିଶିବେ ଏବଂ କିପରି ପଇସା ଖର୍ଚ୍ଚକରିବେ, ଏସବୁ ବିଷୟରେ ପିତାମାତାଙ୍କର ନିୟନ୍ତ୍ରଣ ରହିବ । ସମନ୍ୱୟ ରକ୍ଷାକରି ପିତାମାତା ଏବଂ ସନ୍ତାନସନ୍ତତି ଯୁଗ୍ମ ବା ମିଳିତଭାବରେ ନିଷ୍ପତ୍ତି ଗ୍ରହଣ କଲେ ପାରିବାରିକ ସଂହତି ବିକଶିତ ହୁଏ ।

ପାରିବାରିକ ସଂହତି ପରିପ୍ରେକ୍ଷୀରେ ପରିବାର ମଧ୍ୟରେ ଭାଇଭଉଣୀମାନଙ୍କ ପାରସ୍ପାରିକ ସମ୍ପର୍କର ମଧ୍ୟ ଭୂମିକା ରହିଛି । ଏହାର ପ୍ରଭାବ ଦୁଇଟି ରୂପରେ କାର୍ଯ୍ୟକାରୀ ହୁଏ । ପ୍ରଥମତଃ ପ୍ରତ୍ୟକ୍ଷ ଭାବରେ ଗୋଟିଏ ପିଲା ନିଜର ଭାଇ କିମ୍ବା ଭଉଣୀ ସହିତ ସମ୍ପର୍କ ରକ୍ଷା କରିବାର କାରବାର ମଧ୍ୟରୁ କିଛି ଶିକ୍ଷା କରିଥାଏ । ପୁଣି ପରୋକ୍ଷ ଭାବରେ ସେ ପିତାମାତାଙ୍କର ବ୍ୟବହାର ଲକ୍ଷ୍ୟ କରେ । ପିତାମାତା ତା'ର ଭାଇଭଉଣୀମାନଙ୍କୁ କିପରି ବ୍ୟବହାର ଦର୍ଶାଉଛନ୍ତି, ଏହି ପର୍ଯ୍ୟବେକ୍ଷଣ ତା'ର ବ୍ୟବହାରକୁ ପ୍ରଭାବିତ କରେ । ଅନେକ ସମୟରେ ପିତାମାତା କିମ୍ବା ଏମାନଙ୍କ ମଧ୍ୟରୁ କେହି ଜଣେ ତା'ର ଭାଇ କିମ୍ବା ଭଉଣୀ ସହିତ ପକ୍ଷପାତୀ ବ୍ୟବହାର ଦର୍ଶାଇଲେ ସେ ପ୍ରଭାବିତ ହୁଏ ।

ପରିବାରର ପିଲାମାନଙ୍କ ମଧ୍ୟରେ କଳିଗୋଳ ଏବଂ ପାଟିତୁଣ୍ଡ ହେବା ସ୍ୱାଭାବିକ । ମାତ୍ର ଏହା ବେଶୀ ସମୟ ରହିନଥାଏ । ସେମାନେ ଜାଣନ୍ତି ଯେ ପ୍ରତି ମୁହୂର୍ତ୍ତରେ ଏବଂ ପ୍ରତିଦିନ ସେମାନଙ୍କର ଦେଖାସାକ୍ଷାତ ହେବ । ସୁତରାଂ ମାନସିକ ଚାପ ସେମାନେ ଅଧିକ ସମୟ ଧରିରଖନ୍ତି ନାହିଁ । ଏ ଦୃଷ୍ଟିରୁ ପରିବାର ଭବିଷ୍ୟତର ଦ୍ୱନ୍ଦ୍ୱ ସମାଧାନ ପାଇଁ ଏକ ପ୍ରାକୃତିକ ପରୀକ୍ଷାଗାର । ଏଠାରେ ସେମାନେ ସମାଧାନର ଯେଉଁସବୁ କୌଶଳ ଅବଲମ୍ବନ କରନ୍ତି, ତାହା ଭବିଷ୍ୟତ ଜୀବନରେ ସହାୟକ ହୁଏ ।

ବଡ଼ଭାଇ ବା ଭଉଣୀ ଛୋଟମାନଙ୍କର ଦାୟିତ୍ୱ ନେବା କାର୍ଯ୍ୟ ମାଧ୍ୟମରେ ସମାନାନୁଭୂତି (Empathy) ଏବଂ ସହାନୁଭୂତି (Sympthy) ଶିକ୍ଷା କରନ୍ତି । ସାହାଯ୍ୟ କରିବାର ମନୋଭାବ ମଧ୍ୟ ଶିକ୍ଷା କରନ୍ତି । ଅବଶ୍ୟ ଭାଇ-ଭଉଣୀ କିମ୍ବା ଭଉଣୀ-ଭଉଣୀ ବିବାଦ ଅପେକ୍ଷା ଭାଇ-ଭାଇ ବିବାଦ ଅଧିକ ମାତ୍ରାରେ ଦେଖାଯାଇଥାଏ । ସେହିପରି ପିତାମାତା ସବୁ ପିଲାମାନଙ୍କ ସହିତ ସମାନ ପ୍ରକାର ବ୍ୟବହାର କରିନଥାନ୍ତି । ପରିବାରରେ ମା' ବଡ଼ପୁଅ ବା ବଡ଼ଝିଅ ସହିତ ଅଧିକ ସମୟ ଦେବାର ଦେଖାଯାଏ । ସେହିପରି ଆମ ସମାଜରେ ପିତାମାତା ଝିଅ ଅପେକ୍ଷା ପୁଅକୁ କେତେକ କ୍ଷେତ୍ରରେ ଅଗ୍ରାଧିକାର ଦିଅନ୍ତି । ଏପରି ପକ୍ଷପାତିତ୍ୱ ସଂହତି ରକ୍ଷାର ଅନ୍ତରାୟ ହୁଏ । ଅବଶ୍ୟ ଆଜିକାଲି ଏକ ସନ୍ତାନ ବିଶିଷ୍ଟ ପରିବାରର ସଂଖ୍ୟା ବୃଦ୍ଧିପାଉଛି । ତଥାପି ଏକାଧିକ ସନ୍ତାନଥିବା ପରିବାରରେ ସମ୍ପର୍କର ପରିଚାଳନା କ୍ଷେତ୍ରରେ ପିତାମାତାଙ୍କୁ ସତର୍କ ଦୃଷ୍ଟିଦେବାକୁ ହେବ ।

## ପରିବର୍ତ୍ତିତ ଜୀବନଶୈଳୀ

ଏହା ସହଜରେ ଅନୁମେୟ ଯେ ଆଧୁନିକ ଯୁଗରେ ଜୀବନ ଶୈଳୀର ବହୁ ପରିବର୍ତ୍ତନ ଘଟିଛି । ବହୁ ସଂଖ୍ୟାର ନାରୀମାନେ ଗୃହପରିଚାଳନା କାର୍ଯ୍ୟମଧ୍ୟରେ ସୀମିତ ନରହି କର୍ମଜୀବୀର ଭୂମିକା ଆବୋରି ନେଉଛନ୍ତି । ଏକାନ୍ନବର୍ତ୍ତୀ ପରିବାରର ସଂଖ୍ୟା ଦ୍ରୁତଗତିରେ ହ୍ରାସ ପାଇଛି । ଛୋଟ ପରିବାର ଅଳ୍ପସଂଖ୍ୟକ ସନ୍ତାନସନ୍ତତି ଏବଂ କର୍ମଜୀବୀ ମହିଳାଙ୍କ ସଂଖ୍ୟା ପରିବାରର ରୂପରେଖକୁ ସମ୍ପୂର୍ଣ୍ଣ ପରିବର୍ତ୍ତନ କରିଛି ।

ପରିବର୍ତ୍ତିତ ପରିବାର ପରିପ୍ରେକ୍ଷୀରେ ଯେଉଁ ପ୍ରଶ୍ନଟି ସବୁଠାରୁ ଅଧିକ ଆଲୋଚିତ ହୋଇଛି ତାହାହେଉଛି–''କର୍ମଜୀବୀ ମହିଳା ଜଣେ ଭଲ ଜନନୀ ହୋଇପାରିବ କି ?''

ଏ ପ୍ରଶ୍ନର ଉତ୍ତର ପାଇଁ ଦେଶ ବିଦେଶର ବହୁସଂଖ୍ୟାକ ସର୍ବେକ୍ଷଣ କରାଯାଇଛି । ଦେଖାଯାଇଛି ଯେ ନାରୀର କର୍ମସଂସ୍ଥାନ ପାରିବାରିକ ସଂହତିର ଅନ୍ତରାୟ ଉତ୍କଟ ନୁହେଁ । ବରଂ ନାରୀର ଆର୍ଥିକ ସ୍ୱାଧୀନତା ଏବଂ ସ୍ୱାଭିମାନ ତାର ସମନ୍ୱୟଶୀଳତାକୁ ସମୃଦ୍ଧ କରେ । ନାରୀ ନିଜର କାର୍ଯ୍ୟକ୍ଷେତ୍ରକୁ କର୍ମସନ୍ତୋଷ ଲାଭ କରୁଥିଲେ ତାହା ପାରିବାରିକ ଜୀବନକୁ ମଧ୍ୟ ଶାନ୍ତିପ୍ରଦ କରେ ।

ଶିଶୁପାଳନ ପରିପ୍ରେକ୍ଷୀରେ ଦେଖାଯାଇଛି ଯେ, କର୍ମଜୀବୀ ମହିଳା ଶିଶୁକୁ ଦେଉଥବା ସମୟର ପରିମାଣ ତୁଳନାରେ ସମୟର ଗୁଣାତ୍ମକ ଦିଗ ଖୁବ୍ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ଜନନୀ ଶିଶୁ ସହ ଯେଉଁ ସମୟ ଅତିବାହିତ କରୁଛି, ତାହାର ଗୁଣାତ୍ମକ ଦିଗ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । କର୍ମସଂସ୍ଥାରୁ ଫେରିବା ପରେ ମା' ଶିଶୁକୁ କେଉଁ ସବୁ ପ୍ରଶ୍ନ ପଚାରୁଛି ଏବଂ କେଉଁ କେଉଁ କାର୍ଯ୍ୟରେ ଲିପ୍ତ ରହୁଛି, ସେସବୁ ଗୁରୁତ୍ୱପୂର୍ଣ୍ଣ । ଶିଶୁଟି ସହିତ କଥାବାର୍ତ୍ତା କରିବା ସମୟରେ ମା'ର ଆଗ୍ରହ ମହତ୍ତ୍ୱପୂର୍ଣ୍ଣ । ଶିଶୁର କ୍ରିୟାକର୍ମରେ ଆଗ୍ରହ ପ୍ରକାଶ କରିବା ଏକ ଉପଯୋଗୀ ଶୈଳୀ । କେବଳ 'ହଁ' 'ନାହିଁ'ରେ ଉତ୍ତର ଦେଇ ହେଉଥିବା ପ୍ରଶ୍ନ ନ ପଚାରି ବର୍ଣ୍ଣନାତ୍ମକ ପ୍ରଶ୍ନ ପଚାରିବା ଏବଂ ବିଜ୍ଞତାପୂର୍ଣ୍ଣ କାର୍ଯ୍ୟ । ଶିଶୁର ସମୟ କିପରି କଟିଛି ? ସାଙ୍ଗସାଥିମାନଙ୍କ ସହିତ କ'ଣ କ'ଣ ଖେଳ ହେଲ ହେଲା ? ସ୍କୁଲରେ କ'ଣ ହେଲା ? କେଉଁ ପ୍ରକାର ମଜା ଶିଶୁକୁ ଭଲ ଲାଗିଲା ? ଏପରି ସବୁ ପ୍ରଶ୍ନ ମାଧ୍ୟମରେ ପାରସ୍ପରିକ କ୍ରିୟା ଅନୁକ୍ରିୟା (Interaction)ର ଗୁଣାତ୍ମକ ଦିଗ ସମୃଦ୍ଧ କରାଯାଇପାରେ । ସୁତରାଂ ବିଜ୍ଞତାର ସହିତ ସମୟ ପରିଚାଳନା କଲେ କର୍ମଜୀବୀ ମହିଳା ଜଣେ ଆଦର୍ଶ ଜନନୀ ହୋଇପାରିବ ।

ଅବଶ୍ୟ କର୍ମଜୀବୀ ମହିଳା ପରିପ୍ରେକ୍ଷୀରେ ସମସ୍ୟା ଯେ ଆଦୌ ନାହିଁ, ତାହା କହିହେବ ନାହିଁ । ବିଶେଷତଃ କର୍ମସଂସ୍ଥାନରେ ସନ୍ତୋଷ ନଥିଲେ ତାହାର କୁପରିଣତି ପରିବାରରେ ପ୍ରତିଫଳିତ ହୁଏ । ମନରେ ପୁଞ୍ଜିଭୂତ ଅସନ୍ତୋଷଟିକୁ ପ୍ରକାଶ କରିବା ପାଇଁ ବେଳେ ବେଳେ ମହିଳା ନିଜର ପୁତ୍ରକନ୍ୟାଙ୍କ ଉପରେ ନିଜର ରାଗ ଓ କ୍ରୋଧ ପ୍ରକାଶ କରିପାରନ୍ତି । ପୁଣି ପତିପତ୍ନୀ ଦୁହେଁ କର୍ମସଂସ୍ଥାନରୁ ବିଳମ୍ବିତ ସନ୍ଧ୍ୟାରେ (ପ୍ରାୟ ସଂଧ୍ୟା ୬/୭ଟା ପରେ) ଫେରୁଥିଲେ ପିଲାମାନେ ସ୍କୁଲ ସମୟରୁ ଆରମ୍ଭ କରି ସଂଧ୍ୟା ୭ଟା ପର୍ଯ୍ୟନ୍ତ ଏମାନଙ୍କୁ ଦେଖି ନଥାନ୍ତି । ଗ୍ରୀଷ୍ମ ଅବକାଶ ସମୟରେ ସକାଳୁ ସଂଧ୍ୟା ୭ଟା ପର୍ଯ୍ୟନ୍ତ ବାପ ମା'ଙ୍କୁ ଦେଖିନଥାନ୍ତି । ଛୋଟ ପରିବାରରେ ଏମାନେ ସ୍କୁଲଛୁଟି ହେବା ପରେ ଚାବିଖୋଲି

ଘର ମଧ୍ୟରେ ପ୍ରବେଶ (Latchkey) କରନ୍ତି । ଏପରି ଚାବିଧରା ପିଲାମାନଙ୍କର ବହୁ ଆଚରଣରେ ସମସ୍ୟା ସୃଷ୍ଟି ହୁଏ ।ଏମାନଙ୍କର ସମସ୍ୟା ଅନ୍ୟତ୍ର ବାକ୍ସରେ ଦିଆଯାଇଛି ।

## ଅନ୍ୟ ସଂସ୍କୃତିରୁ ସତର୍କବାଣୀ : ଚାବିଧରା ପିଲା

*କର୍ମଜୀବୀ ମହିଳା ମଧ୍ୟ ଆଦର୍ଶ ଜନନୀ ହୋଇପାରିବେ, ଏଥିରେ ସନ୍ଦେହ ନାହିଁ । ଗବେଷଣାରୁ ଜଣାଯାଏ ଯେ ପିଲାମାନଙ୍କ ସହିତ କର୍ମଜୀବୀ ମହିଳା କେତେ ପରିମାଣରେ ସମୟ ବିତାଉଛନ୍ତି, ତାହା ତୁଳନାରେ ବିତାଯାଉଥିବା ସମୟର ଗୁଣାତ୍ମକ ଦିଗ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ସମୟକୁ ପ୍ରୀତିପ୍ରଦ ଏବଂ ଅର୍ଥପୂର୍ଣ୍ଣ ଭାବରେ ବିନିଯୋଗ କରିପାରିଲେ କର୍ମଜୀବୀ ମହିଳା ଆଦର୍ଶ ଜନନୀ ହୋଇପାରିବେ । ଏପରି ସମ୍ଭାବନା ସତ୍ତ୍ୱେ ଗୋଟିଏ ପରିବାରରେ ପୁରୁଷ ଓ ନାରୀ କର୍ମଜୀବୀ ହୋଇଥିଲେ କେତେକ ଜଟିଳତାର ସମ୍ଭାବନା ରହିଛି । ବିଶେଷତଃ ପାଶ୍ଚାତ୍ୟ ଦେଶମାନଙ୍କରେ ଏକ ବିଚିତ୍ର ଘଟଣାର ଫଳାଫଳ ଲକ୍ଷ୍ୟ କରାଯାଇଛି । ପରିବାରରେ ପୁରୁଷ ଓ ନାରୀ କର୍ମସଂସ୍ଥାନକୁ ଚାଲିଗଲେ କେବେକେବେ ପିଲାମାନେ ସ୍କୁଲରୁ ଫେରିବା ପରେ ମଧ୍ୟ ପିତାମାତାଙ୍କ ସାକ୍ଷାତ ପାଇନଥାନ୍ତି । ପିତାମାତା ସଂଧ୍ୟା ୬/୭ଟା ପରେ ଆସନ୍ତି । ପୁଣି ଗ୍ରୀଷ୍ମ ଅବକାଶ ସମୟରେ ଏପରି ପିଲାମାନେ ବେଶ୍ ସମୟଧରି ପିତାମାତାଙ୍କ ଦେଖାପାଇନଥାନ୍ତି । ଏମାନେ ସ୍କୁଲରୁ ଫେରି ନିଜେ ଚାବି ଖୋଲି ଘରେ ପ୍ରବେଶ କରନ୍ତି । ଏ ଦୃଷ୍ଟିରୁ ଏମାନଙ୍କୁ ଚାବିଖୋଲା ପିଲା (Latchkey children) କୁହାଯାଏ । ଦେଖାଯାଇଛି ଯେ ଏପରି ପିଲାମାନଙ୍କର ବହୁ ଆଚରଣଗତ ସମସ୍ୟା ସୃଷ୍ଟି ହୁଏ । ବିଶେଷତଃ ଏମାନେ ବସବାସ କରୁଥିବା ଅଞ୍ଚଳଟି ଭଲ ହୋଇନଥିଲେ ସମସ୍ୟା ଉତ୍କଟ ହେବାର ସମ୍ଭାବନା ଥାଏ । ଶିଳ୍ପୋନ୍ନତ ପାଶ୍ଚାତ୍ୟ ଦେଶମାନଙ୍କରେ ପରିଦୃଷ୍ଟ ଏହି କୁପରିଣତି ସମ୍ପର୍କରେ ସଚେତନ ରହିବା ଆମ ଦେଶର ପିତାମାତାଙ୍କ ପକ୍ଷେ ନିତାନ୍ତ ପ୍ରୟୋଜନ ।*

ଛାଡ଼ପତ୍ର ପରି ଅନ୍ୟସବୁ ପାରିବାରିକ ବିପର୍ଯ୍ୟୟ ଶିଶୁମାନଙ୍କ ପାଇଁ ଜଟିଳତା ସୃଷ୍ଟିକରେ । ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କ ତୁଳନାରେ ଭାରତରେ ଏହା ଉତ୍କଟ ରୂପ ଏପର୍ଯ୍ୟନ୍ତ ଧାରଣ କରିନଥିଲେ ମଧ୍ୟ ଭବିଷ୍ୟତ ପ୍ରତି ସତର୍କ ଦୃଷ୍ଟିରଖିବା ବିଜ୍ଞତାର କାର୍ଯ୍ୟହେବ । ଛାଡ଼ପତ୍ର ଏବଂ ଅନ୍ୟତ୍ର ପୁନର୍ବିବାହ ଫଳରେ ସୃଷ୍ଟିହେଉଥିବା ସାବତ ପରିବାର (Stepfamity) ର ଯେଉଁ ସମସ୍ୟାଟି ସବୁଠାରୁ ଅଧିକ ଉତ୍କଟ, ତାହା ହେଉଛି ପରିବାରର ପରିସର ସମ୍ପର୍କରେ ଅସ୍ପଷ୍ଟତା (Boundary Ambiguity)। ମା'ର କିମ୍ବା ବାପାଙ୍କର ନିଜ ସନ୍ତାନ ସହିତ ଅନ୍ୟ ଏକ ପୁରୁଷ ବା ନାରୀ ବସବାସ କରୁଥିବା ପରିବାରରେ ପିଲାମନରେ ପ୍ରଶ୍ନ ଉଠେ– 'ଆମର ପିରବାରର କିଏ ଅନ୍ତର୍ଭୁକ୍ତ ଏବଂ କେଉଁମାନେ ବହିର୍ଭୁକ୍ତ ?' ଏପରି ଅସମାହିତ ପ୍ରଶ୍ନ ସ୍କୁଲ-ବୟସର ପିଲାମାନଙ୍କ ମନରେ ଆଲୋଡ଼ନ ସୃଷ୍ଟିକରେ । ଏହାର ସମାଧାନ ପାଇଁ ଶିଶୁକୁ ଉପଯୋଗୀ ଉପବେଶନର ସହାୟତା ନେବାକୁ ପଡ଼ିବ । ମୋଟ ଉପରେ ପରିବାରର ସଂହତି ଓ ଶୃଙ୍ଖଳା ଯେପରି ସମ୍ଭକ ଓ ସମ୍ଭାବନାର ବୈଭବ ଆଣିଦିଏ, ପରିବାରର ଦୁଃସ୍ଥିତି ଏବଂ ବିପର୍ଯ୍ୟୟ ଶିଶୁପାଇଁ ଆହ୍ୱାନମୂଳକ ଅବସ୍ଥା ସୃଷ୍ଟିକରେ ।

## ସହାୟକ ପରାମର୍ଶ

୧. ପରିବାର ମଧ୍ୟରେ ଶିଶୁ ସହିତ ବିତାଉଥିବା ସମୟର ପରିମାଣ ଅପେକ୍ଷା ଏହାର ଗୁଣାତ୍ମକ ଦିଗ (Qualittative Aspects) ପ୍ରତି ଅଧିକ ସଚେତନ ରୁହନ୍ତୁ । ଶିଶୁ ସହ ଅର୍ଥପୂର୍ଣ୍ଣ କଥାବାର୍ତ୍ତା କରନ୍ତୁ ଏବଂ ଶିଶୁର କ୍ରିୟାକଳାପରେ ନିଜର ଆଗ୍ରହ ପ୍ରକାଶ କରନ୍ତୁ ।

୨. କର୍ମଜୀବୀ ମହିଳା ମଧ୍ୟ ଆଦର୍ଶ ଜନନୀ ହୋଇପାରନ୍ତି । ଶିଶୁ ସହିତ କଟାଉଥିବା ସମୟର ଗୁଣାତ୍ମକ ଦିଗ ପ୍ରତି ସଚେତନ ରହିବା ଏକାନ୍ତ ପ୍ରୟୋଜନ । କଥାବାର୍ତ୍ତା ମାଧ୍ୟମରେ ପାରସ୍ପାରିକ ଅନୁକ୍ରିୟା (Interaction)କୁ ଉପଯୋଗ କରନ୍ତୁ । କେବଳ ଭୌତିକ ପୁରସ୍କାର (Material Gifts) ମଧ୍ୟରେ ନିଜକୁ ସୀମିତ ନରଖି ଶିଶୁକୁ ପ୍ରଶଂସା ଓ ଅନୁମୋଦନ ମାଧ୍ୟମରେ ପ୍ରୋତ୍ସାହିତ କରନ୍ତୁ ।

୪. ଶିଶୁର ଅବାଂଛନୀୟ ବ୍ୟବହାରର ନିର୍ମୂଳ କରିବାକୁ ଶାସ୍ତିବିଧାନ ବ୍ୟତୀତ ଅନ୍ୟସବୁ ବିକଳ୍ପ ରହିଛି । ଏହାର ସମ୍ଭାବନାକୁ ସ୍ୱୀକାର କରନ୍ତୁ । ଅବାଂଛନୀୟ ବ୍ୟବହାର ପାଇଁ ଶିଶୁକୁ କେତେକ ପୂର୍ବ ସୁବିଧା ସୁଯୋଗରୁ ବଂଚିତ କରାଯାଇପାରେ, ଏ କୌଶଳର ଉପଯୋଗ ଖୁବ୍ ଫଳପ୍ରଦ ହୁଏ ।

୫. ଦଣ୍ଡବିଧାନ ବ୍ୟତୀତ ଶିଶୁର ଆତ୍ମମର୍ଯ୍ୟାଦାବୋଧ ପ୍ରୋତ୍ସାହିତ କରି, ବ୍ୟଙ୍ଗ ଓ ହାସ୍ୟରୋଳ ସୃଷ୍ଟିକରି, ଶିଶୁମନରେ କିଛିଟା ଗ୍ଳାନି ସୃଷ୍ଟି କରି ଏବଂ କୁପରିଣତି ଦର୍ଶାଇ ଅବାଞ୍ଛନୀୟ ବ୍ୟବହାର ପରିବର୍ତ୍ତନ କରାଯାଇପାରେ ।

୬. ଦଣ୍ଡବିଧାନ ନିତାନ୍ତ ଅପରିହାର୍ଯ୍ୟ ମନେ ହେଲେ ଶାସ୍ତିବିଧାନ ସମୟରେ ସ୍ପଷ୍ଟରୂପେ ଶାସ୍ତିର କାରଣ ଦର୍ଶାନ୍ତୁ । ସବୁ ସମୟରେ ଓ ସବୁ ପିଲାଙ୍କ ପାଇଁ ସ୍ଥିରତା (Consistency) ରକ୍ଷା କରନ୍ତୁ । ଦୋଷର ପରିମାଣକୁ ଚାହିଁ ଦଣ୍ଡ ଦିଅନ୍ତୁ । ପୁରସ୍କାର ଓ ଦଣ୍ଡ ମିଶାମିଶି କରି ଉପଯୋଗ କରନ୍ତୁ । କେବଳ ଦଣ୍ଡ ନ ଦେଇ ସାମାନ୍ୟତମ ଗ୍ରହଣୀୟ ବ୍ୟବହାର ପାଇଁ ପ୍ରୋତ୍ସାହନ ଦିଅନ୍ତୁ । ଶିଶୁ ପ୍ରୋତ୍ସାହନ ଓ ଦଣ୍ଡବିଧାନର ତୁଳନାତ୍ମକ ରୂପ ଦେଖିବାର ସୁଯୋଗ ପାଉ ।

୭. ପରିବାରରେ ଶୃଙ୍ଖଳା ଏବଂ ସଂହତି ପାଇଁ ଯୁଗ୍ମନିୟନ୍ତ୍ରଣ (Coregulation) ନୀତି ଅବଲମ୍ବନ କରନ୍ତୁ । ପିତାମାତା ଏବଂ ବୟସ୍କ ବ୍ୟକ୍ତିମାନେ ସାଧାରଣ ପରିଚାଳନାର ଦାୟିତ୍ୱ ନିଅନ୍ତୁ । ଗୁରୁତ୍ୱପୂର୍ଣ୍ଣ ବିଷୟରେ ନିଷ୍ପତ୍ତି ଗ୍ରହଣ କରନ୍ତୁ । କିନ୍ତୁ ନିତିଦିନିଆ ଛୋଟ ଛୋଟ ବିଷୟରେ ଶିଶୁ ନିଜସ୍ୱ ନିଷ୍ପତ୍ତି ନେଉ । ଏପରି ଯୁଗ୍ମ ପରିଚାଳନା ପାରିବାରିକ ସଂହତିର ସହାୟକ ହୋଇଥାଏ ।

# ବନ୍ଧୁତ୍ୱ ଓ ବିକାଶ

ପରିବାରକୁ ବାଦ୍ ଦେଲେ ବନ୍ଧୁତ୍ୱର ପରିସର ଶିଶୁମାନଙ୍କପାଇଁ ସର୍ବାପେକ୍ଷା ଅଧିକ ପ୍ରଭାବଶାଳୀ ବଳୟ ସୃଷ୍ଟି କରିଥାଏ । ଜନ୍ମର ପରେ ପରେ ଶିଶୁ ପିତାମାତାଙ୍କ ସହିତ ବିଶେଷତଃ ମା'ଙ୍କ ସହିତ ଖୁବ୍ ବେଶୀ ସମୟ ଅତିବାହିତ କରୁଥିଲେ ମଧ୍ୟ ଗୋଟିଏ ପର୍ଯ୍ୟାୟରେ ଏହି ସମୟର ପରିମାଣ କମିବାକୁ ଲାଗେ । ସ୍କୁଲ ବୟସରେ ପିଲାମାନେ ସେମାନଙ୍କ କ୍ରିୟା-ଅନୁକ୍ରିୟାର (Interaction) ପ୍ରାୟ ଅର୍ଦ୍ଧାଧିକ ସମୟ ଏପରି ସାଙ୍ଗସାଥୀମାନଙ୍କ ସହିତ କଟାଇଥାନ୍ତି । ପାଶ୍ଚାତ୍ୟ ଦେଶମାନଙ୍କରେ କରାଯାଇଥିବା ଗୋଟିଏ ସର୍ବେକ୍ଷଣରୁ ଜଣାଯାଏ ଯେ ଦୁଇବର୍ଷର ଶିଶୁମାନେ ସେମାନଙ୍କ ଅନୁକ୍ରିୟା (Interaction)ର ପ୍ରାୟ ୧୦ ପ୍ରତିଶତ ସମୟ ସାଙ୍ଗସାଥିମାନଙ୍କ ସହିତ କଟାଇବା ସ୍ଥଳେ ଚାରିବର୍ଷର ଶିଶୁମାନେ ୨୦ ପ୍ରତିଶତ ସମୟ ସାଙ୍ଗସାଥିମାନଙ୍କ ସହିତ ଅତିବାହିତ କରନ୍ତି ସାତବର୍ଷରୁ ଦଶବର୍ଷ ବୟସ ମଧ୍ୟରେ ଏହି ସମୟ ୪୦ ପ୍ରତିଶତକୁ ବୃଦ୍ଧିପାଏ ।

ଶିଶୁ ବିକାଶର ବିଶେଷଜ୍ଞମାନେ ବନ୍ଧୁ ସମ୍ପର୍କ (Peer Relation)ର କେତୋଟି ସ୍ୱତନ୍ତ୍ର ଦିଗପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି । ବିଶ୍ୱବିଖ୍ୟାତ ମନୋବିଜ୍ଞାନୀ ଜାଁ ପିଆଜେଙ୍କ ମତରେ ସାଙ୍ଗସାଥିଙ୍କ ପ୍ରଭାବ ଫଳରେ ଶିଶୁ ସ୍କୁଲ ଜୀବନରେ କ୍ରମଶଃ କମ୍ ଅହଂକେନ୍ଦ୍ରୀ (Egocentric) ହେବାକୁ ଶିକ୍ଷାକରେ । ପୂର୍ବରୁ ତା'ର ଅହଂକେନ୍ଦ୍ରିକତା (Egocentrism) ବେଶୀ ଥାଏ । ମାତ୍ର ସାଙ୍ଗସାଥିମାନଙ୍କ ସହିତ ଖେଳାଖେଳି ମାଧ୍ୟମରେ ଏବଂ ସେମାନଙ୍କ ସହ କଳହ ସମାଧାନ ମାଧ୍ୟମରେ ସେ ଶିକ୍ଷାକରେ । ଅନ୍ୟର ଦୃଷ୍ଟିକୋଣକୁ ବିଚାର କରିବା ଏବଂ ଗ୍ରହଣ କରିବାର ମନୋଭାବ ବିକଶିତ ହୁଏ । ପିତାମାତା ଶିଶୁକୁ ଅନେକ ସମୟରେ ନିର୍ଦ୍ଦେଶ ଦେଇଥାନ୍ତି । ଶିଶୁ ପିତାମାତାଙ୍କୁ ନିଜର ସମପର୍ଯ୍ୟାୟଭୁକ୍ତ ବିଚାର କରୁନଥିବାରୁ ପିତାମାତାଙ୍କ ଉପଦେଶ ଏ କ୍ଷେତ୍ରରେ ବିଶେଷ ସୁଫଳ ଦେଇନଥାଏ ।

ଫ୍ରଏଡ୍‌ଙ୍କ ଯୁଗର ପରବର୍ତ୍ତୀ ମନସମୀକ୍ଷକ ସଲିଭାନ୍ (Sallivan) ମଧ୍ୟ ସ୍କୁଲକାଳୀନ ବନ୍ଧୁ ସମ୍ପର୍କର ବିଶେଷ ଭୂମିକା ସୂଚାଇଛନ୍ତି। ତାଙ୍କ ମତରେ ଅନ୍ୟମାନଙ୍କ ସହିତ ମିଳିମିଶି ସମସ୍ୟା ସମାଧାନ କରିବା ଏବଂ ସହଯୋଗିତାର ମନୋବୃତ୍ତି ଶିଶୁ ବନ୍ଧୁ-ପରିପ୍ରେକ୍ଷୀରେ ହିଁ ଶିକ୍ଷା କରିଥାଏ । ପ୍ରତିଦ୍ୱନ୍ଦ୍ୱିତା ମଧ୍ୟ ଶିକ୍ଷାକରେ । ବନ୍ଧୁ ସମ୍ପର୍କର ଆଉ ଗୋଟିଏ ଗୁରୁତ୍ୱ ହେଉଛି ପରିବାରପ୍ରେରିତ କେତୋଟି ବିଚ୍ୟୁତିର ଉପଯୋଗୀ ସଂଶୋଧନ । ମନେକରାଯାଉ ଗୋଟିଏ ପରିବାରରେ ପିତାମାତା ଖୁବ୍ ଚୁପ୍‌ଚାପ୍ । ମାତ୍ର ଶିଶୁଟି ସାଙ୍ଗସାଥିମାନଙ୍କ ସଂସର୍ଗରେ ଆସିବାପରେ ଅନେକଗୁଡ଼ିଏ ସାମାଜିକ କୌଶଳର ଅଧିକାରୀ ହୋଇପାରେ । ସେହିପରି

ଖେଳକୁଦକୁ ଗୁରୁତ୍ୱ ଦିଆଯାଉନଥିବା ପରିବାରର ପିଲାଟି ବନ୍ଧୁମାନଙ୍କ ପ୍ରଭାବରେ ଆକର୍ଷିତ ହୋଇ କ୍ରୀଡ଼ାଗତ ଦକ୍ଷତା ଆହରଣ କରିପାରେ ।

## ବନ୍ଧୁଗୋଷ୍ଠୀର ସ୍ୱରୂପ

ପୂର୍ବରୁ ସୂଚନା ଦିଆଯାଇଛି ଯେ, ପ୍ରାକ୍-ବିଦ୍ୟାଳୟ ସ୍ତରରେ ପିଲାମାନେ ସାଙ୍ଗସାଥୀ ଲୋଡ଼ିଲେ ମଧ୍ୟ ସ୍କୁଲ ବୟସରେ ହିଁ ପିଲାଟିର ଗୋଟିଏ ବନ୍ଧୁ-ବଳୟ ପ୍ରକାଶ୍ୟ ରୂପନିଏ । କେତୋଟି ମାନସିକ ଚାହିଦା ପୂରଣ କରିବା ଦୃଷ୍ଟିରୁ ଏପରି ବନ୍ଧୁଗୋଷ୍ଠୀର ପ୍ରଭାବ ଅଧିକ ସ୍ପଷ୍ଟ ହୁଏ ।

ବନ୍ଧୁଗୋଷ୍ଠୀର ପରିପ୍ରେକ୍ଷୀରେ ହିଁ ଶିଶୁର ସ୍ୱପ୍ରତ୍ୟୟ ଓ ଆତ୍ମ-ମର୍ଯ୍ୟାଦାବୋଧ ଗଠିତ ହୁଏ । ଅନ୍ୟ ପିଲାମାନେ ଶିଶୁଟିକୁ କେଉଁ ଦୃଷ୍ଟିରେ ଦେଖୁଛନ୍ତି, ତାହା ସେ ଜାଣିବାର ସୁଯୋଗ ପାଏ । ସେ ନିଜର ସାମର୍ଥ୍ୟସବୁକୁ ସାମାଜିକ ପରିପ୍ରେକ୍ଷୀର ତୁଳନା କରିପାରେ । କେବଳ ଗୋଟିଏ ବଡ଼ ଗୋଷ୍ଠୀର ମୂଲ୍ୟାୟନ ଲାଭ କରି ସାରିଲା ପରେ ହିଁ ସେ ଜାଣେ ଯେ, ସେ କେତେ ଚାଲାକ ଚତୁର , କେତେ ଦାୟିତ୍ୱବାନ୍ ଏବଂ କେତେ ପରିମାଣରେ ଖେଳକସରତ୍‌ରେ ଦକ୍ଷ ।

ଶିଶୁର ମନୋବୃତ୍ତି ଏବଂ ମୂଲ୍ୟବୋଧ ଗଠନରେ ବନ୍ଧୁଗୋଷ୍ଠୀ ସହାୟକ ହୁଏ । ଅନ୍ୟ ବନ୍ଧୁମାନଙ୍କ ସହିତ୍ କଥାବାର୍ତ୍ତା କଲାବେଳେ ସେମାନଙ୍କର ଭାବ, ଭାବନା, ମନୋବୃତ୍ତି ଏବଂ ମୂଲ୍ୟବୋଧସବୁ ପରଖି ନେବାର ସୁଯୋଗ ପାଏ । ଏ ଗୁଡ଼ିକ ତା' ଜୀବନରେ କିଭଳି କାମରେ ଲାଗିବ, ତା'ର ଏକ ମୋଟାମୋଟି ଧାରଣା କରେ । ଏହି ପ୍ରକ୍ରିୟାରେ ପିତାମାତଙ୍କ ଠାରୁ ଆହରଣ କରିଥିବା କେତେକ ମନୋବୃତ୍ତିକୁ ଅଧିକ ଶକ୍ତିଶାଳୀ କରିବା ସ୍ଥଳେ ଅନ୍ୟ କେତୋଟି ମନୋଭାବକୁ ବିସର୍ଜନ ଦେଇପାରେ ।

ବନ୍ଧୁଗୋଷ୍ଠୀ ଶିଶୁକୁ ଭାବଗତ ସୁରକ୍ଷା ପ୍ରଦାନ କରେ । ବିଶେଷତଃ ଭୟପ୍ରଦ ଏବଂ ଉଦ୍‌ବେଗଜନକ ପରିସ୍ଥିତିରେ ସେ ବନ୍ଧୁସହ ତାର ସ୍ଥିରତା ଅନୁଭବ କରେ । ଜଣେ ଚିକିତ୍ସକ କିମ୍ବା ଦନ୍ତଚିକିତ୍ସକ ଗୋଟିଏ ଶିଶୁକୁ ପରୀକ୍ଷା କରୁଥିବା ସମୟରେ ତାହା ଦେଖି ଅନ୍ୟ ଶିଶୁଟିଏ ଧୈର୍ଯ୍ୟର ସହିତ ଅପେକ୍ଷା କରିବାର ସମ୍ଭାବନା ଅଧିକ । ଏକାକୀ କେତେକ ପରିସ୍ଥିତିରେ ମୁକାବିଲା କରିପାରୁନଥିବା ଶିଶୁ ବନ୍ଧୁମାନଙ୍କ ଗହଣରେ ସହଜରେ ଏପରି ଅପ୍ରୀତିକର ଅବସ୍ଥାର ସମ୍ମୁଖୀନ ହୋଇପାରେ ।

କେତେକ କାର୍ଯ୍ୟ ଶିଶୁ ପିତାମାତା ଏବଂ ବୟସ୍କମାନଙ୍କ ତୁଳନାରେ ନିଜର ବନ୍ଧୁବର୍ଗଠାରୁ ଶିକ୍ଷା କରିନିଏ । ଅନେକ ସମୟରେ ସ୍କୁଲର ଶିକ୍ଷକ ଶିକ୍ଷୟିତ୍ରୀମାନେ ମଧ ଏହି ନୀତିର ସୁଯୋଗ ନେଇ ବନ୍ଧୁମାନଙ୍କଠାରୁ ବୁଝିନେବା ପାଇଁ ପିଲାକୁ ପରାମର୍ଶ ଦିଅନ୍ତି । ନିଜର ବନ୍ଧୁମାନଙ୍କ ଗହଣରେ ପିଲାଟି ନିଜକୁ ଅଧିକ ମୁକ୍ତ ଏବଂ ସ୍ୱାଭାବିକ ମନେକରୁଥିବାରୁ ଗ୍ରହଣଶୀଳତା ବୃଦ୍ଧିପାଏ । ପ୍ରଶ୍ନ ପଚାରିବା ପାଇଁ ମଧ ଅନ୍ତର୍ବାଧା ଅପେକ୍ଷାକୃତ କମ୍ ରହିଥାଏ ।

ସ୍ଥୂଳତଃ ବନ୍ଧୁଗୋଷ୍ଠୀର କେତେଗୁଡ଼ିଏ ସକରାତ୍ମକ ପ୍ରଭାବ ରହିଛି । କେତେକ ପାରିବାରିକ ପ୍ରଭାବର ଆତିଶଯ୍ୟ ଶିଶୁକୁ ଏହା ରକ୍ଷାକରେ । ଶିଶୁମନର ନୂତନ ଦୃଷ୍ଟିଭଙ୍ଗୀ ଓ ବିଚାରଧାରାର ଉନ୍ମେଷ ଓ ବିକାଶ ଘଟାଏ । ସର୍ବୋପରି ମୁକ୍ତ ନିଷ୍ପତ୍ତି ନେବାର ସାମର୍ଥ୍ୟ ହାସଲ କରିବାରେ ବନ୍ଧୁଗୋଷ୍ଠୀ ସହାୟକ ହୁଏ ।

ଏସବୁ ସତ୍ତ୍ୱେ ବନ୍ଧୁଗୋଷ୍ଠୀର କୁପ୍ରଭାବ ମଧ୍ୟ ରହିଛି, ବିଶେଷତଃ ବନ୍ଧୁଗୋଷ୍ଠୀର ନିମ୍ନପଦବୀର ରହିଥିବା ପିଲାମାନେ ଅନେକ ସମୟରେ କୁପ୍ରଭାବର ପ୍ରତିରୋଧ କରିପାରନ୍ତି ନାହିଁ । ଉଚ୍ଚପଦରେ ଥିବା ପିଲାମାନଙ୍କର କଥା ଅବାଞ୍ଛନୀୟ ହେଲେ ମଧ୍ୟ ଏହା ବିରୁଦ୍ଧରେ ସ୍ୱର ଟେକିପାରନ୍ତି ନାହିଁ । ଫଳରେ ନିଜକୁ କୁପ୍ରଭାବମୁକ୍ତ ରଖିପାରନ୍ତି ନାହିଁ ।

ବନ୍ଧୁଗୋଷ୍ଠୀର ଅନ୍ୟ ଗୋଟିଏ କୁପ୍ରଭାବ ପରିସ୍ଥିତିଟି ଅସ୍ପଷ୍ଟ ଥିବାବେଳେ ଅଧିକ କାର୍ଯ୍ୟକରେ । ପରିସ୍ଥିତି ଅସ୍ପଷ୍ଟ ହୋଇଥିଲେ ପିଲାମାନେ ପିତାମାତାଙ୍କ ଉପଯୋଗୀ ଉପଦେଶ ତୁଳନାରେ ବନ୍ଧୁମାନଙ୍କର ଅନୁପଯୋଗୀ ପରାମର୍ଶ ଗ୍ରହଣ କରିନେବାର ଆଶଙ୍କା ଥାଏ । ଏହା ସ୍ୱୀକାର୍ଯ୍ୟ ଯେ ଆମର ଜୀବନ ଓ ସଂସାରରେ ବହୁତଗୁଡ଼ିଏ ପରିସ୍ଥିତି ଅସ୍ପଷ୍ଟ । ଏ କ୍ଷେତ୍ରରେ ସାଙ୍ଗସାଥିମାନଙ୍କ କୁପରାମର୍ଶରେ ପ୍ରଭାବିତ ହୋଇଯିବାର ଆଶଙ୍କା ରହିଥାଏ । ପିଲାମାନେ ବନ୍ଧୁଗହଣରେ କେବଳ ଖେଳନ୍ତି, ବୁଲନ୍ତି ଏବଂ ପାଠପଢ଼ନ୍ତି ନାହିଁ । ସେମାନେ ସାଙ୍ଗହୋଇ ସ୍କୁଲଛାଡ଼ି ବୁଲିଚାଲି ଯିବା, ଦୁଷ୍ଟାମି କରିବା ଏବଂ ଅନ୍ୟ କେତେକ ଖରାପ ଆଚରଣ ମଧ୍ୟ କରିଥାନ୍ତି । ଗୋଟିଏ ସର୍ବେକ୍ଷଣରେ ଷଷ୍ଠ ଶ୍ରେଣୀର ଚିତ୍ରମାନଙ୍କୁ ପର୍ଯ୍ୟବେକ୍ଷଣ କରାଯାଇ କେଉଁମାନେ ବେଶୀ ମାତ୍ରାରେ ଜନନୀ ପରିଚାଳିତ ଏବଂ କେଉଁମାନେ ବେଶୀ ମାତ୍ରାରେ ବନ୍ଧୁପରିଚାଳିତ, ତାହାର ଏକ ତାଲିକା ପ୍ରସ୍ତୁତ କରାଗଲା । ଏହା ପରେ ଲକ୍ଷ୍ୟ କରାଗଲା ଯେ ବନ୍ଧୁ ପରିଚାଳିତ ଶିଶୁମାନଙ୍କ ମଧ୍ୟରୁ ଅପେକ୍ଷାକୃତ ଅଧିକ ସଂଖ୍ୟକ ପିଲା ସମାଜ ବିରୋଧୀ ଆଚରଣ ଦର୍ଶାଉଛନ୍ତି । ଏହାର ତାତ୍ପର୍ଯ୍ୟ ହେଉଛି ଯେ, ଅସ୍ପଷ୍ଟ ପରିସ୍ଥିତିରେ ଶିଶୁମାନଙ୍କର ବନ୍ଧୁନିର୍ବାଚନ ଏବଂ ବନ୍ଧୁ-ସଂସର୍ଗର କିଛିଟା ନିୟନ୍ତ୍ରଣ ଆବଶ୍ୟକ ।

କେଉଁ ଭିତ୍ତିରେ ପିଲାମାନେ ବନ୍ଧୁ-ଗୋଷ୍ଠୀ ଗଠନ କରନ୍ତି, ସେ ବିଷୟରେ କୌତୁହଳ ଜନ୍ମିପାରେ । ସାଧାରଣତଃ ବାଳକ-ବାଳିକା ଏବଂ ବୟସ ଭିତ୍ତିରେ ପିଲାମାନେ ବନ୍ଧୁଗୋଷ୍ଠୀ ଗଠନ କରନ୍ତି ।

ପ୍ରାୟ ସମାନ ବୟସର ପିଲାମାନେ ବନ୍ଧୁଗୋଷ୍ଠୀ ଗଠନ କଲେ ମଧ୍ୟ ସେମାନେ ସେମାନଙ୍କ କ୍ରିୟା ଅନୁକ୍ରିୟାର ଏକ-ଚତୁର୍ଥାଂଶ ସମୟ ସେମାନଙ୍କଠାରୁ ହାରାହାରି ଦୁଇବର୍ଷ ବଡ଼ କିମ୍ବା ଦୁଇବର୍ଷ ସାନ ବୟସର ପିଲାମାନଙ୍କ ସହିତ ଅତିବାହିତ କରିଥାନ୍ତି । ବନ୍ଧୁଗୋଷ୍ଠୀରେ ବଡ଼ ବୟସର ପିଲାମାନଙ୍କର ଅପେକ୍ଷାକୃତ ବେଶୀ ସ୍ୱାଧୀନତା ଥାଏ । ତଥାପି ମିଶାମିଶି ବୟସର ଦଳ ଅପେକ୍ଷା ସମବୟସୀ ସାଙ୍ଗସାଥିମାନଙ୍କ ମଧ୍ୟରେ ସାମାଜିକ ଭାବ ଆଦାନ ପ୍ରଦାନର ମାତ୍ରା ଅଧିକ ହେବାର ଲକ୍ଷ୍ୟ କରାଯାଏ ।

ବାଳକମାନେ ଅଧିକ ସଂଖ୍ୟାରେ ବାଳକମାନଙ୍କ ସହିତ ଏବଂ ବାଳିକାମାନେ ଅଧିକ ସଂଖ୍ୟାରେ ବାଳିକାମାନଙ୍କ ସହିତ ବନ୍ଧୁତା ଗଠନ କରନ୍ତି । ସ୍କୁଲ ଯିବାକୁ ଆରମ୍ଭ କରିବା ପୂର୍ବରୁ ମଧ୍ୟ ପିଲାମାନଙ୍କର ଏପରି ରୁଚିର ପ୍ରଦର୍ଶନ ଦେଖାଯାଏ । ସ୍କୁଲକୁ ଯିବାପରେ ଶିକ୍ଷକ ଶିକ୍ଷୟିତ୍ରୀମାନେ ସାଧାରଣତଃ ବାଳକମାନଙ୍କୁ କେତେକ ପ୍ରକାର ଖେଳର ସୁଯୋଗ ଦେବା ସ୍ଥଳେ ବାଳିକାମାନଙ୍କୁ ଭିନ୍ନ ଧରଣର ଖେଳର ସୁଯୋଗ ଦିଅନ୍ତି । ଏହା ଫଳରେ କେବଳ-ବାଳକ ଗୋଷ୍ଠୀ ଏବଂ କେବଳ-ବାଳିକା ଗୋଷ୍ଠୀର ସମ୍ଭାବନା ଯଥେଷ୍ଟ ବଢ଼ିଯାଏ । ଅପେକ୍ଷାକୃତ

ଅଧିକ ଶାରୀରିକ ଦକ୍ଷତା ଆବଶ୍ୟକ କରୁଥିବା ଖେଳସବୁ (ଯଥା–ଫୁଟବଲ, ହକି, କ୍ରିକେଟ ଇତ୍ୟାଦି) ବାଳକମାନଙ୍କୁ ଦିଆଯିବା ସ୍ଥଳେ କମ୍ ଶାରୀରିକ ଦକ୍ଷତାର ଖେଳସବୁ (ଦୌଡ଼ିଡିଆଁ) ବାଳିକାମାନଙ୍କୁ ଦିଆଯାଇଥାଏ । ଗୋଟିଏ ସର୍ବେକ୍ଷଣରେ ଲକ୍ଷ୍ୟ କରାଯାଇପାରେ ଯେ ତୃତୀୟ ଶ୍ରେଣୀ ବେଳକୁ ଅଧିକାଂଶ ବନ୍ଧୁଗୋଷ୍ଠୀ କେବଳ ବାଳକ କିମ୍ବା କେବଳ ବାଳିକା–ଗୋଷ୍ଠୀର ରୂପ ନେବା ସ୍ଥଳେ ପଞ୍ଚମ ଶ୍ରେଣୀବେଳକୁ ପ୍ରାୟ ସବୁ ବନ୍ଧୁଗୋଷ୍ଠୀ ଏପରି ରୂପ ନେଇଥାଏ । ଅବଶ୍ୟ ଏହା ପରଠାରୁ ଅନ୍ୟ ଦିଗରେ ପରିବର୍ତ୍ତନ ଆସେ । ଷଷ୍ଠଶ୍ରେଣୀ ବେଳକୁ କିଛି ମିଶାମିଶି ଦଳର ଆରମ୍ଭ ହୋଇ କ୍ରମଶଃ ଏହା ବୃଦ୍ଧିପାଇବାକୁ ଲାଗେ ।

କେବଳ ବାଳକ ଏବଂ କେବଳ ବାଳିକା ବନ୍ଧୁଗୋଷ୍ଠୀମାନଙ୍କରେ ଆଉ ଗୋଟିଏ ବୈଶିଷ୍ଟ୍ୟ ଦୃଷ୍ଟିଗୋଚର ହୁଏ । ବାଳିକାମାନଙ୍କ ବନ୍ଧୁଗୋଷ୍ଠୀ ଆକାରରେ ଖୁବ୍ ଛୋଟ । ସାଧାରଣତଃ ଦୁଇ ତିନି ଜଣ ଅନ୍ତରଙ୍ଗ ବାନ୍ଧବୀମାନଙ୍କୁ ନେଇ ଏପରି ଗୋଷ୍ଠୀ ଗଠିତ ହୋଇଥାଏ । ପୁଣି ଗୋଷ୍ଠୀର ସଦସ୍ୟମାନଙ୍କ ମଧ୍ୟରେ ପାରସ୍ପରିକତା (Reciprocity) ରହିଥାଏ । ଚିତ୍ରରେ ସୂଚିତ କରାଯାଇଥିବା ଅନୁଯାୟୀ ପ୍ରଥମ ଦୁଇଟି ବାଳିକା ମଧ୍ୟରେ




ପାରସ୍ପରିକ ଅନ୍ତରଙ୍ଗତା ରହିଛି । ଦ୍ୱିତୀୟ ଦଳରେ ଦୁଇଟ ବାଳିକା ପରସ୍ପରପ୍ରତି ଅନ୍ତରଙ୍ଗତାର ସୂତ୍ରରେ ଜଡ଼ିତ ହେଲେ ମଧ୍ୟ ତୃତୀୟ ବାଳିକା ଜଣକ ସହିତ ପାରସ୍ପରିକତା ରକ୍ଷା କରୁଥିଲେ ମଧ୍ୟ ଅନ୍ୟଟି ସହିତ ରକ୍ଷା କରିନାହିଁ । ଅନ୍ୟ ପକ୍ଷରେ ବାଳକମାନଙ୍କର ବନ୍ଧୁଗୋଷ୍ଠୀ ବଡ଼ ଆକାରରେ । ଏଠାରେ ଅନେକଗୁଡ଼ିଏ ସମ୍ପର୍କ ବନ୍ଧୁତ୍ୱର ସତ, ହେଲେ ପାରସ୍ପରିକତାର ନିଶ୍ଚିତତା ନାହିଁ । ମୋଟଉପରେ ବାଳିକାଗୋଷ୍ଠୀ ଏବଂ ବାଳକ ଗୋଷ୍ଠୀ ମଧ୍ୟରେ କେବଳ ଆକାରର ପାର୍ଥକ୍ୟ ନାହିଁ । ପାରସ୍ପରିକତାର ମଧ୍ୟ ପାର୍ଥକ୍ୟ ରହିଛି ।

## ବନ୍ଧୁତ୍ୱର ରୂପରେଖ

ସମଗ୍ର ବନ୍ଧୁଗୋଷ୍ଠୀଟି ଶିଶୁର ବ୍ୟବହାର ଓ ବିକାଶକୁ ପ୍ରଭାବିତ କରୁଥିଲେ ମଧ୍ୟ ଗୋଷ୍ଠୀର ସମସ୍ତଙ୍କ ସହିତ ସମାନ ମାତ୍ରାର ଅନ୍ତରଙ୍ଗତା ନଥାଏ । ନିବିଡ଼ ଅନ୍ତରଙ୍ଗତାର ଭିତ୍ତିରେ ଅଳ୍ପ କେତେଜଣ ଶିଶୁର ବନ୍ଧୁ ବା ବାନ୍ଧବୀ ହୋଇପାରନ୍ତି । ଏପରି ବନ୍ଧୁ ବା ବାନ୍ଧବୀଙ୍କ ଗହଣରେ ଶିଶୁ ଆରାମ ଅନୁଭବ କରେ । ବନ୍ଧୁ ବା ବାନ୍ଧବୀଙ୍କ ପାଖରେ ଶିଶୁ ମନଖୋଲି ଗୁପ୍ତକଥା କହିବାରେ ଦ୍ୱିଧା ଅନୁଭବ କରେନାହିଁ ।

ବନ୍ଧୁତ୍ୱ ଆକସ୍ମିକ ଭାବରେ ସୃଷ୍ଟି ହୋଇଥାଏ । ସାଧାରଣତଃ ଏହା କେତୋଟି ବିକାଶର ପର୍ଯ୍ୟାୟ ଦେଇ ଗତିକରେ । ଏହି ସୋପାନଗୁଡ଼ିକ ବାକ୍ସରେ ସୂଚିତ କରାଯାଇଛି ।

ଗୋଟିଏ ବନ୍ଧୁଗୋଷ୍ଠୀର ସମ୍ପର୍କର ନିବିଡ଼ତା ସମାନ ରହିନଥିବାରୁ ଏହାର ପରିଣତି ସ୍ୱରୂପ ଶିଶୁ 'ପ୍ରିୟ' (Popular) କିମ୍ବା 'ଅପ୍ରିୟ' (Unpopular) ଆଖ୍ୟା ସହିତ ଜଡ଼ିତ ହୋଇପଡ଼େ । ଗୋଟିଏ ଦଳରେ ଏକ ନିର୍ଦ୍ଦିଷ୍ଟ ଶିଶୁ କେତେଜଣଙ୍କଠାରୁ ଅନୁମୋଦନ ଲାଭ କରୁଛି ଏବଂ କେତେଜଣଙ୍କଠାରୁ ଅନୁମୋଦନ ହରାଉଛି, ତାହା ଉପରେ ତା'ର ଆଖ୍ୟାଟି ନିର୍ଭର କରେ । ନିମ୍ନରେ ବାକ୍ସରେ ଦର୍ଶାଯାଇଥିବା ଅନୁଯାୟୀ ଶିଶୁ ଚାରିପ୍ରକାର ସମ୍ଭାବନାର ଘେର ମଧ୍ୟରେ ରହିଥାଏ ।

**ଅନ୍ୟଶିଶୁମାନଙ୍କଠାରୁ ମିଳୁଥିବା ଆଦର ଓ ଅନାଦର**

| ଖୁବ୍ କମ୍ | ଖୁବ୍ ବେଶୀ |
|---|---|
| *ଅବହେଳିତ ଶିଶୁ* | *ପ୍ରିୟ ଶିଶୁ* |
| *ଅପ୍ରିୟ ଶିଶୁ* | *ବିତର୍କିତ ଶିଶୁ* |

ପ୍ରିୟ ଶିଶୁର ଗୁଣାବଳୀ ସହଜରେ ଅନୁମେୟ । ଏପରି ଶିଶୁର ଆଚରଣରେ ମିଷ୍ଟତା ଥାଏ । ସେ ସହଯୋଗୀଭାବ ସମ୍ପନ୍ନ ଏବଂ ଅନ୍ୟମାନଙ୍କୁ ସାହାଯ୍ୟ କରେ । ତା'ର ହାସ୍ୟରସିକତାର ଦକ୍ଷତା ଥିବା ଖୁବ୍ ସମ୍ଭବ । ଶାରୀରିକ ଆକର୍ଷଣଶୀଳତା ମଧ୍ୟ ଥାଇପାରେ । ଆବଶ୍ୟକ ପଡ଼ିଲେ ଅନ୍ୟଠାରୁ ସାହାଯ୍ୟ ନେବାର ଦ୍ୱିଧା ଅନୁଭବ କରନ୍ତି ନାହିଁ । ଅବଶ୍ୟ ଏମାନଙ୍କର ନିଜର ଆତ୍ମବିଶ୍ୱାସ ଓ ଆତ୍ମମର୍ଯ୍ୟାଦାବୋଧ ରହିଥାଏ । ଅନେକ ସମୟରେ ଅନ୍ୟମାନଙ୍କର ଆଖିରେ ପଡୁଥିବା କୌଣସି ଏକ ବିଶେଷ ଦକ୍ଷତା (ଯଥା-ସଂଗୀତରେ କିମ୍ବା କ୍ରୀଡ଼ା କ୍ଷେତ୍ରରେ) ରହିଥାଏ ।

ଅନ୍ୟ କେତେକ ଶିଶୁ ଅନ୍ୟମାନଙ୍କଠାରୁ ଆଦର ପାଇଲେ ମଧ୍ୟ ଅନାଦର ପାଇଥାନ୍ତି । ଏମାନଙ୍କ ସପକ୍ଷରେ ଯେପରି ଯୁକ୍ତିଥାଏ, ବିପକ୍ଷରେ ମଧ୍ୟ ସେପରି ଯୁକ୍ତିଥାଏ । ଏମାନଙ୍କୁ ବିତର୍କିତ ଶିଶୁ (Controversial Child) କୁହାଯାଇପାରେ ।

ଅନ୍ୟ କେତେକ ଶିଶୁଙ୍କ ସମ୍ପର୍କରେ ଅନ୍ୟମାନେ ପ୍ରାୟ ଉଦାସୀନ । ଆଦରର ମାତ୍ରା କମ୍ ଓ ଅନାଦର ମାତ୍ରା ମଧ୍ୟ କମ୍ । ଏମାନେ ପ୍ରାୟ ଦୂରେଇ ରହିଯାଆନ୍ତି । ଏମାନଙ୍କୁ ଅବହେଳିତ ଶିଶୁ କୁହାଯାଇପାରେ ।

ଚତୁର୍ଥ ଦଳଟି ହେଉଛି ଅପ୍ରିୟ ଶିଶୁ । ଏମାନଙ୍କର ଆଚରଣ ଅନ୍ୟମାନଙ୍କର ଅନୁମୋଦନୀୟ ହୋଇନଥାଏ । ଏପରି ଶିଶୁମାନେ ଅନ୍ୟମାନଙ୍କର ଆଦର ହରାଇବା ପରେ ସେମାନେ ଅଧିକରୁ ଅଧିକ କୁକାର୍ଯ୍ୟରେ ଲିପ୍ତ ହେବାର ଆଶଙ୍କା ଥାଏ । ଭବିଷ୍ୟତରେ ଏମାନେ ବିଭିନ୍ନ ଅସାମାଜିକ କାର୍ଯ୍ୟ ଏବଂ ଅପରାଧରେ ଜଡ଼ିତ ହେବାର ସମ୍ଭାବନା ରହିଥାଏ । ସୁତରାଂ ଏମାନଙ୍କର ପରିବର୍ତ୍ତନ ପାଇଁ ପାରିବାରିକ ଏବଂ ସାମାଜିକ ଯୋଜନା ବିଶେଷ ଦରକାର ।

ପ୍ରାକ୍‌ବିଦ୍ୟାଳୟର ସ୍ତରରେ ଗୋଟିଏ ପିଲା ଅନ୍ୟମାନଙ୍କର ଅପ୍ରିୟ ହେବାର ଉଦ୍‌ବେଗର କାରଣ ହୋଇନଥାଏ । ମାତ୍ର ସ୍କୁଲ-ଜୀବନରେ ଅପ୍ରିୟ ଶିଶୁ ଅନ୍ୟମାନଙ୍କ ପାଇଁ ଉଦ୍‌ବେଗର କାରଣ ହୁଏ । ପ୍ରଥମତଃ ଏପରି ଅପ୍ରିୟ ଶିଶୁ ଭବିଷ୍ୟତରେ ସମାଜ-ବିରୋଧୀ କାର୍ଯ୍ୟରେ ଲିପ୍ତ ହେବାର ଆଶଙ୍କା ରହିଛି । ପୁଣି ଭବିଷ୍ୟତରେ ସୁଖଶାନ୍ତି ପାଇଁ ବନ୍ଧୁଗୋଷ୍ଠୀର ସୁସମ୍ପର୍କର ଆବଶ୍ୟକତା ରହିଛି । ଏ ଦୃଷ୍ଟିରୁ ଅପ୍ରିୟ ଶିଶୁଟିକୁ ଚିହ୍ନଟ କଲାମାତ୍ରେ ତା'ର ପରିବେଶକୁ ବଦଳାଇ ତା'କୁ ଅନାଦର ବଳୟରୁ ଆଦରର ବଳୟ ମଧ୍ୟକୁ ନେବାକୁ ପଡ଼ିବ ।

ଅନେକ ସମୟରେ ଶିଶୁ ତା'ର ଖରାପ ଆଚରଣ ପରିବାର ମଧ୍ୟରେ ଦର୍ଶାଇଥାଏ । ପରେ ଏହା ବନ୍ଧୁଗୋଷ୍ଠୀକୁ ପରିବ୍ୟାପ୍ତ ହୋଇ ସାଙ୍ଗସାଥିମାନଙ୍କଠାରୁ ଅନାଦର ପାଇଥାଏ । ସୁତରାଂ କୌଣସି ଅପ୍ରୀତିକର ବ୍ୟବହାରର ଉନ୍ମେଷ ସମୟରେ ପିତାମାତାଙ୍କୁ ସତର୍କତାର ସହିତ କାରବାର କରିବାକୁ ହେବ ।

କେତେକ ସ୍ଥଳରେ ପିଲାଟି ନିଜର ଖରାପ ପ୍ରକୃତିର ସାଙ୍ଗସାଥିମାନଙ୍କଠାରୁ ଅବାଞ୍ଛନୀୟ ବ୍ୟବହାର ଶିଖେ । ଏ କ୍ଷେତ୍ରରେ ପିଲାଟିକୁ କୌଣସି ମତେ ଏହି ଦଳରୁ କାଢ଼ିନେଇ ବା ଦୂରେଇନେଇ ଅନ୍ୟ ଗୋଟିଏ ଉତ୍ତମ ଦଳରେ ଯୋଡ଼ିଦେବାର ପଦକ୍ଷେପ ନେବାକୁ ହେବ ।

ଅନ୍ୟମାନଙ୍କର ଅନାଦର ଲାଭ କରିଥିବା 'ଅପ୍ରିୟ ଶିଶୁ' କୁ କେତେଗୁଡ଼ିଏ ସାମାଜିକ ଦକ୍ଷତାର ତାଲିମ ଦିଆଯିବା ନିତାନ୍ତ ପ୍ରୟୋଜନ । ପ୍ରଶ୍ନ କିପରି ପଚରାଯାଏ, ଅନ୍ୟମାନଙ୍କ ସମ୍ପର୍କରେ ନିଜର କୌତୁହଳ କିପରି ପ୍ରକାଶ କରାଯାଏ ଏବଂ ନିଜ ସମ୍ପର୍କରେ କିପରି ସୂଚନା ଦେବାକୁ ହୁଏ, ତାହା ପିଲା ଶିକ୍ଷା କରିବା ବିଧେୟ । ସେହିପରି ଅନ୍ୟମାନଙ୍କୁ କିପରି ସାହାଯ୍ୟ, ପରାମର୍ଶ ଏବଂ ଉପଦେଶ ଦିଆଯିବ, ତାହା ମଧ୍ୟ ଶିଶୁ ତାଲିମ ପାଇବା ଉଚିତ । ଅପେକ୍ଷାକୃତ ଅପ୍ରିୟ ଶିଶୁମାନଙ୍କ ପାଇଁ ଏ ଧରଣର ପ୍ରଶିକ୍ଷଣ ଫଳପ୍ରଦ ହୋଇଥିବାର ପ୍ରମାଣ ରହିଛି ।

ପରିଶେଷରେ କୁହାଯାଇପାରେ ଯେ ଅନ୍ୟର ଆଦର ଲାଭ କରିବା ପାଇଁ ନିଜର ଉଚ୍ଚ ପ୍ରତ୍ୟାଶା ରହିବା ଆବଶ୍ୟକ । ଅନ୍ୟମାନେ ମୋତେ ଭଲ ବ୍ୟବହାର କରିବେ, ଏପରି ପ୍ରତ୍ୟାଶା ସହାୟକ ହୋଇଥାଏ । ସୁତରାଂ ଶିଶୁମନରେ ଧାରଣା ଜନ୍ମାଇବାକୁ ହେବ ଯେ, ଅନ୍ୟମାନେ ତା'ସହ ଭଲ ବ୍ୟବହାର କରିବେ । ଏପରି ସକରାତ୍ମକ ମନୋବୃତ୍ତି ଅପ୍ରିୟତା ହ୍ରାସ କରିବାରେ ସହାୟକ ହୁଏ ।

## ସହାୟକ ପରାମର୍ଶ

୧. ବନ୍ଧୁଗୋଷ୍ଠୀର ଉନ୍ମେଷ ଓ ବିକାଶ ଶିଶୁର କେତେକ ମାନସିକ ଚାହିଦା ପୂରଣ କରିଥିବାରୁ ଏପରି ଗୋଷ୍ଠୀର ଅଭ୍ୟୁଦୟ କ୍ଷେତ୍ରରେ ଧ୍ୟାନ ଦେଇ ଉତ୍ସାହ ଦିଅନ୍ତୁ ।

୨. ସ୍କୁଲ ବୟସରେ ବନ୍ଧୁଗୋଷ୍ଠୀର ପ୍ରଭାବ ବେଶ୍ ବୃଦ୍ଧି ପାଏ, ଏହା ସ୍ୱୀକାର କରନ୍ତୁ । ପରିବାରର କେତେ ଆତିଶଯ୍ୟ (ଯଥା–ଅତିମାତ୍ରାରେ ଚୁପ୍‌ଚାପ୍ ରହିବା କିମ୍ବା ଖେଳକୁଦକୁ ପୂରାପୂରି ଅବହେଳା କରିବା) ବନ୍ଧୁଗୋଷ୍ଠୀରେ ସଂଶୋଧିତ ହୋଇ ଏକ ସମନ୍ୱିତ ଅବସ୍ଥା ଆଣିପାରେ, ଏହାର ସମ୍ଭାବନାକୁ ସ୍ୱାଗତ କରନ୍ତୁ ।

୩. ବନ୍ଧୁଗୋଷ୍ଠୀ ପୂରାପୂରି କୁପ୍ରଭାବ ମୁକ୍ତ ନୁହେଁ । ସୁତରାଂ ବନ୍ଧୁଗୋଷ୍ଠୀରେ କେଉଁକାର୍ଯ୍ୟକୁ ଗୁରୁତ୍ୱ ଦିଆଯାଉଛି, ସେଥିପ୍ରତି ଲକ୍ଷ୍ୟ ରଖନ୍ତୁ ।

୪. ଆପଣଙ୍କ ପିଲାର ଅବାଞ୍ଛନୀୟ ବ୍ୟବହାର ପରିବର୍ତ୍ତନକରିବା ସମୟରେ ତା'ର ପ୍ରିୟ ବନ୍ଧୁର ସାହାଯ୍ୟ ନିଅନ୍ତୁ । ଉତ୍ତମ ଆଚରଣ ଦର୍ଶାଉଥିବା ପ୍ରିୟବଂଧୁକୁ ଏକ ଆଦର୍ଶ ନମୁନା (Role Model) ନେଇ ବ୍ୟବହାରର ପରିବର୍ତ୍ତନ କରନ୍ତୁ । (ଯଥା : 'ତୋର ଏ କାମଟି ତୋର ପ୍ରିୟ ସାଙ୍ଗ –ଭଲ ପାଇବ ତ ?')

୫. ଅନ୍ୟମାନଙ୍କର ଅନାଦର ପାଉଥିବା ଅପ୍ରିୟ ଶିଶୁମାନଙ୍କୁ ଚିହ୍ନଟ କରନ୍ତୁ ଏବଂ ସେମାନଙ୍କର ପରିବର୍ତ୍ତନ ପାଇଁ ନିମ୍ନ କାର୍ଯ୍ୟକ୍ରମ ଗ୍ରହଣ କରନ୍ତୁ ।

(କ) ପରିବାରରେ ଖରାପ ବ୍ୟବହାର ଆରମ୍ଭ ହେବା ମୁହୂର୍ତ୍ତରେ ଏହାର ବିଲୋପ ପାଇଁ ଉଦ୍ୟମ କରନ୍ତୁ ।

(ଖ) ଗୋଷ୍ଠୀଟି ଖରାପ ହୋଇଥିଲେ ଶିଶୁଟିକୁ ଏଠାରୁ ଦୂରେଇ ନେଇ ଭଲ ଗୋଷ୍ଠୀର ସଂଯୁକ୍ତ କରନ୍ତୁ ।

(ଗ) କିପରି କଥାକହିବାକୁ ହୁଏ, କିପରି ପ୍ରଶ୍ନ ପଚାରିବାକୁ ହୁଏ ଏବଂ କିପରି ଅନ୍ୟମାନଙ୍କୁ ସାହାଯ୍ୟ କରିବାକୁ ହୁଏ, ଏପରି ସବୁ ସାମାଜିକ କୌଶଳ ତାଲିମ ଦିଅନ୍ତୁ ।

(ଘ) ଅନ୍ୟମାନଙ୍କଠାରୁ ଭଲ ବ୍ୟବହାର ପାଇବାର କୌଣସି ବାଧା ନାହିଁ, ଏପରି ସକରାତ୍ମକ ପ୍ରତ୍ୟାଶା ଶିଶୁ ମନରେ ଗଠନ କରନ୍ତୁ ।

(ଙ) ଶିଶୁର ସାମାନ୍ୟତମ ଭଲ ବ୍ୟବହାର ପାଇଁ ଠିକ୍ ସମୟରେ ଉପଯୁକ୍ତ ପ୍ରୋତ୍ସାହନ ଦିଅନ୍ତୁ ।

ବନ୍ଧୁତା ବିକାଶର ସୋପାନ

| ସୋପାନ | ବୟସ | ବୈଶିଷ୍ୟ |
|---|---|---|
| ୧. ମୁକ୍ତ ଖେଳସାଥୀ | ୩-୭ ବର୍ଷ | ଶିଶୁ ଅହଂକେନ୍ଦ୍ରୀ । ସୁତରାଂ ସମ୍ପର୍କରୁ କ'ଣ ମିଳିବ ତାହା ବି ଭାବେ । ପାଖରେ ରହୁଥିବା ପିଲାମାନେ ସାଙ୍ଗ ହୁଅନ୍ତି । (ସେ ମୋ ସାଙ୍ଗ । ସେ ଆମ ଘରପାଖରେ ରହୁଛି ।) ବସ୍ତୁଗତ ଉପହାର ମଧ୍ୟ କାମଦିଏ (ସେ ତା'ର ଖେଳଣା ମୋତେ ଦିଏ । ତେଣୁ ସେ ମୋର ସାଙ୍ଗ) |
| ୨. ଏକମୁଖୀ ସାହାଯ୍ୟ | ୪-୯ ବର୍ଷ | ଶିଶୁଟି ଯାହା ଚାହେଁ, ତା କରିପାରିଥିବା ପିଲାଟି ତା'ର ସାଙ୍ଗ । (ସେ ମୋ ସହିତ ବଜାରକୁ ଯାଏ । ସେ ମୋର ସାଙ୍ଗ) । |
| ୩. ଦ୍ୱି'ମୁଖୀ ସହଯୋଗ | ୬-୧୨ବର୍ଷ | ଦେବାନେବାକୁ ଭିତ୍ତିକରି ବନ୍ଧୁତ୍ୱ ଗଠିତ ହୁଏ । (ସେ ମତେ ଅଙ୍କୁର ଦିଏ ଏବଂ ମୁଁ ତାକୁ ଲଜେନ୍ସ ଦିଏ । ଆମେ ଦୁହେଁ ବନ୍ଧୁ) । |
| ୪. ଅନ୍ତରଙ୍ଗତା ଏବଂ ପାରସ୍ପରିକତା ପୂର୍ଣ୍ଣ ବନ୍ଧୁତ୍ୱ | ୯-୧୫ ବର୍ଷ | ଅନ୍ତରଙ୍ଗତା ଓ ନିବିଡ଼ତା ଆସେ । |
| ୫. ନିବିଡ଼ତା ଓ ନିର୍ଭରଶୀଳତା | ୧୨ ବର୍ଷରୁ ଊର୍ଦ୍ଧ୍ୱ | ପରସ୍ପର ପ୍ରତି ଆନୁଗତ୍ୟ ଏବଂ ନିର୍ଭରଶୀଳତା ବୃଦ୍ଧିପାଏ । |

# ବାସଗୃହରୁ ବିଦ୍ୟାଳୟ

ବିଦ୍ୟାଳୟର ଜୀବନ ଶିଶୁ ପାଇଁ ଏକ ନୂତନ ଅନୁଭବ । ଏହା ଏକ ସ୍ୱତନ୍ତ୍ର ଧରଣର ଅବସ୍ଥାନ୍ତର । ଶିଶୁଟି 'ଘରପିଲା' ପରିବର୍ତ୍ତେ 'ସ୍କୁଲପିଲା'ର ଆଖ୍ୟା ପାଏ । ଗୋଟିଏ ପିଲା ସ୍କୁଲ-ଶିକ୍ଷା ଶେଷ କଲାବେଳକୁ ପ୍ରାୟ ୧୦,୦୦୦ ଘଣ୍ଟା ସ୍କୁଲରେ ଅତିବାହିତ କରିଥାଏ । ଘରଠାରୁ ଭିନ୍ନ ଏକ ପରିବେଶ, ସାଙ୍ଗସାଥିମାନଙ୍କ ସହିତ ଖେଳିବାର ସୁଯୋଗ, ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ସ୍ନେହଶ୍ରଦ୍ଧା ଏବଂ ସର୍ବୋପରି ସ୍କୁଲରେ ଶିକ୍ଷା ଦିଆଯାଉଥିବା ସୂଚନାସବୁ ନିଜକୁ ଜାଣିବା ପାଇଁ ଏବଂ ବୁଝିବା ପାଇଁ ନୂତନ ସମ୍ଭାବନା ଯୋଗାଇଥାଏ ।

ଏସବୁ ସତ୍ତ୍ୱେ ଶିଶୁ ଯେଉଁ ସମସ୍ତ ଉତ୍ସାହ ଉଦୀପକ ନେଇ ସ୍କୁଲ ଜୀବନ ଆରମ୍ଭ କରିଥାଏ, ସେଥିରେ କିଛିଟା ଆହ୍ୱାନର ସମ୍ମୁଖୀନ ହୁଏ । ସ୍କୁଲ ଜୀବନର ଆଦ୍ୟଭାଗ ଏବଂ ପରଭାଗ ଅନୁଭୂତିର ଏକ ତୁଳନାତ୍ମକ ବିଚାର କଲେ ଦେଖାଯାଏ ଯେ, ଶିଶୁ ପରବର୍ତ୍ତୀ ପର୍ଯ୍ୟାୟରେ ଅପେକ୍ଷାକୃତ କମ୍ ଆତ୍ମସନ୍ତୋଷ ଅନୁଭବ କରେ । ସମ୍ଭବତଃ ଶିକ୍ଷାଗତ ଆଭିମୁଖ୍ୟ ସହିତ ସମନ୍ୱୟ ରକ୍ଷା କରିବାର ଚାପ ଏବଂ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ପ୍ରିୟଭାଜନ ହେବାର ଚାପ ପିଲାମାନଙ୍କୁ ଏପରି ବିଷାଦମୁଖୀ କରିଥାଏ । ସ୍କୁଲରେ ପରିବେଶ ଏବଂ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ପ୍ରତ୍ୟାଶା ଶିଶୁର ମାନସିକ ବିକାଶକୁ ପ୍ରଭାବିତ କରିଥାଏ ।

## ବିଦ୍ୟାଳୟ ପରିବେଶ

ପ୍ରତ୍ୟେକ ବିଦ୍ୟାଳୟର ନିଜସ୍ୱ ସଂସ୍କୃତି ଓ ପରିବେଶ ରହିଛି । କେତେକ ବିଦ୍ୟାଳୟରେ ନୂତନ ଓ ସୃଜନଶୀଳ ଶିକ୍ଷା କାର୍ଯ୍ୟକ୍ରମ ଏବଂ ଶିଶୁମାନଙ୍କର ଲକ୍ଷ୍ୟ-ସାଧନ ଉପରେ ଅଧିକ ଗୁରୁତ୍ୱ ଦିଆଯାଏ । ଅନ୍ୟ କେତେକ ବିଦ୍ୟାଳୟର ଯେଉଁସବୁ କାର୍ଯ୍ୟକ୍ରମ ଗ୍ରହଣ କରାଯାଉଛି, ସେସବୁ କାର୍ଯ୍ୟକ୍ରମରେ ପିଲାମାନେ କେତେ ନିମଗ୍ନ ରହୁଛନ୍ତି-ତାହା ଉପରେ ପ୍ରାଧାନ୍ୟ ଦିଆଯାଏ । ପୁଣି ଅନ୍ୟ କେତେକ ବିଦ୍ୟାଳୟର ସ୍ୱତନ୍ତ୍ର କାର୍ଯ୍ୟକ୍ରମ ପାଇଁ ପିତାମାତା କେତେ ବେଶୀ ସମୟ ଯୋଗାଉଛନ୍ତି, ତାହାର ବିଚାର ମୁଖ୍ୟ ସ୍ଥାନ ପାଇଥାଏ । ବିଭିନ୍ନ ପ୍ରକାରର ପରିବେଶ ମଧ୍ୟରେ କେଉଁଟି ଉତ୍କୃଷ୍ଟ, ତାହା ନିର୍ଧାର୍ଯ୍ୟଭାବେ କହିବା କଷ୍ଟକର । ତେବେ ସ୍କୁଲରେ ସାଂସ୍କୃତିକ ପରିବେଶ ଓ ମୂଲ୍ୟବୋଧ ସହିତ ପିତାମାତା ଓ ଶିଶୁମାନଙ୍କର ପ୍ରତ୍ୟାଶାର ମେଳ ରଖିବା ଖୁବ୍ ଭଲ କଥା । ଏପରି ସଂଗତି ଶିଶୁର ବିକାଶକୁ ତ୍ୱରାନ୍ୱିତ କରିଥାଏ ।

ବିଦ୍ୟାଳୟରେ ଯେଉଁ ଶିକ୍ଷା କାର୍ଯ୍ୟକ୍ରମ ଅନୁସୃତ ହୁଏ, ତାହାର ଦୁଇଟି ଦିଗ ଥାଏ । ଗୋଟିଏ ହେଉଛି ଔପଚାରିକ (Formal) ଦିଗ ଏବଂ ଅନ୍ୟଟି ଅନୌପଚାରିକ (Informal) ଦିଗ । ଔପଚାରିକ ଦୃଷ୍ଟିରୁ ହୁଏତ ଶିଶୁର ପାଠୋନ୍ନତି ପତ୍ରର ବାମଭାଗରେ ପିଲାଟି କେଉଁ

ବିଷୟରେ କେତେ ନମ୍ବର ପାଇଛି ତାହା ଲେଖାଯାଇଥାଏ । ପାଠୋନ୍ନତି ପତ୍ରର ଦକ୍ଷିଣ ଦିଗରେ ଅନ୍ୟ କେତୋଟି ବିଷୟ ସୂଚିତ କରାଯାଏ । ସ୍ଥୂଳତଃ ଉପସ୍ଥାନ (Attendance)ର ମାତ୍ରା, ପିଲାଟିର କାର୍ଯ୍ୟ-ଅଭ୍ୟାସ, ସାମାଜିକ ଦକ୍ଷତା, ସହଯୋଗିତା , ପ୍ରତିଯୋଗିତା, ବନ୍ଧୁତା ଏବଂ ଅନ୍ୟଗୋଷ୍ଠୀ ସହ ସମ୍ପର୍କ ବିଷୟରେ ମୂଲ୍ୟାୟନ କରାଯାଇଥାଏ । କେତେକ ବିଦ୍ୟାଳୟରେ ଏହି ପ୍ରଚ୍ଛନ୍ନ ଶିକ୍ଷାଆଭିମୁଖ୍ୟ (Hidden Curricullum) ପ୍ରତି ଅଧିକ ଗୁରୁତ୍ୱ ଦିଆଯାଏ ।

ସ୍କୁଲ୍ ପରିବେଶ ଏବଂ ଶିକ୍ଷା ଆଭିମୁଖ୍ୟକୁ ଅତି କଟକଣାପୂର୍ଣ୍ଣ (Rigid) କରିବା ଫଳରେ ଲକ୍ଷ୍ୟ-ସାଧନମୁଖୀ (Achievement-Oriented) ଏବଂ ବୁଦ୍ଧିମାନ୍ ପିଲାମାନେ ଅଧିକ ଉପକୃତ ହୋଇନଥାନ୍ତି । ଅନ୍ୟ ପକ୍ଷରେ ପଛୁଆ ପିଲାମାନଙ୍କ ପାଇଁ ସ୍ୱତନ୍ତ୍ର ଆଭିମୁଖ୍ୟର ଆବଶ୍ୟକତା ଅନୁଭବ କରାଯାଏ ।

**ଶିକ୍ଷକ ଓ ଶିକ୍ଷାଦାନ ଶୈଳୀ**

ବିଦ୍ୟାଳୟର ପରିବେଶରେ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ଶିକ୍ଷକ ଏବଂ ଶିକ୍ଷାଦାନ ଶୈଳୀ । ସ୍କୁଲରେ ଶିଶୁଟିର ଦୈନନ୍ଦିନ ଜୀବନ ଶିକ୍ଷକ ଦ୍ୱାରା ପ୍ରଭାବିତ ହୁଏ । ଜଣେ ପ୍ରଭାବଶାଳୀ ଶିକ୍ଷକ ଅନେକଗୁଡ଼ିଏ ସକରାତ୍ମକ ଗୁଣର ଅଧିକାରୀ । ବିଶେଷତଃ ଦକ୍ଷତାର ସହିତ ଦୈନନ୍ଦିନ କର୍ମସୂଚୀ ପ୍ରସ୍ତୁତ କରି ପରିବର୍ତ୍ତିତ ପରିସ୍ଥିତି ସହିତ ସମନ୍ୱୟ ରକ୍ଷାକରିବା ସ୍ନେହଶ୍ରଦ୍ଧା ପ୍ରକଟନ କରିବା ଏବଂ ବିଶେଷ କରି ଭିନ୍ନ ଭିନ୍ନ ପିଲାମାନଙ୍କର ପୃଥକ୍ ପୃଥକ୍ ଚାହିଦା ପ୍ରତି ସଚେତନ ରହିବା ଭଲ ଶିକ୍ଷକର ନିଦର୍ଶନ । ଶିକ୍ଷକ କୌଣସି ଏକ ନିର୍ଦ୍ଦିଷ୍ଟ ଢାଞ୍ଚାର ବଶବର୍ତ୍ତୀ ନହୋଇ କିଛିଟା ସଚଳତା (Flexibility) ପ୍ରଦର୍ଶନ କରୁଥିଲେ ତାହା ଲକ୍ଷ୍ୟସାଧନମୁଖୀ ପିଲାମାନଙ୍କର ବିକାଶରେ ସହାୟକ ହୁଏ ।

ଶିକ୍ଷକ ଶ୍ରେଣୀଗୃହରେ ବହୁଧରଣର କାର୍ଯ୍ୟର ପରିଚାଳନା କରନ୍ତି । ସେ ଶିକ୍ଷଣୀୟ ବିଷୟବସ୍ତୁ ଉପରେ ସୂଚନା ପ୍ରଦାନ କରନ୍ତି । ଶିକ୍ଷାର୍ଥୀମାନଙ୍କର ବାକ୍ୟୁକ୍ତ (Verbal) ଏବଂ ବାକ୍‌ହୀନ କ୍ରିୟାକଳାପକୁ ନିୟନ୍ତ୍ରଣ କରନ୍ତି । ଶିଶୁର ଶ୍ରେଣୀ କାର୍ଯ୍ୟର ମୂଲ୍ୟାୟନ କରନ୍ତି ଏବଂ ତାହାର ଫଳାଫଳ ଶିଶୁକୁ ଅବଗତ କରାନ୍ତି । ସୀମିତ ସମୟ ମଧ୍ୟରେ ଉଦ୍ଦିଷ୍ଟ ଆଭିମୁଖ୍ୟ ସବୁକୁ କିପରି ପରିପୂରଣ କରାଯିବ, ତାହାର ଦାୟିତ୍ୱ ନିର୍ବାହ କରନ୍ତି ।

ଫ୍ରଏଡ୍‌ଙ୍କ ପରବର୍ତ୍ତୀ ବିଶିଷ୍ଟ ମନସମୀକ୍ଷକ ଏରିକ୍‌ସନ୍ ଶିକ୍ଷକର ଭୂମିକା ସମ୍ପର୍କରେ ଏକ ବିଶେଷ ମତ ପ୍ରଦାନ କରିଛନ୍ତି । ପୂର୍ବରୁ ସୂଚନା ଦିଆଯାଇଛି ଯେ, ପିଲାମାନେ ପ୍ରାକ୍-ବିଦ୍ୟାଳୟ ସୋପାନରେ ଯେଉଁ ଅନ୍ତର୍ଦ୍ୱନ୍ଦର ସମ୍ମୁଖୀନ ହୁଅନ୍ତି, ସେ ଦ୍ୱନ୍ଦଟି ପରିଶ୍ରମଶୀଳତା (Industry) ଏବଂ ହୀନମନ୍ୟତା (Inferiority) ଉପରେ କେନ୍ଦ୍ରୀଭୂତ । ପିଲାକୁ ଏ ଦୁଇଟି ପରସ୍ପରବିରୋଧୀ ମାନସିକତା ମଧ୍ୟରେ ସମନ୍ୱୟ ଆଣିବାକୁ ହୋଇଥାଏ । ଏରିକ୍‌ସନ୍‌ଙ୍କ ମତରେ ଜଣେ ଆଦର୍ଶ ଶିକ୍ଷକ ଶିଶୁର ନିଜସ୍ୱ ସାମର୍ଥ୍ୟ ଆକଳନ କରି ତାହାକୁ ଉପଯୋଗୀ କାର୍ଯ୍ୟ ଏବଂ ଦାୟିତ୍ୱ ଦିଅନ୍ତି । ଫଳରେ ପିଲାମନରେ ଆତ୍ମବିଶ୍ୱାସ ଓ ପରିଶ୍ରମଶୀଳତା ପ୍ରତିଷ୍ଠିତ ହୁଏ । କେଉଁ କାମଗୁଡ଼ିକ କ୍ଷେତ୍ରରେ ପିଲାଟି ସକ୍ଷମ, ତାହା ଜାଣିପାରେ । କେଉଁ କାର୍ଯ୍ୟଟି ପିଲାର ସାମର୍ଥ୍ୟର ପରିସର ବାହାରେ, ତାହା ମଧ ଜାଣିପାରେ । ଫଳରେ ଅତିମାତ୍ରାର

ଅସାଧ୍ୟ କାମରେ ହାତଦେଇ ସେ ବିଫଳ ହୁଏନାହିଁ ଏବଂ ହୀନମନ୍ୟତାର ମଧ ଶରବ୍ୟ ମଧ ହୁଏନାହିଁ । ଏ ଦୃଷ୍ଟିରୁ ଶିକ୍ଷକର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ ।

ପିଲାମାନଙ୍କର ସୁପରିଚାଳନା ପାଇଁ କୌଣସି ନିର୍ଦ୍ଦିଷ୍ଟ କୌଶଳକୁ ପୂରାପୂରି ସଫଳତାର ସୂଚକ ଆଖ୍ୟା ଦିଆଯାଇପାରିବ ନାହିଁ । ତେବେ ଏକ ଶାନ୍ତ ଏବଂ ପୂର୍ବାନୁମାନକ୍ଷମ (Predictable) ବାତାବରଣ ଗଠନ କରିବା ସଫଳ ଶୈଳୀର ମୁଖ୍ୟ ସୂଚକ । ଏପରି ସୁସ୍ଥ ଏବଂ ଶିକ୍ଷା ସହାୟକ ବାତାବରଣ ମଧରେ ଶିକ୍ଷାଦାନ କାର୍ଯ୍ୟ ବାଧାହୀନ ଭାବରେ ଗତିକରେ ।

ଶିଶୁପାଳଙ୍କ କ୍ଷେତ୍ରରେ ଆଲୋଚିତ ହୋଇଥିବା ଗୁରୁତ୍ୱମୁଖୀ (Authoritative) ଶୈଳୀ ପିତାମାତାଙ୍କ ପକ୍ଷେ ଉପଯୋଗୀ ବୋଲି ପୂର୍ବରୁ ଯୁକ୍ତି କରାଯାଇଛି । ଏପରି ଶୈଳୀରେ ପିତାମାତା ମୁଖ୍ୟ ବିଷୟରେ ନିୟନ୍ତ୍ରଣ ନିଜ ହାତରେ ରଖନ୍ତି ଏବଂ ଛୋଟ ଛୋଟ ଦୈନନ୍ଦିନ ନିଷ୍ପତ୍ତି କ୍ଷେତ୍ରରେ ଶିଶୁକୁ ସ୍ୱାଧୀନତା ଦିଅନ୍ତି । ଶିକ୍ଷକମାନେ ମଧ ଅନୁରୂପ ଗୁରୁତ୍ୱମୁଖୀ (Authoritative) ଶୈଳୀର ଉପଯୋଗଯୋଗ କରିପାରିବେ । ଏଠାରେ ସୂଚାଇଦେବା ଉଚିତ ହେବ ଗୁରୁତ୍ୱମୁଖୀ ଶୈଳୀ ପ୍ରଭୁତ୍ୱମୁଖୀ ବା ଏକଛତ୍ରବାଦୀ (Authoritarian) ଶୈଳୀଠାରୁ ଭିନ୍ନ ।ଏକଛତ୍ରବାଦୀ ଶୈଳୀରେ ଅସଂଖ୍ୟ କଟକଣା ବା ନିୟନ୍ତ୍ରଣ ('କର, କରନାହିଁ' ଉଚିତ ଅନୁଚିତ) ମଧରେ ଶିଶୁର ଜୀବନକୁ ଆବଦ୍ଧ ରଖାଯାଏ । ମାତ୍ର ଗୁରୁତ୍ୱମୁଖୀ ଶୈଳୀରେ ଅନୁଶାସନ ଓ ଅନୁମୋଦନର ସମନ୍ୱୟ ଘଟିଥାଏ । ଏପରି ଶୈଳୀ ଅନୁସରଣ କରିଥିବା ଶିକ୍ଷକ ଶିକ୍ଷୟିତ୍ରୀମାନେ ଶିଶୁର ବିକାଶକୁ ତ୍ୱରାନ୍ୱିତ କରନ୍ତି ।

ପିଲାମାନଙ୍କର ଜୀବନକୁ ପ୍ରଭାବିତ କରୁଥିବା ଶିକ୍ଷକର ଅନ୍ୟ ଏକ ଦିଗ ଆଧୁନିକ ଗବେଷଣାରେ ସ୍ପଷ୍ଟ ହୋଇଛି । ତାହା ହେଉଛି ଶିକ୍ଷକର ପ୍ରତ୍ୟାଶା (Expectation) । ଦେଖାଯାଇଛି ଯେ ଶିଶୁ ସମ୍ପର୍କରେ ଶିକ୍ଷକର ଉଚ୍ଚ ପ୍ରତ୍ୟାଶା ପିଲାଟିର ବିକାଶରେ ସହାୟକ ହୁଏ । ଅନ୍ୟ ପକ୍ଷରେ ପିଲାଟି ସମ୍ପର୍କରେ ନିମ୍ନଧରଣର ପ୍ରତ୍ୟାଶା ଶିଶୁ ପାଇଁ କ୍ଷତିକାରକ ହୁଏ ।

ଥରେ ଜଣେ ଗବେଷକ ଗୋଟିଏ ପ୍ରାଥମିକ ସ୍କୁଲକୁ ଯାଇ ସେଠାର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଧାରଣା ଦେଲେ ଯେ, ସେ ସ୍କୁଲର ପିଲାମାନେ ନିହାତି ମାମୁଲି । ତଥାପି ସେମାନଙ୍କର ପ୍ରଗତି ଉପରେ ନଜର ରଖିବା ପାଇଁ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଅନୁରୋଧ କରାଗଲା । ଗବେଷକ ନିକଟରେ ଥିବା ସମାନ ଧରଣର ଆଉ ଗୋଟିଏ ପ୍ରାଥମିକ ସ୍କୁଲକୁ ଯାଇ ସମ୍ପୂର୍ଣ୍ଣ ଭିନ୍ନ ଧାରଣା ଦେଲେ । ସେ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଜଣାଇଲେ ଯେ ଏହି ସ୍କୁଲର ବିଦ୍ୟାର୍ଥୀମାନେ ବୁଦ୍ଧିମାନ । ତଥାପି ପିଲାମାଙ୍କର ପ୍ରଗତି ଉପରେ ଲକ୍ଷ୍ୟ ରଖିବା ପାଇଁ ପରାମର୍ଶ ଦିଆଗଲା । ମଝିରେ ମଝିରେ ସେମାନଙ୍କର ବୁଦ୍ଧିମତ୍ତାର ମୂଲ୍ୟାୟନ ପାଇଁ ପରାମର୍ଶ ଦିଆଗଲା । ଆଶ୍ଚର୍ଯ୍ୟର କଥା ଯେ କିଛିମାସ ପରେ ଏହି ଦ୍ୱିତୀୟ ସ୍କୁଲର ପିଲାମାନେ ପ୍ରଥମ ସ୍କୁଲର ପିଲାମାନଙ୍କ ତୁଳନାରେ ଅଧିକ ବୁଦ୍ଧିମତ୍ତା ଦର୍ଶାଇଲେ । ଆରମ୍ଭରୁ ଦୁଇ ସ୍କୁଲର ପିଲାମାନେ ସମାନ ସ୍ତରରେ ରହିଥିଲେ ମଧ ଏହି ଦ୍ୱିତୀୟ ସ୍କୁଲର ପିଲାମାନେ ଅପେକ୍ଷାକୃତ ଅଧିକ ବିଚକ୍ଷଣତା ପ୍ରଦର୍ଶନ କଲେ । ସୁତରାଂ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ଉଚ୍ଚ

ପ୍ରତ୍ୟାଶା ଏବଂ ସକରାତ୍ମକ ଭାବନା ଦ୍ୱିତୀୟ ସ୍କୁଲରେ କାର୍ଯ୍ୟକରିଛି, ଏପରି ସିଦ୍ଧାନ୍ତ ଗ୍ରହଣୀୟ ମନେହେଲା ।

ପ୍ରଶ୍ନ ଉଠିପାରେ ଯେ, ଶିକ୍ଷକମାନଙ୍କର ଉଚ୍ଚ ପ୍ରତ୍ୟାଶା ପିଲାମାନଙ୍କର ଶିକ୍ଷାକାର୍ଯ୍ୟର ଫଳାଫଳକୁ ପ୍ରଭାବିତ କରେ କିପରି ? ଲକ୍ଷ୍ୟ କରାଯାଇଛି ଯେ, ଉଚ୍ଚ ପ୍ରତ୍ୟାଶା ଥିବା ସମୟରେ ଶିକ୍ଷକ ସମ୍ପୃକ୍ତ ବିଦ୍ୟାର୍ଥୀମାନଙ୍କୁ ଅଧିକ ଆହ୍ୱାନାତ୍ମକ (Challenging) କାର୍ଯ୍ୟସବୁ ଦିଅନ୍ତି ଏବଂ ଆଗ୍ରହର ସହିତ ଶିକ୍ଷାଦାନ କରନ୍ତି । ପୁଣି ଏପରି ପିଲାମାନଙ୍କଠାରୁ ଉଚ୍ଚମାନର ଫଳାଫଳ ମଧ୍ୟ ଆଶା କରନ୍ତି । ସର୍ବୋପରି ଉଚ୍ଚ ପ୍ରତ୍ୟାଶା ରଖିଥିବା ପିଲାମାନଙ୍କୁ ଠିକ୍ ସମୟରେ ପ୍ରୋତ୍ସାହନ ଦିଅନ୍ତି । ସେମାନଙ୍କର ସଫଳତା ସମୟରେ ଶିକ୍ଷକମାନଙ୍କର ସ୍ମିତହସ, ପ୍ରଶଂସା ଏବଂ ଆଦରଭଙ୍ଗୀ ଲକ୍ଷ୍ୟ କରାଯାଏ । ସ୍ଥୂଳତଃ ଶିକ୍ଷକମାନେ ଏସବୁ ସ୍ୱୀକାର ନକଲେ ମଧ୍ୟ ନିଜର ଅଜ୍ଞାତସାରରେ ଏପରି ପିଲାମାନଙ୍କ ପ୍ରତି ଶ୍ରଦ୍ଧାପୂର୍ଣ୍ଣ ବ୍ୟବହାର ଦର୍ଶାନ୍ତି । ଏପରି କାର୍ଯ୍ୟ ପିଲାମାନଙ୍କ ବିକାଶର ସହାୟକ ହୁଏ ।

ଉଚ୍ଚପ୍ରତ୍ୟାଶା ଯେପରି ପିଲାର ସହାୟକ, ନିମ୍ନ ପ୍ରତ୍ୟାଶା ସେହିପରି ପିଲାମାନଙ୍କର କ୍ଷତିକାରକ ହୋଇଥାଏ । କିଛିବର୍ଷ ତଳେ ଜଣେ ଗବେଷକ ପିଲାମାନଙ୍କେ ଶିଶୁ ଶ୍ରେଣୀର ପ୍ରବେଶ କରିବା ଦିନଠାରୁ ତୃତୀୟ ଶ୍ରେଣୀ ସମାପ୍ତ କରିବା ପର୍ଯ୍ୟନ୍ତ ଶିକ୍ଷକ ଶିକ୍ଷୟିତ୍ରୀଙ୍କର ଅଲକ୍ଷ୍ୟରେ ଏକ ବିଶେଷ ଧରଣର ପର୍ଯ୍ୟବେକ୍ଷଣ କଲେ । ଗବେଷକ ଲକ୍ଷ୍ୟ କଲେ ଯେ ପିଲାମାନେ ଶ୍ରେଣୀକୁ ଆସିବାର ଅଳ୍ପ ଦିନ ମଧ୍ୟରେ କେତେକ ଶିକ୍ଷକ ଶିକ୍ଷୟିତ୍ରୀ ସେମାନଙ୍କର ଗତାନୁଗତିକ ଶିରୋନାମା ପ୍ରୟୋଗ କରୁଛନ୍ତି । ଦୁଃସ୍ଥ ପରିବାରରୁ ଆସୁଥିବା ଏବଂ ଚକ୍ ଚକ୍‌କିଆ ପୋଷାକ ପିନ୍ଧିନଥିବା ପିଲାମାନଙ୍କୁ ପଛୁଆ ବର୍ଗର ପିଲା ବୋଲି ଅଭିହିତ କରୁଛନ୍ତି । ଅନ୍ୟ ପକ୍ଷରେ ପରିଷ୍କାର ପରିଚ୍ଛନ୍ନ ଓ ଚକ୍‌ଚକ୍‌କିଆ ପୋଷାକ ପିନ୍ଧିଥିବା ପିଲାମାନଙ୍କୁ ଆଗୁଆ ପିଲାର ଆଖ୍ୟା ଦେଉଛନ୍ତି । ଆଶ୍ଚର୍ଯ୍ୟର କଥା ଯେ ଏପରି ପିଲାମାନେ ବିଧିବଦ୍ଧ ଭାବରେ କୌଣସି ପରୀକ୍ଷା ଦେଇ ଗତିନକରି ଥିଲେ ମଧ୍ୟ ସେମାନଙ୍କୁ ଏପରି ବିଭାଗୀକରଣ କରାଯାଉଛି ।

ମାନସିକ ସ୍ତରରେ ଏପରି ବିଭାଗୀକରଣ ଫଳରେ ଶିକ୍ଷକ ଶିକ୍ଷୟିତ୍ରୀମାନେ ଏହି ଦୁଇବର୍ଗର ପିଲାଙ୍କ ପ୍ରତି ଭିନ୍ନ ଭିନ୍ନ ଆଚରଣ ଦର୍ଶାଉଛନ୍ତି । 'ପଛୁଆ' ଆଖ୍ୟା ଦେଇଥିବା ପିଲାମାନଙ୍କୁ ଅଧିକ ନିୟନ୍ତ୍ରଣମୁଖୀ ବ୍ୟବହାର (Controlling behaviour) ଦର୍ଶାଇବା ସ୍ଥଳେ ''ଆଗୁଆ'' ପିଲାମାନଙ୍କ ପାଇଁ ସହାୟକ ବ୍ୟବହାର (Supportive Behaviour) ଦର୍ଶାଉଛନ୍ତି । ଜୋରରେ ପାଟିକରି ଚିତ୍କାର କରି ନିୟନ୍ତ୍ରଣ କରିବା, ମାରଧର କରିବା ଏବଂ ଗାଳିଗୁଲଜ କରିବାର ବ୍ୟବହାରସବୁ ନିୟନ୍ତ୍ରଣମୁଖୀ ଆଚରଣ । ଅନ୍ୟପକ୍ଷରେ ସ୍ନେହ ଆଦର ଦର୍ଶାଇବା ଏବଂ ପ୍ରୋତ୍ସାହନ ଦେବା ସହାୟକ ବ୍ୟବହାର । କହିବା ଅନାବଶ୍ୟକ ଯେ, ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ନିୟନ୍ତ୍ରଣମୁଖୀ ବ୍ୟବହାର ଶିଶୁର କ୍ଷତି କରିବା ସ୍ଥଳେ ସହାୟକ ବ୍ୟବହାର ଶିଶୁର ବିକାଶକୁ ତ୍ୱରାନ୍ୱିତ କରିବ । ସୁତରାଂ ଶିକ୍ଷକ ଶିକ୍ଷୟିତ୍ରୀ କୌଣସି କୃତ୍ରିମ ଉପାଦାନକୁ ଭିତ୍ତିକରି ନିମ୍ନ ପ୍ରତ୍ୟାଶା ଗଠନକୁ ବିରତ ରହିବା ଆବଶ୍ୟଖ । ବରଂ ଉଚ୍ଚ ପ୍ରତ୍ୟାଶା ଗଠନ କରିବା ମାଧ୍ୟମରେ ପିଲାମାନଙ୍କର ଅଶେଷ ହିତସାଧନ କରିପାରିବେ ।

## ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କ ପାଇଁ ସହାୟକ ପରାମର୍ଶ

୧. ପିଲାମାନଙ୍କର ଗ୍ରହଣଶୀଳତା ଉଚ୍ଚମାନର ହୋଇଥଲେ ଶିକ୍ଷାଦାନ ଶୈଳୀର କିଛିଟା ସଚଳତା (Flexibility) ଉପଯୋଗୀ ହୋଇଥାଏ । ଏପରି ଶୈଳୀ ଲକ୍ଷ୍ୟ ସାଧନମୁଖୀ (Achievement Oriented) ପିଲାଙ୍କୁ ବେଶ୍ ସହାୟକ ହୁଏ । ଅନ୍ୟ ପକ୍ଷରେ ସାଧାରଣ ସ୍ତରର ପିଲାମାନଙ୍କ ପାଇଁ ଯୋଜନାବଦ୍ଧ (Structured) ଏବଂ ସଂଗଠିତ ଶୈଳୀ ଉପଯୋଗୀ ହୁଏ ।

୨. ପିତାମାତାଙ୍କର ଗୁରୁତ୍ୱମୁଖୀ (Althoritative) ଶୈଳୀ ପିଲାମାନଙ୍କ ପାଇଁ ଉପଯୋଗୀ । ଅନୁରୂପ ଭାବରେ ଶିକ୍ଷକ ଶିକ୍ଷୟିତ୍ରୀ ଏହି ଶୈଳୀର ଅନୁସରଣ କରିବା ବିଧେୟ । ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଶିକ୍ଷକ ଶିକ୍ଷୟିତ୍ରୀ ଗ୍ରହଣ କରି ଶିଶୁକୁ ଦକ୍ଷତା ଶିକ୍ଷାଦେବେ ଏବଂ ତା'ର ପରୀସୀମତ୍ୱ (Limitation) ମଧ୍ୟ ବୁଝାଇବେ । ଦୈନନ୍ଦିନ କେତେକ ଛୋଟକାଟିଆ ନିଷ୍ପତ୍ତି କ୍ଷେତ୍ରରେ ଶିଶୁର ସ୍ୱାଧୀନତାକୁ ସମ୍ମାନ ଦିଆଯିବ ।

୩. ପିଲାମାନଙ୍କ ସମ୍ପର୍କରେ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ଉଚ୍ଚ ପ୍ରତ୍ୟାଶା ସକରାତ୍ମକ ଭୂମିକା ନିର୍ବାହ କରେ । ଶିକ୍ଷକ ଶିକ୍ଷୟିତ୍ରୀ ନିଜର ଅଜ୍ଞାତସାରରେ ଉପଯୋଗୀ ବ୍ୟବହାର ଦର୍ଶାନ୍ତି । ପିଲାମାନେ ମଧ୍ୟ ଉପଯୋଗୀ ବ୍ୟବହାର ଦର୍ଶାନ୍ତି । ସୁତରାଂ ଉଚ୍ଚ ପ୍ରତ୍ୟାଶା ଗଠନ ଦିଗରେ ଯତ୍ନବାନ ହୁଅନ୍ତୁ ।

୪. ଅନ୍ୟ ପକ୍ଷରେ ପିଲାମାନଙ୍କ ସମ୍ପର୍କରେ ନିମ୍ନ ପ୍ରତ୍ୟାଶା (କଦର୍ଯ୍ୟ ଧାରଣା) ପିଲାମାନଙ୍କର କ୍ଷତି କରେ । ଶିକ୍ଷକ ଶିକ୍ଷୟିତ୍ରୀ ନିଜର ଅଜ୍ଞାତସାରରେ ଅନୁପଯୋଗୀ ବ୍ୟବହାର ଦର୍ଶାନ୍ତି । ସୁତରାଂ ଏପରି ମାନସିକତାଠାରୁ ଦୂରେଇ ରୁହନ୍ତୁ ।

# ଆବେଗିକ ସମସ୍ୟା

ଭୟଭୀତ ହୋଇ ପିଲାମାନଙ୍କର ବଣଭୋଜିକୁ ନଯିବାର ଶିଶୁ ବିରଳ ନୁହଁ । ଅନ୍ୟ କେତେକ ଶିଶୁକୁ ପରୀକ୍ଷା କିମ୍ବା ଡାକ୍ତର ଦେଖାଇବା ପୂର୍ବରୁ ବହୁ ସମୟ ଧରି ବୁଝାଇ ଶୁଝାଇ ରାଜି କରିବାକୁ ହୁଏ । ପୁଣି ଅନ୍ୟ କେତେକ ଶିଶୁ ଛାଟିପିଟି ହୋଇ ଜିଦ୍‌ଧରି ଏପରି କାନ୍ଦନ୍ତି ଯେ ସେମାନଙ୍କର ଅତି ପ୍ରିୟଜନ ମଧ୍ୟ ବିରକ୍ତି ଅନୁଭବ କରନ୍ତି । ସ୍କୁଲ ବୟସର ଶିଶୁମାନଙ୍କ ମଧ୍ୟରୁ ବେଶ୍ କିଛି ସଂଖ୍ୟକ ଶିଶୁ ଏପରି ଭାବଗତ ବା ଆବେଗିକ (Emotional) ବିପର୍ଯ୍ୟୟ ଦର୍ଶାଇଲେ ମଧ୍ୟ ଖୁବ୍ କମସଂଖ୍ୟକ ପିଲାଙ୍କ ପାଇଁ ସମାଧାନର ପଦକ୍ଷେପ ନିଆଯାଏ । ସମସ୍ୟା ସବୁ ବିଭିନ୍ନ ଧରଣର ହୋଇଥାଏ ।

## ସମସ୍ୟାର ପ୍ରକାରଭେଦ

ଅନେକ ସମୟରେ ଆବେଗିକ ସମସ୍ୟାସବୁ ବ୍ୟବହାର ସ୍ତରର ପ୍ରତିଫଳିତ ହୁଏ । ଏପରି ଆଚରଣଗତ ସମସ୍ୟା (Acting-out) ବିଭିନ୍ନ ରୂପରେ ପ୍ରକାଶ ପାଏ । ପିଲାଟି ହୁଏତ ଅନ୍ୟମାନଙ୍କ ସହିତ କଳିଗୋଳ କରେ, ମିଛ କହେ, ଚୋରିକରେ ଜିନିଷପତ୍ର ନଷ୍ଟକରେ ଏବଂ ନିୟମସବୁକୁ ଭାଙ୍ଗିଥାଏ । ଅବଶ୍ୟ ପ୍ରାୟ ସବୁଶିଶୁ ମାଡଗାଳିରୁ ରକ୍ଷା ପାଇବା ପାଇଁ କେବେକେବେ ଏପରି ବ୍ୟବହାର ଦର୍ଶାଇଥାଆନ୍ତି । ମାତ୍ର ଛ'ସାତ ବର୍ଷ ବୟସ ପାରି ହୋଇ ଯାଇଥିବା ପିଲାମାନେ ରୀତିମତ ଏପରି ଆଚରଣଗତ ସମସ୍ୟା ଦର୍ଶାଇଲେ, ତାହାର ଅନ୍ତରାଳରେ ଆବେଗିକ ବିପର୍ଯ୍ୟୟ ସକ୍ରିୟ ରହିଛି ବୋଲି ବିଚାର କରାଯିବା । ସେମାନଙ୍କ ମନରେ ଭାବଗତ ସୁରକ୍ଷାର ଅଭାବ ରହିଛି ଏବଂ ସେମାନେ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ଏସବୁ କରୁଛନ୍ତି ବୋଲି ବିଚାର କରିବା ସ୍ୱାଭାବିକ । ସେହିପରି ସାମୟିକ ଭାବରେ ପିଲାଟିଏ ଛୋଟକାଟିଆ କିଛି ଗୋଟିଏ ଚୋରାଇନେବା କାର୍ଯ୍ୟକୁ ବିପର୍ଯ୍ୟୟର ସୂଚକ ବୋଲି ବିଚାର କରିବା ଯୁକ୍ତିଯୁକ୍ତ ନୁହେଁ । ମାତ୍ର ପିଲାର ଏପରି ବ୍ୟବହାରର ପୁନରାବୃତ୍ତି ଘଟିଲେ ଏବଂ ସେ ସହଜରେ ଧରାପଡିଲାଭଳି ଖୋଲାଖୋଲି ଚୋରିକଲେ, ଏହାକୁ ଏକ ଆଚରଣ ଗତ ସମସ୍ୟାବୋଲି ବିଚାର କରିବାକୁ ହେବ । ପିଲାଟି ମନରେ ସୁରକ୍ଷା ଭାବର ଅଭାବ ଏବଂ ପିତାମାତା ଓ ସେମାନଙ୍କ ମାନଦଣ୍ଡ ପ୍ରତି ଏହା ଏକ ବିଦ୍ରୋହ (Hostility), ଏହା ସ୍ୱୀକାର କରିବାକୁ ହେବ । ଅନେକ କ୍ଷେତ୍ରରେ ପିଲା ଚୋରି କରୁଥିବା ବସ୍ତୁସବୁ ପିତାମାତାଙ୍କର ସ୍ନେହ, ଶ୍ରଦ୍ଧା, ଶକ୍ତି ଓ ପ୍ରଭୁତ୍ୱର ପ୍ରତୀକ । ପିତାମାତାଙ୍କ ସ୍ନେହଶ୍ରଦ୍ଧାରୁ ବଞ୍ଚିତ ହେଇ ପିଲା ଏଥିରେ ପ୍ରବୃତ୍ତ ହେବାର ସମ୍ଭାବନା ଅଛି ।

ଶିଶୁର ଯେକୌଣସି ଗୁରୁତର ଅସାମାଜିକ କାର୍ଯ୍ୟକଳାପ ତା'ର ଅନ୍ତର୍ନିହିତ ସୁରକ୍ଷାହୀନତା (Insecurity)ର ପରିପ୍ରକାଶ । ଅସାମାଜିକ ବ୍ୟବହାର ବ୍ୟତୀତ ଅନ୍ୟ କେତେକ ସିଧାସଳଖ ଭାବଗତ ବିପର୍ଯ୍ୟୟ ମଧ୍ୟ ପରିଦୃଷ୍ଟ ହୁଏ । ଉଦ୍‌ବେଗ (Anxiety) ସେହିପରି ଏକ ଭାବଗତ ବିପର୍ଯ୍ୟୟ ।

ବେଶ୍ କିଛିସଂଖ୍ୟକ ଶିଶୁ ସ୍କୁଲ ଯିବା ଆରମ୍ଭ କରିବା ସମୟରେ ଉଦ୍‌ବେଗ ବା ଉତ୍‌କଣ୍ଠାର ଲକ୍ଷଣ ଦର୍ଶାନ୍ତି । ସେମାନଙ୍କର ନିଦଭାଙ୍ଗୁନାହିଁ ବୋଲି ଅଭିଯୋଗ କରନ୍ତି । ମୁଣ୍ଡବିନ୍ଧା, ପେଟବ୍ୟଥା ଏବଂ ଥଣ୍ଡା ଲାଗିଥିବାର ଅଭିଯୋଗ କରନ୍ତି । ଦେହ ଖରାପ ହୋଇଥିବାରୁ ଶିଶୁଟି ରହିପାରେ ବୋଲି ମା' କହିବା ମାତ୍ରେ ରୋଗର ଲକ୍ଷଣସବୁ ଚାଲିଯାଏ । ଦିନର ଅବଶିଷ୍ଟ ଅଂଶଟି ଶିଶୁ ହସିଖେଳି କଟାଇଦିଏ । ସେହିପରି ସ୍କୁଲ ଆରମ୍ଭ କରିବାର ପ୍ରଥମ ଦୁଇ ତିନି ସପ୍ତାହରେ ଶିଶୁ ତା'ର ପ୍ରିୟଜନ (ଯଥା– ମା')ଠାରୁ ଅଲଗା ହୋଇ ସ୍କୁଲକୁ ଯିବାର ଭୟ ତା'ମନରେ ଉଦ୍‌ବେଗ ସୃଷ୍ଟିକରେ । ଏହା ଏକ ସ୍ୱତନ୍ତ୍ର ଧରଣର ଉଦ୍‌ବେଗ ।

ସେହିପରି ଗୋଟିଏ ଶିଶୁ ଏକୁଟିଆ ଶୋଇବାକୁ ପଛଘୁଞ୍ଚା ଦେଇପାରେ । କେତେକ ଶିଶୁ ବାପାମା'ଙ୍କ ପାଖଛାଡ଼ିବାକୁ ନାରାଜ ହୁଅନ୍ତି । କୌଣସି କାରଣରୁ ସେମାନଙ୍କୁ ବାପମା'ଠାରୁ ଦୂରେଇଦେଲେ ସେମାନେ ଅସୁସ୍ଥତାର ଆଳ ଦେଖାନ୍ତି । ଏପରି ବିପର୍ଯ୍ୟୟ ସ୍କୁଲ ଯିବା ବୟସରୁ ଆରମ୍ଭ ହୋଇ ଦୀର୍ଘଦିନ ପର୍ଯ୍ୟନ୍ତ ଅପରିବର୍ତ୍ତିତ ରହିପାରେ । ବିଶେଷକରି ଅତିଯତ୍ନରେ ପ୍ରତିପାଳିତ ହେଉଥିବା ଛୋଟ ପରିବାରରୁ ଆସିଥିବା ପିଲାମାନେ ଏପରି ଲକ୍ଷଣ ଦର୍ଶାନ୍ତି । ଅନେକ ସମୟରେ ଏପରି ଉଦ୍‌ବେଗ ସବୁ ଅବସ୍ଥାରେ ରହିଥାଏ । ମାତ୍ର ପୋଷା କୁକୁର କିମ୍ବା ବିରାଡିର ମୃତ୍ୟୁ, ପରିବାରରେ ଅସୁସ୍ଥତା ଏବଂ ପୂରାପୂରି ନୂଆଜାଗାକୁ ସ୍ଥାନାନ୍ତରୀତ ହେବାପରି ଘଟଣାସବୁ ସୁପ୍ତ ଉଦ୍‌ବେଗକୁ ପ୍ରକାଶ୍ୟ ରୂପଦିଏ ।

କେତେକ ପିଲାଙ୍କର ଅହେତୁକ ସ୍କୁଲ–ଭୟ (School Phobia) ରହିଥାଏ । ଅନେକ ସମୟରେ ମା'କୁ ଛାଡ଼ିଆସିଥିବାର ଉଦ୍‌ବେଗ (Separation Anxiety) ଏବଂ ସ୍କୁଲ ଭୟକୁ ପୃଥକ୍ କରି ଚିହ୍ନିବା କଷ୍ଟକର । ପିଲାଟି ସ୍କୁଲରେ ନିଜର ଭୟ ଓ ଉଦ୍‌ବେଗ ପ୍ରକାଶ କରୁଥିଲେ ଅନେକ ଧରିନିଅନ୍ତି ଯେ ଘରେ ପିତାମାତାକୁ ଛାଡ଼ିଦେଇ ଆସିଥିବାରୁ ଏପରି ଅନୁଭବ ବ୍ୟକ୍ତକରୁଛି । ମାତ୍ର ଶିକ୍ଷକଙ୍କର କଠୋର ଶାସନ, ପାଟିତୁଣ୍ଡ, ଗାଳିଗୁଲଜ ଏବଂ ମାଡ଼ ଭୟ ଶିଶୁର ଅଶ୍ୱସ୍ତିର କାରଣ ହୋଇପାରେ ।

ଶିଶୁର ଅନ୍ୟ ଗୋଟିଏ ଭାବଗତ ବିପର୍ଯ୍ୟୟ ହେଉଛି ତା'ର ବିଷାଦ ବା ବିଷର୍ଣ୍ଣତା (Depression) । ବିଷାଦଗ୍ରସ୍ତ ପିଲାର ମନେହୁଏ ଯେ, ତାକୁ କେହି ଭଲପାଉ ନାହାଁନ୍ତି । ପିଲାମାନେ ବିଷାଦଗ୍ରସ୍ତ ହେଲେ ସ୍କୁଲକୁ ଯିବାରେ ଅବହେଳା ଦର୍ଶାଇବା ସହ ଅନ୍ୟ କେତେକ ଆଚରଣଗତ ସମସ୍ୟା ଦର୍ଶାନ୍ତି । ଖୁବ୍ ଅଳ୍ପ କେତେକସ୍ଥଳରେ ଆତ୍ମହତ୍ୟା କରିବାର ମଧ୍ୟ ଦୃଷ୍ଟାନ୍ତ ରହିଛି । ଅବଶ୍ୟ ପ୍ରତିଶିଶୁ ଅଳ୍ପ ସମୟ ପାଇଁ ବିଷାଦ ଅନୁଭବ କରନ୍ତି । ସମୟକ୍ରମେ ତାହା ଚାଲିଯାଏ ଏବଂ ପିଲାଟି ସ୍ୱାଭାବିକ ଅନୁଭବ କରେ । ମାତ୍ର ବିଷାଦର ମାତ୍ରା ତୀବ୍ର ଓ

ଦୀର୍ଘସ୍ଥାୟୀ ହେଲେ ଏହାକୁ ଭାବଗତ ବିପର୍ଯ୍ୟୟର ଆଖ୍ୟା ଦିଆଯାଏ । ବୟସ୍କମାନଙ୍କ ବିଷାଦର ଲକ୍ଷଣ ସବୁ ସହିତ ପିଲାମାନଙ୍କ ବିଷାଦର ସୂଚକସବୁ ଏକାପରି ହେଲେ ମଧ୍ୟ କେତୋଟି ଶିଶୁସଂଶ୍ଳିଷ୍ଟ ଲକ୍ଷଣ ଜଡ଼ିତ ଥାଏ ।

ବନ୍ଧୁହୀନତା ଶୈଶବକାଳୀନ ବିଷାଦର ଏକ ବିଶେଷ ଲକ୍ଷଣ । ମଜା କୌତୁକ କରିବାର ଅସାମର୍ଥ୍ୟ, କୌଣସି କାମରେ ମନଲଗାଇବାର ଅକ୍ଷମତା ଏବଂ ଅନ୍ୟମାନଙ୍କ ପ୍ରତି ନିଜର ପ୍ରତିକ୍ରିୟା ପ୍ରାକାଶ କରିବାର ଅସାମର୍ଥ୍ୟ ବିଷାଦର ଲକ୍ଷଣ । ବିଷାଦଗ୍ରସ୍ତ ପିଲାମାନେ ଅନେକ ସମୟରେ କ୍ଳାନ୍ତ ରୁହନ୍ତି । ବେଳେବେଳେ ମାତ୍ରାଧିକ ସକ୍ରିୟତା ଦର୍ଶାନ୍ତି । ପୁଣି ଅନ୍ୟ ସମୟରେ ପୂରାପୂରି ନିଷ୍କ୍ରିୟ ଥାଆନ୍ତି । ଖୁବ୍ କମ୍ ଚାଲବୁଲ୍ କରନ୍ତି । ଅତିବେଶୀ ଶୁଅନ୍ତି କିମ୍ବା ଅଳ୍ପ ଶୁଅନ୍ତି । ଧୀର୍ଘସମୟ କାନ୍ଦନ୍ତି, ଖାଇବାରେ ଆଗ୍ରହ ଦର୍ଶାନ୍ତି ନାହିଁ । ଅନେକ ସମୟରେ ଅସୁସ୍ଥତାର ଅଭିଯୋଗ କରନ୍ତି । ସ୍କୁଲକାର୍ଯ୍ୟ ଭଲ ରୂପେ କରିପାରନ୍ତି ନାହିଁ । ଅଧିକାଂଶ ସମୟ ଅସୁଖୀ ରୁହନ୍ତି । ନିଜକୁ ଦୋଷୀ ବିଚାରକରନ୍ତି । ଆତ୍ମହତ୍ୟା ପରି ଖରାପ ଚିନ୍ତା ମନକୁ ଆସେ । ଏସବୁ ଲକ୍ଷଣରୁ ଚାରିପାଞ୍ଚୋଟି ଲକ୍ଷଣ ପ୍ରକାଶ ପାଉଥିଲେ ପିଲାଟି ପାଇଁ ବିଶେଷଜ୍ଞ ପରାମର୍ଶ ଆବଶ୍ୟକ ହୋଇଥାଏ ।

ପିଲା ହେଉ କିମ୍ବା ବୟସ୍କ ବ୍ୟକ୍ତି ହୁଅନ୍ତୁ, ବିଷାଦର କାରଣ ଜଟିଳ । ବଂଶାନୁକ୍ରମିକତା,ଶାରୀରିକ ରାସାୟନିକ ଅବସ୍ଥା ଏବଂ ଯନ୍ତ୍ରଣାଦାୟକ ପରିସ୍ଥିତି ସବୁର ମିଶ୍ରିତ ପ୍ରଭାବ ଏକ୍ଷେତ୍ରରେ ଲକ୍ଷ୍ୟ କରାଯାଇଛି । ବିଷାଦଗ୍ରସ୍ତ ପିଲାମାନଙ୍କ ପିତାମାତା ବିଷାଦଗ୍ରସ୍ତ ହୋଇଥିବାର ଲକ୍ଷ୍ୟ କରାଯାଇଛି । ପୁଣି ବିଷାଦଗ୍ରସ୍ତ ପିତାମାତା ତ୍ରୁଟିପୂର୍ଣ୍ଣ ଶିଶୁପାଳନ ଭଙ୍ଗୀ ମାଧମରେ କେତେକ ଅବାଂଛିତ ପରିଣତି ସୃଷ୍ଟି ପାରନ୍ତି । ସେହିପରି ବିଷାଦଗ୍ରସ୍ତ ପିଲମାନେ ସ୍କୁଲକାର୍ଯ୍ୟର ପଛୁଆ ରହୁଥିବାର ଦେଖାଯାଏ । ମାତ୍ର ସେମାନଙ୍କ ଅପାରଗତା ବିଷାଦ ଜନ୍ମାଏ ବି ବିଷାଦ ଅପାରଗତାର କାରଣ ହୁଏ, ସେ ବିଷୟରେ ସ୍ଥିରନିଶ୍ଚିତ ଦେବା କଷ୍ଟକର ।

## ପ୍ରତିକାର ବ୍ୟବସ୍ଥା

ଆଲୋଚିତ ସମସ୍ୟାଗୁଡ଼ିକର ପ୍ରତିକାର ବ୍ୟବସ୍ଥା ଶିଶୁର ବ୍ୟକ୍ତିତ୍ୱ, ପରିବାରର ଲୋକମାନଙ୍କ ଇଚ୍ଛା ଓ ସହଯୋଗିତା ଏବଂ ବିଶେଷଜ୍ଞଙ୍କର ସୁବିଧା ସୁଯୋଗ ଉପରେ ନିର୍ଭରକରେ । ଅନେକ କ୍ଷେତ୍ରରେ ଭାବଗତ ବିପର୍ଯ୍ୟୟର ଚିକିତ୍ସା ଶିଶୁର ବ୍ୟକ୍ତିଗତ ସ୍ତରରେ କରାଯାଇଥାଏ । ମନୋବିଜ୍ଞାନୀ ଏବଂ ମନୋଚିକିତ୍ସକ ଶିଶୁର ଅନୁଭବ, ତା'ର ଅନ୍ୟମାନଙ୍କ ସହିତ ସମ୍ପର୍କ ଏବଂ ପରିବେଶର ସ୍ୱରୂପ ନିରୂପଣ କରନ୍ତି । ପିତାମାତାଙ୍କ ଅନୁଭୂତିକୁ ମଧ୍ୟ ବିଶ୍ଳେଷଣ କରାଯାଏ । ପରିବାରରେ ପ୍ରିୟଜନକ ମୃତ୍ୟୁପରି ଅନ୍ୟ କୌଣସି ଅଘଟଣ ଘଟିଛି କି ନାହିଁ, ତାହା ବିଚାର କରାଯାଏ । ଏସବୁର ଭିତ୍ତିଭୂମି ଉପରେ ଶିଶୁକୁ ଉପଦେଶନ ଦିଆଯାଏ । ବିଶେଷତଃ ଶିଶୁର ନିଜସ୍ୱ ଅନୁଭୂତି ରହିଛି, ଏହାକୁ ସ୍ୱୀକାର କରିବାକୁ ହେବ । ଶିଶୁ ଅଧିକାରକୁ ସମ୍ମାନ ଦେବାକୁ ଦେବ । ଏପରି ମୂଳନୀତି ଉପରେ ପ୍ରତିଷ୍ଠିତ ଏକ ବ୍ୟକ୍ତିମୁଖୀ ଚିକିତ୍ସା ପିତାମାତାଙ୍କ ସହଯୋଗ ଲାଭକରି ସଫଳ ହୋଇପାରେ ।

ଅନ୍ୟ କେତେକ ସ୍ଥଳରେ ପାରିବାରିକ ଉପଦେଶ (Family Counselling)ର ପ୍ରୟୋଗ କରାଯାଏ । ପିତାମାତା ଓ ଶିଶୁ ଏକତ୍ର ହୋଇ ଉପଦେଶନର ସୁବିଧା ନିଅନ୍ତି । ଚିକିତ୍ସକ ଓ ଉପଦେଶକ ସମଗ୍ର ପରିବାରଟିର କାର୍ଯ୍ୟକଳାପ ପର୍ଯ୍ୟବେକ୍ଷଣ କରନ୍ତି । ପରିବାରର ଲୋକମାନେ ପରସ୍ପରକୁ କିପରି ବ୍ୟବହାର କରନ୍ତି, ତାହା ଲକ୍ଷ୍ୟ କରନ୍ତି । ଏପରି ପର୍ଯ୍ୟବେକ୍ଷଣରୁ ବିଶେଷ ସମସ୍ୟାର ମୂଳକାରଣଟି ଚିହ୍ନଟ କରନ୍ତି ଏବଂ ସମାଧାନର ସୂତ୍ର ବାହାରକରନ୍ତି । କେଉଁ ପରିସ୍ଥିତିର ଏବଂ କିପରି ଭାବରେ ପିତାମାତା ସମସ୍ୟାର କାରଣ ହେଉଛନ୍ତି, ତାହାର ପ୍ରତ୍ୟକ୍ଷ ଅନୁଭବ ବିଶେଷଜ୍ଞ ପିତାମାତାଙ୍କୁ ଦିଅନ୍ତି । ପିତାମାତା କିପରି ତ୍ରୁଟିକୁ ସୁଧରିବେ,ତାହାର ଉପଦେଶନ ପାଆନ୍ତି । ସମାଧାନର ସୂତ୍ର ପିତାମାତା ବୁଝନ୍ତି ଏବଂ ଏହାର ପ୍ରୟୋଗ ପାଇଁ ତାଲିମ ପାଆନ୍ତି ।

ଶିଶୁର ଅବାଂଛିତ ସ୍ୱଭାବ ଓ ଆଚରଣର ସଂଶୋଧନ ପାଇଁ ବ୍ୟବହାର ପରିବର୍ତ୍ତନ କୌଶଳର ଉପଯୋଗ କରାଯାଇପାରେ । ଏପରି କୌଶଳର ପ୍ରୟୋଗ ଫଳରେ ବାଞ୍ଛିତ ବ୍ୟବହାର ଦୃଢ ହୁଏ ଏବଂ ଅବାଞ୍ଛନୀୟ ବ୍ୟବହାର ଦୁର୍ବଳ ହୋଇ ଧୀରେ ଧୀରେ ତିରୋହିତ ହୁଏ । ଏପରି କୌଶଳ ପ୍ରୟୋଗକରିଥିବା ବିଶେଷଜ୍ଞ କିମ୍ବା ପିତାମତା ସମସ୍ୟାଟିର ମୂଳକାରଣ ଚିହ୍ନଟ କରିବାରେ ବିଶେଷ ସମୟଦେଇ ବ୍ୟବହାର ସହିତ ଜଡ଼ିତଥିବା ଉପାଦାନସବୁ ଚିହ୍ନଟ କରନ୍ତି ଏବଂ ସେଗୁଡ଼ିକ ଦୁର୍ବଳ କରିବାର ପ୍ରଯତ୍ନ କରନ୍ତି । ବିଶେଷତଃ ବାଞ୍ଛନୀୟ ବ୍ୟବହାର ଦର୍ଶାଇଥିବା ସମୟରେ ଶିଶୁକୁ ପ୍ରୋତ୍ସାହନ (ଯଥା- ପ୍ରଶଂସା, କିଛି ଉପହାର ଇତ୍ୟାଦି) ଦିଅନ୍ତି । ଅବାଂଛିତ ବ୍ୟବହାର ସମୟରେ ପ୍ରୋତ୍ସାହନ ପ୍ରତ୍ୟାହାର କରିଥାନ୍ତି । ଉଦାହରଣ ସ୍ୱରୂପ ଶିଶୁକୁ କୁହାଯାଇପାରେ ଯେ, ସେ ଠିକ୍ ସମୟରେ ବିଛଣାଛାଡ଼ି ନିତ୍ୟକର୍ମ ସାରି ସ୍କୁଲକୁ ବାହାରିଗଲେ ଗୋଟିଏ 'ପେଡା' ଦିଆଯିବ । କେତେକ ସ୍କୁଲରେ ପ୍ରତି ଭଲ ବ୍ୟବହାର ପାଇଁ ଗୋଟିଏ କାର୍ଡ କିମ୍ବା ସେହିପରି କିଛି ପ୍ରତୀକ (Token) ଦିଆଯାଇପାରେ ଏବଂ ପରବର୍ତ୍ତୀ ସମୟରେ ଏହି ପ୍ରତୀକର ସଂଖ୍ୟାଉପରେ ନିର୍ଭର କରି ଶିଶୁକୁ କେତୋଟି ଖେଳଣା ଦିଆଯାଇପାରେ । ଲକ୍ଷ୍ୟ କରାଯାଇଛି ଯେ, ଏପରି ବ୍ୟବହାର ପରିବର୍ତ୍ତନ କୌଶଳ ବିଶେଷ ଫଳପ୍ରଦ ହୁଏ ।

ସମସ୍ୟାର ମାତ୍ରା ଖୁବ୍ ବେଶୀ ହୋଇଥିବା କ୍ଷେତ୍ରରେ ମନୋଚିକିତ୍ସକମାନେ ଔଷଧପତ୍ରର ପ୍ରୟୋଗ କରନ୍ତି । ଅନେକ ସମୟରେ ଔଷଧ ପତ୍ର (Drug Therapy) ଭଲ କାମକଲେ ମଧ୍ୟ ନିର୍ଭରଶୀଳତା (Dependence) ସମସ୍ୟା ଉପୁଜିପାରେ । ଔଷଧ ବନ୍ଦ କଲାପରେ ପୁନର୍ବାର ଲକ୍ଷଣ ପ୍ରକାଶ ପାଇପାରେ । ଏ ଦୃଷ୍ଟିରୁ ଆରମ୍ଭରୁ ଔଷଧର ଆଶ୍ରୟ ନନେଇ ଉପଦେଶନ ଓ ବ୍ୟବହାର ପରିବର୍ତ୍ତନ କୌଶଳ ମାଧ୍ୟମରେ ପ୍ରତିକାର ବ୍ୟବସ୍ଥା ଗ୍ରହଣ କରିବା ବିଜ୍ଞତାର ପରିଚାୟକ ହେବ ।

# ପିଲାର ଅବସାଦ (ବିଷାଦ) ବୁଝନ୍ତୁ

*ପିଲମାନେ ନିଜ ମନର ଭାବ ଠିକ୍ ବୁଝୁଥିଲେ ମଧ୍ୟ ତାକୁ ଯଥାଯଥ ଭାବରେ ପ୍ରକାଶ କରିପାରନ୍ତି ନାହିଁ । ଭାଷାଗତ ଦୁର୍ବଳତା ଅନେକ ସମୟରେ ଅସୁବିଧା ସୃଷ୍ଟିକରେ । ମାତ୍ର ପିତାମାତା ଗୋଟିଏ ପରିବେଶ ସୃଷ୍ଟି କରି ଅଳ୍ପକେତେକ ସରଳ କଥା ମାଧ୍ୟମରେ ପିଲାର ବିଷାଦର ମାତ୍ରା ଜାଣିପାରିବା ସମ୍ଭବ । ପିତା କିମ୍ବା ମାତା ଏପରି ଭାବରେ ଆରମ୍ଭ କରିପାରନ୍ତି ।*

*ଗତ କିଛିଦିନ ଧରି ମୁଁ ପିଲାମାନଙ୍କ ବିଷୟରେ ବହି ପଢୁଥିଲି । ବଡ଼ମାନଙ୍କ ସହ ପିଲାମାନଙ୍କୁ ମଧ୍ୟ ଭଲ ମନ୍ଦ ଲାଗେ । ତୋତେ ଏବେ କିପରି ଲାଗୁଛି ସେ ବିଷୟରେ ଜାଣିବାକୁ ଇଚ୍ଛା ହେଉଛି । ତୋତେ କେମିତି ଲାଗୁଛି ସେ କଥା ସିଧାସଳଖ ପଚାରିଲେ ତୋର ବର୍ଣ୍ଣନା କରିବାରେ ଅସୁବିଧା ହେବ । କେମିତି ଲାଗୁଛି ସେ କଥା ଜଣାଇ ମୁଁ ଗୋଟିଏ ଗୋଟିଏ ବାକ୍ୟ କହୁଛି । ମୁଁ ସେଗୁଡ଼ିକ ମଧ୍ୟ ଲେଖିଦେଉଛି । ପ୍ରତିଟି ବାକ୍ୟ ଶେଷରେ ଚାରୋଟି ଉତ୍ତର ରହିଛି । ଯେଉଁ ଉତ୍ତରଟି ତୋ ପାଇଁ ଠିକ୍, ସେଇଟିରେ ଚିହ୍ନ ଦେବୁ । ମନେରଖ ଯେ, ପରୀକ୍ଷାର ଠିକ୍ ଭୁଲ୍‌ପରି ଏଠାରେ କୌଣସି ଠିକ୍ ଭୁଲ୍ ଉତ୍ତର ନାହିଁ । ତୋରି ସୁବିଧା ପାଇଁ କେବଳ ବାକ୍ୟ ଶେଷରେ ଏ ସମ୍ଭାବନା ଗୁଡ଼ିକ ଉଲ୍ଲେଖ କରାଯାଇଛି ।*

***ଗତ କିଛି ସପ୍ତାହ ଧରି***

*୧. ମୋତେ ବ୍ୟସ୍ତ କରୁନଥିବା ଜିନିଷ ସବୁ ବ୍ୟସ୍ତ କରିଚାଲିଥିଲା ।*
*ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି*

*୨. ମୋତେ ଭୋକ ଲାଗୁ ନଥିଲା କି ଖାଇବାର ଇଚ୍ଛା ହେଉନଥିଲା ।*
*ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି*

*୩. ଆମ ପରିବାରର ସମସ୍ତେ ଏବଂ ମୋର ସାଙ୍ଗସାଥୀମାନେ ମୋତେ ଖୁସି କରାଇବାକୁ ଚେଷ୍ଟା କଲେ ମଧ୍ୟ ମୋତେ ଖୁସି ଲାଗୁନଥିଲା ।*
*ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି*

*୪. ମୋତେ ଲାଗୁଥିଲା ମୁଁ ଅନ୍ୟ ପିଲାମାନଙ୍କ ପରି ଭଲ ନୁହେଁ ।*
*ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି*

*୫. ମୁଁ କରୁଥିବା ଜିନିଷ ପ୍ରତି ଧ୍ୟାନ ଦେଇପାରୁ ନଥିଲି ବୋଲି ଲାଗୁଥିଲା ।*
*ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି*

*୬. ମୁଁ ଚୁପ୍‌ଚାପ୍ ରହୁଥିଲି ।*
*ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି*

*୭. ମୋତେ ଲାଗୁଥିଲା, ମୁଁଏତେ କ୍ଳାନ୍ତ ଯେ କିଛି ହେଲେ କାମ କରିପାରିବି ନାହିଁ ।*
*ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି*

୮. ମୋତେ ଲାଗୁଥିଲା ଅଶୁଭ କିଛି ଘଟିବାକୁ ଯାଉଛି ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି
୯. ମୋତେ ଲାଗୁଥିଲା, ଅତୀତରେ ମୁଁ କରିଥିବା କାମ ଏବେ କରିପାରୁ ନାହିଁ ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି
୧୦. ମୋତେ ଡର ଲାଗୁଥିଲା ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି
୧୧. ମୁଁ ଯେତିକି ଶାନ୍ତିରେ ସାଧାରଣତଃ ଶୁଏ ସେତିକି ଶାନ୍ତିରେ ଶୋଇପାରୁ ନଥିଲି ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି
୧୨. ମୋତେ ଦୁଃଖ ଲାଗୁଥିଲା ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି
୧୩. ମୁଁ ଯେତିକି କଥା କହେ ତାଠାରୁ କମ୍ କଥା କହୁଥିଲି ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି
୧୪. ମୋର ସାଙ୍ଗସାଥୀ ନଥାଇ ମୁଁ ଗୋଟିଏ ଏକୁଟିଆ ଜୀବନ କାଟୁଛି ବୋଲି ଲାଗୁଥିଲା ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି
୧୫. ମୋର ମନେ ହେଉଥିଲା, ସତେ ଯେପରି ଅତୀତରେ ମୋର ସାଙ୍ଗସାଥୀ ଥିବା ପିଲାମାନେ ଆଉ ମୋ ସହିତ ମିଶିବାକୁ ଚାହୁଁନଥିଲେ ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି
୧୬. ମୋର ସମୟ ଭଲ କଟୁନଥିଲା ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି
୧୭. ମୋତେ କାନ୍ଦ ମାଡୁଥିଲା ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି
୧୮. ମୋ ମନ ଦୁଃଖ ଥିଲା ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି
୧୯. ମୋର ମନେ ହେଉଥିଲା ଲୋକମାନେ ମୋତେ ଭଲ ପାଉ ନାହାଁନ୍ତି ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି
୨୦. କିଛି କାମ ଆରମ୍ଭ କରିବାକୁ କଷ୍ଟ ଲାଗୁଥିଲା ।
ଆଦୌ ନୁହେଁ/ଟିକିଏ/କିଛି ପରିମାଣରେ/ବହୁତ ବେଶି

ଆପଣ ପିଲା ନିଜର ଅନୁଭୂତି ସୂଚାଇବା ପରେ ତା'ର ଅବସାଦ ପରିମାଣ ସ୍ଥିର କରନ୍ତୁ । ପ୍ରକ୍ରିୟାଟି ବି ଖୁବ୍ ସହଜ । ପିଲାଟି ଯେଉଁ ଯେଉଁ ବାକ୍ୟ ପାଇଁ 'ଆଦୌ ନୁହେଁ' ବୋଲି କହିଛି, ସେହିସବୁ ବାକ୍ୟ ପାଇଁ ଶୂନ୍ୟ ଦିଅନ୍ତୁ । 'ଟିକିଏ' ବୋଲି କହିଥିବା ବାକ୍ୟମାନଙ୍କ କ୍ଷେତ୍ରରେ ପ୍ରତିଟି ବାକ୍ୟ ପାଇଁ '୧' ନମ୍ବର ଦିଅନ୍ତୁ । 'କିଛି ପରିମାଣରେ' କହିଥିବା ବାକ୍ୟମାନଙ୍କ ସ୍ଥଳରେ ପ୍ରତିଟି ବାକ୍ୟପାଇଁ '୨' ଦିଅନ୍ତୁ ଏବଂ 'ବହୁତ ବେଶି' କହୁଥିବା ସ୍ଥାନମାନଙ୍କରେ

'୩' ନମ୍ବର (ସଂଖ୍ୟା) ଲେଖାଏ ଦିଅନ୍ତୁ । ଏହିପରି ନମ୍ବର ଦେଲାପରେ ୨୦ଟି ବାକ୍ୟ ପାଇଁ ମିଳିଥିବା ପୃଥକ୍ ପୃଥକ୍ ସଂଖ୍ୟାସବୁ ଯୋଗ କରିଦିଅନ୍ତୁ । ଯୋଗଫଳ ପିଲାଟି ବିଷାଦର ମାତ୍ରା ସୂଚାଇବା ।

ଆପଣଙ୍କୁ ପିଲାର ବିଷାଦ ଅଙ୍କ '୦' ରୁ ୯ ମଧ୍ୟରେ ଥିଲେ ପିଲାଟି ଆଦୌ ଅବସାଦଗ୍ରସ୍ତ ନୁହେଁ ବୋଲି ବୁଝିବାକୁ ହେବ । ପିଲାଟିର ବିଷାଦ ଅଙ୍କ ୧୦ ରୁ ୧୫ ମଧ୍ୟରେ ରହିଲେ ଖୁବ୍ ଅଳ୍ପମାତ୍ରାରେ ବିଷର୍ଣ୍ଣତା ଅଛି ବୋଲି ଧରିବାକୁ ହେବ । ବ୍ୟସ୍ତତାର କୌଣସି କାରଣ ନାହିଁ । ଆପଣଙ୍କ ପିଲା ୧୦ ରୁ ୧୫ ନମ୍ବର ପାଉଥିଲେ କିଛି ପରିମାଣରେ ବିଷାଦଗ୍ରସ୍ତ ବୋଲି ବିଚାର କରିବାକୁ ହେବ । ୧୬ ରୁ ୨୪ ନମ୍ବର ପାଉଥିବା ପିଲାମାନେ ବେଶି ବିଷାଦଗ୍ରସ୍ତ ଏବଂ ଏମାନଙ୍କର ବିଷାଦର ମାତ୍ରା କମାଇବା ପାଇଁ ଉଦ୍ୟମର ଆବଶ୍ୟକତା ରହିଛି । ୨୪ରୁ ଉର୍ଦ୍ଧ୍ୱ ନମ୍ବର ପାଉଥିବା ପିଲାମାନଙ୍କ ବିଷାଦ ମାତ୍ରା ଉଦ୍‌ବେଗଜନକ ଏବଂ ସେମାନଙ୍କ ପାଇଁ ଉପଦେଶନର ନିତାନ୍ତ ଓ ତୁରନ୍ତ ଆବଶ୍ୟକତା ରହିଛି ବୋଲି ବିଚାର କରିବାକୁ ହେବ ।

## ସହାୟକ ପରାମର୍ଶ

*୧. ସାମୟିକ ଭାବରେ ଶିଶୁ ଅଳ୍ପ ପରିମାଣର ଭାବଗତ ଅସ୍ଥିରତା ଦର୍ଶାଇଥିଲେ ବ୍ୟସ୍ତ ବିବ୍ରତ ହୁଅନ୍ତୁ ନାହିଁ । ଆପଣମାନଙ୍କର ଧୈର୍ଯ୍ୟହୀନତା ବିପର୍ଯ୍ୟୟର ମାତ୍ରାକୁ ବୃଦ୍ଧି କରିବାର ସମ୍ଭାବନା ରହିଛି ।*

*୨. ଶିଶୁର ଭାବ ଓ ଭାବନାକୁ ସ୍ୱୀକାର କରନ୍ତୁ । ଭାବଗତ ବିପର୍ଯ୍ୟୟ ଅବାଂଛିତ ହେଲେ ମଧ୍ୟ ଏହା ଶିଶୁର ନିଜସ୍ୱ, ଏହା ଗ୍ରହଣ କରନ୍ତୁ ଏବଂ ଏହା ପ୍ରକାଶ କରିବାରେ ଶିଶୁର ଅଧୀକାର ରହିଛି ଏହା ମଧ୍ୟ ସ୍ୱୀକାର କରନ୍ତୁ ।*

*୩. ଶିଶୁର ଭାବଗତ ବିପର୍ଯ୍ୟୟର ପ୍ରତିକାର କ୍ଷେତ୍ରରେ ପିତାମାତା ମଧ୍ୟ ଅଂଶ ବିଶେଷ, ଏହା ସ୍ୱୀକାର କରିବାକୁ ହେବ । ପିତାମାତାଙ୍କ ତ୍ରୁଟି ସମସ୍ୟାର କାରଣ ହୋଇପାରେ । ଏ ଦୃଷ୍ଟିରୁ ଆତ୍ମ- ଅନୁଶୀଳନ କରନ୍ତୁ ଏବଂ ବିଶେଷଜ୍ଞଙ୍କ ପରାମର୍ଶ ନିଅନ୍ତୁ । ପରାମର୍ଶ ଅନୁଯାୟୀ ନିଜର ଚିନ୍ତନ ଓ ବ୍ୟବହାର ପରିବର୍ତ୍ତନ କରନ୍ତୁ ।*

*୪. ଅବାଂଛିତ ଆଚରଣ ପରିବର୍ତ୍ତନ ପାଇଁ ବ୍ୟବହାର ପରିବର୍ତ୍ତନ କୌଶଳ (Behaviour Modification Techniques) ଭଲ କାମଦିଏ । ସୁତରାଂ ଏହାର ପ୍ରୟୋଗ କରନ୍ତୁ । ବାଞ୍ଛନୀୟ ବ୍ୟବହାର ସମୟରେ ପ୍ରୋତ୍ସାହନ ଦିଅନ୍ତୁ । ସ୍ଥଳ ବିଶେଷର ପ୍ରତୀକ (Token) ମାଧ୍ୟମରେ ପ୍ରୋତ୍ସାହନ ଦେଇପାରିବେ । ଅବାଂଛନୀୟ ବ୍ୟବହାର କ୍ଷେତ୍ରରେ ପ୍ରୋତ୍ସାହନର ପ୍ରତ୍ୟାହର (Withdrawal) ବ୍ୟବସ୍ଥା ପ୍ରୟୋଗ କରନ୍ତୁ ।*

*୫. କେବଳ ବିପର୍ଯ୍ୟୟର ତୀବ୍ରତା ମାତ୍ରାଧିକ ହେଲେ ମନୋଚିକିତ୍ସକଙ୍କ ପରାମର୍ଶ ଅନୁଯାୟୀ ଔଷଧପତ୍ରର ପ୍ରୟୋଗ କରିପାରନ୍ତି ।*

# ଭିନ୍ନ-କ୍ଷମ ଶିଶୁର ପରିଚାଳନା

ଅକ୍ଷମତା କିମ୍ବା ସ୍ୱତନ୍ତ୍ର ଧରଣର ଚାହିଦା ଥିବା ପିଲାମାନେ ଅନ୍ୟସବୁ ପିଲାଙ୍କ ପରି ଜୀବନରେ କେତେକ ଆହ୍ୱାନର ସମ୍ମୁଖୀନ ହୁଅନ୍ତି । କେତେକ କ୍ଷେତ୍ରରେ ସେମାନେ ସଫଳତା ଆଶା କରନ୍ତି । ଅନ୍ୟ ପିଲାମାନଙ୍କଠାରୁ ସ୍ୱୀକୃତି କାମନା କରନ୍ତି । ପରିବାରରେ ଅନ୍ୟମାନଙ୍କ ସହିତ ବିଶେଷତଃ ପିତାମାତାଙ୍କ ସହିତ ସୁସମ୍ପର୍କ-ପୂର୍ଣ୍ଣ ଜୀବନ ଯାପନ କରିବାକୁ ଇଚ୍ଛାକରନ୍ତି । ଏସବୁ ଆହ୍ୱାନର ସମ୍ମୁଖୀନ ହେବା ପ୍ରକ୍ରିୟା ମଧ୍ୟରେ ସେମାନେ ନିଜ ସମ୍ପର୍କରେ କିଛି ଜ୍ଞାନ ଆହରଣ କରନ୍ତି । ଏସବୁ ପରିପ୍ରେକ୍ଷୀରେ ସେମାନେ ଅନ୍ୟପିଲାମାନଙ୍କ ସହିତ ସମପର୍ଯ୍ୟାୟଭୁକ୍ତ । ଏକ ଉଦାରଶୀଳ ସାମ୍ପ୍ରତିକ ମନୋଭାବ ଫଳରେ ଏବେ ଅକ୍ଷମ ପରିବର୍ତ୍ତେ ଭିନ୍ନକ୍ଷମ (Differentiallyable) ଶବ୍ଦ ପ୍ରୟୋଗ କରାଯାଇଛି ।

ମାତ୍ର ଆହ୍ୱାନ୍‌ଗୁଡ଼ିକ ସମାନ ହେଲେ ମଧ୍ୟ ଏସବୁ ଆହ୍ୱାନର ସମ୍ମୁଖୀନ ହେବା କ୍ଷେତ୍ରରେ ଅକ୍ଷମ ପିଲାମାନେ ଅନ୍ୟମାନଙ୍କର ଉତ୍ସାହ ଏବଂ ସହଯୋଗ ଆବଶ୍ୟକ କରନ୍ତି । ସହଯୋଗର ସ୍ୱରୂପ ଅକ୍ଷମତାର ରୂପରେଖ ଉପରେ ନିର୍ଭର କରେ । ଡାଉନ ଲକ୍ଷଣ ଥିବା ପିଲାଟିର ବ୍ୟକ୍ତିଗତ ଚାହିଦା ସବୁ ଗୋଡ଼ନଥିବା ଶାରୀରିକ ଅକ୍ଷମ ପିଲାଠାରୁ ଭିନ୍ନ । କେତେକ ଅକ୍ଷମତା ଫଳରେ ବନ୍ଧୁ ସମ୍ପର୍କ କଷ୍ଟକର ହୋଇଉଠେ । ଶୁଣିପାରୁନଥିବା ପିଲାଟି କହିପାରୁନଥିବାରୁ ଏବଂ ଶୁଣିପାରୁଥିନବାରୁ ସହପାଠିମାନଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ କାରବାର କରିପାରେ ନାହିଁ । କେତେକ ଧରଣର ଅକ୍ଷମତା କ୍ଷେତ୍ରରେ ସର୍ବସାଧାରଣ ସ୍ଥାନରେ ଏହାର ପରିଣତି ଦୃଷ୍ଟିଗୋଚର ହୁଏନାହିଁ । କିନ୍ତୁ ପରିବାରରେ ଏହାର ପ୍ରଭାବ ବେଶ୍ ଅନୁଭୂତ ହୁଏ । ଉଦାହରଣ ସ୍ୱରୂପ, ସହପାଠିମାନେ ହୁଏତ ଜାଣିପାରନ୍ତି ନାହିଁ ଯେ ଗୋଟିଏ ପିଲା ରକ୍ତହୀନତା ଅସୁସ୍ଥତା ଯୋଗୁ ଗୋଷ୍ଠୀକୁ ଆସିପାରୁନାହିଁ । ମାତ୍ର ପରିବାରର ଲୋକମାନେ ତା'ର ଚିକିତ୍ସା ଭାର ନେଇ ବ୍ୟତିବ୍ୟସ୍ତ ହୋଇପଡ଼ନ୍ତି ।

ଅକ୍ଷମତାର ବିଭିନ୍ନତା ସତ୍ତ୍ୱେ ସ୍ୱତନ୍ତ୍ର ଚାହିଦା ରହିଥିବା ପିଲାମାନଙ୍କ କ୍ଷେତ୍ରରେ ଗୋଟିଏ ସ୍ତରରେ ସମତା ଥାଏ । ସେମାନେ ସାଧାରଣ ପିଲାମାନଙ୍କଠାରୁ ଶାରୀରିକ, ଭାବଗତ ଏବଂ ଭାବନାଗତ ପରିପ୍ରେକ୍ଷୀରେ ପାର୍ଥକ୍ୟ ଦର୍ଶାନ୍ତି । ମାନସିକ ଓ ସାମାଜିକ ବିକାଶ କ୍ଷେତ୍ରରେ ଏହି ଭିନ୍ନ-କ୍ଷମ ପିଲାମାନେ ସମ୍ମୁଖୀନ ହେଉଥିବା ଆହ୍ୱାନ ସହିତ ଆମର ପରିଚିତି ଏକାନ୍ତ ଆବଶ୍ୟକ ।

**ଆତ୍ମପରିଚିତର ଆହ୍ୱାନ**

ସାଧାରଣ ପିଲାମାନଙ୍କ ମନରେ ସେମାନଙ୍କର ସାମର୍ଥ୍ୟ ସମ୍ପର୍କରେ ପ୍ରଶ୍ନ ଉଠେ । ଭିନ୍ନ-କ୍ଷମ ପିଲାମାନଙ୍କ ମନରେ ମଧ୍ୟ ଏପରି ପ୍ରଶ୍ନ ଉଠିଥାଏ । ଅବଶ୍ୟ ଗୋଟିଏ ଦୃଷ୍ଟିର ବିଚାରକଲେ

ଦେଖାଯିବ ଯେ ଅକ୍ଷମତାଥିବାରୁ ପିଲାଟି ନିଜର ସ୍ୱାତନ୍ତ୍ର୍ୟ ସମ୍ପର୍କରେ ସାଧାରଣ ପିଲା ତୁଳନାରେ ଶୀଘ୍ର ସଚେତନ ହୁଏ । ସାଧାରଣ ପିଲା ଯାହା କରିପାରିବେ ସେ କରିପାରିବ ନାହିଁ, ଏପରି ଅନୁଭବ ଶୀଘ୍ର ଆସିଥାଏ । ସେମାନଙ୍କର ଚିନ୍ତା ଓ ଭାବନା ମଧ୍ୟ ସାଧାରଣ ପିଲାମାନଙ୍କଠାରୁ ପୃଥକ୍, ଏପରି ସଚେତନତା ଆସେ ।

ଅବଶ୍ୟ ଏପରି ସଚେତନତା କ୍ଷେତ୍ରରେ ଦୁଇଟି ସମସ୍ୟା ଥାଏ । ପ୍ରଥମତଃ ନିଜର ଅକ୍ଷମତାକୁ କେନ୍ଦ୍ରକରି ରହିଥିବା ସ୍ୱତନ୍ତ୍ରତା ସମ୍ପର୍କରେ କେତେ ଶୀଘ୍ର ସଚେତନ ହେଉଛନ୍ତି, ତାହା ସେମାନଙ୍କର ଭାବ ଓ ଭାବନାଗତ ବିକାଶ ଉପରେ ନିର୍ଭର କରେ । କେତେକ ଅକ୍ଷମତା କ୍ଷେତ୍ରରେ ଏପରି ଭାବ ଓ ଭାବନାର ସାମର୍ଥ୍ୟ ସୀମିତ ରହିଥାଏ । ଉଦାହରଣ ସ୍ୱରୂପ ମାନସିକ ଅନଗ୍ରସରତା ରହିଥିବା ପିଲାମାନଙ୍କ କ୍ଷେତ୍ରରେ ଏପରି ବୁଝିବାର ସାମର୍ଥ୍ୟ ବିଳମ୍ବିତ ହୁଏ । ନିଜ ସମ୍ପର୍କରେ ଆତ୍ମପରିଚିତି ଡେରୀରେ ଆସେ ।

ଦ୍ୱିତୀୟରେ ଏପରି ପିଲାମାନଙ୍କର ଜ୍ଞାନଗତ ଓ ଭାବନାଗତ (Cognitive) ଅସାମର୍ଥ୍ୟ ନଥିଲେ ମଧ୍ୟ ସେମାନଙ୍କୁ ସ୍ୱୀକାର କରିବାକୁ ହୁଏ ଯେ, ସେମାନଙ୍କର ଅକ୍ଷମତ ସେମାନଙ୍କ ଜୀବନର "ଗୋଟିଏ ଅଂଶ ମାତ୍ର" । ସେମାନେ ଅନୁଭବ କରିବା ଉଚିତ ଯେ, ସେମାନଙ୍କର ଅକ୍ଷମତା ବ୍ୟତୀତ ସେମାନଙ୍କ ଜୀବନର ଅନ୍ୟସବୁ ଅଂଶବିଶେଷ ରହିଛି । ସେମାନେ ଅନ୍ୟମାନଙ୍କ ପରି ଆନନ୍ଦ ଅନୁଭୂତି ପାଇପାରିବେ, ନୂଆ ନୂଆ ଧାରଣା ଗଠନ କରିପାରିବେ ଏବଂ ଅନ୍ତତଃ କେତେକ ପ୍ରିୟଜିନିଷ କରିପାରିବେ ।

ଏହି ଦୁଇଟି ଉପଲବ୍ଧି ଜଟିଳ ହୋଇଥିବାରୁ ସମୟସାପେକ୍ଷ ହୋଇପାରେ । ପୂରା ଜୀବନ ଏଥିରେ ଚାଲିଯାଇ ପାରେ । ପିତାମାତା ଏବଂ ଶିକ୍ଷକ ଶିକ୍ଷୟିତ୍ରୀ ଶିଶୁର ଏପରି ଅନୁଭବରେ ସହାୟତା ପ୍ରଦାନ କରିପାରିବେ । ଅକ୍ଷମତାକୁ ଗୁରୁତ୍ୱ ନଦେଇ ଶିଶୁଟିକୁ ନେଇ ପିତାମାତା କେତେ ଗର୍ବିତ, ଏହା ପ୍ରକାଶ କରିବା ମାଧ୍ୟମରେ ପିତାମାତା ଶିଶୁର ମାନସିକ ଶକ୍ତି ସଂଚରିତ କରିଥାନ୍ତି । ପରିବାରର କାର୍ଯ୍ୟକ୍ରମର ପରିକଳ୍ପନା କଲାବେଳେ ଶିଶୁଟିର ଅକ୍ଷମତା ଯେପରି ଏକ ଚାପସୃଷ୍ଟିକାରୀ ପରିସ୍ଥିତି ସୃଷ୍ଟିନକରେ, ତାହା ଦେଖିବାକୁ ହେବ । ଉଦାହରଣ ସ୍ୱରୂପ, ଶାରୀରିକ ଅକ୍ଷମତାଥିବା ପିଲା ରହୁଥିବା ବେଳେ ପରିବାରରେ ଖେଳକୁଦର ପ୍ରତିଯୋଗିତା ବିଜ୍ଞତା ହେବନାହିଁ ।

## ଲକ୍ଷ୍ୟହାସଲର ଆହ୍ୱାନ

ଅକ୍ଷମ ପିଲାଙ୍କ ପରିପ୍ରେକ୍ଷୀରେ ସଫଳତା ଓ ଲକ୍ଷ୍ୟ ସାଧନରେ ଗତାନୁଗତିକ ମାନଦଣ୍ଡ ଉପରେ ଜୋର ଦେବା ବିଜ୍ଞତା ହେବ ନାହିଁ । ଅକ୍ଷମ ପିଲାର ଉପସ୍ଥିତିରେ ଅବିଚାରିତ ଭାବରେ ଅନ୍ୟ ପିଲାର ସଫଳତା ଓ ଲକ୍ଷ୍ୟ ସାଧନର ପ୍ରଶଂସା ଓ ବିସ୍ତୃତ ବର୍ଣ୍ଣନା ଯୁକ୍ତିଯୁକ୍ତ ନୁହେଁ । ବୌଦ୍ଧିକ ଅକ୍ଷମତା ଥାଇ ପିଲାଟି ଧୀର ଗତିରେ ଶିକ୍ଷାଲାଭ କରୁଥିବା ପରିପ୍ରେକ୍ଷୀରେ ଶ୍ରେଣୀର ପ୍ରଥମ ସ୍ଥାନ ଅଧିକାର କରିବା କିମ୍ୱା ସେହିପରି କିଛି କୃତିତ୍ୱର ଆଲୋଚନା ଅବାନ୍ତର । ସେହିପରି ଦୃଷ୍ଟିଶକ୍ତିର ଅସାମର୍ଥ୍ୟ ରହିଥିବା ପିଲାପାଖରେ ଭଲ ଟେନିସ୍ ଖେଳିବାର ପ୍ରତ୍ୟାଶା ବ୍ୟକ୍ତ କରିବା ସମୀଚୀନ ହେବ ନାହିଁ । ଅନେକ ସମୟରେ ପିଲାମାନେ ସେମାନଙ୍କର

ଅକ୍ଷମତା ସମସ୍ୟା ସୃଷ୍ଟି କରୁନଥିବା କ୍ଷେତ୍ରଟିକୁ ଠିକ୍ ରୂପେ ବାଛିନିଅନ୍ତି । ପିତାମାତା ଏବଂ ଶିକ୍ଷକ ଶିକ୍ଷୟିତ୍ରୀ ମଧ୍ୟ ଏ ଦିଗରେ ସହାୟତା କରିପାରନ୍ତି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ଦୃଷ୍ଟି ଶକ୍ତିର ସମସ୍ୟା ଥିବା ପିଲାଟି ସଂଗୀତରେ ଦକ୍ଷତା ଦର୍ଶାଇବାରେ ବିଶେଷ ବାଧା ରହିବ ନାହିଁ । ସେହିପରି କେତେକ ଶାରୀରିକ ଅକ୍ଷମତାଥିବା ପିଲାଙ୍କ କ୍ଷେତ୍ରରେ ସ୍ୱତନ୍ତ୍ର ଧରଣର ଟାଇପ ମେସିନ୍ ଏବଂ ସ୍ୱତନ୍ତ୍ର ଧରଣର କମ୍ପ୍ୟୁଟରର ବ୍ୟବହାର କୌଶଳ ସହାୟକ ହୋଇପାରିବ ।

ସୁତରାଂ ଅନେକ ସମୟରେ ଗତାନୁଗତିକତାର ବାହାରକୁ ଯାଇ ସଫଳତାର ସ୍ୱତନ୍ତ୍ର କ୍ଷେତ୍ର ନିର୍ବାଚନ କରିବାକୁ ହେବ । ପିତାମାତା ଓ ଶିକ୍ଷକ ଶିକ୍ଷୟତ୍ରୀ ଏପରି କ୍ଷେତ୍ର ଚିହ୍ନଟ କରିବାରେ ସାହାଯ୍ୟ କରିବେ । ତଥାପି ସଫଳତା ପାଇଁ ପିଲାଟିକୁ ଆଗ୍ରହୀ ହେବାକୁ ପଡ଼ିବ । ଅବଶ୍ୟ ଚତୁରତାର ସହିତ କାର୍ଯ୍ୟ ଓ ସଫଳତାର କ୍ଷେତ୍ର ଅକ୍ଷମ ପିଲା ପାଇଁ ନିର୍ବାଚନ କଲେ ମଧ୍ୟ ସମସ୍ୟାଟିକୁ ସବୁବେଳେ ପୂରାପୂରି ନିର୍ମୂଳ କରିବା ସମ୍ଭବ ନହୋଇପାରେ । ଦୈନନ୍ଦିନ ଜୀବନରେ କେତେକ ମାନଦଣ୍ଡର ବିଚାର ନିଶ୍ଚିତ ଭାବରେ ରହିଆସିଛି । ଆମେ ସମସ୍ତଙ୍କୁ ଖେଳକୁଦରେ ଦକ୍ଷହେବାର ପ୍ରତ୍ୟଶା ରଖିନଥାଉ । ମାତ୍ର ଅନ୍ତତଃ କିଛିଦୂର ଠିକ୍‌ଭାବରେ ଚାଲିବାର ପ୍ରତ୍ୟାଶା ରଖିଥାଉ । ଏପରି ସ୍ଥଳେ ମସ୍ତିଷ୍କଗତ କାରଣରୁ ଅଙ୍ଗବିକୃତିଥିବା ପିଲାଟି ଠିକ୍‌ଭାବରେ ଚାଲିପାରୁନଥିବାରୁ ମାନଦଣ୍ଡର ବିଚ୍ୟୁତି ଶୀଘ୍ର ଆଖିରେ ଧରାପଡ଼େ । ପିଲାଟି ନିଜେ ମଧ୍ୟ ଅନ୍ୟମାନଙ୍କ ସହିତ ତୁଳନାକରି ବିଷାଦଗ୍ରସ୍ତ ହୋଇପଡ଼େ । ଏ କ୍ଷେତ୍ରରେ ପିଲାଟିର ଯେପରି ଦୃଢ଼ ମନୋବଳ ଆବଶ୍ୟକ, ପିତାମାତା ଓ ଶିକ୍ଷକ ଶିକ୍ଷୟତ୍ରୀଙ୍କ ଧୈର୍ଯ୍ୟପୂର୍ଣ୍ଣ ସତର୍କତାଭରା ଯୋଜନାବଦ୍ଧ ପଦକ୍ଷେପ ମଧ୍ୟ ଆବଶ୍ୟକ ।

## ବନ୍ଧୁ ସମ୍ପର୍କର ଆହ୍ୱାନ

ଅକ୍ଷମ ପିଲା ଅନ୍ୟପିଲାମାନଙ୍କ ପରି ବନ୍ଧୁସମ୍ପର୍କ ଓ ସ୍ୱୀକୃତି ଆଶାକରନ୍ତି । କିନ୍ତୁ ଏପରି ଆଶା ପୂରଣ ହୋଇନଥାଏ । ପିଲାଟିର ଅକ୍ଷମତା ଅନ୍ୟ ପିଲାମାନଙ୍କ ମନରେ ଉଦ୍‌ବେଗ ଆଣେ । ଅନ୍ୟ ପିଲାମାନେ ସ୍ୱାଭାବିକ ଭାବରେ କ୍ରିୟା ଅନୁକ୍ରିୟା (Interaction) ଜଣାନ୍ତି ନାହିଁ । ଫଳରେ ଅକ୍ଷମ ଶିଶୁ ମଧ୍ୟ ଏହା ବୁଝିପାରେ ଏବଂ ନିଜର ସ୍ୱାଭାବିକ ପ୍ରତିକ୍ରିୟା ଦର୍ଶାଇବାରେ ଦ୍ୱିଧା ଅନୁଭବକରେ । ବାକ୍‌ହୀନତା ଏବଂ ମାନସିକ ଅନଗ୍ରସରତା ପରି ଅକ୍ଷମତା ଭାବ ଆଦାନପ୍ରଦାନର କୌଶଳକୁ ବିପର୍ଯ୍ୟସ୍ତ କରେ । ସୁତରାଂ ଅକ୍ଷମ ପିଲାର ସାମାଜିକ ସମ୍ପର୍କ ସୀମାବଦ୍ଧ ହୋଇଯାଏ ।

ସର୍ବେକ୍ଷଣରୁ ଦେଖାଯାଇଛି ଯେ, ଅନ୍ୟ ପିଲାମାନେ ଅକ୍ଷମ ପିଲାଟି ପ୍ରତି କେବଳ ଉଦାସୀନ ହୋଇନଥାନ୍ତି, ଅନେକ ସମୟରେ ଦୁର୍ବ୍ୟବହାର ମଧ୍ୟ କରିଥାନ୍ତି । ବିଶେଷତଃ ଭାଷାଗତ ଅକ୍ଷମତା ଥିବା ଏବଂ ମାନସିକ ଅନଗ୍ରସରତାର ଶରବ୍ୟ ହୋଇଥିବା ପିଲାମାନେ ଏପରି ପ୍ରତିକୂଳ ପ୍ରତିକ୍ରିୟାର ଶୀକାର ହୁଅନ୍ତି । ଅବଶ୍ୟ ସାଧାରଣ ପିଲାମାନେ ଅକ୍ଷମ ଶିଶୁର ଶିକ୍ଷାଗତ ମନ୍ଦୀକରଣ ନେଇ ବିରକ୍ତି ପ୍ରକାଶ କରିନଥାନ୍ତି । ସେମାନେ ଅକ୍ଷମପିଲାର ଅପରିଚିତ ଓ ବିଚିତ୍ର ବ୍ୟବହାର ନେଇ ପ୍ରତିକୂଳ ପ୍ରତିକ୍ରିୟା ଦର୍ଶାନ୍ତି ।

ଉଦାସୀନତା ଓ ଦୁର୍ବ୍ୟବହାର କମାଇବାର ପ୍ରଚେଷ୍ଟା ସ୍ୱରୂପ ଅନେକ ବିଶେଷଜ୍ଞ ମତ ଦିଅନ୍ତି ଯେ, ଅବସ୍ଥା ନିହାତି ନିୟନ୍ତ୍ରଣବିହୀନ ନହେବା ପର୍ଯ୍ୟନ୍ତ ଅକ୍ଷମ ପିଲାମାନଙ୍କୁ ସାଧାରଣ ଶ୍ରେଣୀରେ ଭର୍ତ୍ତି କରାଯିବା ଉଚିତ । ଏପରି ପରିବେଶରେ ସେମାନେ ଧୀରେ ଧୀରେ ସମନ୍ୱୟତା ଶିଖିବେ । ଅନ୍ୟମାନେ ମଧ୍ୟ କ୍ରମଶଃ ଖାପଖୁଆଇବାର ଚେଷ୍ଟା କରିବେ । ଅବଶ୍ୟ ସାଧାରଣ ପିଲାମାନଙ୍କ ସହିତ ଶିକ୍ଷାଲାଭ କଲେ ମଧ୍ୟ ସେମାନଙ୍କୁ କେତେକ ସ୍ୱତନ୍ତ୍ର ଶିକ୍ଷା ପୃଥକ୍‌ଭାବେ ଦିଆଯିବ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇପାରେ ଯେ, ଭାଷାଗତ ବା ଶିକ୍ଷାଗତ ଅକ୍ଷମତାଥିବା ପିଲାକୁ ଘରୋଇ ଶିକ୍ଷକର ସହାୟତାରେ ଅଧିକା ତାଲିମ ଦିଆଯିବ । ଶିକ୍ଷକ ଶିକ୍ଷୟିତ୍ରୀମାନେ ମଧ୍ୟ ଗୋଟିଏ ପରିବେଶରେ ସାଧାରଣ ଓ ଅକ୍ଷମ ପିଲାମାନଙ୍କୁ କିପରି ଶିକ୍ଷାଦେଇପାରିବେ, ତାହାର ପ୍ରଶିକ୍ଷଣ ଆବଶ୍ୟକ ।

## ପାରିବାରିକ ସମ୍ପର୍କର ଆହ୍ୱାନ

ପିଲାର ଅକ୍ଷମତା ପରିବାରରେ ପିତାମାତାଙ୍କ ସହିତ ଏବଂ ଅନ୍ୟ ବୟସ୍କମାନଙ୍କ ସହିତ ସ୍ୱାଭାବିକ ସମ୍ପର୍କ ଗଠନରେ ବାଧା ସୃଷ୍ଟି କରେ । ସାଧାରଣ ପିଲାମାନେ ଯେପରି ଶିକ୍ଷାକୃତ ବ୍ୟବହାର ଗଠନ କରନ୍ତି, ଅକ୍ଷମ ପିଲାମାନେ ସବୁବେଳେ ସେପରି ଗଠନ କରିନଥାନ୍ତି । ଉଦାହରଣ ସ୍ୱରୂପ, ଗୋଟିଏ ସାଧାରଣ ପିଲା ନିଜର ବାପାଙ୍କୁ ଦେଖି ହୁଏତ ଅନେକ କଥା ଶିଖିଯାଏ । ଜୋତାରେ କିପରି ଫିତା ଲଗାଇବାକୁ ହୁଏ, ତାହା ବାପା ନ କହିଲେ ମଧ୍ୟ ପିଲାଟି କେବଳ ପର୍ଯ୍ୟବେକ୍ଷଣ ମାଧ୍ୟମରେ ଶିକ୍ଷା କରିଥାଏ । ମାତ୍ର କେତେକ ଅକ୍ଷମ ପିଲାଙ୍କ ପାଇଁ ଏଥିପାଇଁ ପୃଥକ୍ ଧରଣର ବୁଝାଇବା ପ୍ରଣାଳୀ ଓ ପ୍ରଦର୍ଶନ ଆବଶ୍ୟକ ହୁଏ । ପିତାମାତା ଏହା କରିନଥାନ୍ତି । ପିଲାର ସାମର୍ଥ୍ୟ ସହିତ ଖାପଖୁଆଇ ପିତାମାତା ଅନୁରୂପ ପଦ୍ଧତି ଗ୍ରହଣ କରୁନଥିବାରୁ ଜଟିଳତା ସୃଷ୍ଟିହୁଏ ।

ମାନସିକ ଅନଗ୍ରସରତା ଏବଂ ଆବେଗିକ ସମସ୍ୟା ଥିବା ପିଲାମାନେ ପିତାମାତା କିମ୍ବା ପରିବାରର ଅନ୍ୟ ସଦସ୍ୟଙ୍କ ନିର୍ଦ୍ଦେଶ ଅନୁଯାୟୀ କାର୍ଯ୍ୟ କରିପାରନ୍ତି ନାହିଁ । କେବଳ "ଏଇଟି କରିଦେ" କହିଲେ ସେମାନେ କହନ୍ତି ନାହିଁ । ବୟସ୍କବ୍ୟକ୍ତିମାନେ ବୁଝିବା ଉଚିତ ଯେ, ଏପରି ପିଲାମାନଙ୍କ ପାଇଁ ସୂଚନାସବୁର ବାରମ୍ବାର ପୁନରାବୃତ୍ତି ଆବଶ୍ୟକ । ଥରକୁଥର ଶୁଣିଲେ ସେମାନେ ବୁଝିବେ ଏବଂ ନିର୍ଦ୍ଦେଶ ଅନୁଯାୟୀ କାମକରିବେ ।

ଏହା ଅନୁମେୟ ଯେ ପିତାମାତାଙ୍କୁ ଅନେକ ସମୟରେ ମାନସିକ ଚାପର ଶରବ୍ୟ ହେବାକୁ ପଡେ । ଅକ୍ଷମ ପିଲାର ଅନେକ ବ୍ୟବହାରିକ ଚାହିଦା ରହିଥାଏ । ହୁଏତ ପିଲାଟିକୁ ଉଠାଇବା, ଦାନ୍ତ ଘଷାଇବା, ଗାଧୋଇବା ଏବଂ ଖୁଆଇବା ଭଳି କାର୍ଯ୍ୟ ଧୈର୍ଯ୍ୟର ସହିତ କରିବାକୁ ପଡ଼ିପାରେ । ଅନେକ ସମୟରେ ଡାକ୍ତର ଏବଂ ଚିକିତ୍ସାଳୟର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଆବଶ୍ୟକ ହୋଇପାରେ । ପିତାମାତାଙ୍କର ନିଜସ୍ୱ କାର୍ଯ୍ୟସୂଚୀ ଏବଂ ଅନ୍ୟ ଭାଇଭଉଣୀମାନଙ୍କର ଦୈନନ୍ଦିନ ଜୀବନ ବିପର୍ଯ୍ୟସ୍ତ ହୁଏ । ଅକ୍ଷମ ପିଲାଟି ପାଇଁ ବହୁତ ସମୟ ଦେବା ଫଳରେ ସାଧାରଣ ପିଲା (ଭାଇଭଉଣୀ) ପାଇଁ ସମୟର ଅଭାବ ଘଟେ । ପରିବାର ମଧ୍ୟରେ ଅନ୍ୟ

ସବୁ ସୁବିଧା ସୁଯୋଗ ନଥାଇପାରେ । ଏପରି ସ୍ଥଳେ ପିତାମାତା ଅନ୍ୟସବୁ ସାଧାରଣ ପୁତ୍ରକନ୍ୟାଙ୍କ ଭବିଷ୍ୟତ ଯୋଜନା କ୍ଷେତ୍ରରେ ନିଜର ଆକାଂକ୍ଷା କମାଇଦିଅନ୍ତି । ବେଳେବେଳେ ଅନ୍ୟ ପୁତ୍ରକନ୍ୟାଙ୍କ ଉପରେ କେତେକ ଅବାସ୍ତବ ଦାୟିତ୍ୱ ଲଦିଦିଆଯାଏ । ପିତାମାତା ନିଜର ଦାୟିତ୍ୱକୁ ସମ୍ଭାଳି ନପାରି ଅନ୍ୟ ପିଲାମାନଙ୍କୁ ଭାଗୀଦାର କରାନ୍ତି । ଆର୍ଥିକ ସମସ୍ୟା ସହିତ ଆବେଗିକ ସମସ୍ୟା ସମସ୍ତଙ୍କୁ ପ୍ରଭାବିତ କରେ ।

ପରିବାରର ଆକାର ଏବଂ ସହଯୋଗୀ ମନୋଭାବ ଏପରି ଆହ୍ୱାନ ଦାୟିତ୍ୱର ସମ୍ମୁଖୀନ ହେବାରେ ଅପେକ୍ଷାକୃତ ଅଧିକ ସଫଳ ହୋଇଥାଏ । ପିତାମାତାଙ୍କ ଧୈର୍ଯ୍ୟ ଏବଂ ଅନ୍ୟସବୁ ଭାଇଭଉଣୀଙ୍କ ବୁଝାମଣା ଏ ଦିଗରେ ବିଶେଷ ସହାୟକ ହୁଏ । ପ୍ରାଥମିକ ପର୍ଯ୍ୟାୟରେ ଭାଇଭଉଣୀମାନେ ହୁଏତ କ୍ଷୁବ୍ଧ ହୁଅନ୍ତି ଯେ, ସେମାନଙ୍କର ପିତାମାତା ଅକ୍ଷମ ଭାଇ ବା ଭଉଣୀଙ୍କ ପାଇଁ ସବୁ ସମୟ ଢାଳି ଦେଉଛନ୍ତି । ସେମାନଙ୍କ ପାଇଁ ସମୟ ଦେଉନାହାନ୍ତି କି ସେମାନଙ୍କର ଭବିଷ୍ୟତ ଚିନ୍ତା କରୁନାହାନ୍ତି । ଅବଶ୍ୟ ଧୀରେ ଧୀରେ ମନୋବୃତ୍ତିରେ ପରିବର୍ତ୍ତନ ଆସିପାରେ । ବିଶେଷତଃ ପିତାମାତା ସେମାନଙ୍କର ଅଧିକ ଦାୟିତ୍ୱଶୀଳତାକୁ ପ୍ରଶଂସା କରୁଥିଲେ ଏବଂ ପ୍ରୋତ୍ସାହନ ଦେଉଥିଲେ ପାରିବାରିକ ବାତାବରଣ ପରିବର୍ତ୍ତିତ ହୋଇପାରେ । ସ୍ଥୂଳତଃ ଅକ୍ଷମପିଲାର ସୁପରିଚାଳନା ଏବଂ ପାରିବାରିକ ସୁସମ୍ପର୍କ ମଧ୍ୟରେ ସମନ୍ୱୟ ରକ୍ଷାକରିବା କଷ୍ଟକର ହେଲେ ମଧ ଅସମ୍ଭବ ନୁହେଁ । ଉପଯୁକ୍ତ ଧୈର୍ଯ୍ୟ, ସହନଶୀଳତା, ସହଯୋଗୀତା ଏବଂ ଉପଯୋଗୀ ତାଲିମର ସାହାଯ୍ୟ ନେଇ ଏପରି ଆହ୍ୱାନମୂଳକ ପରିସ୍ଥିତିର ସଫଳ ମୁକାବିଲା କରାଯାଇପାରେ ।

## ସହାୟକ ପରାମର୍ଶ

୧ । *ଅକ୍ଷମତା ବିରୁଦ୍ଧରେ ବିଦ୍ରୋହ କରିବା ପରିବର୍ତ୍ତେ ଏହାକୁ ସ୍ୱୀକାର କରିବାର ମନୋବୃତ୍ତି ଶିଶୁକୁ ଶିକ୍ଷା ଦିଅନ୍ତୁ । ଅକ୍ଷମତାକୁ ବାଦ୍ ଦେଲେ ତା'ଜୀବନର ଏକ ଅନ୍ୟ ସବୁ ବିଶାଳ ଅଂଶବିଶେଷ ରହିଛି, ସେ ଶିକ୍ଷାକରୁ । ଏହା ଶିଶୁର ସ୍ୱପ୍ରତ୍ୟୟ ଓ ଆତ୍ମ-ମର୍ଯ୍ୟାଦାବୋଧକୁ ସୁରକ୍ଷିତ ରଖିବ ।*

୨ । *ଶିଶୁ ପାଇଁ ସଫଳତା ଓ ଲକ୍ଷ୍ୟ ସାଧନର କ୍ଷେତ୍ର ସତର୍କତାର ସହିତ ନିର୍ବାଚନ କରନ୍ତୁ । ଗତାନୁଗତିକ ମାନଦଣ୍ଡ ନେଇ ଶିଶୁର ସଫଳତାର ମୂଲ୍ୟାୟନ କରନ୍ତୁ ନାହିଁ ।*

୩ । *ଗତାନୁଗତିକତାର ବାହାରେ ଶିଶୁର ସଫଳତାର କ୍ଷେତ୍ର ନିର୍ବାଚନ କରନ୍ତୁ (ଯଥା : ଦୃଷ୍ଟିଶକ୍ତିର ସମସ୍ୟା ଥିବା ପିଲାପାଇଁ ସଙ୍ଗୀତ ଦକ୍ଷତା ବେଶ୍ ପ୍ରାସଙ୍ଗିକ)*

୪ । *ପରିବାରର କାର୍ଯ୍ୟକ୍ରମ ଓ ଉତ୍ସବ ଆୟୋଜନ କଲାବେଳେ ଅକ୍ଷମ ଶିଶୁଟି ଯେପରି ଅଧିକ ମାନସିକ ଚାପର ଶିକାର ନହୁଏ, ସେଥିପ୍ରତି ଦୃଷ୍ଟି ଦିଅନ୍ତୁ । (ଯଥା–*

ପରିବାରରେ ବାକ୍‌ହୀନ ପିଲାଟିଏ ଥିବା ପରିପ୍ରେକ୍ଷୀରେ ସଙ୍ଗୀତ ଆସରର ଆୟୋଜନ ଏବଂ ଶାରୀରିକ ଅକ୍ଷମ ପିଲାଟିଏ ଥିବା ବେଳେ ଖେଳକୁଦର ପ୍ରତିଯୋଗିତା ଏକରକମ ଅବିବେକିତା ହେବ ।)

୫ । ଅବସ୍ଥା ନିହାତି ଅସମ୍ଭାଳ ହେଉନଥିଲେ ଅକ୍ଷମ ପିଲାଟିକୁ ସାଧାରଣ ପିଲା ସହିତ ଏକତ୍ର ଶିକ୍ଷାଲାଭର ସୁଯୋଗ ଦିଅନ୍ତୁ । ଅବଶ୍ୟ ଏପରି ବ୍ୟବସ୍ଥା ସତ୍ତ୍ୱେ ଶିଶୁଟିକୁ ଅନ୍ୟ ସମୟରେ ବିଶେଷ ଓ ସ୍ୱତନ୍ତ୍ର ତାଲିମ (ଯଥା - ଗୃହଶିକ୍ଷକ) ଦେବାକୁ ହେବ । ଶିକ୍ଷକ ଶିକ୍ଷୟତ୍ରୀ ମଧ୍ୟ ଉଭୟ ପ୍ରକାର ପିଲାକୁ ଗୋଟିଏ ପରିବେଶରେ ପରିଚାଳନ କରିବା ପାଇଁ ତାଲିମ ପାଇଥିବା ଆବଶ୍ୟକ ।

୬ । ପିତାମାତାଙ୍କ ଧୈର୍ଯ୍ୟନିର୍ବାହ ସହନଶୀଳତା ଏବଂ ବିଶେଷଜ୍ଞଙ୍କ ପରାମର୍ଶ ସହ ଭିନ୍ନ-କ୍ଷମ ପିଲାର ପରିଚାଳନା ଦାୟିତ୍ୱ ନିର୍ବାହ କରିବାକୁ ହେବ । ପିଲା ପାଇଁ ଅନେକ ସମୟରେ ସୂଚନା ଓ ନିର୍ଦ୍ଦେଶସବୁର ପୁନରାବୃତ୍ତି କରିବାକୁ ହେବ ।

୭ । ପରିଶେଷରେ ସୁସମ୍ପର୍କ ପାଇଁ ଅନ୍ୟ ସବୁ ସନ୍ତାନ ସନ୍ତତିମାନଙ୍କୁ ପିତାମାତା ତାଲିମ ଦେବେ । ଅଧିକ ପରିମାଣର ଦାୟିତ୍ୱ ନିର୍ବାହ ପାଇଁ ସେମାନଙ୍କୁ ପ୍ରଶଂସା ଓ ପ୍ରୋତ୍ସାହନ ଦେବେ ଏବଂ ସୁପରିଚାଳିତ ପରିବାରର ପରିବେଶ ଭିନ୍ନ-କ୍ଷମ ପିଲାମାନଙ୍କ ପାଇଁ ବିଶେଷ ପ୍ରୟୋଜନ ।

# ଅଭେଦ୍ୟ ଶିଶୁ : ପଙ୍କରେ ପଦ୍ମ ପ୍ରକ୍ରିୟା

ସୁସ୍ଥ ପରିବେଶ ମଧ୍ୟରେ ପ୍ରତିପାଳିତ ଶିଶୁର ଶାରୀରିକ, ମାନସିକ ଓ ଭାବଗତ ବିକାଶ ଘଟି ଶିଶୁଟି ଉନ୍ନତି ପଥରେ ଅଗ୍ରସର ହୁଏ । ସେହିପରି ପ୍ରତିକୂଳ ପରିବେଶ ଶିଶୁର ବିକାଶକୁ ବିପର୍ଯ୍ୟସ୍ତ କରେ । ଦୁଃସ୍ଥ ବାତାବରଣ ମଧ୍ୟରେ ବଢୁଥିବା ଶିଶୁ ନାନା ପ୍ରକାର ଜଟିଳ ପରିସ୍ଥିତିର ଶରବ୍ୟ ହୋଇ ଭାରସାମ୍ୟ ହରାଏ । ଖରାପ ପରିସ୍ଥିତିରେ ଗତି କରୁଥିବା ଶିଶୁମାନେ ଧୀରେ ଧୀରେ ବୟସରେ ବଢୁଥିଲେ ମଧ୍ୟ ସେମାନଙ୍କ ବୌଦ୍ଧିକ ବିକାଶର ଭାବଗତ ଭାରସାମ୍ୟ ବୃଦ୍ଧି ନ ପାଇ ଜଟିଳତା ବୃଦ୍ଧିପାଏ । ଏପରି ପିଲାମାନେ ବଡ଼ହେଲେ ସେମାନଙ୍କର ଶିକ୍ଷାହୀନତା, ଅପରାଧପ୍ରବଣତା ଓ ସମାଜ ବିରୋଧୀ କାର୍ଯ୍ୟକଳାପ ବୃଦ୍ଧି ପାଇବାରେ ଲାଗେ ।

ସାଧାରଣ ଦୃଷ୍ଟିରୁ ବିଚାର କଲେ ସୁସ୍ଥ ପରିବେଶର ସୁଫଳ ଏବଂ ଦୁଃସ୍ଥ ପରିବେଶର କୁଫଳ ସଦାସ୍ୱୀକୃତ । ତଥାପି ଏହାର ଯେ ବ୍ୟତିକ୍ରମ ନାହିଁ, ଏ କଥା ନୁହେଁ । ପାଶ୍ଚାତ୍ୟ ଦେଶର ଗବେଷଣାରୁ ଦେଖାଯାଇଛି ଯେ ଖରାପ ପରିସ୍ଥିତିରେ ବଢୁଥିବା ପିଲାମାନଙ୍କ ମଧ୍ୟରୁ ପ୍ରାୟ ଶତକଡ଼ା ସତୁରି ଭାଗ ପିଲାମାନେ ଅସାମାଜିକତା ଓ ଅପରାଧପ୍ରବଣତା ଦର୍ଶାଉଥିଲେ ମଧ୍ୟ ପ୍ରାୟ ତିରିଶ ଭାଗ ପିଲା ଏଥିରୁ ମୁକ୍ତ । କେବଳ ସେତିକି ନୁହେଁ, ଏହି ତିରିଶ ଭାଗ ପିଲାମାନଙ୍କ ମଧ୍ୟରୁ ବହୁ ପିଲା ସୁସ୍ଥ ପରିବେଶରେ ବଢୁଥିବା ପିଲାମାନଙ୍କର ସମକକ୍ଷ ହୁଅନ୍ତି ଏବଂ କେତେକ ସ୍ଥଳରେ ସେମାନଙ୍କଠାରୁ ଅଧିକ ପ୍ରତିଭା ଦର୍ଶାନ୍ତି । ଖରାପ ବାତାବରଣ ସତ୍ତ୍ୱେ ଉତ୍କର୍ଷ ଦେଖାଉଥିବା ଏପରି ପିଲାମାନଙ୍କୁ ଅଭେଦ୍ୟ ଶିଶୁ (Invulnerable Child) କୁହାଯାଇପାରେ ।

ଭାରତୀୟ ପରିପ୍ରେକ୍ଷୀରେ ଏମାନଙ୍କର ସଂଖ୍ୟା ଶତକଡ଼ା ତିରିଶ କି ନୁହେଁ ସେ କଥା କୁହାଯାଇପାରିବ ନାହିଁ । ତେବେ ଏମାନଙ୍କର ସଂଖ୍ୟା ନଗଣ୍ୟ ନୁହେଁ । ପଙ୍କରେ ଜନ୍ମଲାଭ କରି ପଙ୍କଦ୍ୱାରା ମଳିନ ନ ହେଉଥିବା ଏପରି ଅଭେଦ୍ୟ ଶିଶୁମାନଙ୍କର ଅବସ୍ଥା (Lotus-in-the Mud Phenomenon) ବେଶ୍ ପ୍ରଣିଧାନର ବିଷୟ । କେତେକ ପିଲା ଖରାପ ଅବସ୍ଥା ଦ୍ୱାରା ପ୍ରଭାବିତ ନ ହୋଇ ସୁବିକଶିତ ହେଉଥିବାର ଅର୍ଥ ନୁହେଁ ଯେ ଗୋଷ୍ଠୀଗତ ଜୀବନରେ ଦୁଃସ୍ଥ ପରିବେଶକୁ ନିୟନ୍ତ୍ରଣ ନ କରି ତାକୁ ସଂପ୍ରସାରଣ କରିବା । କିନ୍ତୁ ତାତ୍ପର୍ଯ୍ୟପୂର୍ଣ୍ଣ ହେଉଛି ଦୁଃସ୍ଥ ପରିବେଶରେ ଊର୍ଦ୍ଧ୍ୱକୁ ଯାଇ ଉତ୍କର୍ଷ ଦର୍ଶାଉଥିବା ଏପରି ପିଲାମାନଙ୍କର ଅନୁଧ୍ୟାନ କରି ସେମାନଙ୍କର ମାନସିକ କୌଶଳସବୁକୁ ଚିହ୍ନଟ କରିବା ଏବଂ ଅନ୍ୟ ପିଲାମାନଙ୍କୁ ସେପରି ସମନ୍ୱୟ କୌଶଳ ତାଲିମ ଦେବା ।

ଏପରି ଅଭେଦ୍ୟ ପିଲାମାନଙ୍କୁ ଅନୁଧ୍ୟାନ କରାଯାଇ ଗୋଟିଏ ଦୁଇଟି ବିଷୟରେ ତାତ୍ପର୍ଯ୍ୟପୂର୍ଣ୍ଣ ଜ୍ଞାନ ଲାଭ କରାଯାଇଛି । ପ୍ରଥମତଃ ଲକ୍ଷ୍ୟ କରାଯାଇଛି ଯେ ଅଭେଦ୍ୟ ଶିଶୁମାନେ ଏକ ସ୍ୱତନ୍ତ୍ର ଧରଣର ଶୈଳୀରେ ନିଜର ମାନସିକ ଚାହିଦା ପୂରଣ କରନ୍ତି । ନିଜର ଚାହିଦାପୂରଣ କ୍ଷେତ୍ରରେ ସେମାନଙ୍କର ଗୋଟିଏ ସହାନୁଭୂତିଶୀଳ ମାଧମ (Sympatheitc medium) ଥାଏ । ଏହି ମାଧମ ଦ୍ୱାରା ହିଁ ସେମାନେ ନିଜର ମାନସିକ ବିଶେଷ କରି ଭାବଗତ ଚାହିଦା ପୂରଣ କରନ୍ତି ।

ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ବସ୍ତିରେ ବସବାସ କରୁଥିବା ଗୋଟିଏ ପିଲାର ପାରିବାରିକ ଜୀବନ ଖୁବ୍ ଦୁଃଖଦ ହୋଇପାରେ । ତା'ର ପିତା ମଦ୍ୟପ ଓ ମା' ଭ୍ରଷ୍ଟ ଚରିତ୍ରସଂପନ୍ନା ହୋଇପାରନ୍ତି । ଏପରି ସ୍ଥଳେ ପିଲାଟିର ମାନସିକ ଦୃଷ୍ଟିଭଙ୍ଗୀ ଅଭେଦ୍ୟ (Invulnerable ବା Resilient) ହୋଇଥିଲେ ସେ ଅନ୍ୟତ୍ର ନିଜର ସହାନୁଭୂତିଶୀଳ ମାଧମ ଖୋଜିନିଏ । ସ୍କୁଲରେ ଭଲ ଘଟଣା ଘଟିଲେ କିମ୍ବା ପାଠରେ ଭଲ କଲେ ସେ ପ୍ରଥମେ ନିଜର ମାଧମଙ୍କୁ ଜଣାଏ । ଏପରି ମାଧମ ଜଣକ ତା'ର କୌଣସି ବନ୍ଧୁ ହୋଇପାରେ, ଏପରି ମାଧମ ସ୍କୁଲର ଜଣେ ଶିକ୍ଷକ ହୋଇପାରନ୍ତି । ଏପରି ମାଧମ ପିଲାଟି ବସବାସ କରୁଥିବା ଲୋକାଳୟର ଦୂରରେ ବାସ କରୁଥିବା କେହି ବ୍ୟକ୍ତି ହୋଇପାରନ୍ତି । ଏପରି ବ୍ୟକ୍ତି ଜଣକ ପିଲାଟିର କୌଣସି ଆତ୍ମୀୟସ୍ୱଜନ ହୋଇପାରନ୍ତି କିମ୍ବା ନ ହୋଇ ମଧ୍ୟ ପାରନ୍ତି । ପିଲାଟି ସହିତ ବୟସର ମେଳ ନ ଥାଇପାରେ । କିନ୍ତୁ ଅତୀତରେ କେତେକ ଘଟଣା ଭିତରେ ଏକ ଭାବପୂର୍ଣ୍ଣ ସଂପର୍କ ପ୍ରତିଷ୍ଠା ହୋଇ ସାରିଥିଲେ ପିଲାଟି ନିଜର ଭାବଗତ ଚାହିଦା ତାଙ୍କ ମାଧମରେ ପୂରଣ କରେ ।

ଅଭେଦ୍ୟ ଶିଶୁଟି ଏପରି ବ୍ୟକ୍ତିଙ୍କୁ କେବଳ ନିଜର ଭଲ ଅନୁଭୂତି ଜଣାଇ ନଥାଏ । ନିଜର ମନର ଦୁଃଖ ଜଣାଏ ଏବଂ ମନରେ ଉଠୁଥିବା ପ୍ରଶ୍ନସବୁ ପଚାରି ତାହାର ସମାଧାନ ଖୋଜେ । ଅବାଞ୍ଛିତ ପାରିବାରିକ ପରିସ୍ଥିତି ଓ ଅନାକର୍ଷଣୀୟ ପରିବେଶ ଦ୍ୱାରା ସୃଷ୍ଟି ହୋଇଥିବା ତିକ୍ତତାସବୁ ପାସୋରିବାକୁ ପିଲାଟି ଏପରି ବ୍ୟକ୍ତି ପାଖରେ ନିଜର ମନର ଭାର ଲାଘବ କରେ । ଗବେଷଣାରୁ ଲକ୍ଷ୍ୟ କରାଯାଇଛି ଯେ ପ୍ରତିଟି ଅଭେଦ୍ୟ ପିଲାର ଏପରି ଏକ ମାନସିକ ନିରାପଦ କୌଶଳ (Safety valve) ବ୍ୟବସ୍ଥା ପିଲାଟି ନିର୍ମାଣ କରିଥାଏ ।

ଏପରି ପର୍ଯ୍ୟବେକ୍ଷଣର ଏକ ବିଶିଷ୍ଟ ପ୍ରୟୋଗାତ୍ମକ ଦିଗ ରହିଛି । ବସ୍ତିରେ ବସବାସ କରୁଥିବା ଏବଂ ଅନ୍ୟାନ୍ୟ ପ୍ରତିକୂଳ ପରିବେଶରୁ ଆସୁଥିବା ପିଲାଙ୍କର ବିକାଶ ଚାହୁଁଥିବା ବ୍ୟକ୍ତିମାନେ ଏ ଦିଗଟି ପ୍ରତି ସଚେତନ ହେବା ବିଧେୟ । ଏପରି ପିଲାମାନଙ୍କୁ ସାମୟିକ ଭାବରେ କେବଳ ଆର୍ଥିକ ସାହାଯ୍ୟ ଓ ସାମୟିକ ଉପହାର ଦେଇ ଯେଉଁ ସୁଫଳ ନ ମିଳିବ ଏମାନଙ୍କ ଜୀବନର କାହାଣୀ ଶୁଣି, ସେମାନଙ୍କ ଭାବନା ସହିତ ପରିଚିତ ହେବାକୁ ଉଦ୍ୟମ କରି ଏବଂ ସର୍ବୋପରି ସେମାନଙ୍କ ପ୍ରତି ସହାନୁଭୂତିଶୀଳ ହୋଇ ଅଧିକ ଉପକାର କରାଯାଇପାରେ । ଆର୍ଥିକ ଅଭାବ ଅପେକ୍ଷା ଭାବଗତ ଦାରିଦ୍ର୍ୟ ଦୂର କରିବାର ଚେଷ୍ଟା

ଅଧିକ ଫଳବତୀ ହୋଇଥାଏ । ଏହି ଦୃଷ୍ଟିରୁ ଅଭେଦ୍ୟ ପିଲାମାନଙ୍କୁ ଚିହ୍ନଟ କରିବା ଏବଂ ସେମାନଙ୍କ ସହିତ ସହାନୁଭୂତିଶୀଳ ସଂପର୍କ ପ୍ରତିଷ୍ଠା ପାଇଁ ତତ୍ପରତା ଦର୍ଶାଇବା ଏକ ବିବେକାନୁମୋଦିତ ମାର୍ଗ ।

ଅଭେଦ୍ୟ ପିଲାମାନଙ୍କର ସମନ୍ୱୟ କୌଶଳ ସଂପର୍କରେ ଆଉ ଗୋଟିଏ ଜିନିଷ ଲକ୍ଷ୍ୟ କରାଯାଇଛି । ପିଲା ହେଉ ବା ବଡ଼ ହୁଅନ୍ତୁ, ଅପ୍ରୀତିକର ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ସମସ୍ତେ ଅନେକ ପ୍ରକାର ସମନ୍ୱୟ କୌଶଳ ବ୍ୟବହାର କରନ୍ତି । କୌଣସି ଘଟଣା ଆମର ମାନସିକ ବିପର୍ଯ୍ୟୟ ସୃଷ୍ଟି କରୁଥିଲେ ମାନସିକ ଭାରସାମ୍ୟ ରକ୍ଷା କରିବାକୁ ଆମେ କେତେ ଗୁଡ଼ିଏ କୌଶଳ ଅବଲମ୍ବନ କରୁ । ଘଟଣାଟି ପୁଙ୍ଖାନୁପୁଙ୍ଖ ଅନୁଶୀଳନ କରି ତାର ସମାଧାନର ପନ୍ଥା ବାହାର କରୁ କିମ୍ବା ତାସ ଖେଳି, ଟିଭି ଦେଖି ଓ ଶୋଇ ରହି ଘଟଣାଟି ଭୁଲିବାକୁ ଶୈଳୀରେ ଚେଷ୍ଟା କରୁ । ମୋଟ ଉପରେ ବିଭିନ୍ନ ପିଲା ଓ ବିଭିନ୍ନ ବ୍ୟକ୍ତି ପୃଥକ୍ ପୃଥକ୍ ଭୁଲିବାକୁ ଚେଷ୍ଟା କରନ୍ତି । ମୋଟ ଉପରେ ବିଭିନ୍ନ ପିଲା ଓ ବିଭିନ୍ନ ବ୍ୟକ୍ତି ପୃଥକ୍ ପୃଥକ୍ ପନ୍ଥା ଅବଲମ୍ବନ କରି ଅପ୍ରୀତିକର ଅବସ୍ଥାର ମୁକାବିଲା କରନ୍ତି ।

ସମନ୍ୱୟ କୌଶଳଗୁଡ଼ିକୁ ସାଧାରଣତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମଟି ହେଉଛି ପ୍ରତ୍ୟକ୍ଷ ସମନ୍ୱୟ କୌଶଳ । ଏହାଦ୍ୱାରା ଆଗେ ଘଟଣାଟି ପୂରାପୂରି ଏଡ଼ାଇ ନ ଯାଇ ତାର ମୁକାବିଲା କରିବାକୁ ଚେଷ୍ଟା କରୁ । ସମସ୍ୟାର ସମାଧାନପାଇଁ ଅନୁଶୀଳନ କରୁ । ଘଟଣାର କାରଣ ସମ୍ପର୍କରେ ବିଚାର କରୁ । ଅନ୍ୟମାନଙ୍କର ମତାମତ ଓ ପରାମର୍ଶ ଗ୍ରହଣ କରୁ । ମୋଟ ଉପରେ ଉପୁଜିଥିବା ସମସ୍ୟାଟିର ସିଧାସଳଖ ମୁକାବିଲା କରିବା ଏ ସମନ୍ୱୟ କୌଶଳର ଲକ୍ଷ୍ୟ ।

ଦ୍ୱିତୀୟ ପ୍ରକାର ସମନ୍ୱୟ କୌଶଳଟି ହେଉଛି ପରୋକ୍ଷ ବା ଏଡ଼ାଇଦେବାର କୌଶଳ । ଏଠାରେ ପରିସ୍ଥିତିଟିକୁ ଏଡ଼ାଇ ଦେବାକୁ ଚେଷ୍ଟାକରୁ । ପ୍ରକୃତରେ ଅବସ୍ଥାଟି ଖରାପ ନୁହେଁ ବୋଲି ଯୁକ୍ତି କରି ମନକୁ ପ୍ରବୋଧ ଦେଉ । ଶୋଇପଡ଼ି, ଟିଭି ଦେଖି କିମ୍ବା ଖେଳ ଭିତରେ ଘଟଣାଟି ଭୁଲିବାକୁ ଚେଷ୍ଟାକରୁ । ଏପରି ପରୋକ୍ଷ ଶୈଳୀରେ ଆମେ ଅପ୍ରୀତିକର ପରିସ୍ଥିତି ସହିତ ସମନ୍ୱୟ ରକ୍ଷାକରୁ ।

ଗବେଷଣାରୁ ଦେଖାଯାଇଛି ଯେ ଅଭେଦ୍ୟ ପିଲାମାନେ ଅଧିକ ପରିମାଣରେ ପ୍ରତ୍ୟକ୍ଷ ସମନ୍ୱୟ ଶୈଳୀର ଉପଯୋଗ କରନ୍ତି । ସେମାନେ ସମସ୍ୟାଟିକୁ ଚିହ୍ନଟ କରନ୍ତି । ସେ ବିଷୟରେ ବିଚାର କରନ୍ତି ଏବଂ ତାର ସମାଧାନ ଦିଗରେ କ'ଣ କରାଯାଇ ପାରିବ, ସେ ଦିଗରେ ବିଚାର ଆଲୋଚନା କରନ୍ତି । ପ୍ରାଥମିକ ସ୍ତରରେ ଆଲୋଚନା କରନ୍ତି । ପ୍ରାଥମିକ ସ୍ତରରେ ଏପରି କାର୍ଯ୍ୟକ୍ରମ କଷ୍ଟକର ମନେହେଲେ ମଧ୍ୟ ଏହାର ଭବିଷ୍ୟତ ଫଳାଫଳ ଭଲ ହୁଏ । ମାତ୍ର ପରିସ୍ଥିତିକୁ ଏଡ଼ାଇ ଚାଲି ଯାଉଥିବା ପିଲାମାନେ ଅଳ୍ପ ସମୟ ପାଇଁ ଏଥିରୁ ମୁକ୍ତି ପାଇଲେ ମଧ୍ୟ ପରବର୍ତ୍ତୀ କାଳରେ ଅଧିକରୁ ଅଧିକ ସମସ୍ୟାର ସମ୍ମୁଖୀନ ହୁଅନ୍ତି ।

ଅଭେଦ୍ୟ ପିଲାମାନଙ୍କର ଏପରି ମାନସିକ କୌଶଳକୁ ବୁଝିବାକୁ ହେବ ଯେ ପତ୍ୟକ୍ଷ ସମନ୍ୱୟ କୌଶଳ ଶିକ୍ଷା ଦେବାପାଇଁ ଯୋଜନାବଦ୍ଧ ଉଦ୍ୟମ ଆବଶ୍ୟକ । ସ୍କୁଲ ପାଠ୍ୟ ବିଷୟ ଆୟତ୍ତାଧୀନ କରିବା ସଙ୍ଗେ ସଙ୍ଗେ ଖରାପ ପରିସ୍ଥିତି ଦେଇ ଗତି କରୁଥିବା ପିଲାମାନେ କିପରି ବିଭିନ୍ନ ସମନ୍ୱୟ କୌଶଳ ଶିକ୍ଷା କରିପାରିବେ, ସେଥିପାଇଁ ପ୍ରଶିକ୍ଷଣର ଆବଶ୍ୟକତା ରହିଛି । ସମସ୍ୟାସବୁ କିପରି ବିଶ୍ଳେଷଣ କରାଯାଇପାରେ, କେଉଁ ପ୍ରକାର ସମସ୍ୟାର ସମାଧାନ ପାଇଁ କାହାଠାରୁ ପରାମର୍ଶ ଗ୍ରହଣ କରାଯାଇପାରେ ଏବଂ କେଉଁ ପ୍ରକାର ସମନ୍ୱୟ କୌଶଳ ଅଧିକ ଉପଯୋଗୀ, ସେ ସମ୍ପର୍କରେ ପିଲାମାନଙ୍କୁ ଧାରଣା ଦିଆଯାଇ ପାରିବ । ଏପରି କଲେ ଅଭେଦ୍ୟ ପିଲାମାନଙ୍କର ସଂଖ୍ୟା ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଦୁଃସ୍ଥ ପରିବେଶର କୁପ୍ରଭାବ ହ୍ରାସ କରାଯାଇପାରିବ ।

ସ୍ଥୂଳତଃ ଦୁଃସ୍ଥ ପରିବେଶର ପରିବର୍ତ୍ତନ ଘଟାଇ ଏହାକୁ ସୁସ୍ଥ ପରିବେଶରେ ରୂପାନ୍ତର କରିବା ଉଦ୍ୟମ ଅବ୍ୟାହତ ରଖିବା ନିଶ୍ଚିତ ଭାବରେ ଗ୍ରହଣୀୟ । ମାତ୍ର ଦୁଃସ୍ଥ ପରିବେଶ ମଧ୍ୟରେ ଯେ ପ୍ରତିଭାଶାଳୀ ଦକ୍ଷତାସମ୍ପନ୍ନ ବ୍ୟକ୍ତିର ଉନ୍ମେଷ ଓ କ୍ରମବିକାଶ ଘଟିପାରେ, ଏହାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ପାରିବ ନାହିଁ । ଏପରି ପ୍ରତିକୂଳ ପରିବେଶରେ ସୁବିକଶିତ ପିଲାମାନଙ୍କର ସ୍ୱତନ୍ତ୍ର ପ୍ରକାର ସମନ୍ୱୟ କୌଶଳ ଲକ୍ଷ୍ୟ କରାଯାଇ ଯେଉଁସବୁ ତଥ୍ୟ ସଂଗ୍ରହ କରାଯାଇଛି, ସେଥିରୁ ସମ୍ବେଦନଶୀଳ ବ୍ୟକ୍ତିର ଭୂମିକା ତାତ୍ପର୍ଯ୍ୟପୂର୍ଣ୍ଣ । ସୁତରାଂ ଦୁଃସ୍ଥ ପରିବେଶରୁ ଆସୁଥିବା ପିଲାମାନେ କିପରି ଏକ ସମ୍ବେଦନଶୀଳ ପରିସର ସମ୍ପର୍କରେ ଆସିବେ, ସେ ଦିଗରେ ସଚେତନଶୀଳତା ଏପରି ଶିଶୁମାନଙ୍କର ବିକାଶକୁ ତ୍ୱରାନ୍ୱିତ କରିବ । ଏହାର ଉପଲବ୍ଧି ଓ ଏ ଦିଗରେ କାର୍ଯ୍ୟକରଣ ଏକ ମାନବନିଷ୍ଠ ଯୋଜନା ।

## *ସହାୟକ ପରାମର୍ଶ*

*୧ । ଶିଶୁ ମନରେ ଭାବନା ଦିଅନ୍ତୁ ଯେ, ଦରକାର ପଡ଼ିଲେ ସେ ଆପଣଙ୍କ ସାହାଯ୍ୟ ପାଇବ ।*

*୨ । ଶିଶୁର ନିଜସ୍ୱ ଦକ୍ଷତା ଅଛି, ଏପରି ଭାବନା ଦିଅନ୍ତୁ ।*

*୩ । ଶିଶୁ ନିଜର ସମସ୍ୟା ସମାଧାନ କରିପାରିବ, ଏପରି ପ୍ରତ୍ୟୟ ଦିଅନ୍ତୁ ।*

# ଅଗ୍ରଦୃଷ୍ଟି : କୈଶୋରକୁ

ପ୍ରାକ୍-ବିଦ୍ୟାଳୟ ସୋପନର ପରେ ପରେ ଶାରୀରିକ ଅଭିବୃଦ୍ଧି ସାମାନ୍ୟ କମି ଆସୁଥିବା ସମୟରେ ଅନ୍ୟସବୁ କୌଶଳର ବିକାଶ ପାଇଁ ଶକ୍ତି ଓ ସମୟ ସମ୍ପ୍ରସାରିତ ହୁଏ । ପିଲାମାନେ ସାଇକେଲ ଚାଳନାଠାରୁ ଆରମ୍ଭ କରି ନୂତନ ବନ୍ଧୁ ସମ୍ପର୍କ ବିକାଶ କ୍ଷେତ୍ରରେ କୌଶଳ ଆହରଣ କରନ୍ତି । ଭାଷା ବ୍ୟବହାର୍‌ର ବହୁଳତା ଏବଂ ପ୍ରତୀକଧର୍ମୀ ମିଛିମିଛିକା ଖେଳ ସହିତ ଅନ୍ୟସବୁ କ୍ରୀଡ଼ାକୌତୁକ ଶିଶୁର ଦକ୍ଷତା ପରିସରକୁ ପରିବ୍ୟାପ୍ତ .ପରେ । ଭୌତିକସାମଗ୍ରୀର କାରବାର ସହିତ ଶିଶୁମାନେ ଯୁକ୍ତିଯୁକ୍ତ ଭାବରେ ଚିନ୍ତା କରିବାର ଦକ୍ଷତା ଆହରଣ କରନ୍ତି । ନୂତନ ସ୍କୁଲ ଜୀବନର ଆରମ୍ଭ ଏବଂ ନୂତନ ଦକ୍ଷତାର ଆବିର୍ଭାବ ଫଳରେ ଜୀବନରେ ବନ୍ଧୁତ୍ୱର ଗୁରୁତ୍ୱ ପୂର୍ବାପେକ୍ଷା ବୃଦ୍ଧିପାଏ ।

ସମ୍ଭବତଃ ଏ ବୟସରେ ପିଲାମାନେ ସଂଘଟିତ ପରିବର୍ତ୍ତନସବୁ ସମ୍ପର୍କରେ ସଚେତନ ହୋଇଥିବାରୁ ଘଟଣାସବୁ ସ୍ମୃତି ଭଣ୍ଡାରରେ ଅପେକ୍ଷାକୃତ ଅମଳିନ ରହେ । ବିଶ୍ୱ ସୁରକ୍ଷାପୂର୍ଣ୍ଣ ମନେହୁଏ । ସ୍ୱାସ୍ଥ୍ୟ ସମ୍ପର୍କରେ ବିଶେଷ ଅଭିଯୋଗ ନଥାଏ । ସାମର୍ଥ୍ୟସବୁ ଆଖିଦୃଶିଆ ଭାବରେ ବିକଶିତ ହେବାକୁ ଲାଗେ ।

ଅନେକ ଦୃଷ୍ଟିରୁ ଏ ସମୟରେ ପିଲା ଗୋଟିଏ ବ୍ୟକ୍ତିର ରୂପନିଏ । ନିଜ ବୟସର ପିଲାମାନଙ୍କ ସହିତ ସମ୍ପର୍କ ଓ ପରିପକ୍ୱତା ତାକୁ ଏପରି ବ୍ୟକ୍ତିତ୍ୱର ରୂପଦିଏ । ବୌଦ୍ଧିକ ଓ ଜ୍ଞାନଗତ ବିକାଶ ମଧ୍ୟ କ୍ଷିପ୍ର ହୋଇଥାଏ । ପିଲାଟି ଲକ୍ଷ୍ୟ ସ୍ଥିର କରେ ଏବଂ ଲକ୍ଷ୍ୟପୂରଣ ପାଇଁ ପଦରାଜନା କରେ । ଲକ୍ଷ୍ୟ ସାଧନ ସମୟରେ ଅନ୍ୟମାନଙ୍କ ମତାମତକୁ ବିଚାର କରିଥାଏ ।

ଅବଶ୍ୟ ଲକ୍ଷ୍ୟସାଧନ ପ୍ରକ୍ରିୟାରେ ସ୍କୁଲବୟସର ପିଲାମାନେ ସବୁବେଳେ ପ୍ରୀତିପ୍ରଦ ଅନୁଭବ ପାଇନଥାନ୍ତି । ନବ ବିକଶିତ ପରିପକ୍ୱତା ନେଇ ସେମାନେ ନୂତନ ବନ୍ଧୁପାଆନ୍ତି । ପୁଣି ଅନ୍ୟମାନଙ୍କର ଆବେଗକୁ ଆହତ ମଧ୍ୟ କରନ୍ତି । ସେମାନଙ୍କ ବିଷୟରେ ଅନ୍ୟମାନଙ୍କର ମତାମତ କଣ, ସେ ବିଷୟରେ ଦୁଶ୍ଚିନ୍ତା ମଧ୍ୟ ରହିଥାଏ । ମୋଟଉପରେ ଆନନ୍ଦ ନିରାନନ୍ଦର ଏକ ମିଶ୍ର ଅନୁଭୂତି ବାଲ୍ୟଜୀବନକୁ ରଙ୍ଗଦିଏ ।

ଏସବୁ ସତ୍ତ୍ୱେ ନିଜ ସମ୍ପର୍କରେ ଏକ ସ୍ୱପ୍ରତ୍ୟୟ (Self-Concept) ବିକଶିତ ହୁଏ । ଶୈଶବ ଏବଂ ପ୍ରାକ-ବିଦ୍ୟାଳୟ ଜୀବନରେ ଗଠିତ ହେଇଥିବା ସ୍ୱପ୍ରତ୍ୟୟ ବା ମୁଁତ୍ୱର ଧାରଣାଠାରୁ ଏହା ଅଧିକ ସ୍ପଷ୍ଟ ।

ଏହି ସ୍ୱପ୍ରତ୍ୟୟ କୈଶୋର ସୋପାନରେ ଅଧିକ ପ୍ରସାରିତ ହୁଏ । କେତେକ ବ୍ୟକ୍ତି କୈଶୋରକାଳକୁ ଏକ ସଂଘର୍ଷପୂର୍ଣ୍ଣ ସୋପାନ ରୂପେ ଚିତ୍ରଣ କରନ୍ତି । କିନ୍ତୁ ଉଭୟେ ବାଲ୍ୟ ଓ କୈଶୋର ବହୁବିଧ ଆହ୍ୱାନ ଓ ସମ୍ଭାବନାରେ ପରିପୂର୍ଣ୍ଣ ।

ମନସ୍ତାତ୍ତ୍ୱିକ ବିକାଶ ଏକ ନିରବଚ୍ଛିନ୍ନ ପ୍ରକ୍ରିୟା । ଏହା ଅନବରତ ଚାଲିଥିଲେ ମଧ୍ୟ କେତେକ ବିଶିଷ୍ଟତାପୂର୍ଣ୍ଣ ପରିପ୍ରକାଶ ଏହି ନିରବଚ୍ଛିନ୍ନ ବିକାଶ ଧାରାକୁ ପୃଥକ୍ ପୃଥକ୍ ସ୍ୱରୂପର ଅନୁଭବ ଦିଏ । ପିଲାମାନଙ୍କର ଏଗାର ବାର ବର୍ଷ ବେଳକୁ ସେହିପରି କେତେକ ଆଭ୍ୟନ୍ତରୀଣ ଜୈବିକ ପରିବର୍ତ୍ତନ ବିକାଶକୁ ଭିନ୍ନ ମୋଡ଼ ଦିଏ । ଶରୀରରେ ଜୈବିକ-ରାସାୟନିକ ପରିବର୍ତ୍ତନ ଏବଂ ବ୍ୟବହାରର ନୂତନ ଢାଞ୍ଚାସବୁ ଅନୁଶୀଳନର ନୂଆ ପର୍ବ ପ୍ରସ୍ତୁତ କରେ । ମନସ୍ତାତ୍ତ୍ୱିକ ବିକାଶର ସେଇ ନୂତନ କୌଶଳର ପଦ୍ଧତିକୁ ଜାଣିବା ପାଇଁ ନୂଆ ମାପକାଠିର ପ୍ରୟୋଜନ ହୁଏ । ଏ ଦୃଷ୍ଟିରୁ ବାଲ୍ୟପର୍ବର ଅନୁଶୀଳନକୁ ପୁଞ୍ଜିକରି ଆଗାମୀ ଦିନରେ ପରବର୍ତ୍ତୀ କୈଶୋର ପଦ୍ଧତିକୁ ନିରୀକ୍ଷଣ କରିବାକୁ ହେବ ।

*ପରବର୍ତ୍ତୀ ଆଲେଖ୍ୟ :*

**ମନସ୍ତାତ୍ତ୍ୱିକ ବିକାଶର କୈଶୋର ପର୍ବ**

*ପ୍ରକାଶ ଅପେକ୍ଷାରେ*

## ଲେଖକଙ୍କ ଅନ୍ୟାନ୍ୟ କୃତି

- **ମନୋବୈଜ୍ଞାନିକ ରଚନା**

  ବିଚିତ୍ର ମନ
  ମାନସିକ ବିକୃତି
  ଜୀବନ ପ୍ରବାହରେ ମାନସିକ ବିକୃତି
  ଆଧୁନିକ ଜୀବନରେ ମାନସିକ ଚାପ
  ମନର ମାନଚିତ୍ର
  ମନସ୍ତାତ୍ତ୍ୱିକ ବିକାଶର ଶୈଶବ ପର୍ବ
  ବ୍ୟକ୍ତିତ୍ୱ ଓ ନେତୃତ୍ୱ
  ନାରୀ ମନସ୍ତତ୍ତ୍ୱ
  ଶିଶୁ ମନର ବିଜ୍ଞାନ
  ମନସ୍ତାତ୍ତ୍ୱିକ ବିକାଶର ଗୋଧୂଳି ପର୍ବ
  ସଚିତ୍ର ମନ
  ସବଳ ମନ, ସଫଳ ଜୀବନ
  ମନ ଦିଗନ୍ତ

- **ଆଧ୍ୟାତ୍ମିକ ରଚନା**

  ଶ୍ରୀ ସାଇସତ୍ ଚରିତ ଗାଥା
  ଶିରିଡ଼ିର ସାଇବାବା
  ଶିରିଡ଼ିରୁ ପୁଟପର୍ତ୍ତି (ଅନୁବାଦ)
  ଦିବ୍ୟ ସମ୍ଭାଷଣ : ଚତୁର୍ଥ ଭାଗ
  (ଶ୍ରୀ ସତ୍ୟସାଇ ବାବାଙ୍କ ସମ୍ଭାଷଣର ଅନୁବାଦ)
  ଦିବ୍ୟ ସମ୍ଭାଷଣ : ପଞ୍ଚଦଶ ଭାଗ
  (ଶ୍ରୀ ସତ୍ୟସାଇ ବାବାଙ୍କ ସମ୍ଭାଷଣର ଅନୁବାଦ)
  ଆଧ୍ୟାତ୍ମିକ ରଚନା : ଚେତନାଦୀପ୍ତ
  ଜୀବନ (ସ୍ୱାମୀ ଶୁଦ୍ଧାନନ୍ଦଙ୍କ ରଚନାର ଅନୁବାଦ)

- **ପ୍ରକାଶ ଅପେକ୍ଷାରେ**

  ମନସ୍ତାତ୍ତ୍ୱିକ ବିକାଶର କୈଶୋର ପର୍ବ
  ମନର ରହସ୍ୟ
  ସୁଖାନୁଭୂତିର ମର୍ମକଥା

ଏକବିଂଶ ଶତକରେ ବିଜ୍ଞାନ ଓ ବୈଷୟିକ କ୍ଷେତ୍ରରେ ଯେଉଁସବୁ ଅତିଦ୍ରୁତ ପରିବର୍ତ୍ତନ ଘଟୁଛି, ସେ ସବୁକୁ ଭାଷାର କଳେବର ମଧ୍ୟରେ ଧରିରଖିବା ଏକ ବିରାଟ ଧରଣର ଆହ୍ୱାନ । ଏ ପରିପ୍ରେକ୍ଷୀରେ ଓଡ଼ିଆ ଭାଷା ଆଧୁନିକ ଭାବଧାରାର ବାହକ ହୋଇପାରିବ କି ନାହିଁ, ତାହା କେତେକ ବ୍ୟକ୍ତିଙ୍କ ମନରେ ଏକ ପ୍ରଶ୍ନ । ଏପରି ଏକ ସନ୍ଦିଗ୍ଧ ବାତାବରଣ ମଧ୍ୟରେ ଆମ ଗଦ୍ୟ-ଭାଷାକୁ ଜ୍ଞାନ ବିତରଣର ମାଧ୍ୟମ କରାଇବାର ଅଭୀପ୍‌ସା ଏ ପୁସ୍ତକ ରଚନାର ଅନ୍ୟତମ ପ୍ରେରଣା ।

ମନସ୍ତତ୍ତ୍ୱର ଗବେଷଣା ଆମର ବ୍ୟକ୍ତିଗତ ତଥା ସମଷ୍ଟିଗତ ଜୀବନ ସମ୍ପର୍କରେ ଯେଉଁସବୁ ନିତ୍ୟନୂତନ ତଥ୍ୟରାଜିର ସମ୍ଭାର ସୃଷ୍ଟି କରିଛି, "ବାଲ୍ୟପର୍ବ" ସେହି ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । କହିବା ଅନାବଶ୍ୟକ ଯେ, ପୂର୍ବ ରଚିତ "ଶୈଶବପର୍ବ" ଏବଂ ପରିକଳ୍ପିତ "କୈଶୋରପବ" ମଧ୍ୟରେ ଏହା ଏକ ସଂଯୋଗ-ସେତୁ । ଆଶା ଓ ବିଶ୍ୱାସ ଯେ, ପାଠକମାନେ କେବଳ ପଠନ ମଧ୍ୟରେ ନିଜକୁ ସୀମିତ ନରଖି ମନନ ଓ ପ୍ରୟୋଗ ଦିଗରେ ଯତ୍ନଶୀଳ ହେବେ । ନିଜ ଜୀବନରେ ଅସଜଡ଼ା ରହିଯାଇଥିବା ଅଂଶ ବିଶେଷକୁ ବିକାଶମୁଖୀ ଶିଶୁମନରେ ସଜାଇ ଦେବାର ପ୍ରଯତ୍ନ ମଧ୍ୟରୁ ଆନନ୍ଦ ଲାଭର ଅନୁଭବ ପାଇ ପାରିବେ ବୋଲି ଆଶା ।

